# ଯୁଗମହର୍ଷି ରାଧାନାଥ

ଅଧ୍ୟାପକ ଦେବେନ୍ଦ୍ର ମହାନ୍ତି
ଖ୍ରୀଷ୍ଟ କଲେଜ,
କଟକ-୮



ଗ୍ରନ୍ଥ ପବ୍ଲିଶର୍ସ
ପୁସ୍ତକ ପ୍ରକାଶକ ଓ ବିକ୍ରେତା
ବିନୋଦ ବିହାରୀ, କଟକ-୨

ପ୍ରକାଶକ
ସହଦେବ ପ୍ରଧାନ
ଫ୍ରେଣ୍ଡସ୍ ପବ୍ଲିଶର୍ସ୍
ବିନୋଦ ବିହାରୀ
କଟକ — ୨

ପ୍ରଥମ ପ୍ରକାଶ—୨୫ ମାର୍ଚ୍ଚ, ୧୯୭୧

ପ୍ରଚ୍ଛଦ ଶିଳ୍ପୀ
ଅଜିତ ମୁଖର୍ଜୀ
ଶିଳ୍ପରୂପମ୍
କଟକ—୨

ମୁଦ୍ରଣ—
ହରିଶଙ୍କର ପ୍ରେସ୍
କଟକ—୨

ମୂଲ୍ୟ—ପନ୍ଦର ଟଙ୍କା

ଆଧୁନିକ ଓଡ଼ିଆ ସାହିତ୍ୟର
ଲବ୍ଧପ୍ରତିଷ୍ଠ ଗବେଷକ ତଥା ସମାଲୋଚକ
ମୋର ପୂଜ୍ୟଗୁରୁ ଅଧ୍ୟାପକ ଡକ୍ଟର ନଟବର ସାମନ୍ତରାୟଙ୍କର
କରକମଳରେ ତାହାର ଭକ୍ତି ଓ ଶ୍ରଦ୍ଧାର
ନିବେଦନ ।

ଦେବେନ୍ଦ୍ର

# ଉପୋଦ୍‌ଘାତ

ଆଧୁନିକ ଓଡ଼ିଆ ସାହିତ୍ୟର ଅଭ୍ୟୁଦୟ ଓ ଅଭିବିକାଶରେ କବିବର ରାଧାନାଥଙ୍କର ଅବଦାନ ଅବିସ୍ମରଣୀୟ । ଓଡ଼ିଆ ସାହିତ୍ୟର ଇତିହାସରେ ତାଙ୍କର ସାହିତ୍ୟିକ ପ୍ରତିଭା ଏକ ବିସ୍ମୟ । ତାଙ୍କର ପ୍ରତ୍ୟେକ କାବ୍ୟ ଗୋଟିଏ ଗୋଟିଏ ଗବେଷଣାର ବିଷୟ । ରାଧାନାଥଙ୍କ ସାହିତ୍ୟ ଉପରେ ଏ ଯାବତ୍ ବହୁ ଆଲୋଚନା ହୋଇଛି ; କିନ୍ତୁ ତାଙ୍କ ସାହିତ୍ୟର ବିଭିନ୍ନ ଦିଗ ଉପରେ ମୌଳିକ ଓ ପୂର୍ଣ୍ଣାଙ୍ଗ ଆଲୋଚନା ହୋଇପାରି ନାହିଁ କହିଲେ ଚଳେ । ଓଡ଼ିଆ ସାହିତ୍ୟର ବିଶିଷ୍ଟ ଗବେଷକ ଅଧ୍ୟାପକ ଦେବେନ୍ଦ୍ର ମହାନ୍ତିଙ୍କର 'ଯୁଗଜ୍ୟୋତି ରାଧାନାଥ' ବହୁ ଅଂଶରେ ଏହି ଅଭାବ ପୂରଣ କରିଛି । ରୀତିଯୁଗର ଅବସାନ ପରେ ଓଡ଼ିଆ ସାହିତ୍ୟ-ଆକାଶରେ ରାଧାନାଥରୂପୀ ସୂର୍ଯ୍ୟଙ୍କର ଉଦୟ, ଅଭ୍ୟୁତ୍‌ଥାନ ଓ ଅସ୍ତର ଇତିବୃତ୍ତ ହେଉଛି 'ଯୁଗଜ୍ୟୋତି ରାଧାନାଥ' ଗ୍ରନ୍ଥର ଉପଜୀବ୍ୟ ଚର୍ଚ୍ଚା । ରୀତିଯୁଗର ପ୍ରଭାବ ସମ୍ପୂର୍ଣ୍ଣ ହଟିନାହିଁ, ଅଥଚ ଆଧୁନିକତାର ଆଗମନ ପାଇଁ ଓଡ଼ିଆ ସାହିତ୍ୟ ସ୍ୱାଗତ ଜଣାଉଛି, ଏହିପରି ସନ୍ଧିକାଳଟିରେ ରାଧାନାଥଙ୍କର ଆବିର୍ଭାବ । 'ପରିସ୍ଥିତି'ର ପୃଷ୍ଠଭୂମିରେ ଜଣେ ବଳିଷ୍ଠ ପ୍ରଗତିବାଦୀ କବି ଭାବରେ ରାଧାନାଥ ଯେଉଁ 'ପ୍ରତିଭୂ'ର ପରିଚୟ ଦେଇଥିଲେ, ଆଧୁନିକତାର ବାର୍ତ୍ତାବହ ଭାବରେ ସେ ସମସାମୟିକ ସାହିତ୍ୟିକମାନଙ୍କୁ ଯେପରି ଭାବରେ ଆଧୁନିକତା ଆଡ଼କୁ ଆକର୍ଷଣ କରି ଆଣିଥିଲେ ଏବଂ ଏକ ନୂତନ ଯୁଗର ସୃଷ୍ଟି ପାଇଁ ଯେପରି ଭାବରେ ଏକ ମୂର୍ତ୍ତିମନ୍ତ ପ୍ରେରଣା ହୋଇ ଠିଆ ହୋଇଥିଲେ, ଏ ଗ୍ରନ୍ଥରେ ତାହାର ପୁଙ୍ଖାନୁପୁଙ୍ଖ ଆଲୋଚନା ନିଶ୍ଚିତ ଭାବରେ ସାହିତ୍ୟପ୍ରେମୀମାନଙ୍କର ଦୃଷ୍ଟି ଆକର୍ଷଣ କରିବ ।

ରାଧାନାଥଙ୍କ ସାହିତ୍ୟର ପାଶ୍ଚାତ୍ୟ ଉତ୍ସ ସମ୍ପର୍କରେ ଏ ପର୍ଯ୍ୟନ୍ତ କେବଳ ଆଭାସ ମିଳୁଥିଲା; କିନ୍ତୁ ଶ୍ରୀ ମହାନ୍ତି ବହୁଶ୍ରମ ସ୍ୱୀକାର କରି ମୂଳ ସାହିତ୍ୟ-ଉତ୍ସ ଗୁଡ଼ିକର ତନ୍ନ ତନ୍ନ ଅନ୍ୱେଷଣ ଓ ସୂକ୍ଷ୍ମାତିସୂକ୍ଷ୍ମ ବିଶ୍ଳେଷଣ

## ଲେଖକଙ୍କ ବିଷୟରେ —

ଅଧ୍ୟାପକ ଶ୍ରୀ ଦେବେନ୍ଦ୍ର ମହାନ୍ତି ବର୍ତ୍ତମାନ କଟକ ଖ୍ରୀଷ୍ଟ ମହାବିଦ୍ୟାଳୟରେ ଓଡ଼ିଆ ଭାଷା ଓ ସାହିତ୍ୟ ବିଭାଗରେ ଅଧ୍ୟାପନା କରୁଅଛନ୍ତି । ୧୯୩୦ ସାଲ ନଭେମ୍ବର ମାସ ୧୫ ତାରିଖରେ କଟକ ଜିଲ୍ଲାସ୍ଥ ତିର୍ତ୍ତୋଲ ଥାନାର ଗଣେଶ୍ୱରପୁରଠାରେ ତାଙ୍କର ଜନ୍ମ । ତିର୍ତ୍ତୋଲସ୍ଥ ମଣିଚରଣ ଶାରଳା ଏକାଡେମୀରୁ ମାଟ୍ରିକୁଲେଶନ୍, ଷ୍ଟୁଆର୍ଟ ବିଜ୍ଞାନ କଲେଜରୁ ଅଇ. ଏସ୍. ସି. ଏବଂ ରେଭେନ୍ସା କଲେଜରୁ ବି.ଏ. ଓ ଏମ୍. ଏ. ପାସ କରିବା ପରେ ରେଭେନ୍ସା କଲେଜରେ ଓଡ଼ିଶା ସରକାରଙ୍କଠାରୁ ବୃତ୍ତିପାଇ ଓଡ଼ିଆ ଭାଷା ଉପରେ ସେ ଗବେଷଣା କରିଥିଲେ । ତା ପରେ କଟକ ଖ୍ରୀଷ୍ଟ କଲେଜରେ ସେ କର୍ମଗ୍ରହଣ କରିଅଛନ୍ତି । ଅଧ୍ୟାପକ ଶ୍ରୀ ମହାନ୍ତି ଛାତ୍ରାବସ୍ଥାରୁ ଗଳ୍ପ, ପ୍ରବନ୍ଧ ଓ ଏକାଙ୍କିକା ରଚନାରେ ଆଗ୍ରହୀ । ତାଙ୍କର ଖଣ୍ଡିଏ ଗଳ୍ପ ପୁସ୍ତକ ଓ ବହୁ ସଂଖ୍ୟାରେ ସମାଲୋଚନା ପୁସ୍ତକ ପ୍ରକାଶ ପାଇଅଛି । ପ୍ରାଚୀନ ଓଡ଼ିଆ ସାହିତ୍ୟର କାବ୍ୟଗୁଡ଼ିକୁ ସେ କ୍ରମାଗତ ଭାବରେ ସମ୍ପାଦନ କରୁଅଛନ୍ତି । ଓଡ଼ିଆ ଭାଷା ଓ ସାହିତ୍ୟ ବିଷୟକ ତାଙ୍କର ବହୁ ଚିନ୍ତାପୂର୍ଣ୍ଣ ଗବେଷଣାମୂଳକ ପ୍ରବନ୍ଧ ସାମୟିକ ପତ୍ରପତ୍ରିକାମାନଙ୍କରେ ପ୍ରକାଶ ପାଇଥାଏ ।

ଅଧ୍ୟାପକ ଶ୍ରୀ ମହାନ୍ତିଙ୍କର 'ଯୁଗଜ୍ୟୋତି ରାଧାନାଥ' ପ୍ରକାଶ କରିଥିବା ଯୋଗୁଁ ମୁଁ ବିଶେଷ ଆନନ୍ଦିତ । ଇତି ।

ପ୍ରକାଶକ

# ନିଜ କଥା

ଛାତ୍ରାବସ୍ଥାରେ ଆଧୁନିକ ଓଡ଼ିଆ ସାହିତ୍ୟର କେତେଗୋଟି ବିଶିଷ୍ଟ ଦିଗପ୍ରତି ଆକୃଷ୍ଟ ହୋଇ କେତେକ ପ୍ରବନ୍ଧ ଲେଖିଥିଲି । ତା ପରେ କର୍ମମୟ ଜୀବନର ଅଧ୍ୟାପନା ମଧ୍ୟରେ ଆଧୁନିକ ସାହିତ୍ୟର ନିବିଡ଼ ସଂସ୍ପର୍ଶରେ ଆସିବା ଫଳରେ ଆଧୁନିକ ଓଡ଼ିଆ ସାହିତ୍ୟର ବିଶିଷ୍ଟ ସ୍ରଷ୍ଟାମାନଙ୍କର କୃତି ଉପରେ ଖଣ୍ଡିଏ ଲେଖାଏଁ ସମାଲୋଚନା ଗ୍ରନ୍ଥ ରଚନା କରିବା ଲାଗି ମନସ୍ଥ କଲି । ମୋର ଏହି ସଂକଳ୍ପର ଆଦ୍ୟ ପ୍ରୟାସ "ଯୁଗଜ୍ୟୋତି ରାଧାନାଥ" । ୧୯୬୭ ସାଲ ମଇମାସ ୨୪ ତାରିଖରେ ଏହାର ଆରମ୍ଭ ଓ ପରିସମାପ୍ତି ୧୯୭୧ ସାଲ ଅପ୍ରେଲ ମାସ ୧୫ ତାରିଖରେ । ପୁସ୍ତକଟିର ସମାପ୍ତି ପାଇଁ ଦୀର୍ଘ କାଳକ୍ଷେପ ହେବାର ଏକାଧିକ କାରଣ ବିଦ୍ୟମାନ । କବିବର ରାଧାନାଥଙ୍କ ସାହିତ୍ୟ ସମ୍ପର୍କରେ ତଥ୍ୟ ଆହରଣ ନିମିତ୍ତ ଏ ଦେଶର ବହୁ ପାଠାଗାର ଏବଂ ପୁସ୍ତକ ପ୍ରକାଶନ ସଂସ୍ଥା ଅନୁସନ୍ଧାନ କରି ମଧ୍ୟ ଆଶାନୁରୂପ ଗ୍ରନ୍ଥ ପାଇ ପାରିଲି ନାହିଁ । ବ୍ୟକ୍ତିଗତ ଉଦ୍ୟମରେ ବହୁ ଆୟାସ ସ୍ୱୀକାର କରି ଯେତିକି ପାଇଲି, ତାରି ଉପରେ ନିର୍ଭର କରିବାକୁ ବାଧ୍ୟ ହେଲି । ଯେଉଁ ଗ୍ରନ୍ଥକାରମାନଙ୍କର ଗ୍ରନ୍ଥଗୁଡ଼ିକର ସହାୟତା ଗ୍ରହଣ କରିଅଛି, ସେମାନଙ୍କ ନିକଟରେ ମୁଁ ଚିରକୃତଜ୍ଞ ।

ଓଡ଼ିଆ ସାହିତ୍ୟରେ ନବଯୁଗର ଦିଗ୍‌ଦର୍ଶକ କବିବର ରାଧାନାଥଙ୍କର କବିପ୍ରତିଭାର ମୂଲ୍ୟାୟନ ଏକ କଷ୍ଟସାଧ୍ୟ ବ୍ୟାପାର । ତଥାପି ତାଙ୍କର ସେହି ପ୍ରତିଭାକୁ ଯେତିକି ବିଶ୍ଳେଷଣ କରିବାର ସୁଯୋଗ ପାଇଛି, ସେତିକିରେ ତାଙ୍କ କବିହୃଦୟର ସ୍ପନ୍ଦନ ମୋର ସକଳ ଇନ୍ଦ୍ରିୟକୁ ଅଭିଭୂତ କରିଦେଇଅଛି । କବିଙ୍କର କାବ୍ୟ କବିତାକୁ ଆଲୋଚନା କରିବା ସମୟରେ ତାଙ୍କର ଜୀବନେତିହାସ ବିଷୟରେ ସଚେତନ ନ ହେଲେ ଆଲୋଚନା ହୁଏ ତ୍ରୁଟିପୂର୍ଣ୍ଣ । ଏହି ଦୃଷ୍ଟିରୁ ରାଧାନାଥଙ୍କର ଜୀବନେତିହାସକୁ

ତାଙ୍କର କାବ୍ୟକବିତା ସମ୍ବନ୍ଧ ସମାଲୋଚନା ଭାବରେ ବିଚାର କରିଅଛି । ଏହି ବିଚାର କେତେଦୂର ଯଥାର୍ଥ ହୋଇଅଛି, ତାହା ପାଠକ ପାଠିକା-ମାନଙ୍କର ବିଚାର ଯୋଗ୍ୟ । ରାଧାନାଥ-ସାହିତ୍ୟକୁ ଭିନ୍ନ ଭିନ୍ନ ଭାବରେ ବିଶ୍ଳେଷଣ କରିବା ଫଳରେ କବିଙ୍କର ସୃଷ୍ଟି-ସମ୍ଭାର ଓ ରସପୂର୍ଣ୍ଣ ଆତ୍ମିକ ଚେତନା ପ୍ରତି ମୁଁ ଏତେଦୂର ଆକୃଷ୍ଟ ହୋଇ ପଡ଼ିଥିଲି ଯେ ଏହି ଗ୍ରନ୍ଥରେ "ସୂର୍ଯ୍ୟାସ୍ତ" ପରିଚ୍ଛେଦରେ ଯେତେବେଳେ କବିଙ୍କର ଦେହାନ୍ତ ବିଷୟ ଲେଖିଲି, ସେତେବେଳେ ମୋର ଚକ୍ଷୁ ଦ୍ୱୟ ଅଶ୍ରୁପୂର୍ଣ୍ଣ ହୋଇ ଉଠିଥିଲା । ଏହା ହିଁ କବିବର ରାଧାନାଥଙ୍କ ବ୍ୟକ୍ତିସତ୍ତାର ବୈଶିଷ୍ଟ୍ୟ ବୋଲି ମୋର ଆତ୍ମବୋଧ ହୋଇଅଛି ।

ଓଡ଼ିଆ ଛାପାଖାନାର ଛାପାଶୈଳୀ ଅନୁସାରେ ପୁସ୍ତକଟି ସୁରୁଚିପୂର୍ଣ୍ଣ ମୁଦ୍ରଣରୁ ବଞ୍ଚିତ ହୋଇଅଛି । ତେଣୁ ଛାପାଖାନା ମାଲିକଙ୍କ ପକ୍ଷରୁ ପାଠକ ପାଠିକାମାନଙ୍କ ନିକଟରେ ଏଥିପାଇଁ କ୍ଷମାଭିକ୍ଷା କରିବା ବ୍ୟତୀତ ଗତ୍ୟନ୍ତର ନାହିଁ ।

ଉତ୍କଳ ବିଶ୍ୱବିଦ୍ୟାଳୟର ଉପାଧ୍ୟକ୍ଷ ଓଡ଼ିଆ ବିଭାଗର ମୁଖ୍ୟ ଅଧ୍ୟାପକ ମୋର ପୂଜ୍ୟଗୁରୁ ଡକ୍ଟର ବଂଶୀଧର ମହାନ୍ତି ଏହି ଗ୍ରନ୍ଥର ଉପୋଦ୍‌ଘାତ ଲେଖି ମୋତେ କୃତଜ୍ଞତା ପାଶରେ ଆବଦ୍ଧ କରିଅଛନ୍ତି ।

ଏହି ଗ୍ରନ୍ଥସ୍ଥ ଆଲୋଚନା ରାଧାନାଥ-ସାହିତ୍ୟ ଉପରେ ଯେବେ କିଛି ନୂତନ ଆଲୋକ ସମ୍ପାତ କରିପାରେ ତେବେ ମୋର ଶ୍ରମ ସାର୍ଥକ ହେବ । । ଇତି ।

ଧୂଆଁପଡ଼ିଆ ଗଳି
କଟକ-୨
ତା ୧୫।୩।୧୯୭୧

ଲେଖକ

# ସୂଚୀ



———

# ରୀତି-ଋଚିର ଶେଷରଶ୍ମି

ପାଦପାତରେ ତାର ନୂପୁରର ମଧୁର ସିଞ୍ଜନ—ଚାହାଣିରେ ପ୍ରଚ୍ଛନ୍ନ— ଆଖିରେ ତାର ସ୍ୱପ୍ନ ସ୍ୱର୍ଗର କାମନା—ବକ୍ଷରେ ତାର ଶିହରଣ—ଶିହରଣ ନୁହେଁ, ପ୍ରିୟର ଆଶ୍ଳେଷ ଲାଗି ନିମନ୍ତ୍ରଣ—ଅଧରରେ ତାର ରକ୍ତଜବାର ପରାଜୟର ଗ୍ଳାନି—ଦନ୍ତପଂକ୍ତିରେ ତାର ଚନ୍ଦ୍ରିକାର ପରାଜୟର କାହାଣୀ— ମନରେ ତାର ଯୁଗ ଯୁଗର ବାସନା—ଧନ୍ୟ ବକ୍ଷକୁ ଯେତେବେଳେ ବସନ୍ତ ଦୋହଲାଇ ଆସେ ସେତେବେଳେ ସେ ସଖୀମେଳରେ କରେ ଉଦ୍ୟାନ ବିହାର—ସଖୀମାନଙ୍କ ସଙ୍ଗରେ ହାସ ପରିହାସ କେତେ କଥା—ସେଇ ସହଚରୀ ମେଳରେ ସେ ପୁଣି କରେ ସ୍ୱପ୍ନେ ବର ସ୍ନାନ—ମନର ଆଶା ତାର ମରିଲେ ନା—ବଢ଼ିଯାଏ ଦିନକୁ ଦିନ—ନିଦ୍ରେ ଦେଖେ ସ୍ୱପ୍ନ—ପ୍ରିୟ ତାର ଆଗରେ ଉଭା—ପୁଣି ଲୁଚିଯାଏ ତାର ପ୍ରିୟ—କବରୀ ଫିଟାଇ ସେ ଖୋଜେ, ଶେଯ କେଉଁଠାଇ ପୁଣି ସେ ଖୋଜେ ତାର ପ୍ରିୟକୁ— ଚନ୍ଦ୍ରଶାଳାପୁରରେ ନିଜର ଶରୀରକୁ ଲୋଟାଇ ଦେଇ ସେ ଅନୁଭବେ ବିରହିଣୀ—ଉପଚାରର ପ୍ରୟୋଗ କରନ୍ତି ସହଚରୀମାନେ—କଳ୍ପନାର ରଙ୍ଗ ମଉଳେ—ପୁଣି ବେଳ ଆସେ—କଳ୍ପନାର ରଙ୍ଗରେ ତାର ଶତ ଇନ୍ଦ୍ରଧନୁର ଆଭା ଉଙ୍କୁଟେ ।

ତାର ଜୀବନର ସ୍ନେହ, ପ୍ରୀତି, ଆଶା, ଉନ୍ମାଦନା, ବିରହ ଆଉ ମିଳନର କାହାଣୀକୁ ନେଇ ଗଢ଼ିଉଠିଛି ମଧ୍ୟଯୁଗର ଓଡ଼ିଆ ସାହିତ୍ୟ—ସେ ହୋଇପାରେ ଲାବଣ୍ୟବତୀ, କୋଟିବ୍ରହ୍ମାଣ୍ଡ ସୁନ୍ଦରୀ, ଶ୍ରୀରାଧା, ଚନ୍ଦ୍ରାବଳୀ ବା ଆଉ କେହି ।

ଏଯୁଗର ନାରୀ ସାଧାରଣ ନାରୀ ନୁହେଁ, ସେ ଲାବଣ୍ୟବତୀ ଅଥବା କୋଟିବ୍ରହ୍ମାଣ୍ଡ ସୁନ୍ଦରୀ । ଲାବଣ୍ୟବତୀର ବା କୋଟିବ୍ରହ୍ମାଣ୍ଡ ସୁନ୍ଦରୀର

ଜୀବନ ଗାଥାକୁ କବିର ଲେଖନୀ ରୂପ ଦେଇଛି ଅସାଧାରଣ କଳ୍ପନାର ଜାଲବୁଣି ।

କାଳ୍ପନିକତା ଏଇ ଯୁଗର ଏକ ପ୍ରଧାନ ବିଶେଷତ୍ୱ । ଏଯୁଗର ପୂର୍ବଯୁଗରେ କବିର କଳ୍ପନା ଥିଲା ଧର୍ମମତବାଦ ପରିପୁଷ୍ଟ । ସାହିତ୍ୟ ଥିଲା ଧର୍ମାଶ୍ରୟୀ । ହଠଯୋଗ, ପିଣ୍ଡବ୍ରହ୍ମାଣ୍ଡ ତତ୍ତ୍ୱ ଭିତରେ କଳ୍ପନାର ଜାଲ ବୁଣିବାରେ ସୁଯୋଗ କବିର ନଥିଲା । ମାତ୍ର ଏଯୁଗରେ ଶୁଷ୍କଧର୍ମ ଉପଦେଶ ସାହିତ୍ୟରୁ ଏକପ୍ରକାର ତୁଟିଗଲା । ଯଦ୍ୟପି ଧର୍ମମତବାଦର ପ୍ରକାଶ ହେଲା, ତାହା ହେଲା ରସସାହିତ୍ୟ ମାଧ୍ୟମରେ । ରସର ପରିବେଷଣ ପାଇଁ କଳ୍ପନାର ଅପରିସୀମ ପରିଧି ଏଯୁଗର କବିକୁ ତାର କାବ୍ୟନିର୍ମାଣ କୌଶଳ ପ୍ରଦର୍ଶନ କରିବାରେ ସହାୟକ ହୋଇଥିଲା । ଏଯୁଗର କବିର ନାୟିକା ଜନ୍ମ ନେଇଛି ସେହି ନଗରୀରେ ଯେଉଁଠି,

"ଜନ ମନୋହର ସୁବାସ ଅଛି
ଭ୍ରମର ଅବଲମ୍ବ ନାହିଁ କଛି ।
ଦେଖିବାରୁ ଯାହା ରୁଚିର ରୁଚି
ଶଙ୍କା ଲଭି ଲଙ୍କା ଅଳକା କାଞ୍ଚି ।
ତରୁ ତରୁଣୀରେ ଶରଣ ଭଜି
କମ୍ପ ସ୍ତମ୍ଭିତକା ତେବେ ନତେଜି ।
ବଜ୍ରଭ୍ରୀ ବଜ-ଭ୍ରୀ ଜନମ କରେ
ହରିତ୍ୱୟ ହରି-ହୟ ଶତ୍ରୁରେ ।
ବଇଜୟନ୍ତକୁ ଜିଣିବ ବୋଲି
ବଇଜୟନ୍ତୀରେ ଛନ୍ଦ ନଭିଲି ।
ବିତାନ ଏସନ ପ୍ରସଙ୍ଗ ଧରେ
ଯେସନ ଗଗନ ନିଶାକାଳରେ ।
ଚନ୍ଦ୍ରମଣ୍ଡଳ କରେ ପ୍ରକାଶିତ
ପୁଣି ତାର ତାର-ରାଜି ରାଜିତ ।
ଯେଉଁ ପୁର ହିଛି ଅମରାବତୀ,
ଉପରେ କରିଛି ଆକ୍ଷେପ ଅତି ।"

(କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ-୨ୟ ଛାନ୍ଦ)

ଏହିପରି ନଗରୀରେ ଜନ୍ମ ନେଇଛନ୍ତି କାବ୍ୟନାୟିକା—ତାଙ୍କ ସୌନ୍ଦର୍ଯ୍ୟ ଅତୁଳନୀୟ ବୋଲି କେବଳ କହିଦେଲେ ଯଥେଷ୍ଟ ହେବ ନାହିଁ । କବିଙ୍କ ଭାଷାରେ—

"ସୁରଭିପଣରେ ସୁରଭି ଗୁଣରେ ସୁରଭି ପୁରରଣ ନନ୍ଦନା
ଯେମନ୍ତ ମତ୍ତକାମିନୀଙ୍କ ସୀମନ୍ତ—ମଣିଭୂଷା ସ୍ୱାଇ ବଦନା
ଯେମନ୍ତ ସୁରଭି ଋତୁରେ ପ୍ରଧାନ
ନଦୀରେ ଗଙ୍ଗା ପୁରୁଷେ ମନସିଜ ଗଜେ ଇନ୍ଦ୍ରଗଜ ବିଧାନ ।"
(କୋଟିବ୍ରହ୍ମାଣ୍ଡ ସୁନ୍ଦରୀ—ପ୍ରଥମ ଛାନ୍ଦ)

କଳ୍ପନାର ରାଜକୁମାର ଆଉ ରାଜକୁମାରୀ—ତାଙ୍କପାଇଁ କବିଙ୍କର ଲେଖନୀରେ ଆସିଛି ବସନ୍ତ ଋତୁ - ଉଦ୍ୟାନର ରୂପଶ୍ରୀରେ ହଜିଯାଇଛି ରାଜଜେମା—

"ଏକଲୁ ଗୃହିଁ ଆରେକ ସଖୀ କହି ନିକଟେ ନାଗେଶ୍ୱର ମୋର
ହୋଇଲା, ହୋଇଥାଇଟି ନାଗେଶ୍ୱର ସୁଗନ୍ଧୁରେ କର ଆଦର
ସେ ଛଳେ । ଶଙ୍କିଲା, ନାଗେଶ୍ୱର କହ
ସୁମନା ଭୂଷଣ ସମ୍ପତ୍ତି ପାଇବ ତାର ପରର ଯାଇ ଆରୋହ ।"
[ଲାବଣ୍ୟବତୀ—ଝମ ଛାନ୍ଦ]

ଉପବନରେ ବିହାର ଶେଷକରି ରାଜଜେମା ଯାଇଛନ୍ତି ସରୋବରକୁ । ସେ ସରୋବର କବି କଳ୍ପନାର ସରୋବର—

"ପାବଚ୍ଛ ସ୍ୱଚ୍ଛ ସ୍ଫଟିକରେ ନୀର ତୀର ପ୍ରଣୀତ
ସୁବେଣୀ ସ୍ମରଣ ଭାବକ ତହିଁ ତ୍ରିବେଣୀ ଖ୍ୟାତ ।
ଦ୍ୱୀପ-ଦାଣ୍ଡୀ ଲଭି ମରାଳ ପନ୍ତି ହଂସ ଭଉଁରୀ
ବନ୍ଧ ବଡ଼ଭାଙ୍କ ବେଢ଼କ ଶୋଭା ଚୂର୍ଣ୍ଣଚଉଁରୀ ।
ଜଳ ଜମ୍ବାଳ ଆବିଳରେ ମୀନ ମନ ହରୁଛି
ଜଳ ନିର୍ମଳରେ ଆଦର ଆଦରଶ୍ୟୁଁ ସାରୁଛି ।"
(ଲାବଣ୍ୟବତୀ—ଷଷ୍ଠ ଛାନ୍ଦ)

ସେଇ ସରୋବରରେ ରାଜଜେମା ସହଚରୀଙ୍କ ମେଳରେ ଅବଗାହନ କରୁଛି—ଅବଗାହନ ପରେ ମଧ୍ୟ କବି ତାର ସୌନ୍ଦର୍ଯ୍ୟକୁ ପ୍ରକାଶ କରିବାପାଇଁ ବ୍ୟଗ୍ର ହୋଇଉଠିଛି—

"ସ୍ନାନ ଅବଶେଷେ କୂଳକୁ କୁଳପାଳିକା ଆସି
ଗଉର ଅଙ୍ଗରେ ଚଢ଼ି ସେ ଶାଢ଼ୀ ଏମନ୍ତ ଦିଶି ।
ସ୍ଫଟିକ ବାଡ଼ ଫୁଟିଦିଶେ ଜସ ହେମ ପିତୁଳା
ସ୍ତନ ସମ୍ପୁଟେକ ବାଜେଦେନ୍ତ ପିଧାନ କଲା ।
ଅଛି ଜରଜର ନୀରରେ ପଣ୍ଟୁ ଏମନ୍ତ ଭାବ
ସେ ଚନ୍ଦ୍ରଶୀଳ ଟୋଇଲା କି ହାସ ଚନ୍ଦ୍ରରେ ଦ୍ରବ ।
ବିନ୍ଦୁ ବିନ୍ଦୁ ଜଳ ରହିଛି ଚିକୁର କୁଟିଳ ବାଳେ
ତୁଷାର ବର୍ଷିକି ହୋଇଛି ନବ ତମାଳ ଦଳେ ।
ନବମେଘେ କିବା ଉଇଁଛି ତାର ତାରକାଶ୍ରେଣୀ
ମୋତି ପତନ କି ହୋଇଛି ନୀଳମଣି—ଧରଣୀ ।"

[ଲାବଣ୍ୟବତୀ—୬ଷ୍ଠ ଛାନ୍ଦ]

ଖାଲି କଳ୍ପନା—ଆଉ କଳ୍ପନା—କଳ୍ପନାର ରଙ୍ଗ ଢଳୁଛି ଭାଷାର ଗୃହରେ । ତେଣୁ ଏ ଯୁଗର କବିର ଭାଷାଗୃହକୁ ଲକ୍ଷ୍ୟକଲେ ପାଠକ—ଗୋଟିଏ ଗୋଟିଏ ଶବ୍ଦ ତାର ମଣି କେତେ ପ୍ରକାର ଅର୍ଥ—

"ଦେଖରେ ନଳିନ ନଳିନୀ ନଳିନୀରେ ପୂରିତ
ଭ୍ରମନ୍ତି ଭ୍ରମର ଭ୍ରମରେ ଭ୍ରମରେ ଏ ଶୋଭିତ ।
ବକ—ଦ୍ୱିଜ ବଗଜ ଅଛନ୍ତି ମୀନଭକ୍ଷଣ ପାଇଁ
ରାଜୀବ ରାଜୀବ ନୟନା ଏଥି ଖେଳା କରଇ ।"

(ଲାବଣ୍ୟବତୀ—୬ଷ୍ଠ ଛାନ୍ଦ)

କାବ୍ୟର ନାୟିକାକୁ ଅଳଙ୍କାର ଭୂଷିତା କରି କବି ତା ଠାରେ ଆରୋପ କରିଛି ସୌନ୍ଦର୍ଯ୍ୟ । ଅଜ ତାର କାବ୍ୟ ସୁନ୍ଦରୀକୁ ଦେଇ ବା ନିରାଭରଣା ରଖନ୍ତା କିପରି ? ତେଣୁ ଏ ଯୁଗର କାବ୍ୟ ସାହିତ୍ୟରେ ଅଳଙ୍କାର ପ୍ରୟୋଗର ବାହୁଲ୍ୟ ଲକ୍ଷ୍ୟ କରିବାର କଥା । ଉପମା, ଶ୍ଳେଷ, ଯମକ, ଅନୁପ୍ରାସ, ଗୋମୂତ୍ର·····ଏମିତି କେତେ ଯେ ଅଳଙ୍କାର ତାର କଳନା ନାହିଁ । କେବଳ ଏତିକିରେ ଅଳଙ୍କାର ପ୍ରୟୋଗର କୌଶଳ ସୀମିତ ନୁହେଁ । ଗୋଟିଏ ଗୋଟିଏ ଛାନ୍ଦରେ ପ୍ରତ୍ୟେକ ପାଦ ତିନିଟି ରାଗ, ତିନିଟି ଅର୍ଥ ଓ ପାଦରୁ ଗୋଟିଏ ଗୋଟିଏ ଅକ୍ଷର ଉଠାଇଦେବାଲ ତିନିଟି ଭିନ୍ନ ଋତୁର ବର୍ଣ୍ଣନା—

"ଆମ୍ଭର ସଧନ କାଳ ହୋଇ ଉଦୟ
ଅମିତ ପରବଳଙ୍କୁ ଦରଶମୟ ।
ସ୍ତନିତ ହିଁ ସ୍ତୁତି କାଳକଣ୍ଠ ଅନ୍ତୁତ
ଅଚର ପ୍ରଭୃହିଁ ତାର ଦାଶେ ଦାଶେତ ।"

[କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ—୨୪ଶ ଛାନ୍ଦ]

ନାୟିକାର ପଦପତନରେ ଛନ୍ଦର ପତନ—ଶବ୍ଦାୟିତ ତରଙ୍ଗର ଅପୂର୍ବ ଶିହରଣ—ଏଣୁ କାବ୍ୟ ସାହିତ୍ୟର ଛନ୍ଦାଶ୍ରୟୀ ପଦଯୋଜନା ଏଯୁଗର ଅନ୍ୟ ଏକ ବିଶେଷତ୍ୱ—ଏଇଥିପାଇଁ ମଧ୍ୟଯୁଗର କାବ୍ୟସାହିତ୍ୟ, ସଙ୍ଗୀତ, ଚଉପଦୀ ଓ ଛାନ୍ଦର ଏତେ ଆଦର । ପାଲା ଗାୟକ, ଦାସକାଠିଆ ଗାୟକ, ଗୋଟିପୁଅ ପ୍ରଭୃତିଙ୍କ କଣ୍ଠରେ ଅତ୍ୟାଧୁନିକ କାଳରେ ମଧ୍ୟ ରୀତିଯୁଗର ଛାନ୍ଦ ଚଉପଦୀ ସୃଷ୍ଟି କରୁଛି ସଙ୍ଗୀତର ମଧୁର ମୂର୍ଚ୍ଛନା । ଏ ମୂର୍ଚ୍ଛନା ଏବେ ମଧ୍ୟ ଅଶେଷ ଶ୍ରୋତାଙ୍କ ପ୍ରାଣରେ ଭରିଦିଏ ଅପୂର୍ବ ସ୍ପନ୍ଦନ । ମଧ୍ୟଯୁଗୀୟ ସାହିତ୍ୟର ଏ ବିଶେଷତ୍ୱକୁ ଅସ୍ୱୀକାର କରିବା ଏକାନ୍ତ ଅସମ୍ଭବ ।

ସେ ସାହିତ୍ୟ ସୃଷ୍ଟି କରି ଏ ଯୁଗର କବି ଅନ୍ୟସବୁ ରସ ମଧ୍ୟରୁ ଶୃଙ୍ଗାର ରସକୁ ବିଶେଷ ଭାବରେ ପ୍ରାଧାନ୍ୟ ଦେଇଅଛି । ନାୟିକାର ବେଶ ବା ସୌନ୍ଦର୍ଯ୍ୟ ବର୍ଣ୍ଣନାରେ ମଧ୍ୟ କବିର ଶୃଙ୍ଗାର ରସାଶ୍ରିତ ଚିନ୍ତାଧାରା ପ୍ରକାଶ ପାଇଅଛି । କାବ୍ୟ ସାହିତ୍ୟର ପରମ୍ପରାରେ ଏଯୁଗର କାବ୍ୟରେ କେଳିଗୃହର ରତିବର୍ଣ୍ଣନାରେ ଶୃଙ୍ଗାର ରସର ଆଧିକ୍ୟ ସୁବିଦିତ । ଏଯୁଗର କବିର କଳ୍ପନା ସତେ ଯେପରି ସର୍ବଦା ଶୃଙ୍ଗାର ରସସିକ୍ତ ।

(୧) "ଅଭିମାନ କାହିଁ ଯା ସମାନ ହୋଇ ନାହିଁ ତା ଗୁଡ଼ିକୁ ବଚନ
ତାକୁ କି ବୋଲି କରିବି ବନ୍ଦନ

ସ୍ତବକ ସ୍ତନାର ଯାବକ ଲେଖିବା ଯେବକ ହେବା ମୋ ମନରେ ସୁନ୍ଦରୀ,
ଏତେକେ ମୁଁ ସର୍ବସୁଖ ପାଇବି । ଆନଶରେ ଅବା ତୁ ଯୋଗ୍ୟ ହୋଇବି
ଆଦ୍ଭୁତ ଉରକୁ ପଲଙ୍କ, ଭରକୁ ଭଦ୍ରାସନ କରିଦେବିରେ ।"

(କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ—୨୨ଶ ଛାନ୍ଦ)

(୨) "ଗଣ୍ଡମଣ୍ଡଳ ପାଟଳ ଚୁମ୍ବିବାରେ ତାମ୍ବୁଳ ବୋଳିତ ଲାଗିଛି ।
ପାନ ବଶରେ ରଦବାସ ବିଶେଷ ଶୋଭା—ଦନ୍ତକ୍ଷତେ ଭଜାଛି ।

ଚନ୍ଦ୍ର ଚନ୍ଦନ । ଠାବେ ଠାବେ ଅଙ୍ଗେ ଜଡ଼ୁଛି ।
ନାମ କାତରେ ଭିଡ଼ୁଛି ତରତରେ କଙ୍କଣ ପଦରେ ଚୀଡ଼ୁଛି ।”
(ଲାବଣ୍ୟବତୀ—ଦ୍ୱାଦଶ ଛାନ୍ଦ)

ଏହିପରି କେତେକ ବଶିଷ୍ଟତା ଯୋଗୁଁ ମଧ୍ୟଯୁଗର ଓଡ଼ିଆ ସାହିତ୍ୟ ଏକ ବଳିଷ୍ଠ ପରଂପରା ସୃଷ୍ଟି କରିଥିଲା । ଓଡ଼ିଆ ସାହିତ୍ୟରେ କାବ୍ୟଯୁଗ ବା ରୀତିଯୁଗର ପରିସରକୁ ୧୬୬୮ ସାଲରୁ ୧୮୭୨ ସାଲ ମଧ୍ୟରେ ସାହିତ୍ୟ ସମୀକ୍ଷକମାନେ ସୀମିତ କରିଅଛନ୍ତି । ତେଣୁ ଏହା ଷୋଡ଼ଶ ଶତାବ୍ଦୀର ଦ୍ୱିତୀୟ ଭାଗରୁ ଊନବିଂଶ ଶତାବ୍ଦୀର ଦ୍ୱିତୀୟଭାଗ ପର୍ଯ୍ୟନ୍ତ ବ୍ୟାପ୍ତ ବୋଲି କହିଲେ ଅସମୀଚୀନ ହେବ ନାହିଁ । ଏହି ସମୟ ମଧ୍ୟରେ ଓଡ଼ିଆ କାବ୍ୟ ସାହିତ୍ୟ ସଂସ୍କୃତ କାବ୍ୟ ସାହିତ୍ୟର ଆଦର୍ଶରେ ନିଜକୁ ଗଢ଼ିନେଇ ଏକ ଉନ୍ନତ ବିଦଗ୍ଧ ସାହିତ୍ୟ ସୃଷ୍ଟି କରିଥିଲା । ଏହି ଯୁଗର ପୁରୋଧା କବିସମ୍ରାଟ ଉପେନ୍ଦ୍ର ଭଞ୍ଜ ଓଡ଼ିଆ କାବ୍ୟ ସାହିତ୍ୟ ସୃଷ୍ଟି କ୍ଷେତ୍ରରେ ଯେଉଁ ଆଦର୍ଶ ପ୍ରତିଷ୍ଠା କରିଥିଲେ ତାହା ତାଙ୍କର ସମସାମୟିକ ତଥା ପରବର୍ତ୍ତୀ ବହୁ କବିଙ୍କ ଦ୍ୱାରା ଅନୁସୃତ ହୋଇଥିଲା ।

ଉପେନ୍ଦ୍ର ଭଞ୍ଜଙ୍କର ରଚନାବଳୀ ଏ ଦେଶରେ ବିଶେଷ ଭାବରେ ଆଦୃତ ହୋଇଥିଲା । ତାଙ୍କର କାବ୍ୟ, କବିତା, ଛାନ୍ଦ, ଚଉପଦୀ, ପୋଇ ପ୍ରଭୃତି ଲୋକସମାଜରେ ବିଶେଷ ଭାବରେ ଆଦୃତ ହେବାର ଏକ ବିଶେଷ କାରଣ ମଧ୍ୟ ଥିଲା, ତାହା ହେଉଛି ସେ ସମୟର ପାରିପାର୍ଶ୍ୱିକ ପରିସ୍ଥିତି । ସେ ସମୟରେ ଓଡ଼ିଶାରେ ସଂସ୍କୃତ ସାହିତ୍ୟର ପ୍ରସାର ଉତ୍କୃଷ୍ଟ ଭାବରେ ଥିଲା । ପଣ୍ଡିତମାନେ ଓଡ଼ିଶାର ବିଭିନ୍ନ ରାଜସଭା-ମାନଙ୍କରେ ଥାଇ ସଂସ୍କୃତ ସାହିତ୍ୟର ଆଲୋଚନା ତଥା ପ୍ରଚାର କରିଥିଲେ । ତେଣୁ ସଂସ୍କୃତ ସାହିତ୍ୟରେ ଜ୍ଞାନଲାଭ କରିଥିବା ବ୍ୟକ୍ତିମାନେ ନିଜ ନିଜକୁ ପଣ୍ଡିତ ରୂପେ ପରିଚିତ କରାଇବା ସଙ୍ଗେ ସଙ୍ଗେ ସଂସ୍କୃତ ସାହିତ୍ୟକୁ ଅନୁସରଣ କରି ରଚିତ ହୋଇଥିବା କାବ୍ୟ ସାହିତ୍ୟକୁ ଆଦର କରିଥିଲେ । ସେମାନଙ୍କୁ ସେତେବେଳେ ସାଧାରଣ ପାଠକ ନ କହି ବିଦଗ୍ଧ ପାଠକ ବୋଲି କୁହାଯାଉଥିଲା । ଏହି ଶ୍ରେଣୀର ପାଠକମାନେ ଉପେନ୍ଦ୍ର ଭଞ୍ଜଙ୍କ ରଚନା ପ୍ରତି ଯେ ବିଶେଷ ଭାବରେ ଆକୃଷ୍ଟ ହୋଇଥିଲେ, ଏକଥା ନିଃସନ୍ଦେହରେ କୁହାଯାଇ ପାରେ ।

ଏହି ଶ୍ରେଣୀର ପଣ୍ଡିତମନ୍ୟ ପାଠକମାନଙ୍କ ପାଇଁ ଯେ ଉପେନ୍ଦ୍ର ଭଞ୍ଜଙ୍କର କାବ୍ୟସାହିତ୍ୟ ଉଦ୍ଦିଷ୍ଟ, ଏକଥା ଉପେନ୍ଦ୍ର ତାଙ୍କ ରଚନାରେ

ପ୍ରକାଶ କରିଅଛନ୍ତି । ତାଙ୍କର ବହୁ କାବ୍ୟରେ ସେ ତାଙ୍କ କାବ୍ୟରଚନାର ଆଭିମୁଖ୍ୟ ଉଲ୍ଲେଖ କରିଅଛନ୍ତି । ତାଙ୍କ ମତରେ କେବଳ ପଣ୍ଡିତମାନେ ତାଙ୍କ ରଚିତ କାବ୍ୟସାହିତ୍ୟର ରସ ଆସ୍ୱାଦନ କରିବାରେ ସମର୍ଥ ହୋଇପାରିବେ । କାରଣ କେବଳ ସେମାନେହିଁ ତାଙ୍କ ରଚନାକୁ ବୁଝିବାରେ ସମର୍ଥ । ପ୍ରକୃତରେ ଦେଖିଲେ ଜଣାଯାଏ, ଉପେନ୍ଦ୍ର ଭଞ୍ଜଙ୍କର କାବ୍ୟ କବିତା ଏପରି ଶବ୍ଦସମ୍ଭାରରେ ପରିପୂର୍ଣ୍ଣ ଯେ ତାହା ସାଧାରଣ ପାଠକର ବୋଧଗମ୍ୟ ହେବା ନିତାନ୍ତ ଅସମ୍ଭବ । କାବ୍ୟକବିତାରେ ଶବ୍ଦ ସଂଯୋଜନା ଭିତରେ ସ୍ୱାତନ୍ତ୍ର୍ୟ ଉପେନ୍ଦ୍ର ଭଞ୍ଜ ପ୍ରଦର୍ଶନ କରିଅଛନ୍ତି । ଗୋଟିଏ ଗୋଟିଏ ଶବ୍ଦକୁ ବହୁ ଅର୍ଥରେ ପ୍ରୟୋଗ କରି ଉପେନ୍ଦ୍ର ଭଞ୍ଜ ସତେ ଯେପରି ଶବ୍ଦ ପ୍ରୟୋଗରେ ଅସାଧାରଣ ପ୍ରତିଭାର ପରିଚୟ ଦେଇଅଛନ୍ତି ।

ଉପେନ୍ଦ୍ର ଭଞ୍ଜ ଯେତେବେଳେ ତାଙ୍କ ସାହିତ୍ୟକୁ କେବଳ ପଣ୍ଡିତମାନଙ୍କ ପାଇଁ ଉଦ୍ଦିଷ୍ଟ ବୋଲି ଘୋଷଣା କରନ୍ତି ସେତେବେଳେ ସେ ସାଧାରଣ ପାଠକକୁ ଉପେକ୍ଷା କରିଛନ୍ତି । ମାତ୍ର ତାଙ୍କ ସାହିତ୍ୟର ଅପୂର୍ବ ସମ୍ମୋହନ ଶକ୍ତି ଯୋଗୁଁ ସାଧାରଣ ପାଠକ ଉପେକ୍ଷିତ ହୋଇନାହିଁ । ଉପେନ୍ଦ୍ର ଭଞ୍ଜଙ୍କର କାବ୍ୟକବିତାର ସଙ୍ଗୀତମୟତା ଏଦେଶର ଅଗଣିତ ପାଠକ ତଥା ଶ୍ରୋତାଙ୍କୁ ମୁଗ୍ଧ କରିଥିଲା । ଯେଉଁମାନେ ପଣ୍ଡିତ ସେମାନେ ଉପେନ୍ଦ୍ର ଭଞ୍ଜଙ୍କର ସାହିତ୍ୟ ପାଠକରି ବା ଗୀତ ହେବା ସମୟରେ ଶ୍ରବଣ କରି ତାର ଅର୍ଥ ହୃଦୟଙ୍ଗମ କରିବା ଦ୍ୱାରା ଯେତିକି ମାତ୍ରାରେ ଆନନ୍ଦ ଲାଭ କରୁଥିଲେ, ଯେଉଁମାନେ ସାଧାରଣ ପାଠକ ବା ଶ୍ରୋତା ସେମାନେ ଭଞ୍ଜ-ସାହିତ୍ୟ ଗୀତ ହେବା ସମୟରେ ତାହା ଶ୍ରବଣ କରି ତଦପେକ୍ଷା ଅଧିକତର ଆନନ୍ଦ ଲାଭ କରୁଥିଲେ । ତେଣୁ ଓଡ଼ିଶାରେ ଉପେନ୍ଦ୍ର ଭଞ୍ଜଙ୍କର ସାହିତ୍ୟ ଯେ କିପରିଭାବରେ ବ୍ୟାପ୍ତ ଥିଲା ତାହା ଉତ୍କଳମଣି ଗୋପବନ୍ଧୁ ଦାସ ପ୍ରକାଶ କରିଅଛନ୍ତି ।

"ଗାଏ ତୁମ୍ଭ ଗୀତ ସଭାରେ ପଣ୍ଡିତ
ପଥେ ପାନ୍ଥ ହୃଷ୍ଟମନା
ବିଲେ ବୋଲେ ଚଷା ଅନ୍ତଃପୁରେ ଯୋଷା
ନୃତ୍ୟରଙ୍ଗେ ବାରାଙ୍ଗନା ।"

ଉତ୍କଳମଣି ଗୋପବନ୍ଧୁ ଉପେନ୍ଦ୍ର ଭଞ୍ଜଙ୍କର ସାହିତ୍ୟର ପ୍ରଶସ୍ତି ଗାନ କରିବାକୁ ଯାଇ ତାହାର ଗ୍ରାହକ ଶ୍ରେଣୀ ନିର୍ଦ୍ଦେଶ କରିଅଛନ୍ତି ।

ସେ ଏଥିରେ ପାଞ୍ଚଗୋଟି ଶ୍ରେଣୀର ଉଲ୍ଲେଖ କରିଅଛନ୍ତି । ଏଗୁଡ଼ିକ ହେଲା, ପଣ୍ଡିତ, ପାଲ୍ଲା, ଚଷା, ଯୋଷା ଓ ବାରାଙ୍ଗନା । ଏହି ପାଞ୍ଚଗୋଟି ଶ୍ରେଣୀ ମଧ୍ୟରୁ ଭଞ୍ଜସାହିତ୍ୟକୁ ସାହିତ୍ୟ ରୂପେ ଗ୍ରହଣ କରିବାର ଯୋଗ୍ୟତା ଓ କେବଳ ପ୍ରଥମ ଶ୍ରେଣୀର ଅର୍ଥାତ୍ ପଣ୍ଡିତ ଶ୍ରେଣୀର ଥିଲା । ଏହି ଶ୍ରେଣୀଟି କେବଳ ଭଞ୍ଜସାହିତ୍ୟର ଅର୍ଥକୁ ବୁଝି ତାର ରସ ଆସ୍ୱାଦନରେ ସମର୍ଥ ଥିଲା । ମାତ୍ର ଅନ୍ୟ ଚାରିଗୋଟି ଶ୍ରେଣୀ ଭଞ୍ଜ ସାହିତ୍ୟକୁ ଗ୍ରହଣ କରିଥିଲେ କେବଳ ସଙ୍ଗୀତ ରୂପେ । ସେମାନେ ତାହାର ସଙ୍ଗୀତମୟତାରେ ମୁଗ୍ଧ ହେଉଥିଲେ, ମାତ୍ର ତାହାର ଅର୍ଥକୁ ହୃଦୟଙ୍ଗମ କରି ତହିଁର ରସ ଆସ୍ୱାଦନ କରିପାରୁ ନ ଥିଲେ । ଏହି ଦୃଷ୍ଟିରୁ ଦେଖିଲେ ଭଞ୍ଜ ସାହିତ୍ୟ ଓଡ଼ିଶାରେ ଯେତେଦୂର ଆଦୃତ ହେଉନା କାହିଁକି, ସାହିତ୍ୟରୂପେ ତାର ବ୍ୟାପ୍ତି ଥିଲା ନିତାନ୍ତ ସୀମିତ । ଭଞ୍ଜ ସାହିତ୍ୟର ବହୁ ଅର୍ଥପୂର୍ଣ୍ଣ ପଦଗୁଡ଼ିକ ସେତେବେଳେ ସାଧାରଣ ପାଠକର ବୁଝିବା ଶକ୍ତିଠାରୁ ବହୁ ଊର୍ଦ୍ଧ୍ୱରେ ଥିଲା ।

ଅଷ୍ଟାଦଶ ଶତାବ୍ଦୀର କବିମାନେ ସେମାନଙ୍କର କାବ୍ୟରଚନା କରିବା ସମୟରେ କାବ୍ୟର ପ୍ରଥମ ଛାନ୍ଦରେ ମଙ୍ଗଳାଚରଣ କରି ଥାଆନ୍ତି । ଏଥିରେ ସେମାନେ ତାଙ୍କର ଇଷ୍ଟବନ୍ଦନା, ସାଧୁସ୍ତୁତି, ଖଳନିନ୍ଦା, ବିଷୟ-ବସ୍ତୁ ନିର୍ଦ୍ଦେଶ ପ୍ରଭୃତି ସଂସ୍କୃତ କାବ୍ୟ ସାହିତ୍ୟ ଅନୁସରଣରେ କରିଥାଆନ୍ତି । ସେ ସମୟର କବିମାନଙ୍କର ଏହି ରୀତି ଆଧୁନିକ ଯୁଗରେ ବ୍ୟାହତ ହେବାକୁ ବସିଲା । ଏହି ରୀତି ସେ ସମୟର କବିମାନଙ୍କର ଏକ ଚତୁର କୌଶଳ କହିଲେ ଅସମୀଚୀନ ହେବ ନାହିଁ । ଏହାର ବହୁ କାରଣ ମଧ୍ୟ ରହିଅଛି । ପ୍ରାଚୀନ ଓଡ଼ିଆ ସାହିତ୍ୟରେ ଧର୍ମତତ୍ତ୍ୱବାଦ ଯେପରି ଭାବରେ ବର୍ଣ୍ଣିତ ହେଉଥିଲା ଓ ରାଧାକୃଷ୍ଣଙ୍କ ନାମରେ ଯେପରି ଭାବରେ ଗର୍ହିତ ଅଶ୍ଳୀଳ ଶୃଙ୍ଗାର ରସ ଦିଆଯାଉଥିଲା ତାହା ସାମାଜିକତା ଦୃଷ୍ଟିରୁ ନିତାନ୍ତ ଦୋଷାବହ । କୌଣସି ପାଠକ କାବ୍ୟର ଏହି ଦୋଷ ପ୍ରଦର୍ଶନ କରି କାବ୍ୟର ନିନ୍ଦା ରଟନା କରିପାରେ ବୋଲି ଆଶଙ୍କା କରି ଚତୁର କବିଗଣ ଏ ପ୍ରକାର ପାଠକମାନଙ୍କୁ ଖଳ ପର୍ଯ୍ୟାୟଭୁକ୍ତ କରି ନିଜର ଦୋଷ ଦୁର୍ବଳତାକୁ ଲୁଚାଇବା ପାଇଁ ଚେଷ୍ଟା କରିଥିଲେ । ପୁଣି; ଏଥିପାଇଁ ସେମାନଙ୍କୁ ସଂସ୍କୃତ କାବ୍ୟାଦର୍ଶ ମଧ୍ୟ ଯଥେଷ୍ଟ ସହାୟକ ହୋଇଥିଲା । ଓଡ଼ିଆ ସାହିତ୍ୟର ମଧ୍ୟଯୁଗରେ ପ୍ରାୟ ସମସ୍ତ କବି ଏହି ମନୋବୃତ୍ତି ପ୍ରକାଶ କରିଅଛନ୍ତି । ଯଦି କାବ୍ୟର ପ୍ରଥମ ଛାନ୍ଦରେ ଏ

ବିଷୟ୍ୱରେ କବି ବିଶେଷ ଭାବରେ ବର୍ଣ୍ଣନା କରିବାର ଅବକାଶ ପାନ୍ତି ନାହାନ୍ତି ତାହାହେଲେ ପ୍ରସଙ୍ଗକ୍ରମରେ କାବ୍ୟର କଳେବର ମଧ୍ୟରେ ଓ ଏ କୌଣସି ସ୍ଥାନରେ ମଧ୍ୟ କବି ତାଙ୍କର ଏପ୍ରକାର ମନୋବୃତ୍ତିର ପ୍ରକାଶ କରିଥାଆନ୍ତି । ଉପେନ୍ଦ୍ର ଭଞ୍ଜଙ୍କ ସମୟରେ ଓଡ଼ିଆ କାବ୍ୟ ସାହିତ୍ୟ ଧର୍ମର ବନ୍ଧନରୁ କେତେକାଂଶରେ ମୁକ୍ତ ପାଇ ଯେତେବେଳେ କାଳ୍ପନିକ କଥାବସ୍ତୁକୁ ଗ୍ରହଣ କରିଥିଲା ସେତେବେଳେ ମଧ୍ୟ କବିମାନଙ୍କର ଏହି ମନୋବୃତ୍ତି ସାହିତ୍ୟରେ ପ୍ରକାଶ ପାଇଥିଲା ।

କବିସମ୍ରାଟ ଉପେନ୍ଦ୍ର ଭଞ୍ଜ ତାଙ୍କର କାବ୍ୟମାନଙ୍କରେ ତାଙ୍କ ସାହିତ୍ୟର ଗ୍ରାହକଭେଦ ନିର୍ଦ୍ଦେଶ କରିଅଛନ୍ତି । ତାଙ୍କ ସାହିତ୍ୟର ସ୍ୱରୂପ ଓ ପାଠକର ଯୋଗ୍ୟତା ବିଷୟରେ ସେ ଲାବଣ୍ୟବତୀ କାବ୍ୟର ପ୍ରଥମ ଛାନ୍ଦରେ ସ୍ପଷ୍ଟ ଭାବରେ ଲେଖିଅଛନ୍ତି ।

"ମୂର୍ତ୍ତିବନ୍ତ କରି ମୃଦୁ ଗୀତ ବିସ୍ତରଇ
ଏଣୁ କରି ଥିବ ଅଳଙ୍କାର ଯୁକ୍ତ ହୋଇ ।
ପଦ ପଢ଼ିଲା ଧ୍ୱନିରେ ଶ୍ରବଣ ମୋହିବ
ଅର୍ଥୀଜନ ପ୍ରକରକୁ ଆନନ୍ଦ କରିବ ।"

କବି ଏଠାରେ ତାଙ୍କର ସାହିତ୍ୟର ସ୍ୱରୂପ ନିର୍ଣ୍ଣୟ କରିବାକୁ ଯାଇଁ ଯେଉଁ ଚିତ୍ର ପ୍ରଦାନ କରିଅଛନ୍ତି ତାହା ଗୋଟିଏ ନାୟିକାର ସ୍ୱରୂପ । ତେଣୁ ତାଙ୍କର କାବ୍ୟ କେବଳ କାବ୍ୟ ନୁହେଁ । ତାହା କାବ୍ୟ-ନାୟିକା । ଏଭଳି ଲକ୍ଷଣଯୁକ୍ତ କାବ୍ୟ ସଂସ୍କୃତ କାବ୍ୟାଦର୍ଶର ପ୍ରତିଧ୍ୱନି ମାତ୍ର । କବି ମତ ପ୍ରକାଶ କରିଅଛନ୍ତି ଯେ ତାଙ୍କର କାବ୍ୟସାହିତ୍ୟ କେବଳ ଅର୍ଥୀଜନ ଅର୍ଥାତ୍ ଅର୍ଥ କରିବାର ସାମର୍ଥ୍ୟ ଥିବା ବ୍ୟକ୍ତି ବା ପଣ୍ଡିତମାନଙ୍କୁ ଆନନ୍ଦ ପ୍ରଦାନ କରିପାରିବ । ତେଣୁ ଭଞ୍ଜସାହିତ୍ୟର ଅର୍ଥକୁ ହୃଦୟଙ୍ଗମ କରି ନ ପାରିଲେ ତାର ରସ ଆସ୍ୱାଦନ ଅସମ୍ଭବ । କେବଳ ଏତିକି ନୁହେଁ, କବି ପୁଣି ଅତ୍ୟନ୍ତ ଦର୍ପର ସହିତ ଘୋଷଣା କରିଅଛନ୍ତି,

"ବୁଝାଇଲେ ଜଡ଼ଜନ ଭାବକୁ ପାଇବ
ଖଳ ଖର ବୁଦ୍ଧିକର ପ୍ରାପ୍ତେକ ଗ୍ରାସିବ ।"

ଭଞ୍ଜ ସାହିତ୍ୟକୁ ବୁଝାଇଲେ ଜଡ଼ଲୋକ ତାହାର ଭାବକୁ ଗ୍ରହଣ କରି

ପାରିବ । ମାତ୍ର ଯେଉଁ ଲୋକ ଖଳପ୍ରକୃତି ବିଶିଷ୍ଟ ସେ ଏହାର ଭାବକୁ ଗ୍ରହଣ କରିପାରିବ ନାହିଁ । କବି ସୁନ୍ଦର ଗୋଟିଏ ଉଦାହରଣ ଦେଇ କଥାଟାକୁ ସହଜଭାବରେ ବୁଝାଇ ଦେବାକୁ ଚେଷ୍ଟା କରିଅଛନ୍ତି । ଖଳଲୋକ ଭଞ୍ଜ ସାହିତ୍ୟକୁ ପାଠକଲେ ତାର କାର୍ଯ୍ୟର ଫଳ କିଛି ମିଳିବ ନାହିଁ । ବସନ୍ତ ଋତୁର ଆଗମନରେ କୋକିଳ ଆମ୍ବବଉଳ ଖାଇ ତାର କଣ୍ଠ ପରିଷ୍କାର କରେ । ତେଣୁ ବସନ୍ତ ଋତୁରେ ସେ ମଧୁର ସ୍ୱରରେ ପଞ୍ଚମତାନରେ ଗାନ କରିବାକୁ ସମର୍ଥ ହୁଏ । କୋକିଳର ଏହି କାର୍ଯ୍ୟ ଦେଖି ଗୋଟିଏ ଗଧ ହିଁ ତାର କଣ୍ଠ ପରିଷ୍କାର କରିବାପାଇଁ ଗୁଡ଼ାଏ ଆମ୍ବବଉଳ ଗ୍ରାସ କରେ ବୋଲି ଚାହିଁଥିଲେ ତାହାର କଣ୍ଠ କଣ କେବେହେଲେ ସଫା ହୋଇ ପାରେ ? ଠିକ୍ ସେହିପରି ପଣ୍ଡିତ ବ୍ୟକ୍ତିମାନେ ଭଞ୍ଜ ସାହିତ୍ୟକୁ ପାଠକଲେ ସିନା ସେମାନଙ୍କର ଶ୍ରମ ସାର୍ଥକ ହେବ, ମାତ୍ର ଅପଣ୍ଡିତ ବ୍ୟକ୍ତିମାନେ ତାକୁ ପାଠକଲେ ସେମାନଙ୍କର ଶ୍ରମ ସାର୍ଥକ ହେବ କିପରି ? ଏହି ଦୃଷ୍ଟିରୁ ଉପେନ୍ଦ୍ର ଭଞ୍ଜଙ୍କ ସାହିତ୍ୟକୁ ଅଭିଜାତ ଗୋଷ୍ଠୀର ସାହିତ୍ୟ ବୋଲି କୁହାଯାଏ । ଏଥିରେ ଅଛି ଅଭିଜାତ ଗୋଷ୍ଠୀର ଜୀବନର ଚିତ୍ର, ପୁଣି ଏହାକୁ ପାଠକରିବାର ଯୋଗ୍ୟତା ମଧ୍ୟ ସେହି ଅଭିଜାତ ଗୋଷ୍ଠୀର । କବି ଉପେନ୍ଦ୍ର ସାଧାରଣ ପାଠକକୁ ଯେତେବେଳେ ଏପରି ହୀନଦୃଷ୍ଟିରେ ଦେଖିଅଛନ୍ତି ସେତେବେଳେ ତାଙ୍କ ସାହିତ୍ୟରେ ସାଧାରଣ ଜୀବନର ଚିତ୍ର ବା ମିଳିବ କିପରି ?

କେବଳ ଉପେନ୍ଦ୍ର ଭଞ୍ଜ ନୁହନ୍ତି, ତାଙ୍କର ସମସାମୟିକ ଖ୍ୟାତ କବି ଦୀନକୃଷ୍ଣ ଦାସ ମଧ୍ୟ ଏହିପରି ମତ ପୋଷଣ କରିଅଛନ୍ତି । ଦୀନକୃଷ୍ଣ ଏପରି ମତ ପୋଷଣ କରିବାର କାରଣ ମଧ୍ୟ ରହିଛି । ସେ ସ୍ଥଳେ ବୈଷ୍ଣବ କବି । ରାଧାକୃଷ୍ଣ ବା ଗୋପୀ କୃଷ୍ଣଙ୍କର ପ୍ରେମର ବର୍ଣ୍ଣନାରେ ଥିବା ଅଶ୍ଳୀଳତା ଦୋଷକୁ ଘୋଡ଼ାଇବାକୁ ଯାଇ ସେ ଏପରି ଉକ୍ତିର ଆଶ୍ରୟ ନେବା ନିତାନ୍ତ ସ୍ୱାଭାବିକ ।

"କବିତ୍ୱ ମଳୟ ପବନ ମତ ।
କରେ ରସିକ ତରୁ ପଲ୍ଲବିତ ।
କର୍କଶ ମୂର୍ଖ ଶୁଷ୍କତରୁ ମତ ।
କେତେବେଳେ ହେଁ ନ ଧରଇ ପତ୍ର
କାମିନୀ ଭଳିକ
କରଇ ନିଜ ନପୁଂସକ ହ୍ରବ ।"

କବି ଏହିପରି ବହୁସ୍ଥଳରେ ବୈଷ୍ଣବଧର୍ମର ଶୁଦ୍ଧାଭକ୍ତି ଓ ପରକୀୟା ପ୍ରୀତିରେ ବିଶ୍ୱାସ କରୁ ନଥିବା ଲୋକମାନଙ୍କୁ ଆକ୍ଷେପ କରିଅଛନ୍ତି । କବିଙ୍କର ଏ ପ୍ରକାର ଆକ୍ଷେପୋକ୍ତି ସାହା ହେଉନା କାହିଁକି, କାବ୍ୟର ପ୍ରସଙ୍ଗ କ୍ରମରେ ସେ ଯେ ଅନେକ ସ୍ଥଳରେ ଆଦିରସାଶ୍ରିତ ବର୍ଣ୍ଣନାରେ ଶାଳୀନତାର ସୀମା ଲଙ୍ଘନ କରିଅଛନ୍ତି ଏକଥା ଯେ କୌଣସି ପାଠକ ଅନୁଭବ କରେ । ଉପେନ୍ଦ୍ର ଭଞ୍ଜଙ୍କର କବିରୀତିକୁ ଅନୁସରଣ କରି ଓଡ଼ିଆ ସାହିତ୍ୟରେ ଖ୍ୟାତିଲାଭ କରିଥିବା ବିଖ୍ୟାତ କବି ଅଭିମନ୍ୟୁ ସାମନ୍ତସିଂହାରଙ୍କର ବିଦଗ୍ଧ ଚିନ୍ତାମଣି କାବ୍ୟରେ ମଧ୍ୟ ଏହିପ୍ରକାର ମତବାଦ ପ୍ରକାଶ ପାଇଅଛି । କବି ତାଙ୍କର କାବ୍ୟର ପ୍ରଥମଚ୍ଛାନ୍ଦକୁ କେବଳ ଏହିପରି ତିକେଟିକ କଥାର ପ୍ରକାଶ ପାଇଁ ଉଦ୍ଦିଷ୍ଟ କରିଅଛନ୍ତି ।

"ମହିମା କବିଙ୍କ ଦୋଷ ପଦରେ ଥାଇ ।
ମଣ୍ଡିବେ ନାହିଁକି ଖଳେ ତାହା ନୃତ୍ୟ ଧାୟି ।
ଯଥାଜାତ ବୃଦ୍ଧି ଶୁଣିପୁଚ୍ଛ ପ୍ରାପ୍ୟେ ଯେନ
ଯଥୋଚିତ ନୋହେ ତାଙ୍କ ନିନ୍ଦନ ବନ୍ଦନ ।"

ଏଠାରେ କବି ନିତାନ୍ତ ନିର୍ମମ ଭାବରେ ମୂର୍ଖର ନିନ୍ଦା କରିଅଛନ୍ତି । ଏ ମୂର୍ଖ ପୁଣି କିପରି ମୂର୍ଖ ତାହା ଏଠାରେ ଉଲ୍ଲେଖ କରାଯାଇପାରେ । ଯେଉଁ ଲୋକର କାବ୍ୟ ସାହିତ୍ୟରେ ଜ୍ଞାନ ନ ଥିବ ସେ ମୂର୍ଖ ହୋଇପାରେ । ମାତ୍ର ଏଠାରେ ମୂର୍ଖ କହିଲେ କାବ୍ୟଶାସ୍ତ୍ରଜ୍ଞାନର ଅଭାବ ଏବଂ ବୈଷ୍ଣବ ଧର୍ମତତ୍ତ୍ୱ ଜ୍ଞାନର ଅଭାବ ଯେଉଁ ଲୋକର ଥିବ ସେହି ଲୋକ । କବିତା ବା କାବ୍ୟକୁ ଗୋଟିଏ ପବିତ୍ର ରୂପେ ଗ୍ରହଣ କରି ତହିଁରେ ଥିବା ଅନିଷ୍ଟକାରୀ ଦ୍ରବ୍ୟ ସମ ଅସାମାଜିକ ଅଶ୍ଳୀଳ ବର୍ଣ୍ଣନାକୁ ଘୋଡ଼ାଇବା ପାଇଁ ବୈଷ୍ଣବ କବିଙ୍କର ଏହା ଏକ ଆତ୍ମରକ୍ଷାର ଉପାୟ । କବି ବୈଷ୍ଣବ ଦର୍ଶନକୁ ଯେତେ ଉଚ୍ଚ ସ୍ଥାନରେ ଅଧିଷ୍ଠିତ କରନ୍ତୁ ନା କାହିଁକି ସମ୍ଭୋଗ ବର୍ଣ୍ଣନାର ଆସନ କେଉଁଠାରେ ? କେବଳ କାବ୍ୟସାହିତ୍ୟର ଆଦର୍ଶ ଦୃଷ୍ଟିରୁ କବି ଏପରି ରୀତି ଆଚରଣ କରିବାକୁ ବାଧ୍ୟ ହୋଇଅଛନ୍ତି । ଉପେନ୍ଦ୍ର ଭଞ୍ଜ ସେହିପରି ତାଙ୍କ କାବ୍ୟ ସାହିତ୍ୟର ବହୁଦୋଷ ଘୋଡ଼ାଇବାକୁ ଯାଇ ସାଧାରଣ ପାଠକ ପ୍ରତି ଅତ୍ୟନ୍ତ ନିର୍ଦ୍ଦୟ ଅବଜ୍ଞାସୂଚକ ବାଣୀ ପ୍ରକାଶ କରିଅଛନ୍ତି ।

ନ୍ତାବ୍ୟ ସାହିତ୍ୟର ଆଦର୍ଶ ଗ୍ରହଣ କରିବାକୁ ଯାଇ କବିମାନେ ସମ୍ଭୋଗ ବର୍ଣ୍ଣନା ଦେବାକୁ ଏପରି ତତ୍ପର ଥିଲେ ଯେ କବିସୂର୍ଯ୍ୟ ବଳଦେବ ରଥ କିଶୋର ଚନ୍ଦ୍ରାନନ୍ଦ ଚମ୍ପୂରେ ଶ୍ରୀରାଧା ଓ ଶ୍ରୀକୃଷ୍ଣଙ୍କର ସମ୍ଭୋଗ ବର୍ଣ୍ଣନା ନଦେଇ ରହିପାରିନାହାନ୍ତି । କବିସୂର୍ଯ୍ୟ ବଳଦେବ ରଥଙ୍କ କାବ୍ୟକବିତାରେ ରସର ପ୍ରବାହ ଲକ୍ଷ୍ୟ କରିବାର କଥା । କବି ଯଦୁମଣି କାବ୍ୟ ସାହିତ୍ୟର ଆଦର୍ଶରେ ମଧ୍ୟ ନିଜକୁ ଭସାଇ ଦେଇ ଅଛନ୍ତି । କବି ଗୋପାଳକୃଷ୍ଣଙ୍କର କଥା ଏ କ୍ଷେତ୍ରରେ ସ୍ୱତନ୍ତ୍ର । ତାଙ୍କ କବିତାଗୁଡ଼ିକ ନ୍ତ୍ରପରି ମାନବିକ ଉପାଦାନରେ ରଚିତ ହୋଇଥିବାରୁ ହୃଦୟସ୍ପର୍ଶୀ ।

ମଧ୍ୟଯୁଗୀୟ ଓଡ଼ିଆ ସାହିତ୍ୟରେ ଧର୍ମଭାବର ପ୍ରାଧାନ୍ୟ ରହିଥିବାର ଲକ୍ଷ୍ୟ କରାଯାଏ । କବିସମ୍ରାଟ ଉପେନ୍ଦ୍ର ଭଞ୍ଜ ମଧ୍ୟଯୁଗର ଓଡ଼ିଆ "ସାହିତ୍ୟରେ କାଳ୍ପନିକ କାବ୍ୟ ରଚନା କରି ତାହାକୁ ପ୍ରତିଷ୍ଠିତ କରାଇବା ପାଇଁ ନେତୃତ୍ୱ ପ୍ରଦର୍ଶନ କରିଥିଲେହେଁ ଏହି ସମୟରେ ଅଧିକାଂଶ କବି ଧର୍ମଭାବକୁ ଆଶ୍ରୟ କରି କାବ୍ୟ କବିତା ରଚନା କରି ଅଛନ୍ତି । ଏଥିରେ ମାନବ ଜୀବନର ବାସ୍ତବ ଚିତ୍ର ଅଭାବ ପରିଲକ୍ଷିତ ହୋଇଥାଏ । ଏଯୁଗର ସାହିତ୍ୟରେ ଭାଷାର ଗୁରୁତ୍ୱ, ବିଶେଷତଃ ଉପେନ୍ଦ୍ର ଭଞ୍ଜଙ୍କର ରଚନାରେ ପ୍ରଦର୍ଶିତ ହୋଇଥିଲେହେଁ ପ୍ରକୃତ ପକ୍ଷରେ ଏଯୁଗର ଭାଷା ବା କାବ୍ୟରେ ଶବ୍ଦ ପ୍ରୟୋଗ ଦେଖିଲେ ମନେହୁଏ ସତେ ଯେପରି କବି ଶବ୍ଦ କସରତ କରିବାରେ ତତ୍ପର ।

ମଧ୍ୟଯୁଗର ଶେଷାବସ୍ଥାରେ ଓଡ଼ିଆ ସାହିତ୍ୟ ନାମରେ କବିସୂର୍ଯ୍ୟଙ୍କର ଚମ୍ପୂ, ଗୋପାଳ କୃଷ୍ଣଙ୍କର ସଙ୍ଗୀତାବଳି, ବନମାଳୀଙ୍କର ସଙ୍ଗୀତାବଳି ପ୍ରଭୃତି ଓଡ଼ିଶାରେ ବିଶେଷ ଖ୍ୟାତି ଲାଭ କରିଥିଲା । ଊନବିଂଶ ଶତାବ୍ଦୀର ଆରମ୍ଭରେ ଓଡ଼ିଶାର ରାଜନୈତିକ ଜଗତରେ ଏକ ନୂତନ ପରିବର୍ତ୍ତନର ସୂତ୍ରପାତ ହେବା ସଙ୍ଗେ ସଙ୍ଗେ ଓଡ଼ିଶାର ସାମାଜିକ ଜୀବନରେ କ୍ରମେ ପରିବର୍ତ୍ତନର ଧୀରମନ୍ଥର ଗତି ପ୍ରକାଶ ପାଇଲା । ଏହି ଧୀରମନ୍ଥର ଗତି କ୍ରମ କ୍ରମେ ତ୍ୱରାନ୍ୱିତ ହେବାର ଲକ୍ଷ୍ୟ କରାଯାଇଅଛି । ଊନବିଂଶ ଶତାବ୍ଦୀର ପ୍ରଥମ ଭାଗରେ ଏଦେଶରେ ଇଂରେଜ ଶାସନର ମୂଳଦୁଆ ପଡ଼ିଲେହେଁ ଇଂରେଜୀଶିକ୍ଷାର ପ୍ରସାର ଊନବିଂଶ ଶତାବ୍ଦୀର ଦ୍ୱିତୀୟଭାଗରେ ଦେଖାଦେଇଅଛି । ଇଂରେଜୀ ଶିକ୍ଷାର ପ୍ରସାର ଫଳରେ ଏ ଦେଶରେ ଏକ ଆଧୁନିକ ଶିକ୍ଷିତ ଶ୍ରେଣୀ

ମୂର୍ତ୍ତିକୁ ଉଠିଛି । ଏହି ଆଧୁନିକ ଶିକ୍ଷିତ ଶ୍ରେଣୀର ପ୍ରଚେଷ୍ଟାର ପରିଣାମ ଆଧୁନିକ ଓଡ଼ିଆ ସାହିତ୍ୟ । ଆଧୁନିକ ଓଡ଼ିଆ ସାହିତ୍ୟ ୧୮୬୩ ସାଲବଳକୁ ଆତ୍ମପ୍ରକାଶ କରିଥିଲେହେଁ ତାହାକୁ ପ୍ରତିଷ୍ଠିତ ହେବାପାଇଁ ସମୟ ଲଗିଅଛି ।

ପ୍ରାଚୀନ ରୀତିକୁ ପରିହାର କରି ଏକ ନୂତନ ରୀତିରେ ସାହିତ୍ୟ ସୃଷ୍ଟି କରିବାର ପନ୍ଥାକୁ ଏ ଦେଶବାସୀ ଅକୁଣ୍ଠ ଚିତ୍ତରେ ଗ୍ରହଣ କରିପାରି ନାହାନ୍ତି । ତେଣୁ ଆଧୁନିକ ଓଡ଼ିଆ ସାହିତ୍ୟର ଉନ୍ମେଷକାଳରେ ନୂତନ ଓ ପୁରାତନ ମତବାଦ ମଧ୍ୟରେ ଯେଉଁ ସଂଘର୍ଷ ଦେଖାଦେଇଥିଲା ତାହା ଆଧୁନିକ ଓଡ଼ିଆ ସାହିତ୍ୟର ଜନ୍ମ-ଇତିହାସରେ ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ । ସମୟର ଗତିରେ, ପୁରାତନ ମତବାଦ ସହିତ ଆଧୁନିକ ମତବାଦର ସମାଧାନ ହେବାପରେ ଆଧୁନିକ ମତବାଦ ନିଜକୁ ପ୍ରସାରିତ କରିଅଛି । ପୁରାତନକୁ ଛାଡ଼ି ନୂତନକୁ ଗ୍ରହଣ କରିବା ସମୟ ମଧ୍ୟରେ ସାହିତ୍ୟ ଜଗତରେ ଯେଉଁ ମଧ୍ୟବର୍ତ୍ତୀକାଳୀନ ସୃଷ୍ଟି ଓ ଦୃଷ୍ଟିର ଅବସ୍ଥା ଦେଖା ଦେଇଥିଲା ତାହା ମଧ୍ୟ ଆଧୁନିକ ଓଡ଼ିଆ ସାହିତ୍ୟର ଜନ୍ମ ଇତିହାସରେ ଉପେକ୍ଷଣୀୟ ନୁହେଁ ।

———

# କାବ୍ୟକଳାର ତାମସୀ ଯାମିନୀ

ସୂର୍ଯ୍ୟ ଅସ୍ତଯାଏ—ତାର ଶେଷ ରଶ୍ମିରେ ପଶ୍ଚିମଦିଗନ୍ତ ରାଗରଞ୍ଜିତ ହୁଏ—ପଶ୍ଚିମଦିଗନ୍ତ ଅଳ୍ପ କିଛି ସମୟ ପାଇଁ ଏହି ରାଗକୁ ପରିବେଶେ—ମାତ୍ର କ୍ରମେ ଏହି ରାଗ ମଉଳିଯାଏ—ଅନ୍ଧକାର ମାଡ଼ିଆସେ—ପୂର୍ବଦିଗରେ ସକାଳେ ଉଦିତ ହୋଇ ଗୋଟିଏ ଦିନର କିରଣଦାନ କରି ସୂର୍ଯ୍ୟ ଧରଣୀବକ୍ଷରେ ଯେଉଁ ଆଲୋକ ଓ ଉଷ୍ମତାର ପ୍ଲାବନ କରିଥାଏ ତହିଁରେ ପୂର୍ଣ୍ଣଚ୍ଛେଦ ପକାଏ ଘନ ଅନ୍ଧକାର । ଏଇ ଅନ୍ଧକାର ଭିତରେ ହଜିଯାଏ ଧରଣୀର ସବୁକିଛି । ଧରଣୀ ପୁଣି ଅପେକ୍ଷା କରେ । କାରଣ, ସେ ଜାଣେ ଅସ୍ତସୂର୍ଯ୍ୟର ଉପତ୍ୟକା ପୁଣି କାଲି ଜନ୍ମନେବ ବାଲସୂର୍ଯ୍ୟର ଉପତ୍ୟକାରେ । ଅସ୍ତହିଁ ଉଦୟର ବାର୍ତ୍ତାବହ । ଏଇ ଅନ୍ଧକାର ପୁଣି ମିଳେଇ ଯିବ । ପୁଣି ପୂର୍ବଦିଗରେ ହସି ଉଠିବ ସୂର୍ଯ୍ୟ । ଉଦୟ ଠାରୁ ଅସ୍ତ ପର୍ଯ୍ୟନ୍ତ ଧରଣୀର ଇତିହାସ ଯେତିକି ଉଜ୍ଜ୍ୱଳ, ପୁଣି ଅସ୍ତଠାରୁ ଉଦୟ ପର୍ଯ୍ୟନ୍ତ ଧରଣୀର ଇତିହାସ ସେତିକି ସ୍ୱଚ୍ଛହୀନ । ଏହି ସ୍ୱଚ୍ଛହୀନ ଅବସ୍ଥାର ଅନୁଶୀଳନ, ପର୍ଯ୍ୟବେକ୍ଷଣ ପୁଣି ଆଗାମୀ ଦିନର ଆଲୋକ ପାଇଁ ଏକ ଅପରିହାର୍ଯ୍ୟ ସୂଚନା ।

ଓଡ଼ିଆ ସାହିତ୍ୟ ରାଜ୍ୟରେ ଠିକ୍ ଏହିପରି ଗୋଟିଏ ଯୁଗର ସୂର୍ଯ୍ୟ ଅସ୍ତଯାଇଛି, ପୁଣି ନୂଆଯୁଗର ସୂର୍ଯ୍ୟ ଉଦିତ ହୋଇଛି । ଓଡ଼ିଆ ସାହିତ୍ୟରେ ଗତ-ସୂର୍ଯ୍ୟର ଶେଷ ରଶ୍ମିର ଧାରା ମିଳେଇଯିବା ପୂର୍ବରୁ ଆଧୁନିକ ସୂର୍ଯ୍ୟର ଉଦୟବାର୍ତ୍ତାର ସଙ୍କେତ ମିଳିଅଛି ।

ଓଡ଼ିଆ କାବ୍ୟସାହିତ୍ୟର ପ୍ରଭାବ ଅଧୁନାତନ କାଳ ପର୍ଯ୍ୟନ୍ତ ଓଡ଼ିଆ ସାହିତ୍ୟରେ ଅନୁଭୂତ ହେଉଥିଲେହେଁ ଏହି ପ୍ରଭାବ ବର୍ତ୍ତମାନ ଅତିମାତ୍ରାରେ କ୍ଷୀଣ ହୋଇ ପଡ଼ିଅଛି । ଊନବିଂଶ ଶତାବ୍ଦୀର ଦ୍ୱିତୀୟ ଭାଗଠାରୁ କାବ୍ୟ ସାହିତ୍ୟର ଏ ପ୍ରକାର କ୍ଷୀଣଦଶା ଦେଖା ଦେଇଅଛି । ଏହାର କାରଣ, ଊନବିଂଶ ଶତାବ୍ଦୀର ଦ୍ୱିତୀୟ ଭାଗରେ ଓଡ଼ିଆ ସାହିତ୍ୟରେ ଆଧୁନିକ ଯୁଗର ଅଭ୍ୟୁଦୟ । ପୁରାତନକୁ ପରିହାର କରି

ନୂତନର ସ୍ୱାଗତ ସମ୍ବର୍ଦ୍ଧନା ପାଇଁ ଏଜାତି ଅତୀତରେ ବହୁତ ପ୍ରସ୍ତୁତ ହୋଇଥିଲା । ଏଥିପାଇଁ ଦାୟୀ ସେକାଳର ନବପ୍ରବର୍ତ୍ତିତ ଶିକ୍ଷାନୀତି ଓ ପାଶ୍ଚାତ୍ୟ ସଭ୍ୟତାର ପ୍ରଭାବ । ଇଂରେଜ ଜାତି ଏ ଦେଶକୁ ଅଧିକାର କରିବା ପରେ ଏଦେଶରେ ଆଧୁନିକତାର ଯେଉଁ ନୂତନ ଚିନ୍ତାଧାରା ଜାଗ୍ରତ କରିବାରେ ସହାୟକ ହୋଇଥିଲା ତାହାର ଫଳରେ ଆଧୁନିକ ସାହିତ୍ୟର ଜନ୍ମ । ତେଣୁ ଆଧୁନିକ ଓଡ଼ିଆ ସାହିତ୍ୟ ଇଂରେଜୀ ପ୍ରଭାବିତ ଓଡ଼ିଆ ସାହିତ୍ୟର ଏକ ନବକଳେବର କହିଲେ ଅସମୀଚୀନ ହେବନାହିଁ ।

ଓଡ଼ିଶାରେ ଇଂରେଜ ରାଜତ୍ୱର ପ୍ରତିଷ୍ଠା ହୋଇଛି ଊନବିଂଶ ଶତାବ୍ଦୀର ଆରମ୍ଭରୁ ଅର୍ଥାତ୍ ୧୮୦୩ ସାଲରୁ । ଇଂରେଜମାନେ ଯେତେବେଳେ ଓଡ଼ିଶା ଦଖଲ କରିବାକୁ ଆସିଲେ ସେତେବେଳେ ଏ ଦେଶର ଜନସାଧାରଣ ଯେତିକି ଆତଙ୍କିତ ହୋଇଥିଲେ ସେତିକି ଆନନ୍ଦିତ ହୋଇଥିଲେ ମଧ୍ୟ । ଇଂରେଜମାନେ ଏଦେଶକୁ ଅଧିକାର କରିବା ସମୟରେ ଏଦେଶବାସୀ ଆନନ୍ଦିତ ହୋଇଥିଲେ ବୋଲି କହିଲେ ହୁଏତ ଆଜି ସ୍ୱାଧୀନ ଭାରତରେ ଦେଶବାସୀ ବିସ୍ମିତ ହୋଇପାରନ୍ତି, ମାତ୍ର ଏହା ଏକ ନିର୍ମମ ସତ୍ୟ ।

ଫକୀରମୋହନ ସେନାପତି ତାଙ୍କର ଆଖିଆଗରେ ଇଂରେଜ ସୈନ୍ୟମାନେ ବାଲେଶ୍ୱରରେ ପହଞ୍ଚିବା ସମୟର ଘଟଣା ଶୁଣି ତାଙ୍କର ଆତ୍ମଜୀବନ ଚରିତରେ ବର୍ଣ୍ଣନା କରିଅଛନ୍ତି । ଇଂରେଜ ସୈନ୍ୟମାନେ ଯେତେବେଳେ ବୁଢ଼ାବଳଙ୍ଗ ନଦୀ ପାରହୋଇ ଆସିବାର ସମ୍ବାଦ ପ୍ରଚାରିତ ହେଲା ସେତେବେଳେ ଲୋକମାନେ ଗାଁଗଣ୍ଡା ଛାଡ଼ି ଭୟରେ ବଣଜଙ୍ଗଲକୁ ପଳାଇଲେ । କାରଣ, ବର୍ଗୀ ଅତ୍ୟାଚାରର ନିପୀଡ଼ନ ଅଙ୍ଗେ ନିଭାଇଥିବା ଓଡ଼ିଆ ଜାତି ଯେତେବେଳେ ଶକ୍ତିଶାଳୀ ଇଂରେଜ ସୈନ୍ୟଙ୍କ ଆସିବା କଥା ଶୁଣିଛି ସେତେବେଳେ ସେ ଭୟଭୀତ ହୋଇ ପ୍ରାଣବିକଳରେ ଗାଁଗଣ୍ଡା ଛାଡ଼ି ବଣକୁ ପଳାଇଯିବା ନିତାନ୍ତ ସ୍ୱାଭାବିକ । ଲୋକମାନେ ଯେତେବେଳେ ଗାଁଛାଡ଼ି ପଳାଇଗଲେ ଇଂରେଜ ସୈନ୍ୟମାନେ ସେତେବେଳେ ବିନା ବାଧାରେ ଆସି ସ୍ଥାନ ଅଧିକାର କରିବାର ସୁଯୋଗ ପାଇଲେ ।

ଇଂରେଜ ସୈନ୍ୟମାନେ ଏହିପରି ଭାବରେ ବାର୍ଲେଶ୍ୱର ଅଧିକାର କରି ବସିଲେ । ମାତ୍ର ଜନଶୂନ୍ୟ ସ୍ଥାନରେ ସେମାନେ କରନ୍ତେ କଅଣ କରି ? ତେଣୁ ଇଂରେଜ ସରକାର ବା ସେତେବେଳର କଂପାନୀ ସରକାର ଲୋକମାନଙ୍କ ଉଦ୍ଦେଶ୍ୟରେ ଅଭୟବାଣୀ ଶୁଣାଇ ସେମାନଙ୍କୁ ନିଜ ନିଜ ଗୃହକୁ ଫେରଆସିବାକୁ ଅନୁରୋଧ କଲା । କ୍ରମେ କ୍ରମେ ଘରଦ୍ୱାର ଛାଡ଼ି ପଳାଇ ଥିବା ଲୋକମାନେ ଫେରଆସିଲେ । ସେମାନେ ଆସି ଇଂରେଜ ସରକାରର ନିୟମ କାନୁନ୍‌କୁ ପସନ୍ଦ କଲେ । ସେମାନେ ଆଗ୍ରହର ସହିତ ଇଂରେଜ ସରକାରର ଶାସନନୀତିକୁ ଗ୍ରହଣ କରିନେଲେ । ଏହିପରି-ଭାବରେ ବିଦେଶୀ ଶାସନକୁ ଗ୍ରହଣ କରିନେବାର ଯାଥାର୍ଥ୍ୟ ସେମାନେ ଅନୁଭବ କରିଥିଲେ ।

ସେମାନଙ୍କର ଏପରି ଭାବରେ ଅନୁଭବ କରିବାର ଯଥେଷ୍ଟ କାରଣ ଥିଲା । ଏହାପୂର୍ବରୁ ଦେଶବାସୀଙ୍କ ଜୀବନରେ ଆଦୌ ଶାନ୍ତି ନଥିଲା । ମୋଗଲ ମରହଟ୍ଟା ଶାସନ ସମୟରେ ଦେଶ ଓ ଜାତିର ଧନ, ଜୀବନ ବା ଧର୍ମ କୌଣସିଟି ନିରାପଦ ନଥିଲା । ବର୍ଗୀମାନଙ୍କର ଅତ୍ୟାଚାର ଫଳରେ ଦେଶବାସୀ ସବୁବେଳେ ତ୍ରାହିତ୍ରସ୍ତ ଥିଲେ । ସେମାନଙ୍କର ଧନଜୀବନ ଏପରି ବିପଦପୂର୍ଣ୍ଣ ଥିଲା ଯେ ଲୋକମାନେ ଖାଇବାପାଇଁ ନିଜ ଘରେ ମୁଠିଏ ଚାଉଳ ନିରାପଦରେ ରଖିପାରୁ ନଥିଲେ । ଏ ବିଷୟରେ ବହୁ କରୁଣ କାହାଣୀ ମଧ୍ୟ ଶୁଣାଯାଏ । ଲୋକମାନେ ବର୍ଗୀମାନଙ୍କ ଅତ୍ୟାଚାର ଓ ଲୁଣ୍ଠନ ଭୟରେ ଖାଇବା ଚାଉଳ ମୁଠିକ ଗୋବରରେ ମିଶାଇ ଘସି ପାରି ତାହାକୁ ଶୁଖାଇ ଘରେ ରଖିଥାଆନ୍ତି । ରୋଷାଇ କରିବା ସମୟରେ ଘସିକୁ କୁଟି ଗୋବର ଅଂଶ ବାହାର କରି ଚାଉଳକୁ ପାଣିରେ ଧୋଇ ଲୋକମାନେ ଭାତ ଗଣ୍ଡିଏ ରାନ୍ଧନ୍ତି । ଏପରି ବିପଦପୂର୍ଣ୍ଣ ଅବସ୍ଥାରେ ଭୟଭୀତ ଦେଶବାସୀ ଯେତେବେଳେ ଏକ ଶକ୍ତିଶାଳୀ ଶାସନତନ୍ତ୍ରର ଅଭୟବାଣୀ ପାଇ ନିଜ ନିଜର ଧନ ଜୀବନର ନିରାପତ୍ତା ଉପଲବ୍ଧି କରିଛନ୍ତି ସେତେବେଳେ ସେମାନେ ଇଂରେଜ କଂପାନୀ ସରକାରକୁ ଆଗ୍ରହର ସହିତ ବା ଗ୍ରହଣ ନ କରନ୍ତେ କିପରି ? ଏହିପରି ପ୍ରଲୋଭନ ଦେଖାଇ ଅତି ସହଜରେ ଇଂରେଜ ସରକାର ଓଡ଼ିଶାକୁ କରଗତ କରିବାର ସୁଯୋଗ ପାଇଥିଲା ।

ଇଂରେଜମାନଙ୍କର ଓଡ଼ିଶା ଅଧିକାର ବିଷୟରେ ଐତିହାସିକ ଡକ୍ଟର ହରେକୃଷ୍ଣ ମହତାବଙ୍କ ବିବରଣୀରୁ ଜଣାଯାଏ ଯେ ଇଂରେଜ

ମାନେ ତିନୋଟି ଭିନ୍ନ ପଥ ଦେଇ ଓଡ଼ିଶା ଆକ୍ରମଣ କରିଥିଲେ ।
କର୍ଣ୍ଣେଲ ହାର୍କାଟ୍‌ଙ୍କ ଅଧିନାୟକତ୍ୱରେ ୧୮୦୩ ସାଲ ସେପ୍‌ଟେମ୍ବର
୮ ତାରିଖ ଦିନ ଇଂରେଜ ସୈନ୍ୟମାନେ ଗଞ୍ଜାମରେ ଏକତ୍ରିତ ହୋଇ
ସମୁଦ୍ର କୂଳେ କୂଳେ ଆସି ପୁରୀ ଜିଲ୍ଲାର ମାଣିକ ପାଟଣାଠାରେ ୧୭
ତାରିଖରେ ଓ ନରସିଂହ ପାଟଣାଠାରେ ୧୮ ତାରିଖରେ ପହଞ୍ଚିଲେ ।
ତା ପରେ ସେମାନେ ପୁରୀରେ ପହଞ୍ଚିଲେ । ପୁରୀରେ ପହଞ୍ଚିବା ପର୍ଯ୍ୟନ୍ତ
ସେମାନେ ପଥରେ କୌଣସି ପ୍ରତିରୋଧର ସମ୍ମୁଖୀନ ହୋଇ ନଥିଲେ ।
ସେମାନେ ପୁରୀରେ ଦୁଇଦିନ ରହିବା ଭିତରେ ତତ୍କାଳୀନ ଗଜପତି
ମୁକୁନ୍ଦଦେବ ଇଂରେଜମାନଙ୍କୁ ଅଭିବାଦନ ଜଣାଇଥିଲେ । ଇଂରେଜ
ସୈନ୍ୟମାନେ ଜଗନ୍ନାଥ ମନ୍ଦିର ଅଧିକାର କରି ତାହାକୁ କେତେକ
ହିନ୍ଦୁ ସିପାହୀଙ୍କ ତତ୍ତ୍ୱାବଧାନରେ ରଖି କଟକ ଅଭିମୁଖେ ଯାତ୍ରା
କଲେ । ଇଂରେଜ ସୈନ୍ୟମାନେ କଟକ ଅଭିମୁଖରେ ଯାତ୍ରା କରିବା
ସମୟରେ ମରହଟ୍ଟା ସୈନ୍ୟମାନେ ପଥରେ ସେମାନଙ୍କୁ ଆକ୍ରମଣ
କରିଥିଲେ । ଅକ୍ଟୋବର ୪ ତାରିଖରେ ପିପିଲି ନିକଟସ୍ଥ ମୁକୁନ୍ଦପୁର-
ଠାରେ ଇଂରେଜ ଓ ମରହଟ୍ଟା ସୈନ୍ୟଙ୍କ ମଧ୍ୟରେ ଯୁଦ୍ଧ ହେଲା, ମାତ୍ର
ମରହଟ୍ଟା ସୈନ୍ୟମାନେ ଇଂରେଜ ସୈନ୍ୟମାନଙ୍କୁ ପ୍ରତିରୋଧ କରିବାକୁ
ସମର୍ଥ ହୋଇପାରିଲେ ନାହିଁ ।

୧୮୦୩ ସାଲ ଅକ୍ଟୋବର ୮ ତାରିଖ ଦିନ ଇଂରେଜ
ସୈନ୍ୟମାନେ କଟକରେ ପହଞ୍ଚିଲେ । ମରହଟ୍ଟା କର୍ମଚାରୀମାନେ ଇଂରେଜ
ସୈନ୍ୟମାନଙ୍କର ଆସିବା ସମ୍ବାଦ ଶୁଣି ଲାଲବାଗ ନିକଟସ୍ଥ ଗଡ଼ ବାରବାଟୀ
ଦୁର୍ଗରେ ଆଶ୍ରୟ ନେଲେ । କଟକ ସହରର ଲୋକମାନେ ଭୟରେ କଟକ
ଛାଡ଼ି ଠାଙ୍ଗି ପଳାଇ ଯାଇ ସେଠାରେ ରହିଲେ । କଟକର ଲୋକମାନେ
ସହର ଛାଡ଼ି ପଳାଇବା ପରେ ଇଂରେଜ ସୈନ୍ୟମାନେ ବାଧାହୀନ ଭାବରେ
କଟକ ସହର ଅଧିକାର କଲେ । ତାପରେ ଅକ୍ଟୋବର ୧୪ ତାରିଖରେ
ଇଂରେଜ ସୈନ୍ୟମାନେ ବାରବାଟୀ ଦୁର୍ଗ ଅଧିକାର କଲେ । ସେହିଦିନ
ଓଡ଼ିଶା ଅଧିକୃତ ହେଲାବୋଲି କମ୍ପାନୀ ସରକାର ଘୋଷଣା କରିଥିଲା ।
ବାରବାଟୀ ଦୁର୍ଗ ଅଧିକାର ସମୟରେ ଇଂରେଜ ଓ ମରହଟ୍ଟା
ସୈନ୍ୟମାନଙ୍କ ମଧ୍ୟରେ ଯେଉଁ ଯୁଦ୍ଧ ହୋଇଥିଲା ତହିଁରେ ଉଭୟ ପକ୍ଷର
କେତେକ ସୈନ୍ୟ ନିହତ ଓ ଆହତ ହୋଇଥିଲେ ।

ବଙ୍ଗଳାରୁ ଯେଉଁ ଇଂରେଜ ସୈନ୍ୟମାନେ ଓଡ଼ିଶା ଅଧିକାର କରିବାକୁ ଆସିଥିଲେ, ସେମାନେ ଦୁଇଭାଗରେ ବିଭକ୍ତ ହୋଇଥିଲେ । କ୍ୟାପ୍‌ଟେନ୍ ମର୍ଗାନଙ୍କ ଅଧିନାୟକତ୍ୱରେ ଗୋଟିଏ ଦଳ ଆସି ବାଲେଶ୍ୱର ବନ୍ଦରରେ ଗବର୍ଣ୍ଣା ନାମକ ଷ୍ଟିମ୍ ଜାହାଜରେ ପହଞ୍ଚିଲେ । ଗବର୍ଣ୍ଣାର ଜମିଦାର ରାମଚନ୍ଦ୍ର ମହାପାତ୍ର ଇଂରେଜ ସୈନ୍ୟମାନଙ୍କୁ ଯଥେଷ୍ଟ ସାହାଯ୍ୟ କରିଥିଲେ । ଇଂରେଜ ସୈନ୍ୟମାନେ ବୁଢ଼ାବଳଙ୍ଗ ନଦୀ କୂଳେ କୂଳେ ଆସି ବାରବାଟୀଠାରେ ଥିବା ବାଲିଘାଟରେ ପହଞ୍ଚିଲେ । ସେଠାରେ ମରହଟ୍ଟା ସୈନ୍ୟମାନେ ସେମାନଙ୍କୁ ବାଧାଦେଲେ ଓ ପରାସ୍ତ ହେଲେ । ଫଳରେ ନୀଳାଚଳେଶ୍ୱର ଉପରେ ଥିବା ମରହଟ୍ଟାମାନଙ୍କ ଦୁର୍ଗକୁ ଇଂରେଜ ସୈନ୍ୟମାନେ ଅଧିକାର କରିନେଲେ । ସାମାନ୍ୟ ପ୍ରତିରୋଧର ସମ୍ମୁଖୀନ ହୋଇ ଇଂରେଜ ସୈନ୍ୟମାନେ ବାଲେଶ୍ୱର ଅଧିକାର କଲେ ।

ବଙ୍ଗଳରୁ ଆସିଥିବା ଇଂରେଜ ସୈନ୍ୟମାନଙ୍କର ଦ୍ୱିତୀୟ ଦଳ ମେଦିନୀପୁରଠାରୁ କର୍ଣ୍ଣେଲ ଫର୍ଗୁସନ୍‌ଙ୍କ ଅଧିନାୟକତ୍ୱରେ ଆସି ବାଲେଶ୍ୱରରେ ପହଞ୍ଚିଲେ ଓ ପରେ କଟକରେ ପହଞ୍ଚି ମାନ୍ଦ୍ରାଜରୁ ଆସିଥିବା ସୈନ୍ୟମାନଙ୍କ ସହିତ ମିଳିତ ହୋଇଥିଲେ । କନିକା, କୁଜଙ୍ଗ ଓ ହରିଶପୁର ଦୁର୍ଗମାନ ଅଧିକୃତ ହେଲା । ୧୮୦୩ ସାଲ ନଭେମ୍ବର ମାସ ୨ ତାରିଖ ଦିନ ମେଜର ଫୋର୍ବସ୍‌ଙ୍କ ଅଧିନାୟକତ୍ୱରେ ଆସିଥିବା ସୈନ୍ୟମାନେ ବଡ଼ମୂଳ ଘାଟି ଅଧିକାର କଲେ । ଲେଫ୍‌ଟେନାଣ୍ଟ ବ୍ରାଉନ ୧୮୦୪ ସାଲ ଜାନୁୟାରୀ ମାସ ୨ ତାରିଖରେ ସମ୍ବଲପୁର ଅଧିକାର କଲେ ।

ଏଥିରୁ ଜଣାଯାଏ, ଇଂରେଜମାନେ ମାତ୍ର ଦୁଇ ତିନି ମାସ ମଧ୍ୟରେ ଖୁବ କମ୍ ପ୍ରତିରୋଧର ସମ୍ମୁଖୀନ ହୋଇ ବା ଆଦୌ ପ୍ରତିରୋଧର ସମ୍ମୁଖୀନ ନହୋଇ ଅତି ସହଜରେ ଓଡ଼ିଶା ଅଧିକାର କରିଥିଲେ । ଇଂରେଜ ସୈନ୍ୟମାନେ ଏଦେଶକୁ ଅଧିକାର କରିବାପାଇଁ ପରୋକ୍ଷରେ ଏହି ଦେଶବାସୀଙ୍କଠାରୁ ସାହାଯ୍ୟ ପାଇଥିଲେ । ମାନ୍ଦ୍ରାଜରୁ ଆସିଥିବା ଇଂରେଜ ସୈନ୍ୟମାନେ ଚିଲିକା କୂଳରେ ପହଞ୍ଚିବା ସମୟରେ ସେଠାରେ ଫତେ ମହମ୍ମଦ ନାମକ ଜଣେ ଲୋକ ସେମାନଙ୍କୁ ବାଟ ଦେଖାଇଦେଇ ଯଥେଷ୍ଟ ସାହାଯ୍ୟ କରିଥିଲା ଓ ତାର ପୁରସ୍କାର ସ୍ୱରୂପ ପରେ ସେ ମାଲୁଦ ଇଲାକା ନିଷ୍କର ଜାଗିର ସ୍ୱରୂପ

ଯାଇଥିଲ । ଠିକ୍ ସେହିପରି, ବଙ୍ଗଳାରୁ ଆସିଥିବା ଇଂରେଜ ସୈନ୍ୟମାନଙ୍କୁ ବାଲେଶ୍ୱରସ୍ଥ ଗଡଗାଁର ଜମିଦାର ରାମଚନ୍ଦ୍ର ମହାପାତ୍ର ଏଲଥିଏସ୍ଥ ସାହାଯ୍ୟ କରିଥିଲେ । କେବଳ ଏତିକି ନୁହେଁ, ଇଂରେଜ ସୈନ୍ୟମାନେ ପୁରୀ ଅଧିକାର କରିବା ସମୟରେ ଜଗନ୍ନାଥ ମନ୍ଦିରର ପଣ୍ଡାମାନେ ଘଣ୍ଟ ଘଣ୍ଟା ବଜାଇ, ଶଙ୍ଖ ଫୁଙ୍କି ସେମାନଙ୍କୁ ଅଭ୍ୟର୍ଥନା ଜଣାଇଥିବାର ଶୁଣାଯାଏ । ଏପରି ଅନୁକୂଳ ପରିସ୍ଥିତିର ସୁଯୋଗ ନେଇ ଇଂରେଜ ଜାତି ଓଡ଼ିଶାକୁ ଅଧିକାର କରିଥିଲ ।

ଓଡ଼ିଶାକୁ ଅଧିକାର କରିସାରିବା ପରେ ୧୮୦୪ ସାଲଠାରୁ କଂପାନୀ ସରକାର ଜମିଜମା ବନ୍ଦୋବସ୍ତ ଆରମ୍ଭ କଲା । ଓଡ଼ିଆ ଜାତିର ଭାଗ୍ୟ ବିପର୍ଯ୍ୟୟର ଆଉ ଏକ କରୁଣ ଇତିହାସ ଜମିଜମା ବନ୍ଦୋବସ୍ତ । ଇଂରେଜ ସରକାର ଏଦେଶକୁ ଅଧିକାର କରିବା ପରେ ଗୋଟିକ ପରେ ଗୋଟିଏ ହୋଇ ଏ ଜାତିର ଭାଗ୍ୟାକାଶରେ ବହୁ ଝଡ଼ର ସୃଷ୍ଟି ହୋଇଥିଲ ।

ଓଡ଼ିଶାରେ କଂପାନୀ ସରକାରର ଶାସନକଳ ଚଳାଇବାପାଇଁ ଯେଉଁ କର୍ମଚାରୀମାନେ ଆସିଲେ ସେମାନେ ଓଡ଼ିଶାର ପଡ଼ୋଶୀ ରାଜ୍ୟ ବଙ୍ଗଳାର ଅଧିବାସୀ । ସେମାନେ କଂପାନୀ ସରକାରରେ କର୍ମଚାରୀ ହେବାର ଯୋଗ୍ୟତା ଲଭ କରି ସାରିଥିଲେ । କାରଣ, ଇଂରେଜ ସରକାର ଓଡ଼ିଶା ଅଧିକାର କରିବାର ଅର୍ଦ୍ଧ ଶତାବ୍ଦୀ ପୂର୍ବରୁ ବଙ୍ଗଳାରେ ଆସନପାତି ବସି ସାରିଥିଲେ । ବଙ୍ଗାଳୀ ଜାତିକୁ ଇଂରେଜୀ ଶିକ୍ଷାଦେଇ ସେମାନଙ୍କୁ ଶିକ୍ଷିତ କରିସାରିବା ପରେ କଂପାନୀ ସରକାର ଓଡ଼ିଶାର ଶାସନ କ୍ଷେତ୍ରରେ ସେମାନଙ୍କୁ ଆଣି କର୍ମରେ ନିଯୁକ୍ତ କରିଅଛି । ଓଡ଼ିଆ ଜାତି ସେତେବେଳେ ଇଂରେଜ ଜାତି ଓ ବଙ୍ଗାଳୀମାନଙ୍କ ଚକ୍ଷୁରେ ଅଶିକ୍ଷିତ । ଓଡ଼ିଆ ଜାତିର ଏହି ଅଶିକ୍ଷା ଯୋଗୁଁ ତାକୁ ବହୁତ ଦୁର୍ବିପାକ ସହିବାକୁ ପଡ଼ିଅଛି ।

ସେତେବେଳେ ଓଡ଼ିଆର ଶିକ୍ଷାଦୀକ୍ଷା ଥିଲା ନିତାନ୍ତ ସୀମିତ । ଭାଗବତ ବୋଲି ଜାଣିଲେ, ପଣକିଆ ମୁଖସ୍ଥ ଥିଲେ ଓଡ଼ିଆ ନିଜକୁ ଶିକ୍ଷିତ ବୋଲି ମନେ କରୁଥିଲା । ମାତ୍ର ଏହି ସ୍ୱଳ୍ପଜ୍ଞାନ ନେଇ ଶାସନ କଳକୁ ଚଳାଇବାଭଳି ଯୋଗ୍ୟତା ଏ ଜାତିଠାରୁ ଆଦୌ ଆଶାକରିବାର କଥା ନୁହେଁ । ସେଥିଯୋଗୁଁ ସେ ସମୟରେ, ଏପରିକି ଇଂରେଜମାନେ

ଓଡ଼ିଶା ଅଧିକାର କରିବାର ଅଠର ବର୍ଷ ପରେ, ଅର୍ଥାତ୍ ୧୮୨୧ ସାଲରେ, କଟକର ଜିଲ୍ଲା ମାଜିଷ୍ଟ୍ରେଟଙ୍କର ଗୋଟିଏ ଘୋଷଣାରୁ ଜଣାଯାଏ, "ଦଶଟଙ୍କାଠାରୁ ଊର୍ଦ୍ଧ୍ୱ ଦରମା ପାଉଥିବା ଜଣେ ଖାଣ୍ଟି ଓଡ଼ିଆ ଏଠାରେ ନାହାନ୍ତି; କିନ୍ତୁ ଏମିତି ବଙ୍ଗାଳୀ, ମୁସଲମାନ ଯେଉଁମାନେ ଏ ଦେଶରେ ବସବାସ କରିଗଲେଣି) ଅନେକ ଅଛନ୍ତି । ସବୁ ସମୟରେ ମୁଁ ଓଡ଼ିଆ-ମାନଙ୍କୁ ପ୍ରଥମ ସୁବିଧା ଦିଏ । କିନ୍ତୁ ବର୍ତ୍ତମାନ ସମୟରେ ଗୋଟିଏ ସାଧାରଣ ମୋହରିର ଚାକିରି ପାଇଁ ଯୋଗ୍ୟତା ଥିବା କୌଣସି ଜଣେମାତ୍ର ଓଡ଼ିଆ ମୁଁ ଦେଖିବାକୁ ପାଉନି ।" (ଓଡ଼ିଆ ସାହିତ୍ୟର ଇତିହାସ ପୃ ୧୫୮, ଅଧ୍ୟାପକ ନଟବର ସାମନ୍ତରାୟ) । ଓଡ଼ିଆମାନଙ୍କର ଅଶିକ୍ଷାର ସୁଯୋଗ ନେଇ ବଙ୍ଗାଳୀମାନେ ସେତେବେଳେ ଓଡ଼ିଶାର ଶାସନକଳକୁ ସମ୍ପୂର୍ଣ୍ଣରୂପେ ଅଧିକାର କରି ବସିଥିଲେ । ଏହାର କାରଣ, ସେମାନେ ଥିଲେ ତଥାକଥିତ ଶିକ୍ଷିତ ଏବଂ ସେତେବେଳେ କଂପାନୀ ସରକାରର ମୁଖ୍ୟ କାର୍ଯ୍ୟାଳୟ ଥିଲା ବଙ୍ଗଳାରେ । ତେଣୁ ବଙ୍ଗାଳୀମାନଙ୍କୁ ଓଡ଼ିଶାରେ ଚାକିରି ପାଇବା ପାଇଁ କୌଣସି ଅସୁବିଧା ହୋଇନାହିଁ । ସେମାନେ ଏହି ସୁଯୋଗରେ ଇଂରେଜ ଶାସନ ଆରମ୍ଭରେ ଓଡ଼ିଶାର ପ୍ରତ୍ୟକ୍ଷ ଶାସନକର୍ତ୍ତା ହୋଇଥିଲେ ।

ଓଡ଼ିଶାର ଶାସନକଳ ଯେତେବେଳେ ବଙ୍ଗାଳୀ କର୍ମଚାରୀମାନଙ୍କର ସମ୍ପୂର୍ଣ୍ଣ ଆୟତ୍ତରେ ଥିଲା, ସେତେବେଳେ ସେମାନେ ଓଡ଼ିଶାରେ ନିଜର ପ୍ରଭୁତ୍ୱ ବିସ୍ତାର କରିବା ପାଇଁ ଆଉ ଏକ ସୁଯୋଗ ପାଇଥିଲେ । ୧୮୦୪ ସାଲର ଜମିଜମା ବନ୍ଦୋବସ୍ତ ସେମାନଙ୍କୁ ଅଧିକ ସୁଯୋଗ ଦେଲା । କଂପାନୀ ସରକାରର ମୁଖ୍ୟ କାର୍ଯ୍ୟାଳୟ କଲିକତାଠାରେ ଥିବାରୁ ଏବଂ ଓଡ଼ିଶାର ଜମିଦାରୀ ଗୁଡ଼ିକ ସେଠାରେ ନିଲାମ ହେବାରୁ ବହୁ ସରକାରୀ କର୍ମଚାରୀ ଅତି ସହଜରେ ସାମାନ୍ୟମାତ୍ର ଅର୍ଥ ବଦଳରେ ଓଡ଼ିଶାର ଜମିଦାରୀଗୁଡ଼ିକୁ ଦଖଲ କରିନେଲେ । ବଙ୍ଗାଳୀ ସରକାରୀ କର୍ମଚାରୀମାନେ ଜମିଦାରୀ ଦଖଲ କରିବାରୁ ଯେଉଁ ଅସ୍ୱାଭାବିକ ପରିସ୍ଥିତି ଦେଖା ଦେଇଥିଲା, ସେ ବିଷୟରେ ୧୮୧୭ ସାଲ ଅପ୍ରେଲ ମାସ ୧୮ ତାରିଖରେ କୋର୍ଟ ଅଫ୍ ଡିରେକ୍ଟରସ୍ ବଙ୍ଗ ସରକାରଙ୍କୁ ଏକ ପତ୍ରରେ ଲେଖିଥିଲେ, "ସରକାର ଯେଉଁ ଜମିଦାରୀମାନଙ୍କୁ ନିଲାମ ଉଠାଉଛନ୍ତି, ସେ ସବୁକୁ ବେଶୀ ସରକାରୀ କର୍ମଚାରୀମାନେ ନିଲାମରେ

ଧରିବା ନିତାନ୍ତ ଆପତ୍ତିଜନକ । ତୁମ ଅଧୀନସ୍ଥ ସମସ୍ତ ଅଞ୍ଚଳରେ ଏ ପ୍ରଥା ଏତେ ବେଶୀ ଚାଲିଛି ଯେ ସମସ୍ତ ଅଞ୍ଚଳ ଶେଷରେ ବେଙ୍ଗଳୀ କର୍ମଚାରୀଙ୍କ ଜମିଦାରୀ ହୋଇଯିବା କିଛି ଅସମ୍ଭବ ନୁହେଁ । ଏହାଠାରୁ ବଳି ଆପତ୍ତିଜନକ କାର୍ଯ୍ୟ ଆଉ କିଛି ନାହିଁ । ସରକାରୀ କର୍ମଚାରୀମାନେ ଜମିଦାର ହେଲେ ବିଚାର ଅଦାଲତରେ ଚାଷୀ ପକ୍ଷରେ ନ୍ୟାୟ ପାଇବା ସମ୍ଭବ ହେବ ନାହିଁ । "(ଓଡ଼ିଶା ଇତିହାସ, ପୃ ୨୪୮, ଡକ୍ଟର ହରେକୃଷ୍ଣ ମହତାବ) ।

ଓଡ଼ିଶାର ଜମିଦାରୀଗୁଡ଼ିକ ବଙ୍ଗାଳୀମାନଙ୍କ ହାତରେ ପଡ଼ିବାର ଆଉ ଗୋଟିଏ କାରଣ ଅଛି । ସେହି ସମୟରେ କମ୍ପାନୀ ସରକାର ଜମିଦାରୀର ଖଜଣା ଦାଖଲ ପାଇଁ ଏକ ନୂଆ ଆଇନ୍ ପ୍ରବର୍ତ୍ତନ କରିଥିଲେ । ଏହାକୁ (Sunset law) ବା ସୂର୍ଯ୍ୟାସ୍ତ ଆଇନ୍ କୁହାଯାଉଥିଲା । ଗୋଟିଏ ନିର୍ଦ୍ଦିଷ୍ଟ ଦିନର ସୂର୍ଯ୍ୟାସ୍ତ ପୂର୍ବରୁ ଜମିଦାରୀର ଖଜଣା ରାଜକୋଷରେ ଦାଖଲ କରି ନପାରିଲେ ଜମିଦାରୀଟି ନିଲାମ ହୋଇ ଯାଉଥିଲା । କଲିକତାରେ ଏକ ନିର୍ଦ୍ଦିଷ୍ଟ ଦିନର ସୂର୍ଯ୍ୟାସ୍ତ ପୂର୍ବରୁ ଟଙ୍କା ଦାଖଲ କରିବା ଓଡ଼ିଆ ଜମିଦାରମାନଙ୍କ ପକ୍ଷରେ ନିତାନ୍ତ ଅସମ୍ଭବ ଥିଲା । ଓଡ଼ିଶାରୁ କଲିକତାକୁ ଯିବା ସେତେବେଳେ ଏକ କଷ୍ଟକର ବ୍ୟାପାର ଥିଲା । ରେଲରାସ୍ତା ସେତେବେଳେ ନଥିଲା । ଏପରିକି ଭଲ ସଡ଼କଟିଏ ମଧ୍ୟ ନଥିଲା । ଲୋକମାନେ ଗୋଟିଏ ଦଳବାନ୍ଧି ବଳଦଗାଡ଼ି ସାହାଯ୍ୟରେ ବାଟରେ ଚୋର ତସ୍କରଙ୍କ କବଳରୁ ମୁକ୍ତିଲାଭ କରି କଲି-କତାରେ ପହଞ୍ଚିବାକୁ ଆଠ ଦଶଦିନ ଲାଗୁଥିଲା । ବାଟରେ ଚୋର ତସ୍କରଙ୍କ ଉପଦ୍ରବ କଥା କହିଲେ ନସରେ । ଯେଉଁମାନେ ସଙ୍ଗରେ ଟଙ୍କାପଇସା ନେଇ ଯାତ୍ରା କରୁଥିଲେ, ସେମାନେ ବାଟରେ ଚଟିଘରମାନଙ୍କରେ ଆଶ୍ରୟ ନେଉଥିଲେ । ଚଟିଘରର ମାଲିକ ବା ଦୋକାନୀଠାରୁ ସେମାନେ ପରିବା ପତ୍ର ଇତ୍ୟାଦି କିଣି ରୋଷାଇ କରି ଖାଉଥିଲେ । ଏହି ଦୋକାନୀମାନେ ମସଲା ସହିତ ବିଷ ମିଶାଇ ସେମାନଙ୍କୁ ବିକ୍ରି କରୁଥିଲେ । ଯାତ୍ରୀମାନେ ଖାଇପିଇ ବିଷର ନିଶାରେ ଅଚେତ ହୋଇ ଶୋଇପଡ଼ିଲେ ସେମାନଙ୍କର ଟଙ୍କା ପଇସାକୁ ଚୋରମାନେ ଅପହରଣ କରୁଥିଲେ । ପୁଣି ଆଉ ଗୋଟିଏ ପ୍ରକାରର ଚୋର ସେତେବେଳେ ଯାତ୍ରୀମାନଙ୍କର ଧନ ଅପହରଣ କରୁଥିଲେ । ଯାତ୍ରୀମାନେ ବଳଦଗାଡ଼ିରେ ଶୋଇ ଯିବା

ସମ୍ପୂର୍ଣ୍ଣରେ ସାବଧାନତାର ସହିତ ସେମାନେ ଛାଟିକୁ କାଟି ଯାତ୍ରୀମାନଙ୍କର ଜିନିଷ ପତ୍ର ନେଇଯାଉଥିଲେ । ଏହିପରି ବହୁ ବିପଦକୁ ଅତିକ୍ରମ କରି ଓଡ଼ିଆମାନେ କଲିକତାରେ ଟଙ୍କା ଦାଖଲ କରିବା ଯଥାସମୟରେ ସମ୍ଭବ ନହେବାରୁ ଜମିଦାରୀଗୁଡିକ ସାମାନ୍ୟମାତ୍ର ଦାମ୍‌ରେ ନିଲାମ ହୋଇଗଲା ଓ ବଙ୍ଗଳାର କର୍ମଚାରୀମାନେ ସେଗୁଡ଼ିକୁ ଧରିନେଲେ । ଫଳରେ ଓଡ଼ିଶାର ସବୁ ସ୍ଥାନରେ, ମୋଫସଲର ଅଧାଅଧି ମୁଲକରେ ମଧ୍ୟ ବଙ୍ଗାଳୀ ଜମିଦାରମାନେ ଦେଖାଦେଲେ । ତେଣୁ ଓଡ଼ିଆମାନଙ୍କର ଚାକିରୀ ଓ ଜମିଦାରୀ ଉଭୟକୁ ବଙ୍ଗାଳୀମାନେ ଦଖଲ କରି ଓଡ଼ିଆମାନଙ୍କ ଉପରେ ପ୍ରଭୁତ୍ୱ ବିସ୍ତାର କରିବାର ସୁଯୋଗ ପାଇଥିଲେ ।

ବଙ୍ଗଳାରେ ଇଂରେଜ ସରକାରର କାର୍ଯ୍ୟାଳୟ ଥିବାରୁ ଓ ଇଂରେଜ ସରକାରର ଦକ୍ଷତାର ଅଭାବରୁ ଓଡ଼ିଆ ଜାତିକୁ କି ପ୍ରକାର ଦୁର୍ଭାଗ୍ୟ ବରଣ କରିବାକୁ ପଡ଼ିଥିଲା ସେ ବିଷୟରେ ଐତିହାସିକ ଡକ୍ଟର ହରେକୃଷ୍ଣ ମହତାବଙ୍କର ମତ ଏଠାରେ ଉଦ୍ଧାର କରାଯାଇପାରେ । ସେ ଲେଖିଛନ୍ତି, "ଇଂରେଜଙ୍କ ବନ୍ଦୋବସ୍ତ କେତୋଟା ବର୍ଷ ମଧ୍ୟରେ ଓଡ଼ିଶାକୁ ଛାରଖାର କରିଦେଲା । ରାଜସ୍ୱ ନଦେଲେ ଜମିଦାରୀ ନିଲାମ ଉଠାଇବା ଆଇନ୍ ଅନୁସାରେ ସେତେବେଳେ ଓଡ଼ିଶାର ଜମିଦାରୀ ସବୁ ଓଡ଼ିଶାରେ କେଉଁଠି ନିଲାମ ଡକା ନହୋଇ କଲିକତାରେ ଯାଇ ନିଲାମ ଡକା ହେଉଥିଲା । ଯିବା ଆସିବାର ସୁବିଧା ନଥିଲା, ଠିକ୍ ସମୟରେ ଲୋକେ ମଧ୍ୟ ଖବର ପାଇପାରୁ ନଥିଲେ । ଫଳରେ ମାଟିଗୋଡ଼ି ଦାମ୍‌ରେ ଜମିଦାରୀସବୁ କଲିକତାରେ ନିଲାମ ହୋଇଗଲା । ସେତେବେଳେ ଯେଉଁମାନେ ଇଂରେଜ ହାକିମଙ୍କ ପାଖରେ, ଶାସନ ବିଭାଗରେ ହେଉ ବା ବାଣିଜ୍ୟ ବିଭାଗରେ ହେଉ, ଚାକିରୀ କରୁଥିଲେ, ସେହିମାନେ ନିଲାମ ଧରିଲେ । ସେତେବେଳକାର ଇଂରେଜ ହାକିମମାନେ ନିକୃଷ୍ଟ ଧରଣର ଲୋକ ଥିଲେ । ଉତ୍କୋଚ ବହୁଦୂର ପର୍ଯ୍ୟନ୍ତ ପ୍ରଭାବ ବିସ୍ତାର କରିଥିଲା । ଏହା ଯେ ଗଭର୍ଣ୍ଣର ଜେନେରାଲ ପର୍ଯ୍ୟନ୍ତ ହାତ ପାଉଥିଲା, ତାହା ୱାରେନ୍ ହେଷ୍ଟିଂସ୍‌ଙ୍କ ସମୟରେ ପ୍ରମାଣିତ ହୋଇଥିଲା । ଫଳରେ ଓଡ଼ିଶାର ଅଧିକାଂଶ ଜମିଦାରୀ ବଙ୍ଗଦେଶର ଲୋକେ ନିଲାମରେ ଅଳ୍ପ ମୂଲ୍ୟରେ ନେଇନେଲେ । ବହୁ ସମ୍ଭ୍ରାନ୍ତ ପରିବାର ଦାଣ୍ଡର ଭିକାରୀ ହୋଇଗଲେ । ଜନସାଧାରଣ ମଧ୍ୟ ଉତ୍ପୀଡ଼ିତ ହେଲେ" (ଓଡ଼ିଶା ଇତିହାସ, ପୃ ୨୮୯) ।

ଓଡ଼ିଶାର ଶାସନ କ୍ଷେତ୍ରରେ ବହୁ ଅବିଚାର ଏ ଜାତିକୁ ସହିବାକୁ ପଡ଼ିଥିଲା । ଏ ଅବିଚାର ପାଇଁ ଦାୟୀ ଇଂରେଜ ସରକାର ଓ ବଙ୍ଗୀୟ କର୍ମଚାରୀଗଣ । ଓଡ଼ିଆ ଜାତିକୁ ଶିକ୍ଷିତ କରିବା ପାଇଁ ଇଂରେଜ ସରକାରର ନୂତନ ଶିକ୍ଷାନୀତି ପ୍ରବର୍ତ୍ତନ ସମୟରେ ମଧ୍ୟ ବଙ୍ଗୀୟ କର୍ମଚାରୀମାନଙ୍କର ଅପକର୍ମ ଏ ଜାତିକୁ କମ୍ ବ୍ୟଥିତ କରି ନାହିଁ । ନୂତନ ଜମିଜମା ବନ୍ଦୋବସ୍ତ ଫଳରେ ଯେଉଁ ନୂତନ ଅଣଓଡ଼ିଆ ଜମିଦାର ଶ୍ରେଣୀ ଆତ୍ମପ୍ରକାଶ କଲା, ସେ ଶ୍ରେଣୀ ଓଡ଼ିଆମାନଙ୍କର ଅବସ୍ଥାର ଉନ୍ନତି ପାଇଁ କୌଣସି କାର୍ଯ୍ୟ ନକରିବା ନିତାନ୍ତ ସ୍ୱାଭାବିକ ।

ଏ ଦେଶକୁ ଧର୍ମପ୍ରଚାର ଉଦ୍ଦେଶ୍ୟରେ ଖ୍ରୀଷ୍ଟିଆନ୍ ମିସନାରୀମାନେ ବହୁ ପୂର୍ବରୁ ଆସିଥିଲେ । ସେମାନେ ଏ ଦେଶକୁ ଆସି ଲୋକମାନଙ୍କର ମୂର୍ଖତାର ସୁଯୋଗ ନେଇ ନିଜ ଧର୍ମ ପ୍ରଚାର କରିବା ଉଦ୍ଦେଶ୍ୟରେ ହିନ୍ଦୁ ଧର୍ମର ନିନ୍ଦାଗାନ କରିଥିଲେ । ସେମାନେ ହୃଦୟଙ୍ଗମ କରିଥିଲେ ଯେ ଏଦେଶର ଲୋକମାନେ ଅଶିକ୍ଷିତ ହୋଇଥିବାରୁ ଧର୍ମ ବିଷୟରେ ସେମାନଙ୍କର କୌଣସି ସ୍ପଷ୍ଟ ଧାରଣା ନାହିଁ । ତେଣୁ ସେମାନେ ନିତାନ୍ତ ଦୋଦୁଲ୍ୟମାନ ଭାବରେ ଜୀବନ ଯାପନ କରୁଅଛନ୍ତି । ସେମାନଙ୍କୁ ଶିକ୍ଷାଦାନ କରି, ନାନା ପ୍ରକାର ପ୍ରଲୋଭନ ଦେଖାଇ ଖ୍ରୀଷ୍ଟଧର୍ମପ୍ରତି ଆକୃଷ୍ଟ କରାଯାଇପାରେ । ସେଥିପାଇଁ ସେମାନେ ବିଦ୍ୟାଳୟ ବସାଇ ଲୋକଙ୍କୁ ଶିକ୍ଷାଦାନ କରିବା ସଙ୍ଗେ ସଙ୍ଗେ ଧର୍ମ ସମ୍ବନ୍ଧୀୟ ପତ୍ରପତ୍ରିକା ପ୍ରକାଶ କରି ଲୋକଙ୍କୁ ଧର୍ମନୀତି ବିଷୟରେ ଶିକ୍ଷାଦେଲେ । ବାଇବେଲର ଓଡ଼ିଆ ଅନୁବାଦ ପ୍ରକାଶ କରି ସେମାନେ ଖ୍ରୀଷ୍ଟଧର୍ମର ନୀତି ପ୍ରତି ଲୋକମାନଙ୍କ ଦୃଷ୍ଟି ଆକର୍ଷଣ କରିଥିଲେ ।

ଇଂରେଜମାନେ ଏ ଦେଶକୁ ଅଧିକାର କରି ଶାସନ ଆରମ୍ଭ କରିବା ସମୟରେ ଲୋକମାନେ ଖ୍ରୀଷ୍ଟିଆନ ମିସନାରୀମାନଙ୍କର ଧର୍ମ ପ୍ରଚାରର ଉଗ୍ରନୀତିରେ ଏପରି ବ୍ୟସ୍ତ ହୋଇପଡ଼ିଲେ ଯେ ସେମାନେ ଭାବିଲେ ଦେଶରେ ଧର୍ମପ୍ରଚାର କରିବା ଉଦ୍ଦେଶ୍ୟରେ ଇଂରେଜ ଜାତି ଏ ଦେଶକୁ ଅଧିକାର କରିଅଛି । କମ୍ପାନୀ ସରକାର ଲୋକମାନଙ୍କର ଏପ୍ରକାର ମତିଗତି ଦେଖି ମିସନାରୀମାନଙ୍କ ଉପରେ କଠୋର ନିୟମ ପ୍ରବର୍ତ୍ତନ କରିଥିଲା । ଏହି ନିୟମ ଫଳରେ କମ୍ପାନୀ ଅଧିକୃତ ଅଞ୍ଚଳରେ ମିସନାରୀମାନେ ପ୍ରବେଶ ଅଧିକାର

ପାଇଲେ ନାହିଁ । ତେଣୁ ମିସନାରୀମାନେ ଦେଲାମ୍ ଅଧିକୃତ ଶ୍ରୀରାମ-ପୁରଠାରେ ନିଜର କାର୍ଯ୍ୟାଳୟ ସ୍ଥାପନ କଲେ । ଏ ବିଷୟରେ ବିଲାତ ପାର୍ଲିଆମେଣ୍ଟରେ ବହୁ ବାଦାନୁବାଦ ସୃଷ୍ଟି ହୋଇଥିଲା । ୧୮୧୩ ସାଲରେ କଂପାନୀ ସରକାରର ନୂତନ ଶିକ୍ଷାନୀତି ପ୍ରବର୍ତ୍ତିତ ହେଲା । ଏହି ଶିକ୍ଷାନୀତିରେ ସାହିତ୍ୟର ଉନ୍ନତି ବିଷୟରେ କାର୍ଯ୍ୟପନ୍ଥା ଗ୍ରହଣ କରିବାଲାଗି ଉଲ୍ଲେଖ ରହିଥିଲା । ଏହି ଶିକ୍ଷାନୀତିର କାର୍ଯ୍ୟକାରିତା ପାଇଁ ପ୍ରତିବର୍ଷ ଏକ ଲକ୍ଷରୁ ଅଧିକ ଟଙ୍କା ଖର୍ଚ୍ଚ ହେବାର ଘୋଷଣା ମଧ୍ୟ କରାଯାଇଥିଲା । ମାତ୍ର ଏହି ଅର୍ଥର ସବୁଠାରୁ ଅଧିକ ଭାଗ କେବଳ ବଙ୍ଗଳାରେ ବ୍ୟୟିତ ହୋଇଥିଲା ।

୧୮୨୨ ସାଲ ଫେବୃୟାରୀ ମାସରେ ମିସନାରୀମାନେ କଟକରେ ଆଧୁନିକ ସ୍କୁଲ ପ୍ରତିଷ୍ଠା କଲେ । ୧୮୨୩ ସାଲ ଶେଷସୁଦ୍ଧା ସେମାନେ ପନ୍ଦରଗୋଟି ଦେଶୀୟ ବିଦ୍ୟାଳୟର ପରିଚାଳନା ଭାର ଗ୍ରହଣ କରିଥିଲେ, ଓ ପ୍ରାୟ ଅର୍ଦ୍ଧଶତାବ୍ଦୀ ପରେ କଟକ ଇଂରେଜୀ ସ୍କୁଲଟି ସ୍ଥାପିତ ହୋଇଥିଲା । ଏହାପରେ ଓଡ଼ିଶାର ବିଭିନ୍ନ ସ୍ଥାନରେ ସ୍କୁଲ ଖୋଲାଯାଇ ଆଧୁନିକ ଶିକ୍ଷାର ପ୍ରସାର ଦିଗରେ ଦୃଷ୍ଟି ଦିଆଯାଇଥିଲା । ବଙ୍ଗଳା ଓ ବିହାରରେ ଲୋକମାନେ ଆଧୁନିକ ଶିକ୍ଷାପ୍ରତି ବିଶେଷ ଆଗ୍ରହୀ ହୋଇ ଶିକ୍ଷାଲାଭ କରିବାରେ କୃତକାର୍ଯ୍ୟ ହେବା ବେଳକୁ ଓଡ଼ିଶାରେ ଆଧୁନିକ ଶିକ୍ଷା ବହୁ ପ୍ରତିବନ୍ଧକ ମଧ୍ୟରେ ଆରମ୍ଭ ହୋଇଥିଲାମାତ୍ର । କଂପାନୀ ସରକାରର ଉଦାସୀନତା ମଧ୍ୟ ଏଥିପାଇଁ ଦାୟୀ । କାରଣ ଓଡ଼ିଶା ଭାଗରେ ସେତେବେଳେ ଯେତିକି ଅର୍ଥ ଶିକ୍ଷାବିଭାଗରେ ଖର୍ଚ୍ଚ ହେବାକୁ ମିଳୁଥିଲା, ତାହା ବଙ୍ଗଳାର ଯେ କୌଣସି ଜିଲ୍ଲାରେ ଖର୍ଚ୍ଚ ହେବାକୁ ଦିଆ ଯାଉଥିବା ଅର୍ଥଠାରୁ ବହୁଗୁଣରେ କମ୍ । ଓଡ଼ିଶାରେ କଲେଜ ଶିକ୍ଷାର ଆବଶ୍ୟକତା ଉପଲବ୍ଧ ହେବାରୁ ୧୮୬୮ ସାଲରେ କଟକ ହାଇସ୍କୁଲରେ ପ୍ରଥମେ କଲେଜ କ୍ଲାସ ଆରମ୍ଭ ହୋଇଥିଲା ।

ଓଡ଼ିଶାର ଶିକ୍ଷାକ୍ଷେତ୍ର ସେ ସମୟରେ କିପରି ଭାବରେ ଅବହେଳିତ ହୋଇଥିଲା ତାହା ଏଠାରେ ଉଲ୍ଲେଖ କରାଯାଇପାରେ । ଇଂରେଜ ସରକାର ଏ ଦେଶକୁ ଅଧିକାର କରିବାର କୋଡ଼ିଏ ବର୍ଷ ପରେ ସ୍କୁଲ ଓ ପଞ୍ଚଷଠି ବର୍ଷ ପରେ ଏ ଦେଶରେ କଲେଜ ଖୋଲାଯାଇଥିଲା । ତେଣୁ ଓଡ଼ିଆ ଜାତିକୁ ଆଧୁନିକ ଅର୍ଥରେ ଶିକ୍ଷିତ ହେବାପାଇଁ କିପରି

ସମୟ ଲାଗିଅଛି ତାହା ଏଥିରୁ ଅନୁମାନ କରାଯାଇ ପାରେ । ଦୈବ-
ଦୁର୍ବିପାକ ମଧ୍ୟ ଏହି ସମୟରେ ଓଡ଼ିଶାର ଗଣଜୀବନକୁ ଛିନ୍ନଛତ୍ର
କରିଦେଇଥିଲା । ୧୮୬୬ ସାଲର ନଅଙ୍କ ଦୁର୍ଭିକ୍ଷ ଓ ବନ୍ୟା ଫଳରେ
ଓଡ଼ିଆଜାତି ନିଜର ଅସହାୟ ଅବସ୍ଥାକୁ କେବଳ ଲକ୍ଷ୍ୟ କରିଛି । ଇଂରେଜ
ସରକାରଙ୍କ ଓ ଅଣଓଡ଼ିଆ ସରକାରୀ କର୍ମଚାରୀମାନଙ୍କର ଅପରିଣାମ-
ଦର୍ଶିତା ଏବଂ ଦାୟିତ୍ୱହୀନତାର ଚରମ ନିଦର୍ଶନ ନଅଙ୍କ ଦୁର୍ଭିକ୍ଷ । ଏହି
ଦୁର୍ଭିକ୍ଷର କୁପରିଣାମ ଭୋଗକରିବା ପରେ ଓଡ଼ିଆ ଜାତିର ଚେତନା
ଆସିଛି । ଏହି ସମୟରୁ ଓଡ଼ିଆମାନଙ୍କର ଜାତୀୟତାର ଅଭ୍ୟୁଦୟ
ଘଟିଅଛି କହିଲେ ଅସମୀଚୀନ ହେବ ନାହିଁ ।

ଓଡ଼ିଆ ଭାଷା ବିରୁଦ୍ଧରେ ଅଣଓଡ଼ିଆମାନଙ୍କର ଆନ୍ଦୋଳନ ଏ ଦେଶର
ଜାତୀୟ ସାହିତ୍ୟ କ୍ଷେତ୍ରରେ ଆଉ ଏକ ଦୁର୍ବିପାକର ସୂଚନା ଦେଇଥିଲା ।
୧୮୬୭ ସାଲରୁ ଓଡ଼ିଆ ଭାଷା ବିରୁଦ୍ଧରେ ଏକ ପ୍ରକାର ଆନ୍ଦୋଳନର
ସୂତ୍ରପାତ ହୋଇଥିଲେହେଁ ୧୮୬୮ ସାଲରେ ତାହା ତୀବ୍ର ଆକାର ଧାରଣ
କରିଥିଲା । ସରକାରୀ ଶାସନ କଳରେ ଚାକିରି କରୁଥିବା ବଙ୍ଗାଳୀ
କର୍ମଚାରୀମାନେ ଓଡ଼ିଆ ଭାଷାକୁ ଏକ ଭାଷାରୂପେ ଗ୍ରହଣ ନକରି ବଙ୍ଗଳା
ଭାଷାର ଏକ ଉପଭାଷା ବୋଲି ପ୍ରଚାର କରିଥିଲେ । ସେମାନେ ଓଡ଼ିଶାରୁ
ଓଡ଼ିଆ ଭାଷାକୁ ଉଠାଇଦେଇ ତା ପରିବର୍ତ୍ତେ ଓଡ଼ିଶାରେ ବଙ୍ଗଳା ଭାଷା
ପ୍ରଚଳନ କରିବା ନିମନ୍ତେ ଉଦ୍ୟମ କରିଥିଲେ । ସେମାନଙ୍କର ଏହି ଅପ-
କର୍ମର ପ୍ରତିବାଦ ସ୍ୱରୂପ ୧୮୬୮ ଓ ୧୮୬୯ ସାଲରେ ଓଡ଼ିଶାରେ ବଙ୍ଗାଳୀ-
ମାନଙ୍କ ବିରୁଦ୍ଧରେ ଜନମତ ପ୍ରକାଶ ପାଇଥିଲା । ୧୮୬୮ ସାଲ ସେପ୍ଟେମ୍ବର
ମାସରେ ପ୍ରତ୍ନତତ୍ତ୍ୱବିଦ୍ ରାଜେନ୍ଦ୍ରଲାଲ ମିତ୍ର କଟକରେ ଯେଉଁ ବକ୍ତୃତା
ଦେଇଥିଲେ ସେ ବକ୍ତୃତା ପ୍ରକାଶ ପାଇବା ପରେ ଏହି ଆନ୍ଦୋଳନକୁ
ସମ୍ମୁଖୀନ ହେବାପାଇଁ ଓଡ଼ିଆମାନେ କର୍ମପନ୍ଥା ଗ୍ରହଣ କରିଥିଲେ ।
ରାଜେନ୍ଦ୍ରଲାଲ ମିତ୍ରଙ୍କ ଭାଷଣର କିୟଦଂଶ ଏଠାରେ ଉଲ୍ଲେଖ କରାଯାଇ-
ପାରେ—"୧୮୬୮ ସାଲ ସେପ୍ଟେମ୍ବର ମାସରେ କଟକ ଡିବେଟିଂ କ୍ଲବରେ
ମୁଁ ଉପସ୍ଥିତ ଥିଲି । ସେଠାରେ 'ଜାତୀୟତା' ନାମକ ଏକ ପ୍ରବନ୍ଧ ପଠିତ
ହୋଇଥିଲା । × × × ସେହି ସଭାରେ ମୋ ଭାଷଣରେ ମୁଁ ଅଭିମତ
ଦେଇଥିଲି ଯେ ଏକ ମିଥ୍ୟା ଜାତୀୟତାଭାବ କିମ୍ବା ଜାତୀୟତା ନାମରେ
ପ୍ରତ୍ୟେକ ଜିନିଷ ପ୍ରତି ଅନ୍ଧ ଅନୁରାଗ ଜାତିର ପ୍ରକୃତ ଉନ୍ନତି ଦୃଷ୍ଟିରେ

*

ଘୋର ଷଡ଼କାରକ । ସେମାନଙ୍କର କ୍ଷୁଦ୍ର ଉପଭାଷା ଏକ ସ୍ୱତନ୍ତ୍ର ଭାଷାରେ ପରିଣତ କରିବାର ଉଦ୍ୟମହିଁ ସେମାନଙ୍କର ବହୁକ୍ଷତି କରୁଛି । ଏମା ଅଭିଭାଷଣର ଆଭିମୁଖ୍ୟ ସେଠା ଲୋକଙ୍କଠାରେ ସମ୍ପୂର୍ଣ୍ଣ ନୂତନ ଥିଲା ଓ ସେହିଦିନ ଠାରୁ କ୍ଲବ୍, ଖବରକାଗଜ ଓ ସରକାରୀ ଦପ୍ତରରେ ଏ ଭାଷାପ୍ରଶ୍ନ ତୀବ୍ର ବାଦାନୁବାଦ ଭିତରେ ଗତିକରି ଆସୁଛି ।" (ଓଡ଼ିଆ ସାହିତ୍ୟର ଇତିହାସ, ପୃ.୨୨୫-୨୭—ଅଧ୍ୟାପକ ନଟବର ସାମନ୍ତରାୟ) ।

ରାଜେନ୍ଦ୍ରଲାଲ ମିତ୍ରଙ୍କ ଭଳି ପଣ୍ଡିତ ଓଡ଼ିଆ ଭାଷାକୁ ଏକ ଉପଭାଷା କହିବାଠାରୁ ଅଧିକ ଦୁର୍ଭାଗ୍ୟର ବିଷୟ କଣ ଥାଇପାରେ ? ଭୁବନେଶ୍ୱରଙ୍କ ଯଦି ଇତିହାସ ସହିତ ଘନିଷ୍ଠ ସମ୍ପର୍କ ଅଛି ବୋଲି ଗ୍ରହଣ କରିଯାଏ ତାହାହେଲେ ଆମକୁ ଏଠାରେ ନିଶ୍ଚିତ ଭାବରେ ଗ୍ରହଣ କରି ନେବାକୁ ହେବ ଯେ ସେ ସଙ୍କୀର୍ଣ୍ଣ ଜାତିଆଣ ପ୍ରୀତିର ବଶବର୍ତ୍ତୀ ହୋଇ ଏକ ମିଥ୍ୟା ଅଭିମତ ପ୍ରକାଶ କରିଅଛନ୍ତି । କାରଣ, ପ୍ରତ୍ନତତ୍ତ୍ୱବିଦ୍ ରାଜେନ୍ଦ୍ରଲାଲ୍ ମିତ୍ର ଯେ ଓଡ଼ିଶାର ଇତିହାସ ବିଷୟରେ ଅଜ୍ଞ ଥିଲେ ଏକଥା ବିଶ୍ୱାସଯୋଗ୍ୟ ନୁହେଁ । ରାଜେନ୍ଦ୍ରଲାଲ ମିତ୍ରଙ୍କର ଏହି ଅଭିମତରେ ପ୍ରତିବାଦ କରିଥିଲା ଉତ୍କଳ ଦୀପିକା । ଓଡ଼ିଆ ଭାଷା ବିରୁଦ୍ଧରେ ଏହିପରି ଏକ ଅଶୋଭନୀୟ ଆନ୍ଦୋଳନ ଚାଲୁଥିବା ସମୟରେ ୧୮୬୯ ସାଲ ଜୁଲାଇ ମାସରେ ଉମାଚରଣ ହାଲଦାର ନାମକ ଜଣେ ବଙ୍ଗାଳୀ କର୍ମଚାରୀ ଓଡ଼ିଆ ଭାଷାକୁ ବଙ୍ଗଳା ଅକ୍ଷରରେ ଲେଖିବାର ପ୍ରସ୍ତାବ ଦେଲେ । ରାଜକୃଷ୍ଣ ମୁଖୋପାଧ୍ୟାୟ ନାମକ କଟକ ଆଇନ କଲେଜର ଜଣେ ଅଧ୍ୟାପକ ସେହିସମୟରେ ଓଡ଼ିଆ ଭାଷାକୁ ନିନ୍ଦାକରି ବଙ୍ଗଳା ଭାଷାକୁ ଓଡ଼ିଶାରେ ଚଳାଇବାପାଇଁ ଯେଉଁ ମତ ଦେଇଥିଲେ ତାହାର ବିରୁଦ୍ଧାଚରଣ କରିଥିଲା ଉତ୍କଳଦୀପିକା । ଉତ୍କଳ ଦୀପିକା ରାଜକୃଷ୍ଣ ମୁଖୋପାଧ୍ୟାୟଙ୍କୁ ଆକ୍ଷେପ କରିଥିବାରୁ ରାଜକୃଷ୍ଣ ମୁଖୋପାଧ୍ୟାୟ ଉତ୍କଳ ଦୀପିକାର ସମ୍ପାଦକଙ୍କ ବିରୁଦ୍ଧରେ ମାନହାନି ମୋକଦ୍ଦମା କରିଥିଲେ । ଏହି ମୋକଦ୍ଦମା ୧୮୬୯ ସାଲ ଅଗଷ୍ଟମାସ ୪ ତାରିଖରେ କଟକର ଆକ୍ଟିଂ ଏଣ୍ଟ ମାଜିଷ୍ଟ୍ରେଟ୍ ଟି. ଏମ୍. କକ୍ସଙ୍କ ଇଜଲାସରେ ବିଚାର ହୋଇଥିଲା ଓ ଉତ୍କଳ ଦୀପିକାର ସମ୍ପାଦକ ଗୌରୀଶଙ୍କର ନିର୍ଦ୍ଦୋଷରେ ଖଲାସ ହୋଇଥିଲେ । ୧୮୬୯ ସାଲ ନଭେମ୍ବର ମାସରେ ବଙ୍ଗଳାର ଲେଫ୍ଟେ-ନାଣ୍ଟଙ୍କର ନିର୍ଦ୍ଦେଶ ଅନୁଯାୟୀ ଭାଷାସମସ୍ୟାର ସମାଧାନ ପ୍ରକାଶ

ପାଇଥିବାଲଗି ବଙ୍ଗୀୟ କର୍ମଚାରୀମାନଙ୍କର ଏହି ଅପଚେଷ୍ଟା ପରିଣାମପ୍ରଦ
ଲାଭ କରିନଥିଲା ।

୧୮୭୦ ସାଲରେ ବାଲେଶ୍ୱର ହାଇସ୍କୁଲର ବଙ୍ଗୀୟ ପଣ୍ଡିତ କାନ୍ତିଚନ୍ଦ୍ର ଭଟ୍ଟାଚାର୍ଯ୍ୟ "ଓଡ଼ିଆ ସ୍ୱତନ୍ତ୍ର ଭାଷା ନୁହେଁ" ନାମକ ଏକ ପୁସ୍ତିକା ରଚନା କରି ଓଡ଼ିଆ ଭାଷାକୁ ବଙ୍ଗଳା ଭାଷାର ଉପଭାଷା ବା ବିକୃତ ବଙ୍ଗଳାର ରୂପ ଓଡ଼ିଆଭାଷା ବୋଲି ମତ ପ୍ରକାଶ କରିଥିଲେ । କାନ୍ତିଚନ୍ଦ୍ରଙ୍କର ଏହି ପୁସ୍ତିକାରେ ପ୍ରକାଶ ପାଇଥିବା ବିଷୟର ବିରୁଦ୍ଧାଚରଣ କରିଥିଲା ଉତ୍କଳ ଦୀପିକା । ଦୀର୍ଘ ବାଦବିସଂବାଦ ପରେ ୧୮୭୦ ସାଲର ମଧ୍ୟଭାଗରେ ଏହି ଆନ୍ଦୋଳନ ବନ୍ଦ ହୋଇଯାଇଥିଲା । ଏଥିପାଇଁ ଇଂରେଜ ସରକାରର ବିଚାରନୀତି ମୁଖ୍ୟତଃ ଓଡ଼ିଆମାନଙ୍କର ସହାୟକ ହୋଇଥିଲା । ଓଡ଼ିଆ ଭାଷା ଆନ୍ଦୋଳନରେ ସେ ସମୟରେ ଯେଉଁମାନେ ପ୍ରତ୍ୟକ୍ଷ ଅଂଶଗ୍ରହଣ କରି ଓଡ଼ିଆ ଭାଷାକୁ ରକ୍ଷା କରିଥିଲେ, ସେମାନଙ୍କ ମଧ୍ୟରେ ଗୌରୀଶଙ୍କର ପ୍ରଧାନ ।

ଓଡ଼ିଶାର ଶାସନ କ୍ଷେତ୍ର ତଥା ସାମାଜିକ ସ୍ତରରେ ପରଭାଷୀ ବଙ୍ଗୀୟମାନଙ୍କର ପ୍ରଭାବ ବିସ୍ତାର ପାଇଁ ସେତେବେଳେ ଉଦ୍ୟମ ଚାଲିଥିଲା ସେତେବେଳେ ଓଡ଼ିଆ ସାହିତ୍ୟ କ୍ଷେତ୍ରରେ ମଧ୍ୟଯୁଗୀୟ ବଳିଷ୍ଠ କାବ୍ୟସାହିତ୍ୟର ଉଦାହରଣ ଥିଲେହେଁ ସେମାନେ ତାହାକୁ ଗ୍ରହଣ କରି ନ ଥିଲେ । ଏହାର କାରଣ, ସେତେବେଳେ ଓଡ଼ିଶାରେ ମୁଦ୍ରାଯନ୍ତ୍ରର ଅଭାବରୁ ମୁଦ୍ରଣଶିଳ୍ପର ବିକାଶ ସାଧିତ ହୋଇନଥିବାରୁ ମଧ୍ୟଯୁଗୀୟ ଓଡ଼ିଆ ସାହିତ୍ୟ ତାଳପତ୍ର ପୋଥି ମଧ୍ୟରେ ଆବଦ୍ଧ ଥିଲା । ବଙ୍ଗଦେଶରେ ଆଧୁନିକ ସାହିତ୍ୟ ସୃଷ୍ଟି ହୋଇ ମୁଦ୍ରଣ ଶିଳ୍ପର ବିକାଶ ଫଳରେ ପୁସ୍ତକ ପ୍ରକାଶିତ ହୋଇଥିଲେହେଁ ଓଡ଼ିଶାରେ ତାହା ସମ୍ଭବ ହୋଇ ନ ଥିଲା । ତେଣୁ ଯେଉଁ ବିଦେଶୀ ବା ପରଭାଷୀ ରାଜ୍ୟର ଲୋକମାନେ ଓଡ଼ିଶାକୁ ଆସିଥିଲେ ସେମାନେ ଓଡ଼ିଆ ସାହିତ୍ୟର ପ୍ରକୃଷ୍ଟ ପରିଚୟ ସହଜରେ ପାଇ ନଥିଲେ । ତେଣୁ ଓଡ଼ିଆ କାବ୍ୟସାହିତ୍ୟ କେବଳ ଧର୍ମସମ୍ବନ୍ଧୀୟ କେତେକ ତାଳପତ୍ର ପୋଥିରେ ଲିଖିତ ପଦ୍ୟରେ ବୋଲି ସେ କାଳର ଇଂରେଜ କର୍ମଚାରୀ ବା ବଙ୍ଗାଳୀ କର୍ମଚାରୀଙ୍କ ବିବେଚନାରେ ପ୍ରତୀତ ହୋଇଥିଲା ।

ଓଡ଼ିଶାରେ ଇଂରେଜ ଶାସନ ପ୍ରବର୍ତ୍ତନ ଫଳରେ ନୂତନ ଆଲୋକର ପ୍ରସାର ଘଟିବା ସ୍ୱାଭାବିକ । ନୂତନ ଶିକ୍ଷାନୀତି ପ୍ରବର୍ତ୍ତନ ଫଳରେ ଗ୍ରାମ୍ୟ ଚାଟଶାଳୀଗୁଡ଼ିକ କ୍ରମେ ଲୋପ ପାଇବାକୁ ବସିଲା । ଓଡ଼ିଶାର ଶିକ୍ଷା କ୍ଷେତ୍ରରେ ବିଦ୍ୟାଳୟ ବା ସ୍କୁଲ ସ୍ଥାପିତ ହେଲା । ଏହି ସ୍କୁଲମାନଙ୍କରେ ନୂତନ ରୀତିରେ ପିଲାମାନଙ୍କୁ ଶିକ୍ଷାଦାନ କରାଗଲା । ଏହି ଫଳରେ ପିଲାଦିନଠାରୁ ଓଡ଼ିଶାର ଯୁବଶ୍ରେଣୀ ନୂତନ ଧାରା ସହିତ ପରିଚିତ ହେଲେ । ଏହି ଯୁବଶ୍ରେଣୀ ନୂତନ ରୀତିରେ ଶିକ୍ଷିତ ହେବାପରେ ନୂତନ ସାହିତ୍ୟ ବା ଆଧୁନିକ ସାହିତ୍ୟ ସୃଷ୍ଟି କରିଛନ୍ତି ଓ ତାହାକୁ ଗ୍ରହଣ କରିଅଛନ୍ତି ।

ଆଧୁନିକ ଓଡ଼ିଆ ସାହିତ୍ୟର ଜନ୍ମ ମାସିକ ପତ୍ରିକା ଯୋଗୁଁହିଁ ସମ୍ଭବ ହୋଇଅଛି । ୧୮୭୩—୭୪ ସାଲରେ "ଉତ୍କଳ ଦର୍ପଣ" ମାସିକ ପତ୍ରିକାହିଁ ଆଧୁନିକ ଓଡ଼ିଆ ସାହିତ୍ୟ ସୃଷ୍ଟି କରିଅଛି । ଏହା ପରେ ୧୮୭୮—୮୦ ସାଲର "ଉତ୍କଳ ମଧୁପ" ପୁଣି ଆଧୁନିକ ଓଡ଼ିଆ ସାହିତ୍ୟର ସୃଷ୍ଟି ଓ ପ୍ରସାରରେ ବିଶେଷ ଭୂମିକା ଗ୍ରହଣ କରିଥିଲା । ଏହି ଦୃଷ୍ଟିରୁ ଆଧୁନିକ ଓଡ଼ିଆ ସାହିତ୍ୟର ଜନ୍ମ ଇତିହାସରେ ପତ୍ରପତ୍ରିକାର ଭୂମିକା ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ ।

ଇଂରେଜମାନେ ଏ ଦେଶକୁ ଅଧିକାର କରିବା ସମୟରୁ ମଧ୍ୟଯୁଗୀୟ ଓଡ଼ିଆ ସାହିତ୍ୟ ଏକ ବଳିଷ୍ଠ ପରଂପରାରେ ପ୍ରତିଷ୍ଠିତ ଥିଲେ ମଧ୍ୟ ଅଣଓଡ଼ିଆମାନେ ଆଧୁନିକତାର ଦୁହାଇ ଦେଇ ତାହାକୁ ସାହିତ୍ୟର ଗୌରବ ଦେବାକୁ କୁଣ୍ଠିତ ହୋଇଥିଲେ । ଓଡ଼ିଶାରେ ଅଣଓଡ଼ିଆମାନେ ଯେତେବେଳେ ସବୁ କ୍ଷେତ୍ରରେ ଥିଲେ ଅଗ୍ରଣୀ, ସେତେବେଳେ ଓଡ଼ିଆ ସାହିତ୍ୟ ସେମାନଙ୍କ ଦୃଷ୍ଟିର ଅନ୍ତରାଳରେ ରହିଯାଇଅଛି । ଓଡ଼ିଆ ସାହିତ୍ୟ ଯେ ସ୍ୱତଃ ସେମାନଙ୍କର ଦୃଷ୍ଟିର ଅନ୍ତରାଳରେ ରହିଯାଇଅଛି ତାହା ନୁହେଁ । ସେମାନେ ଜାଣି ଜାଣି ଓଡ଼ିଆ କାବ୍ୟ ସାହିତ୍ୟକୁ ଅନ୍ଧକାରର ଅତଳ ଗହ୍ୱରକୁ ଠେଲି ଦେଇଅଛନ୍ତି । ସେମାନେ ଓଡ଼ିଆ ସାହିତ୍ୟର ଅସ୍ତିତ୍ୱ ବିଷୟରେ ବିଦେଶୀ ଇଂରେଜ ସରକାରର ଇଂରେଜ କର୍ମଚାରୀମାନଙ୍କୁ ଭୁଲ ଧାରଣାର ବଶବର୍ତ୍ତୀ କରାଇଅଛନ୍ତି । ଓଡ଼ିଆ ଭାଷାକୁ ଏକ ଭାଷାର ମର୍ଯ୍ୟାଦା ଦେବାପାଇଁ କୁଣ୍ଠିତ ହୋଇ ତାହାକୁ ଲୋପ କରିବାପାଇଁ

ଯେଉଁମାନେ ଚକ୍ରାନ୍ତ କରିଥିଲେ ସେମାନେ ଓଡ଼ିଆ ସାହିତ୍ୟର ଅସ୍ତିତ୍ୱକୁ ସ୍ୱୀକାର ବା ପ୍ରକାଶ କରନ୍ତେ କିପରି ?

ଓଡ଼ିଆ ସାହିତ୍ୟର ଏକ ଉନ୍ନତ ପରଂପରା ଅଛି ବୋଲି ଇଂରେଜମାନେ ଜାଣିବାକୁ ପାଇଲେ ୧୮୭୯ ସାଲରେ, ଯେତେବେଳେ ଉତ୍କଳ ଦୀପିକାର ସମ୍ପାଦକଙ୍କ ବିରୁଦ୍ଧରେ ମାନହାନି ମୋକଦ୍ଦମା କରିଥିଲେ ଆଇନ-ଅଧ୍ୟାପକ ରାଜକୃଷ୍ଣ ମୁଖୋପାଧ୍ୟାୟ । ପୁଣି, ଭୂଦେବ ମୁଖୋପାଧ୍ୟାୟଙ୍କ ଭଳି ପ୍ରବୀଣ ପଣ୍ଡିତବ୍ୟକ୍ତି ଓଡ଼ିଶାର ଉନ୍ନତ କାବ୍ୟସାହିତ୍ୟ ବିଷୟରେ ଅଜ୍ଞ ଥିଲେ । ସେ ରାଧାନାଥଙ୍କଠାରୁ ଲାବଣ୍ୟବତୀ ଓ କୋଟିବ୍ରହ୍ମାଣ୍ଡ ସୁନ୍ଦରୀର କେତେକ ପଦର ଆବୃତ୍ତି ଶୁଣି ସ୍ତମ୍ଭିତ ହୋଇଯାଇଥିଲେ । ଓଡ଼ିଶାରେ ଏପରି ଉନ୍ନତ ସାହିତ୍ୟର ପରଂପରା ଥିବାରୁ ସେ ରାଧାନାଥଙ୍କୁ ଓଡ଼ିଆରେ ଲେଖିବା ପାଇଁ ଉପଦେଶ ଦେଇଥିଲେ । ତେଣୁ ଇଂରେଜ ରାଜତ୍ୱର ଆରମ୍ଭରୁ ଓଡ଼ିଆ ସାହିତ୍ୟ ଅଣଓଡ଼ିଆମାନଙ୍କ ଦ୍ୱାରା ଅବହେଳିତ ଓ ଲାଞ୍ଛିତ ହୋଇଥିଲା । ଆଧୁନିକ ଓଡ଼ିଆ ସାହିତ୍ୟର ସୃଷ୍ଟି ପର୍ଯ୍ୟନ୍ତ ଏହି ସମୟକୁ ଓଡ଼ିଆ କାବ୍ୟକଳାର ତାମସୀ ଯାମିନୀ ରୂପେ ଅଭିହିତ କରାଯାଇପାରେ । କବିବର ରାଧାନାଥ ୧୮୯୨ ସାଲରେ "ପାହିଲାଣି ଘୋର ତାମସୀ ଯାମିନୀ, ଫୁଟିବ ଉତ୍କଳ-ଭାଷା-କମଳିନୀ" ବୋଲି ଯେଉଁ ଆଶା ପ୍ରକାଶ କରିଛନ୍ତି ତାହା ସମୟ ଦୃଷ୍ଟିରୁ ଯଥାର୍ଥ ନୁହେଁ । ୧୮୯୨ ସାଲର ବହୁପୂର୍ବରୁ ଉତ୍କଳ-ଭାଷା କମଳିନୀ ଫୁଟି ସାରିଛି । ଚିଲିକା କାବ୍ୟରେ ରାଧାନାଥଙ୍କର ପ୍ରସଙ୍ଗ ଭିନ୍ନ ହୋଇପାରେ । ମାତ୍ର ଏପ୍ରକାର ମତର ଅର୍ଥ ଭିନ୍ନ ହେବାର କୌଣସି କାରଣ ନାହିଁ । ଓଡ଼ିଆକାବ୍ୟ କଳାର ତାମସୀ ଯାମିନୀ ପ୍ରକୃତପକ୍ଷରେ ୧୮୬୪ ସାଲ ସୁଦ୍ଧାକୁ ବିଦାୟ ନେଇଅଛି । ଓଡ଼ିଶାର ସାରସ୍ୱତ ଆକାଶରେ ସେତିକିବେଳେ ଦେଖା-ଦେଇଛି ଉଷାର ଆଗମନସୂଚୀ କାବ୍ୟତାରା ଏବଂ ତାର ଅବ୍ୟବହିତ ପରେ ଉଷାର ଅରୁଣ ଆଲୋକରେ ସାରସ୍ୱତ ଆକାଶ ଉଦ୍ଭାସିତ ହୋଇ ଉଠିଅଛି ।

---

# ଆଧୁନିକତାର ସୂତ୍ରଧାର

ଓଡ଼ିଶାର ସାରସ୍ୱତ ଆକାଶରେ ଉଷାରୁ ଅରୁଣ ଆଲୋକ ସୃଷ୍ଟି କରିଥିଲା ବହୁ ଆଶା ଓ ଉନ୍ମାଦନାର ବର୍ଣ୍ଣ-ବୈଚିତ୍ର୍ୟ । ଏହି ବର୍ଣ୍ଣ-ବୈଚିତ୍ର୍ୟହିଁ ଆଗାମୀ ଉଦୀୟମାନ ସୂର୍ଯ୍ୟର ଉଜ୍ଜ୍ୱଳ ଆଲୋକର ସଙ୍କେତ ପ୍ରଦାନ କରିଥିଲା । ଉଷା ବିଦାୟ ନେଇଗଲା—ଉଦୟାଚଳରେ ଦେଖାଦେଲେ ନୂତନ ରବି । ନୂତନ ରବିର ଉଦୟ ଉତ୍ସବରେ ଓଡ଼ିଶାର ସାରସ୍ୱତ ଜଗତରେ ବାଜି ଉଠିଲା ଆଧୁନିକ ଯୁଗର ଆଗମନୀ ଶଙ୍ଖ । କାବ୍ୟଯୁଗର ଅମର ସଙ୍ଗୀତ ସରସ୍ୱତୀଙ୍କର ଯେଉଁ ବୀଣାର ତାରରେ ସୃଷ୍ଟି କରୁଥିଲା ଅପୂର୍ବ ମଧୁର ମୂର୍ଚ୍ଛନା, ସେହି ତାରରେ ପୁଣି ସୃଷ୍ଟି ହେଲା ଆଧୁନିକ କାବ୍ୟସାହିତ୍ୟର ଭାବମୟୀ ମୂର୍ଚ୍ଛନା । ଏ କାବ୍ୟର ଗୀତ କେବଳ ଶୁଣି ମୁଗ୍ଧ ହେବାର ନୁହେଁ—ଶୁଣି ହୃଦୟରେ ଅନୁଭବ କରିବାର କଥା । ଏଥର ଭାବାବେଶରେ ଓଡ଼ିଶାର ସାରସ୍ୱତ ଆକାଶରୁ ଝରି ପଡ଼ିଲା ଏକ ଅପୂର୍ବ ଜ୍ୟୋତି । ବର୍ତ୍ତମାନ ନିକଟରେ ସେ ଜ୍ୟୋତିର ପରିଚୟ ନିଷ୍ପ୍ରୟୋଜନ । ତଥାପି ଯେଉଁମାନେ ଜାଣିଶୁଣି ସେ ଜ୍ୟୋତିର ଆଲୋକରେ ନିଜକୁ ଉଦ୍ଭାସିତ କରିବାକୁ କୁଣ୍ଠାବୋଧ କରିଥିଲେ ସେମାନଙ୍କ ନିକଟରେ ଆଧୁନିକ ସାହିତ୍ୟ ଏକ ପ୍ରହେଳିକାର ବସ୍ତୁରୂପେ ପ୍ରତିଭାତ ହୋଇଥିଲା ।

ଓଡ଼ିଆ ସାହିତ୍ୟରେ ଆଧୁନିକ ଯୁଗର ମାଙ୍ଗଳିକ ଗାନ କରିବା ପାଇଁ ଯେଉଁ ନବ୍ୟଶିକ୍ଷିତ ଯୁବକଶ୍ରେଣୀର ଉଦ୍ଭବ ହୋଇଥିଲା, ସେହି ଶ୍ରେଣୀର ଅଧିନାୟକତ୍ୱ ଗ୍ରହଣ କରିଥିଲେ ରାଧାନାଥ । ରାଧାନାଥ ଯେ ଓଡ଼ିଆ ସାହିତ୍ୟରେ ହଠାତ୍ ଆଧୁନିକ ଯୁଗର ସୃଷ୍ଟି କରିବସିଲେ, ତାହା ନୁହେଁ । ରାଧାନାଥଙ୍କର ଜୀବନୀ ସହିତ ପରିଚିତ ନହେଲେ, ତାଙ୍କର ସମସାମୟିକ ଘଟଣାଗୁଡ଼ିକୁ ଭଲ ଭାବରେ ଆଲୋଚନାର ପରିଧିକୁ ନ ଆଣିଲେ; ତାଙ୍କର ସାହିତ୍ୟ ସାଧନା ବିଷୟରେ ପୂର୍ଣ୍ଣାଙ୍ଗ ଆଲୋଚନା ସମ୍ଭବ ହୋଇ ନପାରେ । ସମୟର ଗୁରୁତ୍ୱ ଦୃଷ୍ଟିରୁ ରାଧାନାଥଙ୍କର କବି-ପ୍ରତିଭା ପ୍ରତି ବିଶେଷ ଭାବରେ ଦୃଷ୍ଟି ଦେବାର କଥା ।

ସମୟର ଗୁରୁତ୍ୱହିଁ ରାଧାନାଥଙ୍କର ପ୍ରତିଭାର ଗୁରୁତ୍ୱ । ସମୟର ଗତିରେ ରାଧାନାଥ ଏ ଦେଶରୁ ପାଇଛନ୍ତି ଅଶେଷ ସମ୍ମାନ, ପୁଣି ଅଶେଷ ଅସମ୍ମାନ ମଧ୍ୟ । ନିନ୍ଦନ-ବନ୍ଦନର ନିକ୍ଷିତ ଉଚ୍ଛଳରେ ରାଧାନାଥ ପରିଶେଷରେ ଏ ଜାତିର ବନ୍ଦନୀୟ ହିଁ ହୋଇଅଛନ୍ତି ।

୧୮୪୮ ସାଲ ସେପ୍‌ଟେମ୍ବର ମାସ ୨୮ ତାରିଖରେ ରାଧାନାଥ ଜନ୍ମଗ୍ରହଣ କରିଥିଲେ । ତାଙ୍କର ପିତା ସୁନ୍ଦରନାରାୟଣ ଥିଲେ ବାଲେଶ୍ୱର କଲେକ୍ଟରେଟ୍‌ରେ ସଦର କାନୁନ୍‌ଗୋ । ରାଧାନାଥଙ୍କର ଜନ୍ମର ପାଞ୍ଚବର୍ଷ ପରେ ତାଙ୍କର ମାତା ତାରିଣୀ ଦେବୀ ଇହଲୀଳା-ସାଙ୍ଗ କରିଥିଲେ । ସୁନ୍ଦରନାରାୟଣ ଦ୍ୱିତୀୟବାର ବିବାହ କରିଥିଲେ ଶ୍ରୀମତୀ ରୂପଦାସୀଙ୍କୁ । ରାଧାନାଥ ରୂପଦାସୀଙ୍କର ଆଦର ଓ ଯତ୍ନରେ ଲାଳିତ ପାଳିତ ହୋଇଥିଲେ । ନାରାୟଣ ନାୟକ ନାମକ ଜଣେ ମାଟିବଂଶ ଅବଧାନଙ୍କ ନିକଟରେ ରାଧାନାଥଙ୍କର ବାଲ୍ୟଶିକ୍ଷା ଆରବ୍ଧ ହୋଇଥିଲା । ପିତା ସୁନ୍ଦରନାରାୟଣ ବାଲ୍ୟକାଳରୁ ରାଧାନାଥଙ୍କ ଉପରେ ତୀକ୍ଷ୍ଣ ଦୃଷ୍ଟି ରଖିଥିଲେ । ପିତାଙ୍କର ଶାସନ ଫଳରେ ରାଧାନାଥଙ୍କର ଜୀବନ ଉତ୍ତମଭାବରେ ଗଠିତ ହୋଇଥିଲା । ଗ୍ରାମ୍ୟ ପାଠଶାଳାର ଶିକ୍ଷା ସମାପ୍ତ କରି ରାଧାନାଥ ସୋରଠାରେ ନୂଆହୋଇ ଖୋଲାଯାଇଥିବା ଭର୍ଣ୍ଣାକୁଲାର ସ୍କୁଲରେ ପ୍ରବେଶ କଲେ । ଏଠାରେ ଶିକ୍ଷାଲାଭ କରିବା ସମୟରେ ତାଙ୍କର ସ୍ୱାସ୍ଥ୍ୟ ଖରାପ ହେବାରୁ ସୁନ୍ଦର-ନାରାୟଣ ତାଙ୍କୁ ବାଲେଶ୍ୱର ନେଇ ନିଜ ପାଖରେ ରଖିଲେ । ୧୮୫୮ ସାଲ ଫେବୃୟାରୀ ମାସରେ ରାଧାନାଥ ବାଲେଶ୍ୱର ଜିଲ୍ଲା ସ୍କୁଲ୍‌ର ଷଷ୍ଠଶ୍ରେଣୀରେ ପ୍ରବେଶ କଲେ । ସେତେବେଳକୁ ତାଙ୍କର ବୟସ ଏଗାରବର୍ଷ । ରାଧାନାଥ ସ୍କୁଲ୍‌ରେ ପ୍ରବେଶ କରିବା ପରେ ଅଧ୍ୟୟନରେ ଏପରି ମନୋନିବେଶ କରିଥିଲେ ଯେ ସେହି ବର୍ଷ ବାର୍ଷିକ ପରୀକ୍ଷାରେ ସେ ନିଜର ଅଧ୍ୟବସାୟର ପରିଚୟ ଦେଇଥିଲେ । ତାଙ୍କର ଅଧ୍ୟବସାୟ ବିଷୟରେ ବାଲେଶ୍ୱର ଜିଲ୍ଲା ସ୍କୁଲର ୧୮୫୭-୫୮ ସାଲର ବାର୍ଷିକ ବିବରଣୀରେ ଲେଖାଯାଇଥିଲା,—"The progress made by the boys of the two sections of this class is pretty fair, I recommend Radhanath Ray as deserving of a prize." (ରାଧାନାଥ ଜୀବନୀ—ପୃ. ୨୩) । ପ୍ରଥମବର୍ଷ ପରୀକ୍ଷାରେ ରାଧାନାଥ କେବଳ କେତେକ ପୁରସ୍କାର ପାଇଥିଲେ, ମାତ୍ର ଦ୍ୱିତୀୟ ବର୍ଷ

ଅର୍ଥାତ୍ ୧୮୫୮—୫୯ ସାଲର ବାର୍ଷିକ ବିବରଣୀରେ କୁହାଯାଇଥିଲା—"Of the second year class Radhanath Ray is decidedly the best and he has won the highest number of marks" (ରାଧାନାଥ ଜୀବନୀ—ପୃ. ୨୩)।

ବାଲେଶ୍ୱର ଜିଲ୍ଲାସ୍କୁଲରେ ଶିକ୍ଷାଲାଭ କରିବା ସମୟରେ ରାଧାନାଥ ନିଜର ଅଧ୍ୟବସାୟ ତଥା ପ୍ରତିଭାର ସମ୍ୟକ୍ ପରିଚୟ ଦେଇଥିଲେ। କେବଳ ବିଦ୍ୟାଳୟର ଶିକ୍ଷାପାଇଁ ପାଠ୍ୟପୁସ୍ତକ ମଧ୍ୟରେ ତାଙ୍କର ଅଧ୍ୟୟନ ସୀମିତ ନଥିଲା। ସେ ବହୁ ବିଷୟ ବାହାରୁ ଅଧ୍ୟୟନ କରି ନିଜର ଜ୍ଞାନଲାଭ ପିପାସା ଚରିତାର୍ଥ କରିଥିଲେ। ବାଲେଶ୍ୱର ଜିଲ୍ଲାସ୍କୁଲକୁ ପରିଦର୍ଶନ କରିବାକୁ ଆସିଥିବା ବିଭିନ୍ନ କର୍ମଚାରୀମାନେ ରାଧାନାଥଙ୍କର ବୁଦ୍ଧିବୃତ୍ତି ଦେଖି ତାଙ୍କର ପ୍ରଶଂସା କରିଥିଲେ। ରାଧାନାଥ ୧୮୬୩ ସାଲ ଡିସେମ୍ବର ମାସରେ ବାଲେଶ୍ୱର ଜିଲ୍ଲାସ୍କୁଲରୁ ଶିକ୍ଷା ସମାପ୍ତ କଲେ। ସେହି ବର୍ଷ ସେ ପ୍ରବେଶିକା ପରୀକ୍ଷାରେ ପ୍ରଥମଶ୍ରେଣୀରେ ଉତ୍ତୀର୍ଣ୍ଣ ହୋଇ କଲେଜରେ ପଢ଼ିବାଲାଗି ମାସିକ ଟଙ୍କାଏଁ ବୃତ୍ତିଲାଭ କରିଥିଲେ।

ଏଣ୍ଟ୍ରାନ୍ସ ପାସ୍ କରିବା ପରେ ରାଧାନାଥ କଲିକତାର ପ୍ରେସିଡେନ୍ସି କଲେଜରେ ଏଫ୍. ଏ. ପଢ଼ିବାପାଇଁ ଯୋଗଦେଲେ। ମାତ୍ର ରାଧାନାଥଙ୍କର ସ୍ୱାସ୍ଥ୍ୟ ସେଠାରେ ଭଙ୍ଗ ପଡ଼ିବାରୁ ସେ ବାଧ୍ୟହୋଇ ଉଚ୍ଚଶିକ୍ଷା ପାଇବାର ଆଶା ପରିତ୍ୟାଗ କରି ବାଲେଶ୍ୱର ଫେରି ଆସିଲେ। ବାଲେଶ୍ୱରରେ ଶଯ୍ୟାଶାୟୀ ରାଧାନାଥ ଭବିଷ୍ୟତ୍ ଜୀବନ ବିଷୟରେ ଚିନ୍ତା କରିବାକୁ ଲାଗିଲେ। ସେ ସମୟର ଜଣେ ଡେପୁଟି କଲେକ୍ଟର ଓ ରାଧାନାଥଙ୍କର ପିଉସୀପୁଅ ଭାଇ ଜଗମୋହନ ରାୟ ରାଧାନାଥଙ୍କୁ କଟକରେ ଏଫ୍. ଏ. ଓ ତାପରେ କଲିକତାରେ ବି. ଏ. ପଢାଇବା ନିମନ୍ତେ ସମସ୍ତ ଖର୍ଚ୍ଚ ବହନ କରିବାର ଦାୟିତ୍ୱ ଗ୍ରହଣ କରିବାକୁ ଇଚ୍ଛାପ୍ରକାଶ କରି କଟକରେ ଏଫ୍. ଏ. କ୍ଲାସ୍‌ରେ ଯୋଗଦେବା ନିମନ୍ତେ ରାଧାନାଥଙ୍କୁ ଅନୁରୋଧ କରିଥିଲେ। ମାତ୍ର ରାଧାନାଥ ପରିବାରର ହିତଦୃଷ୍ଟିରୁ ଓ ପିତାଙ୍କର ଆର୍ଥିକ ଅଭାବ ଦୃଷ୍ଟିରୁ ତାଙ୍କୁ ସାହାଯ୍ୟ କରିବା ପାଇଁ ଆଉ ଅଧିକ ପାଠ ନପଢ଼ି ଚାକିରି କରିବା ପାଇଁ ମନସ୍ଥ କଲେ। ୧୮୬୪ ସାଲ ମେ ମାସ ପନ୍ଦର ଦିନ

ରାଧାନାଥ ବାଲେଶ୍ୱର ଜିଲ୍ଲାସ୍କୁଲର ତୃତୀୟ ଶିକ୍ଷକ ରୂପେ କର୍ମକ୍ଷେତ୍ରରେ ପ୍ରବେଶ କଲେ । କର୍ମରେ ଯୋଗଦେବା ସମୟରେ ତାଙ୍କର ମାସିକ ବେତନ ଥିଲା ତିରିଶ ଟଙ୍କା । ବାଲେଶ୍ୱର ଜିଲ୍ଲା ସ୍କୁଲରେ ଶିକ୍ଷକତା କରିବା ସମୟରେ ସ୍କୁଲର ପ୍ରଧାନଶିକ୍ଷକ ଗଙ୍ଗାଧର ଆଚାର୍ଯ୍ୟଙ୍କ ସଂସ୍ପର୍ଶରେ ଆସି ରାଧାନାଥ ବହୁ ଗ୍ରନ୍ଥ ଅନୁଶୀଳନ କରିବାରେ ପ୍ରବୃତ୍ତ ହୋଇଥିଲେ ଓ ଏହି ସମୟରେ ସେ ଘରୋଇ ଭାବରେ ଏଫ୍. ଏ. ପଢ଼ୁଥିଲେ । ବାଲେଶ୍ୱରରେ ରାଜା ବୈକୁଣ୍ଠ ନାଥ ଦେଙ୍କ ପ୍ରତିଷ୍ଠିତ ପୁସ୍ତକାଗାରରେ ରାଧାନାଥ ବହୁ ଗ୍ରନ୍ଥ ପାଠ କରିବାର ସୁଯୋଗ ପାଇଥିଲେ । ଜୟକୃଷ୍ଣ ଚୌଧୁରୀ, ଫକୀର ମୋହନ ସେନାପତି ଓ ଗୋବିନ୍ଦ ଚନ୍ଦ୍ର ପଟ୍ଟନାୟକ ପ୍ରଭୃତି ବନ୍ଧୁମାନଙ୍କ ସହାୟତାରେ ବାଲେଶ୍ୱରରେ ଥିବା ସମୟରେ ରାଧାନାଥ ପ୍ରାଚୀନ ଓଡ଼ିଆ ସାହିତ୍ୟ ଚର୍ଚ୍ଚା କରିବାର ସୁଯୋଗ ଲାଭ କରିଥିଲେ ।

୧୮୬୯ ସାଲ ଜାନୁଆରୀ ୨୪ ତାରିଖରେ ରାଧାନାଥ ପୁରୀ ଜିଲ୍ଲାସ୍କୁଲର ଦ୍ୱିତୀୟ ଶିକ୍ଷକ ପଦକୁ ଉନ୍ନୀତ ହୋଇଥିଲେ । ସେହି ବର୍ଷ ସେ ଘରୋଇଭାବରେ ଏଫ. ଏ. ପରୀକ୍ଷା ଦେଇ ଉତ୍ତୀର୍ଣ୍ଣ ହୋଇଥିଲେ । ପୁରୀ ଜିଲ୍ଲାସ୍କୁଲରେ ମଧୁସୂଦନ ରାଧାନାଥଙ୍କର ଛାତ୍ର ଥିଲେ । ରାଧାନାଥ ପୁରୀ ଜିଲ୍ଲାସ୍କୁଲରେ ଶିକ୍ଷକତା କରିବା ସମୟରେ ପୁରୀ ଜିଲ୍ଲାସ୍କୁଲର ପୁସ୍ତକାଗାର ଓଡ଼ିଶାର ସର୍ବଶ୍ରେଷ୍ଠ ପୁସ୍ତକାଗାର ଭାବରେ ଖ୍ୟାତିଲାଭ କରିଥିଲା । ରାଧାନାଥ ଏଠାରେ ବହୁ ପ୍ରାଚୀନ ଓ ମଧ୍ୟଯୁଗୀୟ ଗ୍ରନ୍ଥ ଅନୁଶୀଳନ କରିବାର ସୁଯୋଗ ପାଇଥିଲେ । ଡେପୁଟୀ କଲେକ୍ଟର ଚାକିରୀପାଇଁ ପ୍ରାର୍ଥୀହୋଇ ରାଧାନାଥ ପରୀକ୍ଷା ଦେବାପାଇଁ ଅତ୍ୟଧିକ ପରିଶ୍ରମ କରିବା ଫଳରେ ପୀଡ଼ିତ ହୋଇ ପଡ଼ିଥିଲେ । ଏହି ପୀଡ଼ା ତାଙ୍କୁ ଅତିମାତ୍ରାରେ ଦୁର୍ବଳ କରିଦେଇଥିଲା । ୧୮୭୦ ସାଲରେ ରାଧାନାଥଙ୍କର ପରଶମଣିଙ୍କ ସହିତ ଶୁଭପରିଣୟ ସଂପନ୍ନ ହୋଇଥିଲା ।

୧୮୭୨ ସାଲ ଜାନୁଆରୀ ୧୦ ତାରିଖରେ ରାଧାନାଥ ବାଙ୍କୁଡ଼ା ଜିଲ୍ଲାସ୍କୁଲର ଦ୍ୱିତୀୟ ଶିକ୍ଷକରୂପେ ନିଯୁକ୍ତ ହେଲେ । ରାଧାନାଥ ନାମକ ଜଣେ ଓଡ଼ିଆ ଶିକ୍ଷକ ବାଙ୍କୁଡ଼ା ସ୍କୁଲକୁ ଆସୁଥିବାର

*

ସମ୍ବାଦ ପାଇ ବାଙ୍କୁଡ଼ା ସ୍କୁଲର ଛାତ୍ରମାନେ ତାଙ୍କଠାରୁ ଉପଯୁକ୍ତ ଶିକ୍ଷାପାଇ ପାରିବେ ନାହିଁ ବୋଲି ଆଶଙ୍କା କରି ଆପତ୍ତି କରିଥିଲେ । ମାତ୍ର ରାଧାନାଥ ବାଙ୍କୁଡ଼ା ସ୍କୁଲରେ ନିଜର ଶିକ୍ଷାଦାନ ପ୍ରଣାଳିଦ୍ୱାରା ପ୍ରଭୂତ ସମ୍ମାନ ପାଇଥିଲେ । ବାଙ୍କୁଡ଼ା ସ୍କୁଲରେ ମାତ୍ର ଛଅଟି ମାସ କର୍ମକରିବା ପରେ ରାଧାନାଥ ବାଲେଶ୍ୱର ଜିଲାର ଡେପୁଟି ଇନ୍‌ସ୍‌ପେକ୍ଟର୍ ପଦାକୁ ଉନ୍ନୀତ ହେଲେ । ଯେଉଁ ଛାତ୍ରମାନେ ରାଧାନାଥଙ୍କର ବାଙ୍କୁଡ଼ା ସ୍କୁଲକୁ ଆସିବାର ବିରୁଦ୍ଧାଚରଣ କରିଥିଲେ, ସେହି ଛାତ୍ରମାନେ ପୁଣି ରାଧାନାଥଙ୍କର ବଦଳି ଆଦେଶକୁ ପ୍ରତ୍ୟାହାର କରିବାପାଇଁ କାର୍ଯ୍ୟପନ୍ଥା ଗ୍ରହଣ କରିବା ନିମନ୍ତେ ପ୍ରଧାନ ଶିକ୍ଷକଙ୍କୁ ନିବେଦନ କରିଥିଲେ । ମାତ୍ର ପ୍ରଧାନ ଶିକ୍ଷକ ସେମାନଙ୍କୁ ବୁଝାଇ ଦେଇ ଥିଲେ ଯେ ତାଙ୍କ ଜୀବନର ଉନ୍ନତିର ପଥରୁଦ୍ଧ କରିବା କେବେହେଲେ ଉଚିତ ନୁହେଁ । ବିଦାୟୀ ଶିକ୍ଷକ ରାଧାନାଥ ବାଙ୍କୁଡ଼ା ସ୍କୁଲର ଛାତ୍ର ଓ ଶିକ୍ଷକମାନଙ୍କଠାରୁ ଯେଉଁ ଅଭିନନ୍ଦନ ପାଇଥିଲେ ତାହା ତାଙ୍କ ଜୀବନର ଏକ ସାଧାରଣ ବିଦାୟ ସମ୍ବର୍ଦ୍ଧନା ନୁହେଁ; ତାହା ତାଙ୍କ ଜୀବନର ସର୍ବଶ୍ରେଷ୍ଠ ସମ୍ମାନ ବୋଲି କହିଲେ ଅତ୍ୟୁକ୍ତି ହେବ ନାହିଁ ।

୧୮୬୨ ସାଲ ଜୁଲାଇ ମାସ ୨୬ ତାରିଖ ଦିନ ରାଧାନାଥ ବାଲେଶ୍ୱର ଜିଲା ସ୍କୁଲସମୂହର ଡେପୁଟୀ ଇନ୍‌ସ୍‌ପେକ୍ଟର ରୂପେ କାର୍ଯ୍ୟଭାର ଗ୍ରହଣ କଲେ । ରାଧାନାଥ ବାଲେଶ୍ୱରକୁ ଫେରିଆସିବା ପରେ ପୁରାତନ ବନ୍ଧୁମାନଙ୍କ ସହିତ ତାଙ୍କର ଘନିଷ୍ଠତା ବଢ଼ିବାକୁ ଲାଗିଲା । ଏହିଠାରେ ପୁଣି ରାଧାନାଥଙ୍କ ସମ୍ପର୍କରେ ଆସିଥିଲେ ଭକ୍ତକବି ମଧୁସୂଦନ । ସେ ବାଲେଶ୍ୱର ଜିଲାସ୍କୁଲର ଦ୍ୱିତୀୟ ଶିକ୍ଷକ ରୂପେ ନିଯୁକ୍ତ ହୋଇଥିଲେ । ବାଲେଶ୍ୱରରେ ଅବସ୍ଥାନ କାଳରେ ରାଧାନାଥଙ୍କର ସାହିତ୍ୟିକ ଜୀବନର ବ୍ୟାପକ ପରିଚୟ ମିଳିଥିଲା । ଓଡ଼ିଆ କବିତା ରଚନା କରିବାର ଆଦ୍ୟ ସଙ୍କେତ ରାଧାନାଥ ବାଲେଶ୍ୱରରୁହିଁ ପ୍ରଦାନ କରିଥିଲେ । ୧୮୬୩ ସାଲରେ ରାଧାନାଥଙ୍କର ପିତୃବିୟୋଗ ଘଟିଥିଲା । ୧୮୬୬ ସାଲରେ ରାଧାନାଥଙ୍କର ଜ୍ୟେଷ୍ଠ ପୁତ୍ର ଶଶୀଭୂଷଣଙ୍କର ଜନ୍ମ ଓ ୧୮୬୮ ସାଲରେ କନିଷ୍ଠ ପୁତ୍ର ରଜନୀଭୂଷଣଙ୍କର ଜନ୍ମ ।

ବାଲେଶ୍ୱରରେ ପାଞ୍ଚବର୍ଷକାଳ ସ୍କୁଲସମୂହର ଡେପୁଟୀ ଇନ୍‌ସ୍‌ପେକ୍ଟର ଭାବରେ ଅତ୍ୟନ୍ତ ଦକ୍ଷତାର ସହିତ କାର୍ଯ୍ୟକରି ରାଧାନାଥ ୧୮୭୬ ସାଲ ନଭେମ୍ବର ୨୬ ତାରିଖରେ ଓଡ଼ିଶାର ଶିକ୍ଷାବିଭାଗରି ଜଏଣ୍ଟ ଇନ୍‌ସ୍‌ପେକ୍ଟର ପଦକୁ ଉନ୍ନୀତ ହେଲେ । ଫଳରେ ସେ କଟକରେ ଅବସ୍ଥାନ କଲେ । ଜଏଣ୍ଟ ଇନ୍‌ସ୍‌ପେକ୍ଟର ଭାବରେ କାର୍ଯ୍ୟକରିବା ସମୟରେ ରାଧାନାଥ ସମଗ୍ର ଓଡ଼ିଶାକୁ ତନ୍ନ ତନ୍ନ କରି ବୁଲିବା ଓ ଦେଖିବାର ସୁଯୋଗ ପାଇଥିଲେ । ୧୮୭୯ ସାଲରେ ଭୂଦେବ ମୁଖୋପାଧ୍ୟାୟଙ୍କ ସହିତ ରାଧାନାଥଙ୍କର ସଂସ୍ପର୍ଶ ରାଧାନାଥଙ୍କର କବିଜୀବନ ସଂପର୍କରେ ଏକ ଅବିସ୍ମରଣୀୟ ଘଟଣା । ଭୂଦେବ ମୁଖୋପାଧ୍ୟାୟ ଓଡ଼ିଶାରେ ଗସ୍ତକରିବା ସମୟରେ ରାଧାନାଥଙ୍କ ସହିତ ବିଭିନ୍ନ ସ୍ଥାନ ବୁଲି ଓଡ଼ିଶା ଓ ଓଡ଼ିଆର ଯଥାର୍ଥ ପରିଚୟ ପାଇଥିଲେ । ଏହି ସମୟଠାରୁ ରାଧାନାଥଙ୍କ ସହିତ ତାଙ୍କର ସଂପର୍କ ଅତ୍ୟନ୍ତ ଘନିଷ୍ଠତାରେ ପରିଣତ ହୋଇଥିଲା ।

୧୮୮୧ ସାଲରେ ରାଧାନାଥଙ୍କୁ ଦେୱାନ ପଦରେ ରଖିବାପାଇଁ ମୟୂରଭଞ୍ଜ ରାଜା କୃଷ୍ଣଚନ୍ଦ୍ର ଭଞ୍ଜଦେବ ତାଙ୍କୁ ଅନୁରୋଧ କରିଥିଲେ । ମାତ୍ର ରାଧାନାଥ ଏ ପ୍ରସ୍ତାବରେ ଅସମ୍ମତି ପ୍ରକାଶ କରିଥିଲେ । ୧୮୮୨ ସାଲରେ ଭୂଦେବ ମୁଖୋପାଧ୍ୟାୟ ରାଧାନାଥଙ୍କୁ ସଙ୍ଗରେ ନେଇ ପାଟଣା, ଗୟା ଓ ବୀରଭୂମ ପ୍ରଭୃତି ସ୍ଥାନ ବୁଲାଇଥିଲେ । ୧୮୮୩ ସାଲରେ କଲିକତାଠାରେ ଅନୁଷ୍ଠିତ ହେଉଥିବା ଏକ ବିରାଟ ପ୍ରଦର୍ଶନୀ ଦେଖିବାକୁ ଯାଇ ରାଧାନାଥ ଗୟା, କାଶୀ, ଅଯୋଧ୍ୟା, ଲକ୍ଷ୍ନୌ, ପ୍ରୟାଗ, ଦିଲ୍ଲୀ, ଆଗ୍ରା, ମଥୁରା, ବୃନ୍ଦାବନ, ହରଦ୍ୱାର, ଜୟପୁର, ଜବଲପୁର, ଆଜମିର, ଉଜ୍ଜୟିନୀ, ବମ୍ବେ ଓ ଦାର୍ଜିଲିଂ ପ୍ରଭୃତି ସ୍ଥାନ ଭ୍ରମଣ କରିଥିଲେ । ଏହି ବର୍ଷ ରାଧାନାଥ ରକ୍ତାମାଶୟ ପୀଡ଼ାରେ ପୀଡ଼ିତ ହୋଇ ଅତ୍ୟନ୍ତ ଦୁର୍ବଳ ହୋଇ ପଡ଼ିଥିଲେ ।

୧୮୮୬ ସାଲରେ ରାଧାନାଥ ବାମଣ୍ଡାଧିପତି ସୁଢ଼ଳଦେବଙ୍କ ଅନୁରୋଧକ୍ରମେ ଦଶଦିନ ଛୁଟିନେଇ ବାମଣ୍ଡା ଯାତ୍ରା କରିଥିଲେ । ବାମଣ୍ଡାରେ ତାଙ୍କୁ ତୋପଧ୍ୱନି ସହିତ ଉଚ୍ଛ୍ୱସିତ ସମ୍ବର୍ଦ୍ଧନା ଜ୍ଞାପନ କରିଯାଇଥିଲା । ସୁଢ଼ଳଦେବଙ୍କ ସହିତ ରାଧାନାଥଙ୍କର ଏହି ପ୍ରଥମ ମିଳନ । ପରବର୍ତ୍ତୀକାଳରେ ସୁଢ଼ଳଦେବଙ୍କ ସହିତ ରାଧାନାଥଙ୍କର

ଘନିଷ୍ଠତା ବୃଦ୍ଧି ପାଇଥିଲି । ୧୮୯୦ ସାଲରେ ରାଧାନାଥ ପୁତ୍ର ଶଶିଭୂଷଣଙ୍କର ଅପସ୍ମାର ରୋଗ ହେତୁ ଅତ୍ୟନ୍ତ ବିଚଳିତ ହୋଇ ପଡ଼ିଥିଲେ । ଏହା ଫଳରେ ତାଙ୍କର ସାହିତ୍ୟସାଧନା ମଧ୍ୟ ବାଧାପ୍ରାପ୍ତ ହୋଇଥିଲା ।

୧୮୯୨ ସାଲ ଜୁନ୍ ୨୧ ତାରିଖ ଦିନ ଓଡ଼ିଶାର ସ୍କୁଲ୍ ଇନ୍‌ସ୍‌ପେକ୍ଟର ପଦ ସୃଷ୍ଟି ହେଲା । ରାଧାନାଥ ଏହି ପଦରେ ପ୍ରଥମେ ଅସ୍ଥାୟୀଭାବରେ ନିଯୁକ୍ତ ହୋଇ ୧୮୯୨ ସାଲ ଡିସେମ୍ବର ମାସରେ ସ୍ଥାୟୀ ହେଲେ । ୧୮୯୩ ସାଲ ମେ ମାସ ୧୦ ତାରିଖରୁ ରାଧାନାଥ କଟକସ୍ଥ କାଳୀତଳାରେ ତାଙ୍କର ନିଜ ଗୃହରେ ବାସ କଲେ । ରାଧାନାଥ ଓ ଉପେନ୍ଦ୍ର ଭଞ୍ଜଙ୍କୁ କେନ୍ଦ୍ର କରି ଓଡ଼ିଆ ସାହିତ୍ୟରେ ଏହି ସମୟରେ ଇନ୍ଦ୍ରଧନୁ ଓ ବିଜୁଳିର ଏକ ଅଶୋଭନୀୟ ପରିସ୍ଥିତି ସୃଷ୍ଟି ହୋଇଥିଲା ।

୧୮୯୬ ସାଲ ଜୁନ୍ ମାସରେ ମହାରାଣୀ ଭିକ୍ଟୋରିଆଙ୍କର ହୀରକ ଜୁବୁଲି ଉପଲକ୍ଷରେ ରାଧାନାଥଙ୍କୁ "ରାୟବାହାଦୁର" ଉପାଧି ଦିଆଯାଇଥିଲା । ଗୋଟିଏ ଶିକ୍ଷାବିଭାଗୀୟ ସଭାରେ ଯୋଗଦେବା ନିମନ୍ତେ ନିମନ୍ତ୍ରିତ ହୋଇ ରାଧାନାଥ ୧୯୦୦ ସାଲ ଜାନୁଆରୀ ମାସରେ ସସ୍ତ୍ରୀକ କଲିକତା ଯାଇଥିଲେ । ସେଠାରେ ସେ ହଠାତ୍ ଡିରେକ୍ଟରଙ୍କଠାରୁ ଟେଲିଗ୍ରାମ ଯୋଗେ ତାଙ୍କର ବଦଳି ମାନଙ୍କୁ ବଦଳି ଦେବାର ଆଦେଶ ପାଇଲେ । ୧୯୦୦ ସାଲରେ 'ରାଧାନାଥ ଗ୍ରନ୍ଥାବଳୀର' ପ୍ରକାଶ ନିମନ୍ତେ ପରିକଳ୍ପନା କରାଯାଇଥିଲା । ୧୯୦୨ ସାଲରେ ବାଲେଶ୍ୱରର ରାଜା ବୈକୁଣ୍ଠନାଥ ଦେ ବାହାଦୁରଙ୍କ ଅନୁରୋଧ କ୍ରମେ ରାଧାନାଥ ଓଡ଼ିଆଭାଷୀ ଅଞ୍ଚଳର ଏକତ୍ରୀକରଣରେ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନ ଲାଗି ବଡ଼ଲାଟଙ୍କ ନିକଟକୁ ପଠାଯାଇଥିବା ଆବେଦନ ପତ୍ରର ଖସଡ଼ା ପ୍ରସ୍ତୁତ କରିଥିଲେ । ସ୍ୱତନ୍ତ୍ର ଉତ୍କଳ ପ୍ରଦେଶ ଗଠନ ଲାଗି ଏହାହିଁ ସର୍ବପ୍ରଥମ ଆବେଦନ । ୧୯୦୩ ସାଲ ସେପ୍‌ଟେମ୍ବର ମାସରେ ରାଧାନାଥ ସରକାରୀ କର୍ମକ୍ଷେତ୍ରରୁ ଅବସର ଗ୍ରହଣ କରିଥିଲେ ।

୧୯୦୩ ସାଲ ଡିସେମ୍ବର ମାସ ୩୦ ତାରିଖରେ ଉତ୍କଳ ସମ୍ମିଳନୀର ପ୍ରଥମ ଅଧିବେଶନ କଟକର ଇଦ୍‌ଗା ପଡ଼ିଆରେ ବସିବାର

ପୂର୍ବଦିନ ଅର୍ଥାତ୍ ଡିସେମ୍ବର ମାସ ୨୯ ତାରିଖ ଦିନ ଉତ୍କଳ ସାହିତ୍ୟ ସମାଜର ପ୍ରଥମ ବାର୍ଷିକ ଅଧିବେଶନ ଟାଉନ୍ ଭିକ୍ଟୋରିଆ ସ୍କୁଲରେ ଅନୁଷ୍ଠିତ ହୋଇଥିଲା । ଏଥିରେ ସଭାପତିତ୍ୱ କରିଥିଲେ କବିବର ରାଧାନାଥ । ଓଡ଼ିଆ ଭାଷା ଓ ସାହିତ୍ୟର ଉନ୍ନତି ଲାଗି କେତେକ ଯୋଜନା ସେ ସଭାରେ ଉପସ୍ଥାପିତ କରିଥିଲେ । କଲିକତାର ସେନେଟହାଉସ୍ ଭବନରେ ୧୯୦୫ ସାଲ ଜୁଲାଇ ମାସ ୭ ତାରିଖରେ କିଣ୍ଡାରଗାର୍ଟେନ୍ ପ୍ରଥାରେ ଶିଶୁମାନଙ୍କୁ ଶିକ୍ଷାଦାନ କରିବା ବିଷୟ ସ୍ଥିର କରିବା ପାଇଁ ଭାରତର ବହୁ ଶିକ୍ଷାବିତ୍ଙ୍କ ସମାବେଶରେ ଯେଉଁ ଆଲୋଚନା ସଭା ଅନୁଷ୍ଠିତ ହୋଇଥିଲା ସେହି ସଭାରେ ରାଧାନାଥ ନିମନ୍ତ୍ରିତ ହୋଇ ଯୋଗ ଦେଇଥିଲେ । ୧୯୦୪ ସାଲଠାରୁ ୧୯୦୭ ସାଲ ପର୍ଯ୍ୟନ୍ତ ରାଧାନାଥ ବିଶେଷ ମାନସିକ ଦୁଶ୍ଚିନ୍ତା ଓ ଶାରୀରିକ ଯନ୍ତ୍ରଣାରେ କଷ୍ଟ ପାଇଥିଲେ । ଏହାର କାରଣ ତାଙ୍କର ୫୩ ବର୍ଷ ବୟସରେ ଅର୍ଥାତ୍ ବର୍ଦ୍ଧମାନରେ କାର୍ଯ୍ୟ କରିବା ସମୟରେ ଜଣେ ବିଦୁଷୀ ମହିଳାଙ୍କ ପ୍ରତାରଣାରେ ପଡ଼ି ସେ ଚରିତ୍ରଭ୍ରଷ୍ଟ ହୋଇଥିଲେ । ଅତୀତର ଏହି ପାପଲାଗି ସେ ଶେଷଜୀବନରେ ତିଳ ତିଳ ହୋଇ ଚିନ୍ତାଅଗ୍ନିରେ ଦଗ୍ଧୀଭୂତ ହୋଇଥିଲେ । ଏହି ପାପକୁ ସେ ସମସ୍ତଙ୍କୁ ଜଣାଇବା ପାଇଁ ପ୍ରଚାରପତ୍ର ବାଣ୍ଟିଥିଲେ ଓ ଖବର କାଗଜମାନଙ୍କରେ ଖବର ପ୍ରକାଶ କରାଇଥିଲେ । ସେ ଚରିତ୍ରଭ୍ରଷ୍ଟ ହୋଇଥିବା ଯୋଗୁଁ ତାଙ୍କର ପେନ୍‌ସନ୍ କାଟି ଦେବାପାଇଁ ସରକାରଙ୍କୁ ଅନୁରୋଧ କରିଥିଲେ । ଏଥିପାଇଁ ତାଙ୍କର ବନ୍ଧୁଗଣ ତାଙ୍କୁ ଯେତେ ପ୍ରବୋଧନା ଦେଲେହେଁ ସେ ଶାନ୍ତ ହୋଇ ନଥିଲେ ।

୧୯୦୮ ସାଲ ଜାନୁଆରୀ ୧୯ ତାରିଖ ଦିନ ପ୍ରାକୃତିକ ଦୃଶ୍ୟ ଉପଭୋଗ କରିବା ପାଇଁ ରାଧାନାଥ ଶଶୀଭୂଷଣଙ୍କୁ ସଙ୍ଗରେ ନେଇ ଧବଳେଶ୍ୱରରୁ ବାହାରିଲେ । ସେଠାରୁ ଯାଇ ପିତା ଓ ପୁତ୍ର ଦୁହେଁ ତାଳଚେରରେ ପହଞ୍ଚିଲେ । ତାଳଚେରରେ ଦେଢ଼ମାସ ରହିବା ପରେ ପାଲଲହଡ଼ା ରାଜାଙ୍କ ଅନୁରୋଧକ୍ରମେ ରାଧାନାଥ ପାଲଲହଡ଼ାରେ ଉପସ୍ଥିତ ହୋଇ ସମ୍ବର୍ଦ୍ଧନା ଗ୍ରହଣ କରିଥିଲେ । ଏଠାରେ ତାଙ୍କୁ ସୁନା ଗିଲ୍‌ଟିର ଦୁଆତ ଓ କଲମ ଉପହାର ଦିଆଯାଇଥିଲା । ପାଲଲହଡ଼ାରୁ ରାଧାନାଥ ଶଶୀଭୂଷଣଙ୍କ ସହିତ ବାମଣ୍ଡା ଯାତ୍ରା କରିଥିଲେ । ଦେବଗଡ଼ରୁ

ସେ କଟକ ପ୍ରତ୍ୟାବର୍ତ୍ତନ କଲେ । ପଥମଧ୍ୟରେ ସେ ଆମାଶୟ ରୋଗରେ ଆକ୍ରାନ୍ତ ହେଲେ । ୧୯୦୮ ସାଲ ଅପ୍ରେଲ ମାସ ୭ ତାରିଖରେ ସେ କଟକରେ ପହଞ୍ଚିଲେ । ଅପ୍ରେଲ ୧୭ ତାରିଖ ପର୍ଯ୍ୟନ୍ତ ରୋଗ ଉପଶମର ଲକ୍ଷଣ ଦେଖାଗଲା ନାହିଁ । ୧୭ ତାରିଖ ମଧ୍ୟରାତ୍ରିରେ ତାଙ୍କର ଅମର ଆତ୍ମା ନଶ୍ୱର ଦେହ ଛାଡ଼ି ସ୍ୱର୍ଗଗାମୀ ହେଲା । ତାଙ୍କର ଦେହତ୍ୟାଗ ବାର୍ତ୍ତାରେ ସମଗ୍ର ଉତ୍କଳ ଶୋକାଭିଭୂତ ହୋଇପଡ଼ିଲା ।

ଓଡ଼ିଆ ସାହିତ୍ୟରେ ଆଧୁନିକ ଯୁଗର ପ୍ରବର୍ତ୍ତକ କବିବର ରାଧାନାଥଙ୍କର ସାରସ୍ୱତ ସାଧନା ବିଷୟରେ ଆଲୋଚନା କରିବାକୁ ହେଲେ ତାଙ୍କର ଆଦ୍ୟ ଜୀବନର ସାଧନାର ଆଦ୍ୟ ସଙ୍କେତ ପ୍ରତି ଲକ୍ଷ୍ୟ ରଖିବାକୁ ପଡ଼ିବ । ପିଲାଦିନରୁ ରାଧାନାଥଙ୍କର ଜ୍ଞାନଲାଭ ସ୍ପୃହା ବିଶେଷ ଭାବରେ ଦେଖାଦେଇଥିଲା । ସେ ଘରୋଇଭାବରେ ଏଫ୍. ଏ. ପାସ କରିବା ପର୍ଯ୍ୟନ୍ତ ଯେ କୌଣସି ବିଷୟରେ ଜ୍ଞାନଲାଭ କରିବାରେ ତତ୍ପର ଥିଲେ । ପ୍ରାଚୀନ ଓଡ଼ିଆ ସାହିତ୍ୟ ଓ ସଂସ୍କୃତ ସାହିତ୍ୟ ପ୍ରତି ତାଙ୍କର ଯଥେଷ୍ଟ ଅନୁରକ୍ତି ଥିଲା । ଇଂରେଜୀ ସାହିତ୍ୟରେ ତାଙ୍କର ପାଣ୍ଡିତ୍ୟ ସୁବିଦିତ । ପିଲାଦିନରୁ ରାଧାନାଥଙ୍କର କବି ପ୍ରତିଭାର ପରିଚୟ ମିଳିଥିଲା । ରାଧାନାଥଙ୍କ ଯେତେବେଳେ ମାତ୍ର ଅଠରବର୍ଷ ବୟସ ସେତେବେଳେ ସେ ଅତ୍ୟନ୍ତ ଉଚ୍ଚକୋଟିର କବିତା ଲେଖି ପାରୁଥିଲେ । ତାଙ୍କର କବିତା ରଚନାର ଆରମ୍ଭ ବଙ୍ଗଳା ଭାଷାରେ ହୋଇଥିଲା । ଅଠରବର୍ଷ ବୟସ୍କ ଯୁବକ ରାଧାନାଥ ଜନ୍ମଭୂମି ନାମକ କବିତାରେ ଲେଖିଥିଲେ,

"କି ନା ଛିଲ ତବ ? ପୂର୍ବେ କେହ ଲୋ ଜନନି !
କି ନା ଛିଲ ? ହାୟ ମାତଃ ! କୋଥା ସେ ସକଲ ?
କୋଥା ଏବେ ସେଇ ମୁକ୍ତା, ସ୍ୱର୍ଣ୍ଣ, ହୀରା, ମଣି ?
ନନ୍ଦନ କାନନ ଯଥା ଲୁଟି ରୁକ୍ଷ ଦଲ
ବିନାଶେ ତାହାର ଶୋଭା, ଦୁରନ୍ତ ଯବନ
କରେଛେ ଜନନି ! ତବ ସର୍ବସ୍ୱ ହରନ !"

( କବିତାବଲୀ—୧ମ ଭାଗ—୪୧ଶ କବିତା )

ଜନ୍ମଭୂମିର ଦୁର୍ଦ୍ଦଶା ଦେଖି ଯୁବକ ରାଧାନାଥ ଯେତିକି ବ୍ୟଥିତ ହୋଇଥିଲେ ତାହା କେବଳ ଏହି କବିତାରେ ନୁହେଁ, ତାଙ୍କର ପରବର୍ତ୍ତୀ

କାଳରେ ରଚିତ ଓଡ଼ିଆ କାବ୍ୟମାନଙ୍କର କଳେବର ମଧ୍ୟରେ ମଧ୍ୟ ପ୍ରସଙ୍ଗକ୍ରମେ ପ୍ରକାଶ ପାଇଅଛି । ବଙ୍ଗଳା କବିତାବଳୀର ପ୍ରଥମଭାଗ ୧୮୬୮ ସାଲରେ ପ୍ରକାଶିତ ହୋଇଥିଲା । ଏହା ପରେ ୧୮୭୦ ସାଲରେ ରାଧାନାଥଙ୍କର ବଙ୍ଗଳା କବିତାବଳୀର ଦ୍ୱିତୀୟ ଭାଗ ମହାରାଜା ବୈକୁଣ୍ଠନାଥ ଦେ ଙ୍କ ଅର୍ଥବ୍ୟୟରେ କଲିକତାର ଷ୍ଟାନ୍‌ହୋପ୍ ପ୍ରେସ୍‌ରୁ ପ୍ରକାଶିତ ହୋଇଥିଲା । ବଙ୍ଗଳା କବିତାବଳୀର ଦ୍ୱିତୀୟ ଭାଗରେ ପ୍ରକାଶ ପାଇଥିବା କବିତାଗୁଡ଼ିକ ସେ ସମୟରେ ବଙ୍ଗଳାର ସମ୍ବାଦପତ୍ରମାନଙ୍କ ଦ୍ୱାରା ଉଚ୍ଚ ପ୍ରଶଂସିତ ହୋଇଥିଲା । ଏପରିକି, କେତେକ କବିତା ମାଇକେଲ୍ ମଧୁସୂଦନ ଦତ୍ତଙ୍କ କବିତା ଅପେକ୍ଷା ଉତ୍କୃଷ୍ଟତର ବୋଲି ସେ ସମୟର ଅମୃତ ବଜାର ପତ୍ରିକା ଭଳି ସମ୍ବାଦପତ୍ରମାନଙ୍କଠାରୁ ସ୍ୱୀକୃତି ପାଇଥିଲା । ଏହି କବିତା ଗୁଚ୍ଛରେ ସେ ପ୍ରକାରାନ୍ତରେ ଓଡ଼ିଶାକୁ ବଙ୍ଗଳାରେ ପରିଚିତ କରାଇବାର ପ୍ରଚେଷ୍ଟା କରିଥିଲେ ବୋଲି କୁହାଯାଏ । ସେ ଏଥିରେ ଓଡ଼ିଶାର ବିଖ୍ୟାତ କବି, ପଣ୍ଡିତ, ସଂସ୍କାରକ ପ୍ରଭୃତିଙ୍କ ବିଷୟରେ କ୍ଷୁଦ୍ରକବିତା ରଚନାକରି ପ୍ରକାଶ କରିଥିଲେ । କବିବର ଉପେନ୍ଦ୍ର ଭଞ୍ଜ, ଦୀନକୃଷ୍ଣ ଦାସ, ଅଭିମନ୍ୟୁ କବି, ଗୌରୀଶଙ୍କର ପ୍ରଭୃତି କବିତାଗୁଡ଼ିକ ଏହି କବିତାଗୁଚ୍ଛର ଅନ୍ତର୍ଗତ । ଯେଉଁ ଉପେନ୍ଦ୍ର ଭଞ୍ଜଙ୍କୁ କେନ୍ଦ୍ରକରି ଦିନେ ରାଧାନାଥଙ୍କ ବିରୁଦ୍ଧରେ ଏକ ଅଶୋଭନୀୟ କଳହର ସୂତ୍ରପାତ ହୋଇଥିଲା, ସେହି ଉପେନ୍ଦ୍ର ଭଞ୍ଜଙ୍କ ବିଷୟରେ ରାଧାନାଥ କବିତାବଳୀ, ଦ୍ୱିତୀୟ ଭାଗରେ ଲେଖିଥିଲେ—

କବିବର ଉପେନ୍ଦ୍ର ଭଞ୍ଜ

"ନୀଳକଣ୍ଠାତ୍ମଜ କମକାୟ ଶକ୍ତିଧର,
ନ ଦଶ ଦଲେର ଶୂର ସେନାନୀ ହଇୟେ,
ବହୁକଷ୍ଟ ସହି କରି ରଣ ଘୋରତର,
ପାଇଲ ଅକ୍ଷୟ ଯଶଃ ତାରକେ ବଧିୟେ ।
ହେ ନୀଳକଣ୍ଠ ନନ୍ଦନ ନୃପକୁଲଧନ !
ତୁମିଓ ତେମତି ଶୂର ! ସୁକବି ମଣ୍ଡଲେ
ହୟେ ଅଗ୍ରଗଣ୍ୟ କବି ନିଜ ବାହୁବଲେ
ନାଶିଲ ଉତ୍କଳନିନ୍ଦା ନିକଳ ଭୂଷଣ

ଧନ୍ୟ ରାଜଙ୍କ ଭୂମି ! ଜନମ ସୁକ୍ଷଣେ
ଗ୍ରହିନଲୁ ଏ ପ୍ରଦେଶେ ହେ କବୀନ୍ଦ୍ରମଣି ।
ସୁଯଶସ୍ୱୀ ସୁସମସ୍ତେ ସରସ ଲେଖନୀ
ଧରିଲ ଉପେନ୍ଦ୍ର ! ମର ଯେ ଗୃନ୍ଥ ଭୂଷଣେ
ସାଜାଯେଛ ବୈଦେହୀଶେ ହେ କବିରତନ
ତରାମା ବିନା ସାଧ କାର ସାଜାଏ ଏମନ ।”

୧୮୬୮ ସାଲରେ ରାଧାନାଥଙ୍କର ବଙ୍ଗଳା କବିତାବଳୀର ପ୍ରଥମ ଭାଗ ପ୍ରକାଶ ପାଇବା ସମୟଠାରୁ ୧୮୭୦ ସାଲରେ ବଙ୍ଗଳା କବିତାବଳୀର ଦ୍ୱିତୀୟ ଭାଗ ପ୍ରକାଶ ପାଇବା ପର୍ଯ୍ୟନ୍ତ ସମୟ ଓଡ଼ିଶାର ସାମାଜିକ ତଥା ରାଜନୈତିକ ଇତିହାସରେ ଏକ ସଂଘର୍ଷର ସମୟ । ଓଡ଼ିଆ ଭାଷା ବିଲୋପ ଆନ୍ଦୋଳନର ଦ୍ୱନ୍ଦ୍ୱ ଓଡ଼ିଶାର ଦେଶହିତୈଷୀ ମନୀଷୀମାନଙ୍କୁ ବ୍ୟଥିତ କରିଥିଲା । ଏହି ସମୟର କେତେକ ଉଲ୍ଲେଖଯୋଗ୍ୟ ଘଟଣା ଏଠାରେ ଉଦ୍ଧାର କରାଯାଇ ପାରେ । ୧୮୬୮ ସାଲରେ ବାଲେଶ୍ୱରରେ ପି. ଏମ୍. ସେନାପତି ଆଣ୍ଡ୍ କୋ: ଉତ୍କଳ ପ୍ରେସ୍ ସ୍ଥାପିତ ହୋଇଥିଲା । ୧୮୬୮ ସାଲ ଜୁଲାଇ ମାସରେ ବୋଧଦାୟିନୀ ଏବଂ ବାଲେଶ୍ୱର ସମ୍ବାଦ ବାହିକା ପତ୍ରିକା ପ୍ରକାଶ ପାଇଥିଲା । ପୁଣି ସେହିବର୍ଷ କଟକରୁ ଉତ୍କଳ ହିତୈଷିଣୀର ଜନ୍ମ । ଓଡ଼ିଆ ଭାଷାକୁ ବଙ୍ଗଳା ଅକ୍ଷରରେ ଲେଖିବାପାଇଁ କଟକ ଷ୍ଟାର ପତ୍ରିକାରେ ପ୍ରଚାର କରାଯାଇଥିବା ସଂବାଦର ପ୍ରତିବାଦ ୧୮୬୯ ସାଲ ଜୁଲାଇ ମାସ ୧୦ ତାରିଖରେ ଉତ୍କଳ ଦୀପିକାରେ ପ୍ରକାଶ ପାଇଥିଲା । ୧୮୬୯ ସାଲ ଜୁଲାଇ ୧୫ ତାରିଖରେ ଉତ୍କଳ ଦୀପିକାରେ ତତ୍କାଳୀନ ଆଇନ ଅଧ୍ୟାପକ ରାଜକୃଷ୍ଣ ମୁଖୋପାଧ୍ୟାୟଙ୍କର ବଙ୍ଗଳା ସପକ୍ଷ-ମତର ବିରୁଦ୍ଧାଚରଣ କରାଯାଇଥିଲା । ୧୮୬୯ ସାଲ ସେପ୍ଟେମ୍ବର ୨୫ ତାରିଖରେ କଲିକତାରୁ ପ୍ରକାଶିତ ଇଣ୍ଡିଆନ୍ ମିରର୍‌ରେ ପ୍ରକାଶ ପାଇଥିବା ଓଡ଼ିଆ ଭାଷା-ବିରୁଦ୍ଧ ମତର ପ୍ରତିବାଦ ଉତ୍କଳ ଦୀପିକାରେ ପ୍ରକାଶ ପାଇଥିଲା । ୧୮୭୦ ସାଲରେ ବାଲେଶ୍ୱର ଜିଲା ସ୍କୁଲର ବଙ୍ଗାଳୀ ପଣ୍ଡିତ କାନ୍ତିଚନ୍ଦ୍ର ଭଟ୍ଟାଚାର୍ଯ୍ୟ “ଉଡ଼ିୟା ସ୍ୱତନ୍ତ୍ର ଭାଷା ନୟ” ନାମକ ଏକ ପୁସ୍ତିକା ପ୍ରକାଶ କରି ଓଡ଼ିଆ ଭାଷାକୁ ବଙ୍ଗଳାଭାଷାର ବିକୃତ ରୂପ ବୋଲି ପ୍ରଚାର କରିଥିଲେ । ୧୮୭୦ ସାଲ ଫେବୃୟାରୀ ୨୨ ତାରିଖରେ ଏହି ଅପପ୍ରଚାର ବିରୁଦ୍ଧରେ ତୀବ୍ର ପ୍ରତିବାଦ ପ୍ରକାଶ ପାଇଥିଲା । ୧୮୭୦

ସାଲ୍ ମେ ୪ ତାରିଖରେ ସାର୍ ଜନ୍ ବାମ୍ସ୍, ଏସିଆଟିକ୍ ସୋସାଇଟିରେ କାନ୍ତିଚନ୍ଦ୍ରଙ୍କର ମତକୁ ଖଣ୍ଡନ କରି ଓଡ଼ିଆ ଭାଷାର ସ୍ୱତନ୍ତ୍ର୍ୟ ବିଷୟରେ ଏକ ପ୍ରବନ୍ଧ ପାଠ କରିଥିଲେ ।

ଓଡ଼ିଆ ଭାଷାକୁ ଛେଦ କରି ଓଡ଼ିଆର ଜାତୀୟତାକୁ ଆକ୍ଷେପ କରି ବଙ୍ଗୀୟ କର୍ମଚାରୀମାନେ ମିଳିତ ଭାବରେ ଓଡ଼ିଶାରୁ ଓଡ଼ିଆ ଭାଷାକୁ ଲୋପ କରିବାପାଇଁ ଷଡଯନ୍ତ୍ରରେ ଲାଗିପଡ଼ିଥିଲେ ସେତେବେଳେ ଓଡ଼ିଶାର ବହୁ ବରେଣ୍ୟ ମନୀଷୀ ସେମାନଙ୍କର ବିରୁଦ୍ଧାଚରଣ କରିଥିଲେ । ଏହିପରି ଏକ ଅବ୍ୟବସ୍ଥିତ ପରିସ୍ଥିତିରେ, ଓଡ଼ିଶାର ଜାତୀୟତାର ଚରମ ଦୁର୍ଦ୍ଦିନରେ କଲିକତାର ଷ୍ଟାନ୍‌ହୋପ୍ ପ୍ରେସ୍‌ରୁ ରାଧାନାଥଙ୍କର "ବିଙ୍ଗଳା କବିତାବଳୀର ଦ୍ୱିତୀୟଭାଗ ପ୍ରକାଶିତ ହେଲା । ରାଧାନାଥଙ୍କ ଜୀବନୀରେ ୧୮୭୦ ସାଲ ମଧ୍ୟ ଆଉ ଗୋଟିଏ କାରଣ ଲାଗି ସ୍ମରଣୀୟ । ତାହା ହେଉଛି ତାଙ୍କର ଶୁଭ ପରିଣୟ ।

୧୮୭୦ ସାଲରୁ ୧୮୭୩ ସାଲ ପର୍ଯ୍ୟନ୍ତ ରାଧାନାଥଙ୍କ ଲେଖନୀରୁ କେତେକ ପାଠ୍ୟପୁସ୍ତକ ଜନ୍ମ ନେଇଥିଲା । ୧୮୭୩ ସାଲରେ ତାଙ୍କର "ବିବେକୀ" ପ୍ରବନ୍ଧ ଉତ୍କଳ ଦର୍ପଣରେ ପ୍ରକାଶ ପାଇଥିଲା । ଏହିବର୍ଷ ରାଧାନାଥଙ୍କର ପିତୃବିୟୋଗ ଘଟିଥିଲା । ୧୮୭୪ ସାଲଠାରୁ ୧୮୮୫ ସାଲ ପର୍ଯ୍ୟନ୍ତ ରାଧାନାଥ ଏକାକୀ ଅଥବା କେତେକ ଶିକ୍ଷକଙ୍କ ସହଯୋଗିତାରେ କେତେକ ପାଠ୍ୟପୁସ୍ତକ ରଚନା କରିଥିଲେ । ଏହି ସମୟ ମଧ୍ୟରେ ରାଧାନାଥଙ୍କର ଭୂଦେବ ମୁଖୋପାଧ୍ୟାୟଙ୍କ ସହିତ ସାକ୍ଷାତ, ସାହିତ୍ୟ ଚର୍ଚ୍ଚା ଓ ଭାରତର ବିଭିନ୍ନ ସ୍ଥାନ ଭ୍ରମଣ ପ୍ରଭୃତି ଘଟିଥିଲା । ୧୮୭୭ ସାଲରେ ରାଧାନାଥ ଓଡ଼ିଶାର ଜଏଣ୍ଟ୍ ଇନ୍‌ସ୍‌ପେକ୍ଟର ପଦକୁ ଉନ୍ନୀତ ହୋଇଥିଲେ । ଓଡ଼ିଶାରେ ପତ୍ରପତ୍ରିକାର ବହୁସଂଖ୍ୟାରେ ପ୍ରକାଶ ଏହି ସମୟରେହିଁ ହୋଇଥିଲା । ୧୮୮୫ ସାଲରେ ରାଧାନାଥଙ୍କର କେଦାରଗୌରୀର ଆତ୍ମପ୍ରକାଶ ଓଡ଼ିଆ ସାହିତ୍ୟରେ ଏକ ନୂତନ ଯୁଗର ସନ୍ଦେଶ ପ୍ରଚାର କରିଥିଲା ।

---

# ପୂର୍ବାହ୍ଣର ଆକାଶ

୧୮୭୦ ସାଲର ମଧ୍ୟଭାଗରେ ଓଡ଼ିଆ ଭାଷାବିଲୋପ ଆନ୍ଦୋଳନର ଅବସାନ ଘଟିଲା । ଏହି ସମୟଠାରୁ ଓଡ଼ିଆମାନେ ନିଜର ଭାଷା ଓ ସାହିତ୍ୟ ପ୍ରତି ସଚେତନ ହେବା ନିତାନ୍ତ ସ୍ୱାଭାବିକ । ଆଧୁନିକ ଓଡ଼ିଆ ସାହିତ୍ୟର ସୃଷ୍ଟି ଓ ପ୍ରଚାର ଲାଗି ଏହି ସମୟଠାରୁ ସବୁ ପ୍ରକାର ଉଦ୍ୟମ ଓଡ଼ିଶାରେ ଦେଖାଦେଇଥିଲା । ମଧ୍ୟଯୁଗୀୟ କାବ୍ୟସାହିତ୍ୟର ଧାରାକୁ ସଂପୂର୍ଣ୍ଣ ଭାବରେ ଅସ୍ୱୀକାର କରି ଆଧୁନିକ ଓଡ଼ିଆ ସାହିତ୍ୟକୁ ଏକ ଭିନ୍ନ ଆଦର୍ଶରେ ଗଢ଼ିବାର ଏକ ସାହସିକ ପଦକ୍ଷେପ ଏହି ସମୟରେ ବହୁ ଲେଖକ ତଥା କବି ଗ୍ରହଣ କରିଥିଲେ । ୧୮୭୦ ସାଲରୁ ଏ ଦିଗରେ ପ୍ରଚେଷ୍ଟାର ଆରମ୍ଭ ହୋଇଥିଲେହେଁ ଆଧୁନିକ ଓଡ଼ିଆ ସାହିତ୍ୟର ପ୍ରକୃଷ୍ଟ ବିକାଶପାଇଁ ଆମକୁ ୧୮୮୫ ସାଲ ପର୍ଯ୍ୟନ୍ତ ଅପେକ୍ଷା କରିବାକୁ ପଡ଼ିଅଛି ।

ଓଡ଼ିଶାରେ ଆଧୁନିକତାର ଭିତ୍ତିଭୂମି ପ୍ରସ୍ତୁତ କରିବାପାଇଁ ନୂତନରୀତିର ଶିକ୍ଷାରୀତି ପ୍ରବର୍ତ୍ତନ କରି ଓଡ଼ିଆ ଜାତିକୁ ନୂତନ ରୁଚିରେ ଗଢ଼ିନେବା ପାଇଁ ରାଧାନାଥ ଯେଉଁ ଉଦ୍ୟମ କରିଥିଲେ ସେହି ଉଦ୍ୟମ ଯଥାର୍ଥରେ ଫଳବତୀ ହୋଇଥିଲା । ରାଧାନାଥଙ୍କର ଏହି ଉଦ୍ୟମ କେବଳ ତାଙ୍କ ଜୀବନର ପ୍ରଥମ ଭାଗର ଉଦ୍ୟମ ନୁହେଁ; ଏହା ତାଙ୍କର ସମଗ୍ର ଜୀବନ ବ୍ୟାପୀ ଉଦ୍ୟମ । ରାଧାନାଥ ନିଜେ ସ୍ୱତନ୍ତ୍ର ଭାବରେ ବହୁ ପାଠ୍ୟପୁସ୍ତକ ରଚନା କରିବା ସଙ୍ଗେ ସଙ୍ଗେ ବହୁ ବ୍ୟକ୍ତିଙ୍କ ସହାୟତାରେ ମଧ୍ୟ ବହୁ ପାଠ୍ୟପୁସ୍ତକ ରଚନା କରିଥିଲେ । ରାଧାନାଥ ନିଜେ ଓଡ଼ିଶାର ଶିକ୍ଷାବିଭାଗକୁ ଅତ୍ୟନ୍ତ ଦକ୍ଷତାର ସହିତ ଗଠନ କରି ଓଡ଼ିଶାର ଜାତୀୟଜୀବନକୁ ନୂତନ ମନ୍ତ୍ରରେ ଦୀକ୍ଷିତ କରାଇଥିଲେ । ରାଧାନାଥଙ୍କର ଏହି ପ୍ରଚେଷ୍ଟାକୁ କେବେହେଲେ ଅସ୍ୱୀକାର କରାଯାଇ ନପାରେ । ନୂତନରୀତିରେ ଆଧୁନିକ ଶିକ୍ଷାପ୍ରାପ୍ତ ଯୁବକଶ୍ରେଣୀ ଏଦେଶରେ ନୂତନତାର ଆବାହନୀ ଗାନ କରିବା ପାଇଁ ତତ୍ପର ହୋଇଉଠିଥିଲା । ଏହି ନୂତନ ଶିକ୍ଷିତ ଯୁବକଶ୍ରେଣୀ ଯଥାର୍ଥରେ ଆଧୁନିକ ଓଡ଼ିଆ ସାହିତ୍ୟର ସୃଷ୍ଟିପଥରେ ପୁଷ୍ପର ଶଯ୍ୟା ରଚନା କରିଥିଲା । ଏହି

ଶ୍ରେଣୀର ଉଦ୍ୟମ ଫଳରେ ଆଧୁନିକ ଓଡ଼ିଆ ସାହିତ୍ୟର ବ୍ୟାପକ ପ୍ରସାର ସମ୍ଭବ ହୋଇଥିଲା ।

୧୮୭୦ ସାଲ ପର୍ଯ୍ୟନ୍ତ ଲାଗିଥିବା ଓଡ଼ିଆ ଭାଷା ବିଲୋପ ଆନ୍ଦୋଳନର ବିରୁଦ୍ଧାଚରଣ କରିଥିଲା ଉତ୍କଳ ଦୀପିକା । ଉତ୍କଳ ଦୀପିକାର ସମ୍ପାଦକ ଗୌରୀଶଙ୍କରଙ୍କ ନିକଟରେ ଏଜାତି କୃତଜ୍ଞ । ଓଡ଼ିଆ ଭାଷାକୁ ପ୍ରତିଷ୍ଠିତ କରିବାପାଇଁ, ଓଡ଼ିଆର ସ୍ୱାତନ୍ତ୍ର୍ୟକୁ ବିକଶିତ କରିବା ପାଇଁ ୧୮୭୨ ସାଲରେ ଗୌରୀଶଙ୍କର ପ୍ରତିଷ୍ଠା କରିଥିଲେ "ଓଡ଼ିଶା ଆସୋସିଏସନ୍" । ଓଡ଼ିଆମାନଙ୍କୁ ସଂଗଠିତ ଭାବରେ ଜାତୀୟ କାର୍ଯ୍ୟ କରିବାଲାଗି ଏହା ବିଶେଷ ଭାବରେ ସହାୟକ ହୋଇଥିଲା । ଆଧୁନିକ ଓଡ଼ିଆ ସାହିତ୍ୟର ସୃଷ୍ଟିଲାଗି ଏହି ସମୟରେ ଓଡ଼ିଶାରେ ବହୁ କବି ଓ ଲେଖକଙ୍କର ଉଦ୍ୟମକୁ ବିଶେଷ ଭାବରେ ଲକ୍ଷ୍ୟ କରିବାର କଥା । ଆଧୁନିକ ଓଡ଼ିଆ ସାହିତ୍ୟର ଜନ୍ମ ପତ୍ରପତ୍ରିକା ଦ୍ୱାରାହିଁ ସମ୍ଭବ ହୋଇଥିଲା । ୧୮୭୩ ସାଲ ଜାନୁଆରୀ ମାସରେ ବାଲେଶ୍ୱରରୁ "ଉତ୍କଳ ଦର୍ପଣ" ପ୍ରକାଶ ପାଇଲା । ଏହି ପତ୍ରିକା ଓଡ଼ିଆ ସାହିତ୍ୟରେ ଆଧୁନିକ ଯୁଗର ଅଭ୍ୟୁଦୟ ଘଟାଇଥିଲା । ଦୀର୍ଘ ତେରବର୍ଷକାଳ ଏହି ପତ୍ରିକା ଓଡ଼ିଆ ସାହିତ୍ୟର ସେବା କରିବାକୁ ସମର୍ଥ ହୋଇଥିଲା । ୧୮୮୫ ସାଲରେ ଏହା ବନ୍ଦ ହୋଇଯାଇଥିଲା । ଏହି ପତ୍ରିକା ବିଷୟରେ ମତପ୍ରଦାନ କରି ପଣ୍ଡିତ ମୃତ୍ୟୁଞ୍ଜୟ କହିଥିଲେ, "ଉତ୍କଳ ଦର୍ପଣହିଁ ଆଧୁନିକ ଉତ୍କଳ ସାହିତ୍ୟର ଆଦ୍ୟ ଲେଖକମଣ୍ଡଳୀ ପ୍ରସ୍ତୁତ କରିଅଛି ।" ଏହି ପତ୍ରିକା ତାର ଅସ୍ତିତ୍ୱ ଭିତରେ ରାଧାନାଥଙ୍କର ବିବସୀ, ଇଚ୍ଛାମୟୀ ଯୁବା, ମେଘଦୂତ, ପବନ ପ୍ରଭୃତି ଏବଂ ମଧୁସୂଦନଙ୍କର ଶ୍ମଶାନ, ନିଶୀଥଚିନ୍ତା, ନିର୍ବାସିତର ବିଳାପ, ଅଯୋଧ୍ୟା ପ୍ରତ୍ୟାଗମନ, ବୁଦ୍ଧଦେବ, ସୂର୍ଯ୍ୟ, ଉଲକାପିଣ୍ଡ, ଚନ୍ଦ୍ର ଓ ତାରା, ପିତୃଭକ୍ତି, ପ୍ରଣୟର ଅଭିନ୍ନ ପରିଣାମ ପ୍ରଭୃତି ପରିବେଷଣ କରିଥିଲା । ଏହିମାନଙ୍କ ରଚନାଗୁଡ଼ିକ ଆଧୁନିକ ଓଡ଼ିଆ ସାହିତ୍ୟର ଆଦ୍ୟସଙ୍କେତ ପ୍ରଦାନ କରିବାକୁ ସମର୍ଥ ହୋଇଥିଲା ।

ଓଡ଼ିଆ ପତ୍ରପତ୍ରିକା ସୃଷ୍ଟି କ୍ଷେତ୍ରରେ ମିଶନାରୀମାନଙ୍କର ଅବଦାନକୁ ଓଡ଼ିଆ ସାହିତ୍ୟର ଆଲୋଚକମାନେ ଉଚ୍ଛ୍ୱସିତ ପ୍ରଶଂସା କରିଥାଆନ୍ତି । କେବଳ ସେତିକି ନୁହେଁ ଓଡ଼ିଆ ଗଦ୍ୟର ପ୍ରସାର ପାଇଁ ସେମାନଙ୍କର କାର୍ଯ୍ୟପନ୍ଥା ମୁଖ୍ୟତଃ ଦାୟୀ ବୋଲି ମଧ୍ୟ ଆଲୋଚକମାନେ

ମଣ୍ଡପ୍ରଦାନ କରୁଥାଆନ୍ତି । ଆଲୋଚକମାନେ ଏଥିପାଇଁ "ମିସନାରୀ-ମାନଙ୍କର ଉଦ୍ୟମକୁ ଏକ କାରଣ ରୂପେ ନିର୍ଦ୍ଦେଶ କରିପାରନ୍ତି; ମାତ୍ର ଏଥିପାଇଁ ସେମାନଙ୍କୁ ଉଚ୍ଛ୍ୱସିତ ପ୍ରଶଂସା କରିବାର କୌଣସି କାରଣ ନାହିଁ । ଆମଦେଶରେ ଯଦି ମିସନାରୀମାନଙ୍କର ଆଗମନ ପୂର୍ବରୁ ଓଡ଼ିଆ ଗଦ୍ୟର ଆଦୌ ସତ୍ତା ନଥାନ୍ତା ତାହାହେଲେ ମିସନାରୀମାନଙ୍କର ଉଦ୍ୟମକୁ ଏକ ଅଭିନବ ଉଦ୍ୟମ ରୂପେ ଗ୍ରହଣ କରାଯାଇ ସେମାନଙ୍କର ଉଚ୍ଛ୍ୱସିତ ପ୍ରଂଶସା କରିବାରେ ଯୌକ୍ତିକତା ରହନ୍ତା । ମାତ୍ର ସେମାନେ ଆମଦେଶକୁ ଆସିବାର ବହୁ ପୂର୍ବରୁ ଓଡ଼ିଆ ଗଦ୍ୟର ଯଥେଷ୍ଟ ଉଦାହରଣ ରହିଅଛି । ମାଦଳା ପାଞ୍ଜି, ରୁଦ୍ରସୁଧାନିଧି, ଅଭିନବ ଓଡ଼ିଆ ବ୍ରତକଥା, ହାସ୍ୟକଲ୍ଲୋଳ ପ୍ରଭୃତି ଓଡ଼ିଆ ଗଦ୍ୟସାହିତ୍ୟର ପ୍ରକୃଷ୍ଟ ପରିଚୟ ବହୁ ପୂର୍ବରୁ ଦେଇ-ସାରିଛନ୍ତି । ଏପରିକି, ଅଧ୍ୟାପକ ଡକ୍ଟର ବଂଶୀଧର ମହାନ୍ତିଙ୍କ ମତରେ ସାରଳା ମହାଭାରତରେ ଓଡ଼ିଆ ଗଦ୍ୟର ଉଦାହରଣ ଥିବାକଥା ମଧ୍ୟ ସୁବିଦିତ । ମିସନାରୀମାନେ ସେମାନଙ୍କର ଧର୍ମପ୍ରଚାର କରିବାପାଇଁ ଧର୍ମମୂଳକ ପତ୍ରପତ୍ରିକା ପ୍ରକାଶ କରିଥିଲେ । ସେମାନେ ବାଇବଲକୁ ଓଡ଼ିଆରେ ଅନୁବାଦ କରି ଓଡ଼ିଆ ଗଦ୍ୟଭାଷାକୁ ବିକୃତ ରୂପରେ ପ୍ରକାଶ କରିଥିଲେ । ସେହି ବିକୃତ ଅବସ୍ଥାରୁ ଯେ ଆଧୁନିକ ଓଡ଼ିଆଗଦ୍ୟ ଭାଷାର ଉଦ୍‌ଭବ ହୋଇଅଛି, ଏକଥା କହିବା ଆଦୌ ଠିକ୍ ନୁହେଁ । ବରଂ କୁହାଯାଇପାରେ, ମିସନାରୀମାନେ ଓଡ଼ିଆ ଭାଷାରେ ଆଦୌ ପ୍ରବେଶ ନଥିବା କେତେକ ତଥାକଥିତ ଶିକ୍ଷିତବ୍ୟକ୍ତିଙ୍କ ଦ୍ୱାରା ବାଇବଲର ଓଡ଼ିଆ ଅନୁବାଦ କରି ଓଡ଼ିଆ ଭାଷାକୁ ବିକଳାଙ୍ଗ କରିଥିଲେ । ସେହି ଅନୁବାଦକ-ମାନେ ଯେପରି ଧର୍ମାନ୍ଧ ଥିଲେ ସେହିପରି ଓଡ଼ିଆ ଭାଷା ଅନଭିଜ୍ଞ ଥିଲେ । ଫକୀର୍ ମୋହନ ସେନାପତି ତାଙ୍କର ଆତ୍ମଚରିତରେ ଏ ବିଷୟକୁ ଅତ୍ୟନ୍ତ ସ୍ପଷ୍ଟଭାବରେ ବର୍ଣ୍ଣନା କରିଅଛନ୍ତି * ।

ମିସନାରୀମାନଙ୍କର ଶିକ୍ଷାଦାନ୍ନୀତି ମଧ୍ୟ ଧର୍ମପ୍ରଚାର ଉଦ୍ଦେଶ୍ୟରେ ପରିଚାଳିତ ହେଉଥିଲା । ସେମାନେ ଏ ଦେଶକୁ ଆସି ଖ୍ରୀଷ୍ଟଧର୍ମ ପ୍ରଚାର କରିବାପାଇଁ ଯଥାସମ୍ଭବ ଚେଷ୍ଟାକରିଥିଲେ । ଗାଁ ଗହଳରେ ପାଦ୍ରୀମାନେ ବୁଲି ବୁଲି ହିନ୍ଦୁ ଦେବଦେବୀମାନଙ୍କୁ କାଠପଥର କହି ଲୋକମାନଙ୍କୁ ହିନ୍ଦୁଧର୍ମ ତ୍ୟାଗକରି ଖ୍ରୀଷ୍ଟଧର୍ମ ଗ୍ରହଣ କରିବାଲାଗି ପ୍ରବର୍ତ୍ତାଇ ଥିଲେ ।

* ଫକୀର୍‌ମୋହନ ଆତ୍ମଚରିତ-ପୃ. ୩୪–୩୫

ଯଦି କୌଣସି ଲୋକ ପାଦ୍ରୀମାନଙ୍କର ବକ୍ତୃତାର ବିରୁଦ୍ଧାଚରଣ କରୁଥିଲେ ତାହାହେଲେ ତାଙ୍କୁ ଗୁରୁତର ପ୍ରହାର ସହିବାକୁ ପଡୁଥିଲା । ଇଂରେଜ ରାଜତ୍ୱ ପ୍ରତିଷ୍ଠିତ ହେବାପରେ ଏଦେଶର ଲୋକମାନେ ଅନୁଭବ କଲେ ଯେ ଇଂରେଜ ସରକାର ଖ୍ରୀଷ୍ଟଧର୍ମ ପ୍ରଚାର କରିବା ଉଦ୍ଦେଶ୍ୟରେ ଏଦେଶକୁ ଆସିଅଛନ୍ତି । ତେଣୁ ଲୋକମାନେ ସରକାର ପ୍ରତି ଅସନ୍ତୋଷ ମନୋଭାବ ପ୍ରକାଶ କଲେ । ଫଳରେ ଖ୍ରୀଷ୍ଟଧର୍ମ ପ୍ରଚାର କରୁଥିବା ପାଦ୍ରୀମାନେ କମ୍ପାନୀ ଅଧିକୃତ ଅଞ୍ଚଳରେ ପ୍ରବେଶ କରିବାର ଅଧିକାର ହରାଇ ଡେନମାର୍କ ଅଧିକୃତ ଶ୍ରୀରାମପୁରଠାରେ ସେମାନଙ୍କର କାର୍ଯ୍ୟାଳୟ ସ୍ଥାପନ କଲେ । ପୁଣି, କମ୍ପାନୀ ସରକାରର ଶିକ୍ଷାନୀତି ପ୍ରବର୍ତ୍ତିତ ହେବା ସମୟରେ ସେମାନେ ନୂତନ ସ୍କୁଲଖୋଲିବା ଉଦ୍ଦେଶ୍ୟରେ ଏଦେଶକୁ ପ୍ରବେଶ କଲେ । ଏଦେଶର ଲୋକମାନେ ଅଶିକ୍ଷିତ ଥିଲେ ବୋଲି ସେମାନଙ୍କୁ ଶିକ୍ଷିତ କରିବାପାଇଁ ଯେ ପାଦ୍ରୀମାନଙ୍କର ହୃଦୟ କାନ୍ଦୁଥିଲା ତାହା ନୁହେଁ । ଅଶିକ୍ଷିତ ଲୋକମାନେ ସହଜରେ ଧର୍ମ ବିଶ୍ୱାସ ତ୍ୟାଗ କରିବା ଇଷଣଶୀଳ ଥିବାରୁ ସେମାନଙ୍କୁ ଆଧୁନିକ ରୀତିରେ ଶିକ୍ଷିତ କରାଇ ଖ୍ରୀଷ୍ଟଧର୍ମ ପ୍ରତି ଆକୃଷ୍ଟ କରିବା ନିମନ୍ତେ ପାଦ୍ରୀମାନେ ଯତ୍ପରୋନାସ୍ତି ଚେଷ୍ଟା କରିଥିଲେ । ତେଣୁ ମିସନାରୀମାନଙ୍କର ଉଦ୍ଦେଶ୍ୟ ଥିଲା ଭିନ୍ନ — ମାତ୍ର ପରିଣାମ ହେଲା ଭିନ୍ନ । ଖ୍ରୀଷ୍ଟଧର୍ମ ପ୍ରଚାର ଉଦ୍ଦେଶ୍ୟରେ ମିସନାରୀମାନେ ଏଦେଶକୁ ନ ଆସିଥିଲେ ଯେ ଏଦେଶରେ ଶିକ୍ଷାର ବିସ୍ତାର ହୋଇପାରି ନଥାନ୍ତା ବା ଓଡ଼ିଆ ଆଧୁନିକ ଗଦ୍ୟର ବିକାଶ ହୋଇ ପାରିନଥାନ୍ତା ଏକଥା ଗ୍ରହଣ କରାଯାଇ ନପାରେ । ଆଧୁନିକ ଓଡ଼ିଆ ଗଦ୍ୟ ସାହିତ୍ୟର ଗଢଣିରେ ଉତ୍କଳ ଦୀପିକା, ସମ୍ବାଦ ବାହିକା, ଉତ୍କଳ ଦର୍ପଣ ପ୍ରଭୃତି ପତ୍ରପତ୍ରିକାର ଦାନ ଅବିସ୍ମରଣୀୟ ।

୧୮୭୩ ସାଲ ଜାନୁଆରୀମାସରେ ଉତ୍କଳ ଦର୍ପଣର ଆତ୍ମପ୍ରକାଶକୁ ଆଧୁନିକ ଓଡ଼ିଆ ସାହିତ୍ୟର ଆତ୍ମପ୍ରକାଶ ରୂପେ ଗ୍ରହଣ କରାଯାଇପାରେ । ଏହି ପତ୍ରିକାର ଜନ୍ମ ବାଲେଶ୍ୱରରେ । ଉତ୍କଳ ଦର୍ପଣକୁ ଆଧୁନିକ ଓଡ଼ିଆ ସାହିତ୍ୟର ଜନ୍ମ ଇତିହାସରେ ଗୁରୁତ୍ୱ ଦେବା ସମୟରେ ବାଲେଶ୍ୱରରୁ ଆତ୍ମପ୍ରକାଶ କରିଥିବା ଆଉ ଗୋଟିଏ ପତ୍ରିକାର ବିଷୟ ଭୁଲିଗଲେ ଚଳିବ ନାହିଁ । ତାହା ହେଉଛି ବୋଧଦାୟିନୀ ଓ ବାଲେଶ୍ୱର ସମ୍ବାଦବାହିକା । ଏହା ଫକୀର ମୋହନଙ୍କ ଉଦ୍ୟମରେ ପ୍ରକାଶ ପାଇଥିଲା । ଫକୀର ମୋହନ ସେନାପତି ଓଡ଼ିଆ ଭାଷା ଉପରେ

ବିଦେଶୀ ତଥା ସ୍ୱଦେଶୀମାନଙ୍କର ଆକ୍ଷେପକୁ ସହନପାର 'ଓଡ଼ିଆ ଭାଷାକୁ ବଞ୍ଚାଇବା ପାଇଁ ବହୁତ ଚେଷ୍ଟା କରିଥିଲେ । ସେ 'ଓଡ଼ିଆ ସାହିତ୍ୟର ଉନ୍ନତି ସାଧନ କରିବା ଉଦ୍ଦେଶ୍ୟରେ ବାଲେଶ୍ୱରରେ ଗୋଟିଏ ସମିତି ଗଠନ କରିଥିଲେ । ଏହି ସମିତିରେ ସେ ସମୟରେ ସଭ୍ୟଭାବରେ ଯୋଗ ଦେଇଥିଲେ ଜୟକୃଷ୍ଣ ଚୌଧୁରୀ, ଭୋଳାନାଥ ସାମନ୍ତରାୟ, ଦାମୋଦର ପ୍ରସାଦ ଦାସ, ରାଧାନାଥ ରାୟ ଓ ଫକୀର ମୋହନ ସେନାପତି । ଦାମୋଦର ପ୍ରସାଦ ଦାସ ଏହି ସମିତିର କୋଷାଧ୍ୟକ୍ଷ ଓ ସମ୍ପାଦକ ହୋଇଥିଲେ (୧) । ଏହି ସଭାରେ ଓଡ଼ିଆ ସାହିତ୍ୟର ଉନ୍ନତି ପାଇଁ ସର୍ବପ୍ରଥମେ ରସ କଲ୍ଲୋଳର ସଠିକ ପାଠ ପ୍ରକାଶ କରିବାର ସିଦ୍ଧାନ୍ତ ଗ୍ରହଣ କରାଯାଇଥିଲା । ମାତ୍ର ତାହା କାର୍ଯ୍ୟରେ ପରିଣତ ହୋଇ ପାରି ନଥିଲା । କାରଣ ବାଲେଶ୍ୱରରେ ଗୋଟିଏ ଛାପାଖାନା ବସାଇବାର ଉଦ୍ୟମକୁ ଅଗ୍ରାଧିକାର ଦିଆଯାଇ ୧୮୬୮ ସାଲରେ ପି.ଏମ୍. ସେନାପତି ଏଣ୍ଡ୍ କୋ-ଉତ୍କଳ ପ୍ରେସ୍ ସ୍ଥାପିତ ହେବାର ସ୍ଥିର କରାଗଲା । ଫଳରେ ଏହିବର୍ଷ ପ୍ରେସ୍‌ଟି ସ୍ଥାପିତ ହେଲା । ଏ ବିଷୟରେ ରାଧାନାଥ ଫକୀର ମୋହନଙ୍କୁ କହିଥିଲେ, "ଆପଣ ଯେଉଁଭାବରେ ପ୍ରେସ୍‌କୋମ୍ପାନୀ ସ୍ଥାପନ କରିଅଛନ୍ତି, ତାହା ଇତିହାସରେ ସୁବର୍ଣ୍ଣ ଅକ୍ଷରରେ ଲିଖିତ ରହିବା ଉଚିତ (୨) । ୧୮୬୮ ସାଲ ଜୁଲାଇ ମାସରେ ଏହି ପ୍ରେସ୍‌ରୁ ବୋଧଦାୟିନୀ ଓ ବାଲେଶ୍ୱର ସମ୍ବାଦବାହିକା ପ୍ରକାଶ ପାଇଲା । ଏହି ପତ୍ରିକା ବିଷୟରେ ଫକୀର ମୋହନ ଲେଖିଅଛନ୍ତି, "ଛାପାଖାନାର କାର୍ଯ୍ୟ ସୁନ୍ଦର ରୂପେ ଚାଲିବାକୁ ଲାଗିଲା । ଅନେକ ଲାଭ ମଧ୍ୟ ହେଉଥାଏ । ଇତିପୂର୍ବେ କଟକ ପ୍ରିଣ୍ଟିଂକମ୍ପାନୀ ଉତ୍କଳ ଦୀପିକା ନାମ୍ନୀ ସାପ୍ତାହିକ ପତ୍ରିକା ପ୍ରକାଶ କରୁଥିଲେ । ଆମ୍ଭମାନଙ୍କ ପ୍ରେସ୍‌ରୁ ଗୋଟିଏ ପାକ୍ଷିକ ପତ୍ରିକା ବାହାର କରାଯିବା ସକାଶେ କୋମ୍ପାନୀର କାର୍ଯ୍ୟନିର୍ବାହକ ସମିତି ପ୍ରସ୍ତାବ ଏବଂ ସ୍ଥିର କଲେ । ପତ୍ରିକାର ନାମ ହେଲା-ବୋଧଦାୟିନୀ ଏବଂ ବାଲେଶ୍ୱର ସମ୍ବାଦବାହିକା' । ବୋଧଦାୟିନୀ ଅଂଶ ସାହିତ୍ୟ-ବିଷୟକ ଏବଂ ସମ୍ବାଦ ବାହିକା ଅଂଶ ସମ୍ବାଦ-ବିଷୟକ । ପତ୍ରିକା ବାହାରିଲା; ମାତ୍ର ଲେଖକ ଅଭାବ । ମୁଁ ହିନ୍ଦସ୍କୁଲ ଓ ପ୍ରେସ୍ କାର୍ଯ୍ୟ କରି ଥକି ପଡ଼େ ।

---

(୧) ଫକୀରମୋହନ ଆତ୍ମଚରିତ-ପୃ.୫୧-୫୨ ।

(୨) ଫକୀରମୋହନ ଆତ୍ମଚରିତ-ପୃ.୫୮ ।

ରାଜ୍ୟରେ ବିଶେଷ କିଛି କାର୍ଯ୍ୟ କରିବାକୁ ବେଳ ଅଣ୍ଟେ ନାହିଁ । ସେଥିପାଇଁ ପତ୍ରିକା ଅନିୟମିତ ରୂପେ ବାହାରେ ।" (୧)

ଓଡ଼ିଆ ସାହିତ୍ୟକୁ ଉନ୍ନତ ପଥରେ ଅଗ୍ରସର କରାଇବା ପାଇଁ ଓ ଓଡିଆର ସ୍ୱାତନ୍ତ୍ର୍ୟ ପ୍ରଦର୍ଶନ କରିବାପାଇଁ ଫକୀର ମୋହନ ଯେଉଁ ପ୍ରାଥମିକ ଉଦ୍ୟମ କରିଥିଲେ ତାହାର ପଟାନ୍ତର ନାହିଁ । ବୋଧଦାୟିନୀ ଏବଂ ସମ୍ବାଦବାହିକା ପାଇଁ ଲେଖକର ଅଭାବ କଥା ଫକୀର ମୋହନ ପ୍ରକାଶ କରିଅଛନ୍ତି । ମାତ୍ର ରାଧାନାଥ କେଉଁ କାରଣରୁ ଏହି ପତ୍ରିକା ସହିତ ସହଯୋଗ ନକରି ଉତ୍କଳ ଦର୍ପଣ ପ୍ରକାଶ କରିବାପାଇଁ ଚେଷ୍ଟିତ ହେଲେ ତାହା ବିଚାର କରି ଦେଖିବାର କଥା । ଏ ବିଷୟରେ କେତେକ କଥା ଏଠାରେ ଉଲ୍ଲେଖ କରାଯାଇପାରେ ।"୧୮୭୩ ସାଲରେ ପ୍ରକାଶିତ ଏହି ଉତ୍କଳ ଦର୍ପଣ ମାସିକ ପତ୍ରର ପ୍ରଧାନ ଉଦ୍ୟୋଗୀ ରାଧାନାଥ ଥିଲେ । ଏ ପତ୍ରିକା ପ୍ରକାଶ କରିବା ସଂକଳ୍ପ ରାଧାନାଥଙ୍କ ମନରେ ଜାଗରିତ ହେବାର ପ୍ରଧାନ କାରଣ ଏହି ଯେ, ଏଥି ପୂର୍ବେ ସମ୍ବାଦ ବାହିକାରେ ଫକୀର ମୋହନ ଏକମାତ୍ର ଲେଖକ ଓ ଭାଷାର ଉନ୍ନତି କଲେ ଯତ୍ନବାନ୍ ଥିଲେ; ଏହାଦେଖି ମାଜିଷ୍ଟ୍ରେଟ୍ ବିମାସ୍ ସାହେବ ବଡ ସନ୍ତୁଷ୍ଟ ଥିଲେ ଏବଂ ଉକ୍ତ ପତ୍ରିକାରେ ଅନ୍ୟକେହି ଲେଖୁନଥିବା ଦେଖି ବଡ ଦୁଃଖିତ ଥିଲେ । ଥରେ ସେ ରାଧାନାଥଙ୍କୁ ଡକାଇ କହିଲେ, 'ଦେଖ ! ଫକୀର ମୋହନ ଏକାକୀ ଲେଖୁଅଛି । ଆଉ ଜଣେ କେହି ଲେଖକ ବଢ଼ିଲେ ନାହିଁ, ତୁମ୍ଭେମାନେ ସବୁ କେହି ଲେଖୁନାହଁ ବଡ ଲଜ୍ଜାର କଥା ।' ମନସ୍ୱୀ ରାଧାନାଥ ତତ୍କ୍ଷଣରେ ଦୃଢ ପ୍ରତିଜ୍ଞ ହୋଇ ଆସି ଫକୀରମୋହନଙ୍କୁ ଦୈନିକ ସାନ୍ଧ୍ୟଭ୍ରମଣ ସମୟରେ ଏହା ଜଣାଇଲେ ଏବଂ କହିଲେ, 'ଦେଖ ! ଏଥର ମୁଁ ଲେଖିବି ଏବଂ ପତ୍ରିକା ପାଇଁ କେତେ ଲେଖକ ବାହାରିବେ ଏହା ସାହେବଙ୍କୁ ଦେଖାଇଦେବି ।' ତଦନୁସାରେ ରାଧାନାଥ କୁମାର ବୈକୁଣ୍ଠ ନାଥଙ୍କୁ ପ୍ରବର୍ତ୍ତାଇ ଉତ୍କଳ ଦର୍ପଣ ମାସିକ ପତ୍ର ସେହି ଉତ୍କଳ ପ୍ରେସ୍‌ରୁ ପ୍ରକାଶ କଲେ । (୨)

---

(୧) ଫକୀରମୋହନ ଆତ୍ମଚରିତ-ପୃ.୬୮ ।
(୨) ରାଧାନାଥ ଜୀବନୀ ପୃ ୪୮-୪୯ ।

ଉତ୍କଳ ଦର୍ପଣରେ ଆତ୍ମପ୍ରକାଶ ରାଧାନାଥଙ୍କର ଉଦ୍ୟୋଗରେ ଥିଲା । ବୈକୁଣ୍ଠନାଥ ଦେ ଏହାର ପରିଚାଳକ ଥିଲେ । ଏହା ଦୁଇବର୍ଷ ପରେ ପାକ୍ଷିକ ଓ ଚାରିବର୍ଷ ପରେ ସାପ୍ତାହିକ ପତ୍ରିକାରେ ପରିଣତ ହେଲା । ଏହି ଦୁଇବର୍ଷ ମଧ୍ୟରେ ଏଥିରେ ବହୁତ ନୂଆ ଲେଖକଙ୍କର ଲେଖା ପ୍ରକାଶ ପାଇଥିଲା । ମାତ୍ର ଏହି ନୂଆ ଲେଖକମାନେ ପ୍ରକୃତରେ ସଂଖ୍ୟାଧିକ ନଥିଲେ । ବିମ୍ସ୍ ସାହେବଙ୍କୁ ଅଧିକ ସଂଖ୍ୟକ ଲେଖକ ଦେଖାଇବାପାଇଁ ଏହି ପତ୍ରିକାରେ ଜଣେ ଲେଖକଙ୍କର ଏକାଧିକ ଲେଖା ପ୍ରକାଶ ପାଉଥିଲା । "ଲେଖକଙ୍କର ସଂଖ୍ୟାଧିକ୍ୟ କଥା ଜଣାଇବା ପାଇଁ ଜଣେ ଲେଖକଙ୍କର ନାନା ଭଙ୍ଗୀର ଲେଖା—ତହିଁରେ ବାହାରୁଥିଲା । ଅଥଚ ଲେଖାର ତଳେ ନାମସ୍ୱାକ୍ଷର ରହୁ ନ ଥାଏ ।", (୧) । ଏହି ଉକ୍ତିରୁ ରାଧାନାଥଙ୍କର ଉଦ୍ଦେଶ୍ୟ ସହଜରେ ଜଣାପଡେ । ବିମ୍ସ୍ ସାହେବ ଯେତେବେଳେ ଫକୀର ମୋହନଙ୍କର ଉଦ୍ୟମକୁ ପ୍ରଶଂସା କରି ରାଧାନାଥଙ୍କୁ ଲେଖିବାପାଇଁ କହିଲେ ସେତେବେଳେ ରାଧାନାଥ ବୋଧହୁଏ ଫକୀର ମୋହନଙ୍କର ପ୍ରଶଂସାବାଣୀକୁ ସହିପାରିନଥିଲେ । ତେଣୁ ସେ ବିମ୍ସ୍ ସାହେବଙ୍କୁ ଦେଖାଇବାକୁ ଚେଷ୍ଟା କରିଥିଲେ ଯେ ଫକୀରମୋହନ ଶତଚେଷ୍ଟାକରି ବୋଧଦାୟିନୀ ଓ ବାଲେଶ୍ୱର ସମ୍ବାଦବାହିକା ପାଇଁ ଲେଖକ ପାଇନ ପାରିବା ସ୍ଥଳେ ସେ ସହଜରେ ଉତ୍କଳ ଦର୍ପଣପାଇଁ ବହୁ ସଂଖ୍ୟକ ଲେଖକ ପାଇପାରିଥିଲେ । ମାତ୍ର ଜଣେ ଲେଖକଙ୍କର ବିଭିନ୍ନ ଭଙ୍ଗୀର ଲେଖା ପ୍ରକାଶ କରି ଲେଖକଙ୍କର ସଂଖ୍ୟାଧିକ୍ୟ ପ୍ରଦର୍ଶନ କରିବା ରୀତି ରାଧାନାଥଙ୍କ ପକ୍ଷରେ ନିଶ୍ଚୟ ଏକ ଗର୍ହିତ କାର୍ଯ୍ୟ ଏକଥା ଅସ୍ୱୀକାର କରିହେବ ନାହିଁ । ଯେ କୌଣସି କାର୍ଯ୍ୟରେ ଲକ୍ଷ୍ୟ ଏବଂ ପନ୍ଥା ଉଭୟ ମହତ ହେବା ଉଚିତ ।

ସାପ୍ତାହିକ ପତ୍ରିକା ରୂପେ ଏହା ୧୮୮୬ ସାଲ ଡିସେମ୍ବର ମାସ ପର୍ଯ୍ୟନ୍ତ ଚାଲି ବନ୍ଦ ହୋଇଯାଇଥିଲା । ସେତେବେଳକୁ ଇନ୍ଦ୍ରବଲ୍ଲଭ ଭଞ୍ଜଚାମୁଣ୍ଡ ଏହାର ସମ୍ପାଦକ ଥିଲେ । ଅଧ୍ୟାପକ ଡକ୍ଟର ନଟବର ସାମନ୍ତରାୟଙ୍କ ମତରେ "କ୍ଷତିହେବାରୁ ଏହା ବନ୍ଦ ହୋଇ ଯାଇଥିଲା" (୨) ସଂପୂର୍ଣ୍ଣ ଭାବରେ ସତ୍ୟବୋଲି ଗ୍ରହଣ କରାଯାଇ ନପାରେ । ସବୁ

(୧) ରାଧାନାଥ ଜୀବନୀ—ପୃ. ୪୯ ।

(୨) ଆଧୁନିକ ଓଡ଼ିଆ ସାହିତ୍ୟର ଭିତ୍ତିଭୂମି—ପୃ: ୧୪ ।

ଓଡ଼ିଆ ପତ୍ରିକା ଯେ କ୍ଷତିଗ୍ରସ୍ତ ହୋଇ ବନ୍ଦ୍ ହୋଇ ଯାଆନ୍ତି ଏପରି ଭାବିବାର କୌଣସି କାରଣ ନାହିଁ । ବୈକୁଣ୍ଠ ନାଥ ଦେଙ୍କ ପୃଷ୍ଠପୋଷକତା ଲାଭ କରି ଉତ୍କଳ ଦର୍ପଣ କେବଳ କ୍ଷତିଗ୍ରସ୍ତ ହେବାଯୋଗୁଁ ବନ୍ଦ୍ ହୋଇଥିବା ବିଶ୍ୱାସ ଯୋଗ୍ୟ ନୁହେଁ । ୧୮୮୬ ସାଲରେ ଜଗବନ୍ଧୁ ବାନାର୍ଜୀ ନାମକ କୌଣସି ଲେଖକ କେତେକ ସରକାରୀ ନୀତିର ତୀବ୍ର ପ୍ରତିବାଦ କରି ସରକାରୀ କାର୍ଯ୍ୟକଳାପର ଉଗ୍ର ସମାଲୋଚନାତ୍ମକ ଗୋଟିଏ ଲେଖା ଏହି ପତ୍ରିକାରେ ପ୍ରକାଶ କରାଇଥିଲେ । ଫଳରେ ଇଂରେଜ ସରକାରର ବକ୍ରଦୃଷ୍ଟିରେ ପଡ଼ି ପତ୍ରିକାଟି ବନ୍ଦ୍ ହୋଇଥିଲା । (୧) । ଉତ୍କଳ ଦର୍ପଣ ପତ୍ରିକାର ବନ୍ଦ୍ ହେବା ମୂଳରେ ଏହି କାରଣଟି ମୁଖ୍ୟକାରଣ ରୂପେ ବିଶ୍ୱାସ ଯୋଗ୍ୟ ।

୧୮୭୩ ସାଲରୁ ୧୮୭୪ ସାଲ ପର୍ଯ୍ୟନ୍ତ ସମୟ ମଧ୍ୟରେ ଉତ୍କଳ ଦର୍ପଣରେ ଯେଉଁ କେତେକ ଉଲ୍ଲେଖଯୋଗ୍ୟ ପ୍ରବନ୍ଧ, ପଦ୍ୟ ପ୍ରଭୃତି ପ୍ରକାଶ ପାଇଥିଲା ସେଗୁଡ଼ିକ ଏଠାରେ ଉଦ୍ଧାର କରାଯାଇପାରେ ।

ପ୍ରଥମବର୍ଷ ୧୮୭୩ସାଲ --ବିବେକୀ-(ରାଧାନାଥ ରାୟ) କାଳିଦାସ, ନିଶୀଥ ଚିନ୍ତା, କୁମାରସମ୍ଭବ, ଧନଞ୍ଜୟ ସିଂହ, ଶ୍ମଶାନ, ରଘୁବଂଶ-(୧୩ଶସର୍ଗ), ଚନ୍ଦ୍ର ଓ ତାରା, ହଣ୍ଟରଙ୍କ ଓଡ଼ିଶା ଇତିହାସର ସମାଲୋଚନା, ମେଘ ବୃତ୍ତ, ସ୍ତ୍ରୀ ଶିକ୍ଷା, ଇଚ୍ଛାର ସ୍ୱାଧୀନତା ଓ ଅର୍ଥ ଏବଂ ମୁଦ୍ରା ।

ଦ୍ୱିତୀୟ ବର୍ଷ-୧୮୭୪ ସାଲ—ଉଲ୍କାପିଣ୍ଡ-(ମଧୁସୂଦନ ରାଓ), ବୁଦ୍ଧଦେବ-( ମଧୁସୂଦନ ରାଓ ), ଚନ୍ଦ୍ରମଣ୍ଡଳ, ନୀତିଶିକ୍ଷା, ମନ୍ଦାକିନୀ, ଉତ୍କଳ ଭାଷା, ବାଇମହାନ୍ତି ପାଞ୍ଜି, ନାକ୍ଷତ୍ରିକ ଜଗତ୍, ବିଦ୍ୟାଧ୍ୟୟନର ସୁଫଳ, ପ୍ରଣୟର ଅଦ୍ଭୁତ ପରିଣାମ, ମନୋବିଜ୍ଞାନ, ଜ୍ୟୋତିଷ୍ ଓ ଇଟାଲୀୟ ଯୁବା ।

ଉତ୍କଳ ଦର୍ପଣରେ ଏହି ସମୟ ମଧ୍ୟରେ ପ୍ରକାଶ ପାଇଥିବା ପ୍ରବନ୍ଧ ଓ ପଦ୍ୟଗୁଡ଼ିକ ଭିନ୍ନ ଭିନ୍ନ ଲେଖକଙ୍କ ଦ୍ୱାରା ଲିଖିତ । ଫକୀର ମୋହନ, ମଧୁସୂଦନ ଓ ରାଧାନାଥଙ୍କୁ ଛାଡ଼ିଦେଲେ ଏହି ସମୟରେ ଆହୁରି ଅନେକ ଲେଖକ ସେମାନଙ୍କର ଲେଖନୀ ଚାଳନା କରିଥିଲେ ।

(୧) ରାଧାନାଥ ଜୀବନୀ-ପୃ.୪୯.

୧୮୮୫ ସାଲକୁ ଓଡ଼ିଆ ଆଧୁନିକ ସାହିତ୍ୟର ସୂତ୍ରସ୍ଥାପନାର ପ୍ରକୃଷ୍ଟ କାଳ ରୂପେ ଧରାଗଲେ ଏହି ସମୟ ମଧ୍ୟରେ ଆଧୁନିକ ଓଡ଼ିଆ ସାହିତ୍ୟର ଅନ୍ୟ କେତେକ ଉଲ୍ଲେଖଯୋଗ୍ୟ ସୃଷ୍ଟି ଆତ୍ମପ୍ରକାଶ କରିଥିବାର ଦେଖାଯାଏ । ୧୮୭୨ ସାଲରେ ଜଗମୋହନ ଲାଲଙ୍କର ବାବାଜୀ ନାଟକ ଲିଖିତ ହୋଇଥିଲା । ଏହାହିଁ ପ୍ରଥମ ଓଡ଼ିଆ ନାଟକ । ୧୮୮୦ ସାଲରେ ରାମଶଙ୍କର ରାୟଙ୍କର କାଞ୍ଚିକାବେରୀ ନାଟକ ପ୍ରକାଶ ପାଇଥିଲା । ୧୮୮୦ ସାଲରେ ଫକୀର ମୋହନଙ୍କର ରାମାୟଣ ବାଳକାଣ୍ଡର ଅନୁବାଦ ପ୍ରକାଶ ପାଇଥିଲା । ୧୮୮୦-୮୧ ସାଲରେ ମଧୁସୂଦନଙ୍କର ଛନ୍ଦମାଳା ପ୍ରଥମଭାଗ ପ୍ରକାଶ ପାଇଥିଲା । ୧୮୮୨ ସାଲରେ ରାମଶଙ୍କର ରାୟଙ୍କର ବନବାଳା ପ୍ରକାଶିତ ହୋଇଥିଲା ।

୧୮୮୩ ସାଲରେ ସୁଚଳଦେବଙ୍କ ପୃଷ୍ଠପୋଷକତାରେ "ସଂସ୍କାରକ ଓ ସେବକ" ର ପ୍ରକାଶ ଫଳରେ ବହୁ ଲେଖକଙ୍କର ରଚନା ପ୍ରକାଶ ପାଇଥିଲା । ଏହି ଲେଖକମାନଙ୍କ ମଧ୍ୟରେ ରାଧାନାଥ, ମଧୁସୂଦନ, ଫକୀରମୋହନ, ଚନ୍ଦ୍ରମୋହନ ମହାରଣା, ବିଶ୍ୱନାଥ କର, ନୀଳମଣି ବିଦ୍ୟାରତ୍ନ ପ୍ରମୁଖ ପ୍ରଧାନ । ୧୮୮୫ ସାଲରେ "ପ୍ରଦୀପ"ମାସିକ ପତ୍ରିକା ପ୍ରକାଶ ପାଇଥିଲା କଟକରୁ । ମଧୁସୂଦନଙ୍କର "ଆକାଶପ୍ରତି" ଏଥିରେ ପ୍ରକାଶ ପାଇଥିଲା ।

ଊନବିଂଶ ଶତାବ୍ଦୀର ପତ୍ରପତ୍ରିକାର ଅଭ୍ୟୁଦୟ ଆଧୁନିକ ଓଡ଼ିଆ ସାହିତ୍ୟର ଜନ୍ମଇତିହାସରେ ଏକ ଗୁରୁତ୍ୱପୂର୍ଣ୍ଣ ଭୂମିକା ଗ୍ରହଣ କରିଥିଲା । ଆଧୁନିକ ଓଡ଼ିଆ ସାହିତ୍ୟ ସୃଷ୍ଟି ଓ ପ୍ରଚାର ପତ୍ରପତ୍ରିକା ମାଧ୍ୟମରେ ହିଁ ସମ୍ଭବ ହୋଇଥିଲା ।

ଓଡ଼ିଆ ସାହିତ୍ୟରେ ଆଧୁନିକ ଯୁଗରେ ଆଉ ଗୋଟିଏ ବିଶେଷତ୍ୱ ପରିଲକ୍ଷିତ ହୋଇଥିଲା । ତାହା ହେଉଛି ଗଦ୍ୟସାହିତ୍ୟର ବ୍ୟାପକତା । ପ୍ରାଚୀନ ଓ ମଧ୍ୟଯୁଗୀୟ ଓଡ଼ିଆ ସାହିତ୍ୟରେ ପଦ୍ୟସାହିତ୍ୟର ବହୁଳତା ତଥା ପ୍ରାଧାନ୍ୟ ସ୍ୱୀକୃତ । ସାହିତ୍ୟ କହିଲେ ସତେ ଯେପରି କେବଳ କାବ୍ୟକବିତାକୁ ବୁଝାଉଥିଲା । ମାତ୍ର ଆଧୁନିକ ଯୁଗରେ ଗଦ୍ୟସାହିତ୍ୟର ଆତ୍ମପ୍ରକାଶ ବିଶେଷ ଉଲ୍ଲେଖଯୋଗ୍ୟ । ଊନବିଂଶ ଶତାବ୍ଦୀର ଦ୍ୱିତୀୟାର୍ଦ୍ଧରେ ପତ୍ରପତ୍ରିକାର ପ୍ରକାଶ ଯୋଗୁ ରାଧାନାଥ, ମଧୁସୂଦନ, ଫକୀରମୋହନ, ବିଶ୍ୱନାଥ କର,

ଗୌରୀଶଙ୍କର, ରାମଶଙ୍କର, ପ୍ୟାରୀମୋହନ, ମାଧବମଣି ବନ୍ଦ୍ୟୋପାଧ୍ୟାୟ, ଚତୁର୍ଭୁଜ ପଟ୍ଟନାୟକ ପ୍ରଭୃତି ବହୁ ଲେଖକଙ୍କର ପ୍ରବନ୍ଧ ଓ ଗଦ୍ୟରଚନା ଓଡ଼ିଆ ସାହିତ୍ୟକୁ ସମୃଦ୍ଧ କରିଥିଲା । ଗଦ୍ୟସାହିତ୍ୟର ପ୍ରାଧାନ୍ୟ ସୂଚିତ ହେବାରୁ ପ୍ରଥମ ଓଡ଼ିଆ ନାଟକ ବାବାଜୀ, ରାମଶଙ୍କରଙ୍କର କାଞ୍ଚିକାବେରୀ ନାଟକ, ଉପନ୍ୟାସ, ପ୍ରଥମ ଓଡ଼ିଆ ଉପନ୍ୟାସ ପଦ୍ମମାଳୀ, ଗୋପାଳ ବଲ୍ଲଭଦାସଙ୍କର ଉପନ୍ୟାସ ଭୀମାଭୂୟାଁ, ଫକୀରମୋହନଙ୍କର ଉପନ୍ୟାସ ଓ ଗଳ୍ପ ପ୍ରଭୃତି ସୃଷ୍ଟି ହୋଇ ଓଡ଼ିଆ ସାହିତ୍ୟରେ ଗଦ୍ୟର ପ୍ରାଧାନ୍ୟ ପ୍ରକାଶ କରିଥିଲା । ଆଧୁନିକ ଓଡ଼ିଆ ସାହିତ୍ୟର ମୁଖ୍ୟ ବିଭବହିଁ ଗଦ୍ୟସାହିତ୍ୟ ।

**ବିବେକୀ—**

୧୮୭୭ ସାଲରେ ଉତ୍କଳଦର୍ପଣରେ ରାଧାନାଥଙ୍କର "ବିବେକୀ" ପ୍ରବନ୍ଧ ପ୍ରକାଶିତ ହୋଇଥିଲା । ଏହାହିଁ ଆଧୁନିକ ଓଡ଼ିଆ ସାହିତ୍ୟର ପ୍ରଥମ ପ୍ରବନ୍ଧ । ରାଧାନାଥ ବିବେକୀ ରଚନା କରିବା ପୂର୍ବରୁ ୧୮୬୮ ସାଲରେ ବଙ୍ଗଳା କବିତାବଳୀର ପ୍ରଥମ ଭାଗ ଓ ୧୮୭୦ ସାଲରେ ବଙ୍ଗଳା କବିତାବଳୀର ଦ୍ୱିତୀୟଭାଗ ରଚନା କରିସାରିଥିଲେ । ଓଡ଼ିଆ ଭାଷା ଓ ସାହିତ୍ୟର ଦୁର୍ଦ୍ଦିନରେ ଯେତେବେଳେ ଫକୀର ମୋହନ ଓଡ଼ିଆ ଭାଷାକୁ ବଞ୍ଚାଇ ରଖିବାପାଇଁ ପ୍ରାଣପଣେ ଉଦ୍ୟମ ଚଳାଇଥିଲେ ସେତେବେଳେ ରାଧାନାଥ କେବଳ ନୀରବତା ଅବଲମ୍ବନ କରିଥିଲେ । ଓଡ଼ିଆଭାଷା ଓ ସାହିତ୍ୟକୁ ପଡ଼ୋଶୀ ପ୍ରଦେଶର ରାଜକର୍ମଚାରୀମାନଙ୍କର ହୀନ ଚକ୍ରାନ୍ତରୁ ରକ୍ଷାକରିବା ପାଇଁ କୌଣସି କାର୍ଯ୍ୟପନ୍ଥା ଗ୍ରହଣ କରିବା ପରିବର୍ତ୍ତେ ରାଧାନାଥ ବଙ୍ଗଳାଭାଷାରେ କବିତା ରଚନାରେ ଲାଗି ପଡ଼ିଥିଲେ । ମାତ୍ର ସମୟର ଗତିରେ ଦୁଇଜଣ ବିଶିଷ୍ଟ ବ୍ୟକ୍ତିଙ୍କର ପ୍ରରୋଚନା ତାଙ୍କୁ ଓଡ଼ିଆ ଭାଷାରେ ଲେଖିନୀ ଚାଳନା କରିବାପାଇଁ ପ୍ରେରଣା ପ୍ରଦାନ କରିଥିଲା । ଏହି ଦୁଇଜଣ ବିଶିଷ୍ଟବ୍ୟକ୍ତି ହୋଇଛନ୍ତି ଜନ୍ ବିମ୍ସ୍ ଓ ଭୂଦେବ ମୁଖୋପାଧ୍ୟାୟ ।

ରାଧାନାଥଙ୍କ ସଂପର୍କରେ ଭୂଦେବ ମୁଖୋପାଧ୍ୟାୟଙ୍କ ବିଷୟ ପ୍ରସଙ୍ଗ କ୍ରମରେ ଆଲୋଚିତ ହେବ । ମାତ୍ର ଏଠାରେ ଜନ୍ ବିମ୍ସ୍ଙ୍କ କଥା ଉଲ୍ଲେଖଯୋଗ୍ୟ । ଜନ୍ ବିମ୍ସ୍ ବୋଧଦାୟିନୀ ଓ ବାଲେଶ୍ୱର ସମ୍ବାଦବାହିକା ବିଷୟରେ ଫକୀରମୋହନଙ୍କ କଥା କହି ରାଧାନାଥଙ୍କୁ

ଓଡ଼ିଆରେ ନଲେଖିବାର କାରଣ ପ୍ରଶ୍ନ କରିଥିଲେ । ରାଧାନାଥ ବାବୁଙ୍କର ଏହି ଉକ୍ତିରେ ପ୍ରତିବାଦିତ ହୋଇ ଉତ୍କଳଦର୍ପଣ ପତ୍ରିକା ପ୍ରକାଶ ଲାଗି ଉଦ୍ୟୋଗ କରିଥିଲେ ଓ ଉତ୍କଳ ଦର୍ପଣରେ ଓଡ଼ିଆ ଭାଷାରେ ଲେଖା ଆରମ୍ଭ କରିଥିଲେ । ବିପ୍ ପାଦେବ ରାଧାନାଥଙ୍କୁ ଏପରି ଭାବରେ ଆକ୍ଷେପ କରି ନଥିଲେ ରାଧାନାଥଙ୍କ ଲେଖଣୀରୁ ଓଡ଼ିଆ ରଚନା କେବେ ଯେ ଜନ୍ମ ନେଇଥାଆନ୍ତା ତାହା ମଧ୍ୟ ଠିକ୍ ଭାବରେ କହିହେବ ନାହିଁ । ଯେ ଯାହା ହେଉ, ଉତ୍କଳ ଦର୍ପଣରେ ରାଧାନାଥଙ୍କର ବିବେକୀ ୧୮୭୩ ସାଲରେ ଆଦ୍ୟ ପ୍ରକାଶ କରିଥିଲା ।

ଏହା ଏକ ଦୀର୍ଘ କଳେବର ବିଶିଷ୍ଟ ରଚନା । ରାଧାନାଥ ଅତ୍ୟନ୍ତ ପ୍ରାଞ୍ଜଳ ଭାବରେ ବିଷୟବସ୍ତୁକୁ ବର୍ଣ୍ଣନା କରିଅଛନ୍ତି । ପ୍ରବନ୍ଧର ଉପକ୍ରମ ଅତ୍ୟନ୍ତ ଦୀର୍ଘ । ଲେଖକଙ୍କ ମତରେ, ସଂସାରରେ ମନୁଷ୍ୟଜୀବନ ଦୁଃଖ କଷ୍ଟ, ରୋଗ, ଶୋକରେ ପୂର୍ଣ୍ଣ । ଜଗତରେ ପ୍ରତି ମୁହୂର୍ତ୍ତରେ ଅଘଟନ ଘଟି ଚାଲିଛି । ଏହି ଅଘଟନକୁ ଲେଖକ ଝଟିକାରୂପେ ଗ୍ରହଣ କରି ଅଛନ୍ତି । ଏହି ଝଟିକା ଭୌତିକ ଏବଂ ଆଧ୍ୟାତ୍ମିକ ଉଭୟ ଜଗତରେ ପରିବ୍ୟାପ୍ତ । ଏହି ଉଭୟ ଝଟିକାରୁ ଆମ୍ଭମାନଙ୍କୁ ଉପଦେଶାତ୍ମକ ଗ୍ରନ୍ଥରାଜି ରକ୍ଷା କରିଥାଆନ୍ତି । ସଂସାରରେ ଚଳିବାକୁ ହେଲେ ଅନୁଭୂତିର ଆବଶ୍ୟକତାହିଁ ପ୍ରଧାନ । ନୀତି ନିୟମ ମାନି ଯେ କୌଣସି ଲୋକ କିଛି କାଳ ଜୀବନଯାତ୍ରା ନିର୍ବାହ କରେ । ମାତ୍ର ଜଗତର ଜଟିଳତାରେ ବେଳେବେଳେ ସେ ନୀତିଭ୍ରଷ୍ଟ ହୁଏ । ତେଣୁ ସେ ବାରମ୍ବାର ଆଘାତ ପାଇଲେ ଅନୁଭୂତି ଫଳରେ ନିଜକୁ ସଂଶୋଧନ କରି ଚଳାଇଥାଏ । ବିପଦ ମନୁଷ୍ୟକୁ ବହୁଭାବରେ ସଂସାରରେ ଯନ୍ତ୍ରଣା ଦେଇଥାଏ । ମାତ୍ର ଲେଖକ ବିପଦକୁ ମନୁଷ୍ୟର ଉପକାରକ ବୋଲି ପ୍ରକାଶ କରି ଅଛନ୍ତି । କାରଣ ବିପଦରେ ପଡ଼ିଲେ ମନୁଷ୍ୟ ଜ୍ଞାନ ଶିକ୍ଷା କରିଥାଏ । ଜ୍ଞାନୀଲୋକ ସର୍ବଦା ନମ୍ର ରହିଥାଏ । କ୍ରୋଧ ମନୁଷ୍ୟକୁ ଦୁର୍ବଳ କରିଦିଏ । କୋମଳମନା ବ୍ୟକ୍ତିମାନେ ଅଳ୍ପ କଥାରେ ଭାଙ୍ଗିପଡ଼ନ୍ତି । ମାତ୍ର ଏପରି ଭାଙ୍ଗି ନପଡ଼ି ଧୈର୍ଯ୍ୟଧରି କାର୍ଯ୍ୟ କ୍ଷେତ୍ରରେ ଅଗ୍ରସର ହେବାପାଇଁ ଲେଖକ ଉପଦେଶ ପ୍ରଦାନ କରିଅଛନ୍ତି ।

ପରନିନ୍ଦା ଅନେକ ଲୋକଙ୍କୁ ଭଲ ଲାଗେ । ତେଣୁ ସେମାନେ ନିଜକୁ ସନ୍ତୁଷ୍ଟ କରିବା ପାଇଁ ପରର ନିନ୍ଦାଗାନ କରିଥାଆନ୍ତି । କର୍ମ କ୍ଷେତ୍ରରେ ଅଗ୍ରସର ହେବା ସମୟରେ ପ୍ରତ୍ୟେକ ବ୍ୟକ୍ତିକୁ ଗଞ୍ଜଣା

ସହିବାକୁ ପଡ଼ିବ । ପୁଣି, ଯେଉଁମାନେ ଉପେକ୍ଷିତ ହୁଅନ୍ତି
ସେମାନେ ନିଜକୁ ସାନ୍ତ୍ୱନା ଦେବାପାଇଁ ବିଭିନ୍ନ ଉପାୟ
ରଚନ୍ତି । ଅନ୍ୟାୟ ଲିପ୍ସାକୁ ଦମନ କରିବାକୁ ପଡ଼ିବ । ତା
ନହେଲେ କୌଣସି ବସ୍ତୁକୁ ଲଭ କରିବାପାଇଁ ଇଚ୍ଛାକରି ନପାଇଲେ
ମନୁଷ୍ୟକୁ ଦୁଃଖଭୋଗ କରିବାକୁ ପଡ଼େ । ଯେଉଁମାନେ ସବୁବେଳେ
ନ୍ୟାଯ୍ୟ ପାଇବାପାଇଁ ପ୍ରାର୍ଥନା କରନ୍ତି ସେମାନେ ଭୁଲ୍ କରନ୍ତି । ସମସ୍ତେ
ଯେ ସମାନ ପରିମାଣରେ ନ୍ୟାଯ୍ୟ ପାଇପାରିବେ ଏପରି କୌଣସି କାରଣ
ନାହିଁ । କେତେକ ଉଚ୍ଚମନା ଲୋକ ସେମାନଙ୍କ କାର୍ଯ୍ୟରେ ସବୁବେଳେ
ସନ୍ତୁଷ୍ଟ ହୁଅନ୍ତି ନାହିଁ । ସେମାନେ ଆଶା କରିଥାଆନ୍ତି ବହୁତ ବେଶୀ—
ସେମାନଙ୍କ ଆଶା ଅନୁସାରେ ସେମାନେ କାର୍ଯ୍ୟକରି ନପାରି ଦୁଃଖିତ
ହୁଅନ୍ତି । ମନକୁ ଶାନ୍ତ କରିବାପାଇଁ ସଙ୍ଗୀତ ପ୍ରଭୃତି କଳାରେ ମନୋ-
ନିବେଶ କରିବା ବିଧେୟ । କୌଣସି ବସ୍ତୁକୁ ଲଭ କରି ମନୁଷ୍ୟ ତହିଁରୁ
ଅଶେଷ ଆନନ୍ଦ ପାଇବାକୁ ଭାବିଥାଏ । ମାତ୍ର ତା ନହେଲେ ସେ ଦୁଃଖ
ପାଏ ।

ବିପଦ ମନୁଷ୍ୟକୁ ସବୁକ୍ଷେତ୍ରରେ ଶିକ୍ଷାଦାନ କରିଥାଏ । ବିପଦ
ନ ଆସିଲେ ମନୁଷ୍ୟ ସଂସାରରୁ ଶିକ୍ଷା କରିବ କଣ ? ସେଥିପାଇଁ
କେତେକ ଉଚ୍ଚମନା ବ୍ୟକ୍ତି ଜାଣି ଜାଣି ବିପଦ ବରଣ କରି ତହିଁରୁ
ଧୈର୍ଯ୍ୟ ଶିକ୍ଷା କରି ଥାଆନ୍ତି । ସମୟ ଆସିଲେ ମନୁଷ୍ୟ ତାରି ଶିକ୍ଷଣୀୟ
ବିଷୟ ପାଇଯିବ—ଏହି ମତରେ ଅପେକ୍ଷା କରି ବସିବା କେବେହେଲେ
ଉଚିତ ନୁହେଁ । ଏପରି ଭାବରେ ଅପେକ୍ଷା କରି ବସିଲେ ମନୁଷ୍ୟ
ଶେଷରେ ସ୍ଥବିର ହୋଇଯାଏ । ଅନେକ ବିଷୟ ଶିକ୍ଷା କରିବାକୁ ସମୟ
ଲାଗେ । ତଥାପି ଧୈର୍ଯ୍ୟଧରି ସେଗୁଡ଼ିକୁ ଶିକ୍ଷା କରିବା ବିଧେୟ ।
ଯେଉଁମାନେ ମନର ସମଧିକ ଉତ୍କର୍ଷ ସାଧନ କରିନାହାନ୍ତି ସେମାନଙ୍କ
ଦୋଷ ଦେଖାଇଦେଲେ ସେମାନେ କୁପିତ ହୋଇଥାଆନ୍ତି ।

ମନୁଷ୍ୟ ନିଜକୁ ଯେତେବଡ଼ ଭାବେ ପ୍ରକୃତରେ ସେ ସେତେ ବଡ଼
ନୁହେଁ । ମନୁଷ୍ୟ ନିଜର ବିବେଚନାରେ ନିଜକୁ ବଡ଼ ମନେକରେ ସିନା,
ମାତ୍ର ଅନ୍ୟମାନଙ୍କ ଦୃଷ୍ଟିରେ ସେ ସାଧାରଣ । ତେଣୁ ନିଜକୁ ସବୁବେଳେ
ଲଘୁ ମନେ କରିବା ଉଚିତ । ଏହାଦ୍ୱାରା ଶୁଦ୍ରଗମ୍ଭନ୍ୟତା ପ୍ରକାଶପାଏ ।
ଅନେକ ଲୋକ ଅଛନ୍ତି, ଯେଉଁମାନେ କେବଳ ଶୁଦ୍ରଗମ୍ଭନ୍ୟତା ପ୍ରଦର୍ଶନ

କରିବା ଉଦ୍ଦେଶ୍ୟରେ ନିତାନ୍ତ ଛଳନା ପ୍ରଦର୍ଶନ କରନ୍ତି । ସେହି ଲୋକମାନଙ୍କର ଛଳନାର ରୂପାନ୍ତର ବା ଅହଙ୍କାରର ରୂପାନ୍ତର ବୋଲି ବୁଝିବାକୁ ହେବ । ଶୁଭାଗମ୍ଭନ୍ୟତା ପ୍ରଦର୍ଶନ କରିବା ଉଦ୍ଦେଶ୍ୟରେ ଲୋକମାନଙ୍କର ବିଭିନ୍ନ ପ୍ରକାର ଗୃହ ବିଷୟ ଲେଖକ ବର୍ଣ୍ଣନା କରିଅଛନ୍ତି । କୌଣସି ଲୋକର ଶୁଭାଗମ୍ଭନ୍ୟତା ପରୀକ୍ଷା କରିବା ନିମନ୍ତେ ବହୁ ପଥ ରହିଅଛି ।

ସ୍ତ୍ରୀଲୋକମାନେ ଓ ଗାୟକମାନେ ବିଶେଷଭାବରେ ଶୁଭାଗମ୍ଭନ୍ୟ ବୋଲି ଜଣାଯାଆନ୍ତି । ଧର୍ମ ବିଷୟରେ ଅଯଥା ଆଲୋଚନା କରିବା ସମୟରେ ଲୋକମାନଙ୍କର ଶୁଭାଗମ୍ଭନ୍ୟତା କେତେକ ପରି-ମାଣରେ ପ୍ରକାଶ ପାଇଥାଏ । ଆତ୍ମଲାଘବ ଶିକ୍ଷାକରିବା ସମସ୍ତଙ୍କ ପକ୍ଷେ । ନିଜର ପ୍ରଶଂସା ନଶୁଣିଲେ ଯେଉଁମାନେ ଅଧୀର ହୋଇପଡନ୍ତି ସେମାନଙ୍କର ଆତ୍ମଲାଘବ ଶିକ୍ଷା କରିବା ଉଚିତ । କୌଣସି କୌଣସି ଲେଖକ ନିଜ ଲେଖାର ପ୍ରତିକୂଳ ସମାଲୋଚନା ଶ୍ରବଣ କଲମାତ୍ରେ ଅସ୍ଥିର ହୋଇପଡନ୍ତି । ଏପରି ଅସ୍ଥିର ହେବା ଏକାନ୍ତ ଅଶୋଭନୀୟ । ଯେଉଁ-ମାନେ ଅନ୍ୟକୁ ସବୁବେଳେ ତୁଚ୍ଛ ମନେକରନ୍ତି ସେମାନଙ୍କ ସହିତ ସମ୍ପର୍କ ରଖିବା ଅନୁଚିତ । କାରଣ ସେମାନଙ୍କ ତୁଚ୍ଛଜ୍ଞାନ ଫଳରେ ଅନ୍ୟର ହୃଦୟରେ ନୈରାଶ୍ୟ ଜାତ ହୋଇ ଶେଷରେ ସେ ପ୍ରକୃତରେ ନିତାନ୍ତ ତୁଚ୍ଛରେ ପରିଣତ ହୋଇଥାଏ । ଅନ୍ୟପକ୍ଷରେ, ଲୋକର ଯେତିକି ସାମାନ୍ୟ ଗୁଣ ଥିବ ସେ ଗୁଣର ପ୍ରଶଂସା କରିବା ଉଚିତ । ତାହାହେଲେ ଲୋକଟିର ଭଲଗୁଣ ଆସ୍ତେ ଆସ୍ତେ ବଢିଯାଏ । ତେଣୁ କୌଣସି ଲୋକକୁ ଭଲ କରିବାକୁ ହେଲେ ସେହି ଲୋକକୁ ସେହିପରି ପ୍ରଶଂସା କରିବା ଉଚିତ ।

ପରନିନ୍ଦାରେ ବିଚଳିତ ହେବା ଆଦୌ ଉଚିତ ନୁହେଁ । ପରନିନ୍ଦା ଅନେକ ସମୟରେ ରୁଚି ଉପରେ ନିର୍ଭରଶୀଳ । କାହାକୁ କେଉଁ କବିଙ୍କର ରଚନା ଭଲଲାଗେ ତାହା ରୁଚି ସାପେକ୍ଷ । ଯେଉଁଲୋକ ଅନ୍ୟକୁ ମନ୍ଦବୋଲି ଜ୍ଞାନକରେ ତା ପ୍ରତି ଅନ୍ୟଲୋକଟି ଶତ୍ରୁଭାବ ପୋଷଣ ନ କରି ତା ମନରୁ ସେ ଭାବକୁ ଦୂର କରିବାଲାଗି ତତ୍ପର ହେବା ଉଚିତ । ମନୁଷ୍ୟର କେତେକମାତ୍ର ବ୍ୟବହାର ତାର ପୂର୍ଣ୍ଣ ପରିଚୟ ଜ୍ଞାପକ ନୁହେଁ । ମନୁଷ୍ୟକୁ ସମ୍ପୂର୍ଣ୍ଣରୂପେ ଜାଣିବାକୁ

ତେହେଲେ ତାର ପ୍ରତ୍ୟେକ କାର୍ଯ୍ୟକୁ ପରୀକ୍ଷା କରିଦେଖିବାକୁ ହେବ । କୌଣସି ଲୋକ ଯେବେ ନିର୍ବୋଧ, ଆଳସ୍ୟ ପରାୟଣ ବା ଅସାବଧାନ ହୁଏ ତାହାହେଲେ ତା ଉପରେ କ୍ରୁଦ୍ଧ ହେବା ଆଦୌ ଉଚିତ ନୁହେଁ । ଅନ୍ୟର ସ୍ୱଭାବ ଦେଖି ତା ଉପରେ କ୍ରୁଦ୍ଧ ହେବା ଫଳରେ ନିଜର କ୍ଷତି ହୁଏ । କୌଣସି ବଡଲୋକ ନିକଟରୁ ଅସମାନ ବ୍ୟବହାର ପାଇ କୌଣସି ଲୋକ ବିଚଳିତ ହେବା ଉଚିତ ନୁହେଁ । ଧନ, ପ୍ରତିପତ୍ତି ଏବଂ ମର୍ଯ୍ୟାଦାର ମାପକାଠିରେ ଏହା ଘଟିଥାଏ ।

ଅପରିପକ୍ୱତା ବିଷୟରେ ଲେଖକ ଆଲୋଚନା କରିବାକୁ ଯାଇ ଶାରୀରିକ, ମାନସିକ, ନୈତିକ ଓ ରୈତିକ ଅପରିପକ୍ୱତା ବିଷୟରେ ସୂଚନା ପ୍ରଦାନ କରିଅଛନ୍ତି । ଶାରୀରିକ ଅପରିପକ୍ୱତା ବିଷୟକୁ ଲେଖକ ପରିହାର କରିଅଛନ୍ତି । ମାନସିକ ଅପରିପକ୍ୱତା ବିଷୟରେ ପ୍ରାଞ୍ଜଳ ଆଲୋଚନା କରି ଲେଖକ ଅଳ୍ପବୟସ୍କର ମାନସିକ ଅପରିପକ୍ୱତା ବିଷୟରେ ଉଦାହରଣ ଦେଇଅଛନ୍ତି । ମାନସିକ ଅପରିପକ୍ୱତାର ବୃଦ୍ଧିବାଧ କାରଣ ମଧ୍ୟ ଲେଖକ ନିର୍ଦ୍ଦେଶ କରିଅଛନ୍ତି । ଅନୁଭୂତ ନଥିଲେ କେବଳ ପୁସ୍ତକପଠନ ଜ୍ଞାନରେ ମନୁଷ୍ୟର ମାନସିକ ପରିପକ୍ୱତା ଆସେ ନାହିଁ । ମାନସିକ ପରିପକ୍ୱତା କେବଳ ବୟସ ଉପରେ ମଧ୍ୟ ନିର୍ଭରଶୀଳ ନୁହେଁ ।

ବୋଝବୋହିବା ବିଷୟରେ ଲେଖକ ମତପ୍ରଦାନ କରିଅଛନ୍ତି ଯେ ମନୁଷ୍ୟ ହେଉ ବା ପଶୁହେଉ ତାର ଶକ୍ତି ଅନୁଯାୟୀ ବୋଝର ଭାର ଅଧିକ ହେଲେ ସେ ଅଗ୍ରସର ହୋଇପାରେ ନାହିଁ । ମନୁଷ୍ୟର ମନୋରାଜ୍ୟରେ ଯଦି ସେହିପରି ଅଧିକ ବୋଝର ଭାରଥାଏ ତାହାହେଲେ ତାର ମାନସିକ ବିକାଶ ଘଟିବା ଅସମ୍ଭବ ହୋଇପଡେ । ଲେଖକଙ୍କ ମତରେ, "ଭଗ୍ନମନସ୍କତା ଜୀବନର ଗୋଟିଏ ମହାଭାରୀ ବୋଝ । ପୂର୍ବ-କାଳରେ ଏ ବୋଝ ଅନେକ ଲୋକେ ବହୁ ନଥିଲେ । ବର୍ତ୍ତମାନ ଅନେକ ଲୋକଙ୍କୁ ବହିବାକୁ ହୁଏ । ଯେମାନେ ଶିକ୍ଷିତ ଅଟନ୍ତି, ଯେମାନେ ଶାରୀରିକ ଶ୍ରମଠାରୁ ମାନସିକ ଶ୍ରମରେ ଅଧିକ ରତ, ସେମାନେ ବହୁତରେ ହେଉ ଅବା ଅଳ୍ପରେ ହେଉ ଏ ବୋଝ ବହନ୍ତି ।" ଏଥିଲାଗି ମନୁଷ୍ୟର ମନରେ ଅନ୍ଧକାର ଭରି ରହିଥାଏ । ତେଣୁ ସେ ସହଜରେ କାର୍ଯ୍ୟପନ୍ଥା ଗ୍ରହଣ କରିପାରେ ନାହିଁ । ମନରେ ପ୍ରଫୁଲ୍ଲତା ନଥିଲେ ମନୁଷ୍ୟର ଜୀବନ ବିଡମ୍ବନାରେ ପରିଣତ ହୁଏ ।

ଦୀର୍ଘ ୩୭ ପୃଷ୍ଠା ବ୍ୟାପୀ ଏହି ପ୍ରବନ୍ଧରେ ଲେଖକ ବହୁ ଉଦାହରଣ ଦେଇ ଅତ୍ୟନ୍ତ ପ୍ରାଞ୍ଜଳ ଭାବରେ ବିଷୟଟିକୁ ବର୍ଣ୍ଣନା କରିଅଛନ୍ତି । ପ୍ରବନ୍ଧଟିର ବର୍ଣ୍ଣନା ଶୈଳୀ ସ୍ୱଚ୍ଛ ହେଲେହେଁ ରାଧାନାଥଙ୍କ ଗଦ୍ୟଶୈଳୀକୁ ପ୍ରଶଂସା କରିବାର କୌଣସି କାରଣ ନାହିଁ । ରାଧାନାଥଙ୍କର ଗଦ୍ୟଶୈଳୀ ଯେପରି ଭାବରେ ଏହି ପ୍ରବନ୍ଧରେ ପ୍ରକାଶ ପାଇଅଛି ତାହା ତାଙ୍କର ଓଡ଼ିଆ ଗଦ୍ୟରଚନାରେ ଅନଭ୍ୟସ୍ତତାର ସୂଚନା ପ୍ରଦାନ କରିଅଛି । ଊନବିଂଶ ଶତାବ୍ଦୀର ଦ୍ୱିତୀୟାର୍ଦ୍ଧରେ ଓଡ଼ିଆ ଗଦ୍ୟଶୈଳୀ ବିଦେଶୀ ଓ ପଡ଼ୋଶୀ ପ୍ରଦେଶର ଲୋକମାନଙ୍କ ହାତରେ ଯେପରି ବିକୃତ ରୂପ ଗ୍ରହଣ କରିଥିଲା ତାହା ସୁବିଦିତ । ରାଧାନାଥଙ୍କର ଏହି ଗଦ୍ୟଶୈଳୀକୁ ଦେଖିଲେ ମନେହୁଏ, ସେ ଓଡ଼ିଆ ଭାଷା ଓ ସାହିତ୍ୟରେ ଥିବା ଗଦ୍ୟଶୈଳୀକୁ ତାଙ୍କର ଆଦର୍ଶ ରୂପେ ଗ୍ରହଣ ନକରି ସେହି ଯେପରି ସେହି ବିକୃତ ଶୈଳୀକୁ ସଂସ୍କାର କରିବାର ପ୍ରୟାସ କରି-ଅଛନ୍ତି । 'ମାଦଳାପାଞ୍ଜି' ବା ଚତୁରବିନୋଦର ଗଦ୍ୟଶୈଳୀକୁ ରାଧାନାଥ ଜାଣିଜାଣି ଗ୍ରହଣ କରିନାହାନ୍ତି । ଏହାର କାରଣରୂପେ ଏତିକି କୁହାଯାଇପାରେ ଯେ, ରାଧାନାଥ ପ୍ରାଚୀନ ଓଡ଼ିଆ ସାହିତ୍ୟରେ ପାଣ୍ଡିତ୍ୟ-ଲାଭ କରି ନିଜକୁ ଯେତେ ପରିମାଣରେ ଓଡ଼ିଆ ରୂପେ ପରିଚିତ କରାଇ-ଅଛନ୍ତି ପ୍ରକୃତ ପକ୍ଷରେ ତାଙ୍କଠାରେ ସେତେ ପରିମାଣରେ ଓଡ଼ିଆତ୍ୱ ନଥିଲା । ପୁଣି ଏ ବିଷୟରେ ଆଉ ଗୋଟିଏ କଥା ଭୁଲିଗଲେ ଚଳିବ ନାହିଁ ଯେ, ରାଧାନାଥ ପାଠପଢ଼ିଥିଲେ ଇଂରେଜୀ ମାଧ୍ୟମରେ—ବଙ୍ଗଳା କାବ୍ୟ କବିତାର ପ୍ରଭାବ ତାଙ୍କ ଉପରେ ଯଥେଷ୍ଟ ଥିଲା—ପରିବାର ମଧ୍ୟରେ ବଙ୍ଗଳାଭାଷାର ବ୍ୟବହାର ଫଳରେ ଓଡ଼ିଆ ଭାଷା ସହିତ ତାଙ୍କର ଯେଉଁଭଳି ନିବିଡ଼ ସମ୍ପର୍କ ରହିବାର କଥା ତାହା ରହିପାରି ନାହିଁ । ଏପରି ଅବସ୍ଥାରେ ଓଡ଼ିଆ ଭାଷାରେ ଦକ୍ଷତାଲାଭ କରିବା ତାଙ୍କ ପକ୍ଷରେ ସମ୍ଭବ ନଥିଲା । ତେଣୁ ତାଙ୍କର ପ୍ରାଥମିକ ଜୀବନର ସାହିତ୍ୟସୃଷ୍ଟି ସମୟରେ "ବିବେକୀ" ରେ ସେ ଏକ କିମ୍ଭୂତକିମାକାର ଓଡ଼ିଆ ଗଦ୍ୟଶୈଳୀର ପରିଚୟ ଦେଇଅଛନ୍ତି ।

ରାଧାନାଥଙ୍କ ଭାଷାରେ, "ଯେଉଁ ସ୍ଥାନରେ ଭୀଷଣ ଗୁମ୍ଫାମାନ ପରସ୍ପର ଭଲରୂପେ ସଂଲଗ୍ନ ହୋଇ ନପାରନ୍ତି, କେବଳ ସେହି ସେହି ମାର୍ଗରେ ଲବମାନ୍ଧ କରଣ ଆସୁଥାଏ । ମାତ୍ର ଏହା ମନରେ ରଖିଥିବ,

ସେହି ଦ୍ରବ୍ୟମାନ ସଂସାରର ଆନ ପଦାର୍ଥ ପ୍ରାୟ ନଶ୍ୱର ଅଟନ୍ତି । ସାନ ସାନ ଦୁର୍ବିପାକମାନ ସହିବାର ଦୁଷ୍କର ଅଟେ । ହେତୁକ, ବଡ଼ ବଡ଼ ଆପଦମାନଙ୍କ ସଙ୍ଗେ ଅନୁରୂପ ବିବେକ ଆସେ । ମାତ୍ର ସାନ ସାନ କଷ୍ଟ ସଙ୍ଗେ ତେହିପରି ସାନ ସାନ ବିବେକ ଆସେ ନାହିଁ । ଏହି ହେତୁରୁ ଯାହାକୁ ସାନ ସାନ କଷ୍ଟ ସବୁବେଳେ ଭୋଗ କରିବାକୁ ହୁଏ, ତାହାର ଚିତ୍ତର ପ୍ରସାଦ ଥାଏ ନାହିଁ ।" ଏହି ଉଦ୍ଧୃତିଟି ପାଠ କଲେ ରାଧାନାଥଙ୍କର ଭାଷାଗତ ଅକ୍ଷମତାହିଁ ସୂଚିତ ହୁଏ । ଏହି ଭାଷା ଉପରେ ପ୍ରାଚୀନ ଓଡ଼ିଆ ଗଦ୍ୟ ଅପେକ୍ଷା ଅନ୍ୟ ଭାଷାମାନଙ୍କର ପ୍ରଭାବ ଅଧିକ । କାରଣ ଉଦ୍ଦେଶ୍ୟରେ ସେ "ହେତୁକ", ନିଶ୍ଚୟ ଉଦ୍ଦେଶ୍ୟରେ "ନିଷ୍ଠା", ଭାଗ ହୁଏ ପରିବର୍ତ୍ତେ "ଚଳମାଡ଼େ" ପ୍ରଭୃତି ବ୍ୟବହାର କରି ଅଛନ୍ତି । ଯେମନ୍ତ, ତେମନ୍ତ ପ୍ରଭୃତିର ପ୍ରୟୋଗ ଅଧିକ ସ୍ଥଳରେ ଅଛି । ବାକ୍ୟ-ଗଠନ ରୀତିରେ ଅନେକତ୍ର ଇଂରେଜୀ ଓ ବଙ୍ଗଳା ବାକ୍ୟଗଠନ ରୀତିର ପ୍ରଭାବ ପରିଲକ୍ଷିତ ହୋଇଅଛି ।

ସମଗ୍ରତା ଦୃଷ୍ଟିରୁ ବିଚାର କଲେ "ବିବେକୀ" ରାଧାନାଥଙ୍କର ମାନସିକ ଚେତନାର ଏକ ପରିପ୍ରକାଶ । ପଚିଶବର୍ଷ ବୟସ୍କ ଯୁବକ ରାଧାନାଥ ଜୀବନର ବହୁ ପରିସର ସହିତ ଏପରି ଘନିଷ୍ଠଭାବରେ ପରିଚିତ ହେବା ସହଜ କଥା ନୁହେଁ । ବିବେକୀ ପ୍ରବନ୍ଧରୁ ରାଧାନାଥଙ୍କର ଜୀବନାଦର୍ଶ ବିଶେଷ ଭାବରେ ପ୍ରକାଶ ପାଇଅଛି । ରାଧାନାଥ ଯେତେବେଳେ ପରିଣତ ବୟସରେ ପଦାର୍ପଣ କରି ନିଜ ପୁତ୍ର ଶଶିଭୂଷଣଙ୍କୁ ଜୀବନାଦର୍ଶ ବିଷୟରେ ବିଭିନ୍ନ ସମୟରେ ବହୁ ପତ୍ର ଲେଖିଅଛନ୍ତି ସେତେବେଳେ ତାଙ୍କର ପତ୍ରଗୁଡ଼ିକରେ ଏହି ପ୍ରକାର ନୀତି ବା ନିୟମ ପ୍ରକାଶ ପାଇଅଛି । କବିବର ରାଧାନାଥଙ୍କର କାବ୍ୟ ରଚନା କରିବା ସମୟରେ ଏହି ଜୀବନାଦର୍ଶ ମଧ୍ୟ କମ୍ ପରିମାଣରେ ପ୍ରକାଶ ପାଇ ନାହିଁ । ଆଧୁନିକ ଓଡ଼ିଆ ସାହିତ୍ୟର ପ୍ରଥମ ପ୍ରବନ୍ଧ ଭାବରେ ବିବେକୀର ମୂଲ୍ୟାୟନ କରି ବସିବାବେଳେ ଏସବୁ ବିଷୟପ୍ରତି ଦୃଷ୍ଟିରଖିବା ଏକାନ୍ତ ଆବଶ୍ୟକ ।

## ଇତାଲୀୟ ଯୁବା :—

୧୮୭୪ ସାଲରେ ଇତାଲୀୟ ଯୁବା ରାଧାନାଥଙ୍କ ଲେଖନୀରୁ ଜନ୍ମଲାଭ କରିଥିଲା । ଏ ବିଷୟରେ ବ୍ୟାସକବି ଫକୀର ମୋହନଙ୍କର

ଏହି ଉକ୍ତିରୁ ଜଣାଯାଏ, "ଦିନେ ଗଡ଼ଗଡ଼ିଆଠାରେ ରାଧାନାଥ କହିଲେ, ମୁଁ ଇଟାଲୀୟ ଯୁବା ବୋଲି ଗୋଟିଏ ଗଳ୍ପ ଇଂରାଜୀରେ ପଢ଼ିଅଛି, ତାହାକୁ ଲେଖିବି ବୋଲି ମନେ କରୁଅଛି । ଏହା କହି ତାହା ସେ ପ୍ରବନ୍ଧାକାରରେ ଲେଖିଲେ ଏବଂ ମୋତେ ସମସ୍ତ ଶୁଣାଇଲେ । ତାହା ଉତ୍କଳ ଦର୍ପଣରେ କ୍ରମଶଃ ପ୍ରକାଶିତ ହେଲା ।"(୧)

ଇଟାଲୀୟ ଯୁବାକୁ ଫକୀର ମୋହନ ସେନାପତି ପ୍ରବନ୍ଧ ବୋଲି ମତ ପ୍ରଦାନ କରିବା କେବେହେଲେ ଯୁକ୍ତିଯୁକ୍ତ ନୁହେଁ । ବୋଧହୁଏ ଇଟାଲୀୟ ଯୁବାକୁ ରାଧାନାଥ ଯେପରି ବିସ୍ତୃତ ଓ ପ୍ରାଞ୍ଜଳ ଭାବରେ ବର୍ଣ୍ଣନାତ୍ମକ ଭଙ୍ଗୀରେ ଲେଖିଅଛନ୍ତି ତାହା ଦେଖି ବା ଶୁଣି ଫକୀର ମୋହନ ଏପରି ମତ ପ୍ରଦାନ କରିଅଛନ୍ତି । ଇଟାଲୀୟ ଯୁବା କବିବର ରାଧାନାଥଙ୍କର କବିଜୀବନର ପୂର୍ବ ପ୍ରସ୍ତୁତିର ଏକ ଉଦାହରଣ । ପାଶ୍ଚାତ୍ୟ ସାହିତ୍ୟର କଥାବସ୍ତୁକୁ ଓଡ଼ିଆ ଭାଷାରେ ରୂପାୟିତ କରିବାର ଆଦ୍ୟ ସଙ୍କେତ ରାଧାନାଥ ଏହିଠାରେ ପ୍ରଦର୍ଶନ କରିଅଛନ୍ତି । ରାଧାନାଥଙ୍କ ଲେଖନୀରୁ ପରବର୍ତ୍ତୀକାଳରେ ଯେଉଁ ପ୍ରଧାନ ପ୍ରଧାନ କାବ୍ୟରାଜି ପ୍ରକାଶ ପାଇଥିଲା ସେ ସବୁର କଥାବସ୍ତୁ ସେ ମୁଖ୍ୟତଃ ପାଶ୍ଚାତ୍ୟ ସାହିତ୍ୟ ବା ଗ୍ରୀକ୍ ସାହିତ୍ୟରୁ ଗ୍ରହଣ କରିଥିଲେ । କାବ୍ୟରଚନା କରିବା ସମୟରେ ରାଧାନାଥ ବିଦେଶୀ କଥାବସ୍ତୁକୁ ଏଦେଶର ପରିସ୍ଥିତି, ଭୌଗୋଳିକ ଅବସ୍ଥିତି, ପୌରାଣିକ ବା କିମ୍ବଦନ୍ତୀମୂଳକ ଘଟଣା ସହିତ ସାମଞ୍ଜସ୍ୟ ସ୍ଥାପନ କରି ଅବସ୍ଥାପିତ କରିଅଛନ୍ତି । ଇଟାଲୀୟ ଯୁବା ରଚନା କରିବା ସମୟରେ ରାଧାନାଥ ଗୋଟିଏ ବିଦେଶୀ କଥାବସ୍ତୁକୁ ଶିକ୍ଷଣୀୟ ପରିସ୍ଥିତି ସୃଷ୍ଟି କରି ଉପସ୍ଥାପିତ କରିଅଛନ୍ତି ମାତ୍ର ।

ଇଉରୋପ ମହାଦେଶର ଆଲ୍‌ପସ୍ ପର୍ବତମାଳାର ପ୍ରାକୃତିକ ଅବସ୍ଥିତି ମଧ୍ୟରେ ଜଣେ ମେଷପାଳକ ତାଙ୍କ ଗୃହରେ ଥିବା ଅନ୍ୟ ଗୃହଜଣ ଅତିଥିଙ୍କ ସହିତ ଦିନେ ସକାଳେ କଥାବାର୍ତ୍ତା କରୁଥିଲେ । ଗୃହମାଲିକ ଅତିଥିମାନଙ୍କ ଗତବର୍ଷରେ କୌଣସି ଘଟଣା ଦେଖିଥିବା ବିଷୟରେ ପ୍ରଶ୍ନ କରିଥିଲେ । ଅତିଥିମାନଙ୍କ ମଧ୍ୟରୁ ଜଣେ କହିଲେ ଯେ

(୧) ରାଧାନାଥ ଜୀବନୀ—ପୃ୪୨

ଘର କାନ୍ଥରେ ଟଙ୍ଗାଯାଇଥିବା ଗୋଟିଏ ଚିତ୍ରପଟକୁ ଦେଖି ସେ ଅତ୍ୟନ୍ତ ଭୀତ ହୋଇଥିଲେ । ସେ ଏପରି ଭୀତ ହୋଇଥିଲେ ଯେ ଶଯ୍ୟାରେ ଶୟନ କରିପାରି ନଥିଲେ । ସେ ଘରର ବାହାରକୁ ଆସି ଦେଖିଲେ ଯେ ଭୟଙ୍କର ଝଡ଼ବର୍ଷା ହେଉଅଛି । ତଥାପି ସେ ଘରର ବାହାର ବାରଣ୍ଡାରେ ଶୋଇଲେ । ଅତିଥିଜଣଙ୍କର ଏପରି କଥାଶୁଣି ଅନ୍ୟ ତିନିଜଣ ଅତିଥି ହସିଲେ । ମାତ୍ର ତାଙ୍କର ଏହି କଥାକୁ ହସରେ ଉଡ଼ାଇ ନଦେବା ପାଇଁ ଗୃହସ୍ୱାମୀ କହିଲେ । ଅତିଥିମାନେ ଗୃହସ୍ୱାମୀଙ୍କୁ ସେହି ଛବି ବିଷୟରେ ପ୍ରଶ୍ନ କଲେ । ଛବିର ଅଙ୍କନ-କାରୀଙ୍କ ବିଷୟ ମନେ ପକାଇ ଗୃହସ୍ୱାମୀ କାନ୍ଦି ପକାଇଲେ । ସେ ଛବିର ଅଙ୍କନକାରୀ ଜଣେ ଇଟାଲିୟ ଯୁବା । ଗୃହସ୍ୱାମୀ ତାଙ୍କ ବିଷୟରେ କହିବାକୁ ଆରମ୍ଭ କଲେ ।

ଏହା ପୂର୍ବରୁ ସେ ଭେନିସ୍ ନଗରରେ ଥିଲେ । ସେଠାରେ ଥରେ ସେ କେତେକ ଲୋକଙ୍କ ମେଳରେ ଜଣେ ଯୁବକଙ୍କୁ ଦେଖିଲେ । ଯୁବକଟି ନିତାନ୍ତ ବିଷଣ୍ଣ ଚିତ୍ତରେ ଥିଲେ । ଆଉ ଥରେ ଜଣେ ଭଦ୍ର-ଲୋକଙ୍କ ଘରେ ନିମନ୍ତ୍ରଣ ରକ୍ଷା କରିବାକୁ ଯାଇ ଗୃହସ୍ୱାମୀ ସେହି ଯୁବକଙ୍କୁ ଦେଖିଲେ ଓ ତାଙ୍କ ସହିତ ମିତ୍ରତା ସ୍ଥାପନ କଲେ । ଯୁବକ ଗୃହସ୍ୱାମୀଙ୍କ ଘରକୁ ବାରମ୍ବାର ଆସିଲେ ଓ ତାଙ୍କର ପୂର୍ବବାସସ୍ଥାନ ଛାଡ଼ିଦେଇ ଗୃହସ୍ୱାମୀଙ୍କ ଗୃହନିକଟରେ ରହିଲେ । ଏହିପରି ଭାବରେ ଦୁହିଙ୍କର ଅନ୍ତରଙ୍ଗତା ସ୍ଥାପିତ ହେଲା ।

ଦିନେ ଗୃହସ୍ୱାମୀ ତାଙ୍କର ଏପ୍ରକାର ବିଷଣ୍ଣତାର କାରଣ ତାଙ୍କୁ ପଚାରିଲେ । ସେ କହିଲେ ଯେ ତାଙ୍କର ଦୁଃଖକୁ କେହି ଦୂର କରି ପାରିବେ ନାହିଁ । ଯୁବକଙ୍କର ବିଷଣ୍ଣଭାବ ସେହିପରି ଭାବରେ ରହିଲା । ଦିନେ ଗୃହସ୍ୱାମୀ ଯୁବକଙ୍କ ସହିତ କୌଣସି ପର୍ବ ଉପଲକ୍ଷରେ ଗୀର୍ଜାକୁ ଗଲେ । ସେଠାରେ ସେ ଦୁହେଁ ସମବେତ ପ୍ରାର୍ଥନାରେ ଯୋଗଦେଲେ । ତା ପରଦିନ ସକାଳେ ଯୁବକ ହାତରେ ଗୋଟିଏ କାଗଜପୁଡ଼ା ଧରି ଗୃହସ୍ୱାମୀଙ୍କ ନିକଟରେ ପହଞ୍ଚିଲେ ଏବଂ କହିଲେ ଯେ ସେ ସ୍ଥାନତ୍ୟାଗ କରି ଚାଲିଯାଉଅଛନ୍ତି ଓ ସେ ଯିବାପରେ ଗୃହସ୍ୱାମୀ କାଗଜ ପୁଡ଼ାଟି ଖୋଲି ପଢ଼ିବେ । ସେହି ଯୁବକ ସେ ଚିତ୍ରଟି ଅଙ୍କନ କରିଥିଲେ । ତାହା ଗୋଟିଏ

ଭୂତର ଚିତ୍ର । ଅତିଥିମାନଙ୍କର ଅନୁରୋଧରେ ଗୃହସ୍ୱାମୀ ଯୁବକଙ୍କ ପ୍ରଦତ୍ତ ସେହି କାଗଜ ପୁଡ଼ାଟି ଖୋଲି ପାଠକଲେ । ସେଥିରେ ଯୁବକଙ୍କ ବିଷୟରେ ସବୁକଥା ଲେଖାଥିଲା ।

ଯୁବକଙ୍କର ଜନ୍ମସ୍ଥାନ ନେପଲ୍‌ସ୍ ନଗର । ସେ ଉଚ୍ଚବଂଶଜ ଥିଲେ । ତାଙ୍କର ପିତା ଆଭିଜାତ୍ୟ ରକ୍ଷା କରିବା ପାଇଁ ଅଯଥାରେ ଖର୍ଚ୍ଚାନ୍ତ ହେଉଥିଲେ । ଏଥିପାଇଁ ଅନେକ ସମୟରେ ତାଙ୍କୁ ଦୁର୍ଦ୍ଦଶାରେ ପଡ଼ିବାକୁ ହେଉଥିଲା । ଯୁବକ ତାଙ୍କ ପିତାଙ୍କର କନିଷ୍ଠ ସନ୍ତାନ ଥିଲେ । ତାଙ୍କ ବଂଶରେ ଗୋଟିଏ ପ୍ରଥା ପ୍ରଚଳିତ ଥିଲା ଯେ ବଂଶର ଜ୍ୟେଷ୍ଠପୁତ୍ର ସମସ୍ତ ସମ୍ପତ୍ତିର ମାଲିକ ହେବ । ତେଣୁ ଅନେକ ସମୟରେ ଯୁବକ ବଂଚିତ ହୋଇ ପଡୁଥିଲେ । ତାଙ୍କର ମାତା ତାଙ୍କୁ ଅତ୍ୟନ୍ତ ସ୍ନେହ କରୁଥିଲେ । ମାଏ ମାତାଙ୍କର ପରଲୋକ ଗମନ ପରେ ସେ ପିତାଙ୍କର ଅପ୍ରିୟପାତ୍ର ହୋଇ ପଡ଼ିଲେ । ପିତା ତାଙ୍କ ଉପରେ ସବୁବେଳେ ବିରକ୍ତ ହେଉଥିଲେ ।

ଯୁବକଙ୍କର ବଡ଼ଭାଇ ତାଙ୍କ ପିତାଙ୍କର ଅତ୍ୟନ୍ତ ପ୍ରିୟ ପାତ୍ର ଥିଲେ । ଯୁବକ ଏପରି ଅବସ୍ଥାରେ ଗୃହରେ ରହି ପାରିଲେ ନାହିଁ । କୌଣସି ଗୋଟିଏ ମଠକୁ ଗଲେ ସେଠାରେ ଶାନ୍ତିପୂର୍ଣ୍ଣ ଜୀବନ ଅତିବାହିତ କରିପାରିବେ ବୋଲି ଧାରଣା କରିବାରୁ ଯୁବକଙ୍କୁ ଗୋଟିଏ ମଠକୁ ପଠାଇ ଦିଆଗଲା । ଯୁବକଙ୍କର ପିତୃବ୍ୟ ସେହି ମଠର ମହନ୍ତ ଥିଲେ । ମହନ୍ତ ଅତ୍ୟନ୍ତ ସଂଯମୀ ଥିଲେ । ତାଙ୍କର କଠୋର ଶାସନରେ ମଠରେ ଥିବା ଲୋକମାନେ ଶାନ୍ତିହସ୍ତ ହୋଇ ରହୁଥିଲେ । ମଠଟି ଭିସୁଭିୟସ୍ ଆଗ୍ନେୟଗିରିର ଏକ ଗହନ ଅରଣ୍ୟ ମଧ୍ୟରେ ଅବସ୍ଥିତ ଥିଲା । ସେ ସ୍ଥାନ ଅତ୍ୟନ୍ତ ଭୟଙ୍କର ଥିଲା । ଯୁବକ ସେହି ମଠରେ ଅତ୍ୟନ୍ତ ବିଷଣ୍ଣ ଚିତ୍ତରେ ଅବସ୍ଥାନ କଲେ । ସେଠାରେ ଥିବା ଲୋକମାନେ ଭୟ ଦେଖାଇବା ଉଦ୍ଦେଶ୍ୟରେ ନାନା ପ୍ରକାର ଭୂତ ପ୍ରେତଙ୍କର କାହାଣୀ ବର୍ଣ୍ଣନା କରୁଥିଲେ । ସେସବୁ କାହାଣୀ ଶୁଣି ଯୁବକଙ୍କର ମନ ବିକୃତ ହେଲା । ଦିନେ ଭିସୁଭିୟସ୍ ପର୍ବତର ଆଗ୍ନେୟଗିରିର ଉଦ୍‌ଗୀରଣ ଦେଖି ଯୁବକ ଅତିମାତ୍ରାରେ ଭୀତ ହେଲେ ।

ଘଟଣାକ୍ରମେ ଜଣେ ସନ୍ନ୍ୟାସୀଙ୍କଠାରୁ ଯୁବକ ମଠରେ ଥିବା ସମୟରେ ଚିତ୍ରବିଦ୍ୟା ଶିକ୍ଷାକରି ତହିଁରେ ଦକ୍ଷତା ଅର୍ଜନ କଲେ । ଯୁବକ

ମଠରେ ଅବସ୍ଥାନ କରିବା ସମୟରେ ତାଙ୍କର ସବୁ ଉତ୍ତମ ପ୍ରବୃତ୍ତି ଲୋପ ପାଇଲା ଓ କୁ ପ୍ରବୃତ୍ତି ବୃଦ୍ଧିଭୂତ ହେଲା । ସେ କେବଳ ସମଗ୍ର ଜଗତକୁ ଘୃଣା କରି ବସିଲେ । ଯୁବକଙ୍କୁ ଯେତେବେଳେ ଷୋଳବର୍ଷ ବୟସ ହେଲା ସେତେବେଳେ ସେ କୌଣସି କାର୍ଯ୍ୟ ଉପଲକ୍ଷରେ ଜଣେ ସନ୍ୟାସୀଙ୍କ ସହିତ ମଠରୁ ବାହାରକୁ ଆସିଲେ । ନେପ୍‌ଲ୍‌ସ ଉପସାଗରର ତୀରଦେଶର ସୌନ୍ଦର୍ଯ୍ୟ ଦେଖି ସେ ଏକାବେଳକେ ମୁଗ୍‌ଧ ହୋଇ ଯାଇ-ଥିଲେ । ସେଠାରୁ ସେ ନେପ୍‌ଲସ୍ ନଗରର ସୌନ୍ଦର୍ଯ୍ୟ ମଧ୍ୟ ଦେଖିବାକୁ ପାଇଥିଲେ । ବାହାରର ପ୍ରାକୃତିକ ଦୃଶ୍ୟରେ ଯୁବକ ଏତେ ଦୂର ମୁଗ୍‌ଧ ହୋଇଯାଇଥିଲେ ଯେ ସେ ପୁଣି ମଠକୁ ଫେରି ଆସିବା ପରେ ତାଙ୍କ ମନ ଯାଇ ବାହାରେ ଉଡ଼ି ବୁଲିଲା । ମଠର ଦୁଃଖପୂର୍ଣ୍ଣ ଜୀବନରୁ ଅବ୍ୟାହତି ପାଇବା ପାଇଁ ଯୁବକ ସୁଯୋଗ କ୍ରମେ ମଠରୁ ପଳାଇ ଆସି ନେପ୍‌ଲ୍‌ସ୍ ନଗରରେ ପହୁଞ୍ଚିଲେ । ସେ ସ୍ଥାନର ବିଭବ ଓ ଐଶ୍ୱର୍ଯ୍ୟରେ ସେ ମୁଗ୍‌ଧ ହୋଇ ଆଉ ମଠକୁ ନଫେରିବାର ସଙ୍କଳ୍ପ କଲେ ।

ନେପ୍‌ଲ୍‌ସ୍‌ରେ ପହୁଞ୍ଚି ଯୁବକ ପଚାରି ପଚାରି ନିଜ ପିତାଙ୍କ ଗୃହରେ ଉପସ୍ଥିତ ହେଲେ ଓ ପିତାଙ୍କ ପାଦ ପାଖରେ ପଡ଼ି ଆଉ ତାଙ୍କୁ ମଠକୁ ନପଠାଇବା ପାଇଁ ପ୍ରାର୍ଥନା କଲେ । ମାତ୍ର ତାଙ୍କ ପିତା ତାଙ୍କ ପ୍ରତି ଉପଯୁକ୍ତ ବ୍ୟବହାର କଲେ ନାହିଁ । କୌଣସି ଅନ୍ୟକାର୍ଯ୍ୟରେ ତାଙ୍କୁ ନିଯୁକ୍ତ କରିବା ନିମନ୍ତେ ତାଙ୍କର ପିତା ମତବ୍ୟକ୍ତ କଲେ । ମାତ୍ର ପିତାଙ୍କର ସ୍ନେହହୀନ ବ୍ୟବହାରରେ ଯୁବକ କ୍ଷୁଣ୍ଣ ହେଲେ । ପିତାଙ୍କ ପରି ତାଙ୍କର ଜ୍ୟେଷ୍ଠଭ୍ରାତା ମଧ୍ୟ ନିଷ୍ଠୁର ବ୍ୟବହାର କଲେ ଓ ଭୃତ୍ୟମାନେ ତାଙ୍କ ପ୍ରତି ଦୁର୍ବ୍ୟବହାର କଲେ । ଫଳରେ ଯୁବକ ସବୁବେଳେ ମୌନତା ଅବଲମ୍ବନ କରି ରହିଲେ । ଯୁବକ ଜଣେ ଭୃତ୍ୟକୁ କୌଣସି କାରଣ ବଶତଃ ପ୍ରହାର କରିବା ସମୟରେ ତାଙ୍କ ପିତା ସେଠାରେ ପହଞ୍ଚି ତାଙ୍କ ପ୍ରତି ନିତାନ୍ତ ନିର୍ମମ ଓ କର୍କଶ ବାକ୍ୟ ପ୍ରୟୋଗ କଲେ । ତାପରେ ଦିନେ ଯୁବକ ଜାଣିବାକୁ ପାଇଲେ ଯେ ମଠରୁ ଆସିଥିବା ଜଣେ ସନ୍ୟାସୀଙ୍କ ସହିତ ପୁଣି ତାଙ୍କୁ ସେହି ମଠକୁ ପଠାଇଦେବାପାଇଁ ତାଙ୍କର ପିତା ମନ୍ତ୍ରଣା କରୁଅଛନ୍ତି । ଏହାଶୁଣି ଯୁବକ ଗୃହତ୍ୟାଗ କରି ଗୋଟିଏ ଜାହାଜରେ ଚଢି ଦୈବକ୍ରମେ ଜେନୋଆ ନଗରରେ ପହଞ୍ଚିଲେ । ଜେନୋଆର ବିଭବ ଓ ଐଶ୍ୱର୍ଯ୍ୟ ଦେଖି ଯୁବକ ମୁଗ୍‌ଧ ହେଲେ ।

ଅପରିଚିତ ସ୍ଥାନରେ ସେ ଏଣେ ତେଣେ ବୁଲିଲେ । ପାଖରେ ଥିବା ଅର୍ଥ ଶେଷ ହୋଇଯିବାରୁ ଯୁବକ ଅତ୍ୟନ୍ତ ଦୁଃଖ ପାଇଲେ । ଭିକାରୀ ପରି ଜେନୋୟାରେ ବୁଲୁ ବୁଲୁ ସେ ଗୋଟିଏ ଗୀର୍ଜା ନିକଟରେ ପହଞ୍ଚିଲେ । ଜଣେ ଚିତ୍ରକାର ଗୀର୍ଜାର ପ୍ରାଚୀରରେ ଚିତ୍ରପଟ୍ଟ ଲଗାଉଥିଲେ । ଯୁବକ ସେଠାରେ ଠିଆହୋଇ ଚିତ୍ରପଟ୍ଟକୁ ନିରୀକ୍ଷଣ କରୁଥିବାର ଦେଖି ଚିତ୍ରକାର ତାଙ୍କ ପାଖକୁ ଆସିଲେ ଓ ତାଙ୍କର ପରିଚୟ ଜିଜ୍ଞାସା କଲେ । ତାପରେ ଯୁବକ ଯାଇ ସେହି ଚିତ୍ରକାରଙ୍କର ଗୃହରେ ରହିଲେ ଓ ତାଙ୍କ ନିକଟରୁ ଚିତ୍ରବିଦ୍ୟା ଶିକ୍ଷାକଲେ । ଚିତ୍ରକରଙ୍କର ଗୃହରେ ଥିବା ସମୟରେ ଯୁବକ ଅତ୍ୟନ୍ତ ଆନନ୍ଦରେ କାଳାତିପାତ କରୁଥିଲେ ।

ଚିତ୍ରକାର ଜେନୋୟା ନଗରର ଧନୀବ୍ୟକ୍ତିମାନଙ୍କ ବରାଦରେ ବହୁତ ନାରୀଚିତ୍ର ଅଙ୍କନ କରୁଥିଲେ । ଚିତ୍ରକାର ଲିରା ନାମ୍ନୀ ଜଣେ ଯୁବତୀଙ୍କର ଚିତ୍ର ଅଙ୍କନ କରିବାକୁ ଆଦିଷ୍ଟ ହୋଇଥିଲେ । ଯୁବକଙ୍କୁ ଲିରାଙ୍କର ଚିତ୍ର ଅଙ୍କନ କରିବାକୁ ପଡ଼ିଲା । ସେ ଯେତେବେଳେ ଲିରାଙ୍କୁ ଦେଖିଲେ ସେତେବେଳେ ସେ ସ୍ତମ୍ଭିତ ହୋଇଗଲେ । ସେ ଲିରାଙ୍କୁ ଜଣେ ଅପ୍‌ସରା ମନେ କଲେ । ଲିରାଙ୍କର ମା ଯୁବକଙ୍କୁ ଅତ୍ୟନ୍ତ ସ୍ନେହ କଲେ । ଯୁବକ ଲିରାଙ୍କର ସୌନ୍ଦର୍ଯ୍ୟରେ ଏପରି ଅଭିଭୂତ ହୋଇ ପଡ଼ିଥିଲେ ଯେ ତାଙ୍କୁ ପ୍ରେୟସୀ ରୂପରେ ପାଇବାକୁ ବ୍ୟଗ୍ର ହୋଇପଡ଼ିଲେ । ଚିତ୍ରାଙ୍କନ ଶେଷ ହେବାରୁ ଲିରା ମଠକୁ ଫେରିଗଲେ । ଦିନେ ଯୁବକ ଦେଖିଲେ ଯେ ଗୋଟିଏ ମନ୍ଦିର ନିକଟରେ ଦଳେ ଲୋକ ଠିଆ ହୋଇ ଲିରାଙ୍କର ସେହି ମନୋହାରିଣୀ ଚିତ୍ରକୁ ପ୍ରଣିପାତ କରୁଅଛନ୍ତି । ଦିନରାତି ଯୁବକ କେବଳ ଲିରାଙ୍କର ସୌନ୍ଦର୍ଯ୍ୟକୁ ମନେ ପକାଇ ମୁଗ୍ଧ ଭାବରେ ଚିତ୍ତରେ କାଳଯାପନ କଲେ । ଯୁବକଙ୍କର ଏହି ମୁଗ୍ଧ ଭାବର ଅବସ୍ଥା ବେଶୀ ଦିନ ରହିଲା ନାହିଁ । ହଠାତ୍ ତାଙ୍କର ଆଶ୍ରୟଦାତା ଚିତ୍ରକର ପରଲୋକ ଗମନ କଲେ । ଚିତ୍ରକାର ଯୁବକଙ୍କ ନାମରେ ତାଙ୍କର ସ୍ୱଳ୍ପ ପରିମିତ ସମ୍ପତ୍ତିକୁ ଉଇଲ୍ କରିଦେଇଥିଲେ । ଚିତ୍ରକର ତାଙ୍କର ଜଣେ ବନ୍ଧୁଙ୍କ ହାତରେ ଯୁବକଙ୍କର ରକ୍ଷଣାବେକ୍ଷଣ ଭାର ନ୍ୟସ୍ତ କରି ଯାଇ ଥିଲେ । ସେ ଜଣେ ବିଖ୍ୟାତ ଦାର୍ତା ଭାବରେ ପରିଚିତ ଥିଲେ । ଯୁବକଙ୍କ ମନରୁ

ଦୁଃଖଶ୍ରର ଲାଘବ କରିବା ପାଇଁ ସେ ଯୁବକଙ୍କୁ ତାଙ୍କର ଗୋଟିଏ ଉଦ୍ୟାନ ମଧ୍ୟସ୍ଥ ଗୃହରେ ରଖିଲେ । ସେ ସ୍ଥାନରେ ଯୁବକ ପ୍ରାକୃତିକ ଦୃଶ୍ୟରେ ଅତ୍ୟନ୍ତ ବିମୋହିତ ହେଲେ ।

ଯୁବକଙ୍କର ଦାୟିତ୍ୱବହନକାରୀ ବ୍ୟକ୍ତିଙ୍କର ଫିଲିପ୍ ନାମରେ ଜଣେ ପୁଅଥିଲେ । ସେଠାରେ ଯୁବକଙ୍କ ସହିତ ତାଙ୍କର ପରିଚୟ ହେଲା । ପ୍ରଥମରୁ ଯୁବକ ଫିଲିପଙ୍କୁ ଜଣେ ଭଦ୍ର ଓ ସୁଶୀଳ ବ୍ୟକ୍ତିବୋଲି ଭାବିଥିଲେ । ମାତ୍ର ପରେ ଯୁବକଙ୍କର ସେ ଧାରଣା ବଦଳିଗଲା । ସେଠାରେ ଅବସ୍ଥାନ କରୁଥିବା ସମୟରେ ଯୁବକ ଲିବ୍ରିଙ୍କ ବିଷୟ ବାରମ୍ବାର ମନେ ପକାଇ ଅଶ୍ରୁ ବିସର୍ଜନ କରୁଥିଲେ । କିଛି ଦିନ ପରେ ସେହି ଆଶ୍ରୟଦାତାଙ୍କ ଆଶ୍ରୟକୁ ଆସିଲେ ଲିବ୍ରି । ଯୁବକଙ୍କୁ ଦେଖି ଲିବ୍ରି ଲଜ୍ଜା ଅନୁଭବ କଲେହେଁ କିଛିଦିନ ପରେ ତାଙ୍କର ଲଜ୍ଜାଭାବ କଟିଗଲା । ସେଠାରେ ବାସ କରିବା ସମୟରେ ଯୁବକଙ୍କର ଲିବ୍ରିଙ୍କ ସହିତ ପ୍ରେମଭାବ ଘନୀଭୂତ ହେଲା । ଲିବ୍ରିଙ୍କ ସହିତ ଅତି ଆନନ୍ଦରେ ଯୁବକ କାଳଯାପନ କଲେ । ଏପରେ ଯୁବକ ଲକ୍ଷ୍ୟକଲେ ଯେ ତାଙ୍କର ଆଶ୍ରୟ-ଦାତା ତାଙ୍କୁ ଆଉ ପୂର୍ବପରି ସ୍ନେହ କରୁନାହାନ୍ତି । ଫିଲିପ୍ ମଧ୍ୟ ତାଙ୍କ ପ୍ରତି ଅନ୍ୟପ୍ରକାର ଆଚରଣ ଦେଖାଇଲେ । ସେମାନଙ୍କର ଏପରି ବ୍ୟବହାର ଦେଖି ଲିବ୍ରି ଓ ଯୁବକ ଉଭୟେ ସେ ସ୍ଥାନ ପରିତ୍ୟାଗ କରିବାକୁ ବଦ୍ଧପରିକର ହେଲେ ।

ଯୁବକ ଏଥିପାଇଁ ଅତିମାତ୍ରାରେ ଚିନ୍ତିତ ହୋଇ ପଡ଼ିଲେ । ଲିବ୍ରି ଏଥିପାଇଁ ଯୁବକଙ୍କୁ ବହୁତ ବୁଝାଇଥିଲେ । ଏହି ସମୟରେ ଯୁବକଙ୍କର ଜ୍ୟେଷ୍ଠଭ୍ରାତା ପରଲୋକ ଗମନ କଲେ, ଓ ତାଙ୍କର ପିତା ଗୋଟିଏ ବିଜ୍ଞାପନ ଜରିଆରେ ତାଙ୍କୁ ଘରକୁ ଫେରିଯିବା ପାଇଁ ଅନୁରୋଧ କଲେ । ବିଜ୍ଞାପନ ଦେଖି ଯୁବକ ଘରକୁ ଫେରିବାପାଇଁ ଭାବିଲେ । ଲିବ୍ରିଙ୍କୁ ସେ ବିଜ୍ଞାପନଟି ମଧ୍ୟ ଦେଖାଇଲେ । ତାପରେ ଯୁବକ ଫିଲିପଙ୍କ ନିକଟରେ ସବୁକଥା ଖୋଲି କହିଲେ । ଫିଲିପ୍ ଲିବ୍ରି ଓ ଯୁବକଙ୍କର କଥାଶୁଣି ଅତ୍ୟନ୍ତ ଆହ୍ଲାଦିତ ହେଲେ । ଶୀଘ୍ର ନେପଲସ୍ ଫେରିଯାଇ ପିତାଙ୍କୁ ସାକ୍ଷାତ କରିବା ପାଇଁ ଫିଲିପ୍ ଯୁବକଙ୍କୁ ଉପଦେଶ ଦେଲେ । ଗୃହରେ ପିତାଙ୍କର ଅନୁମତି ନେଇ ସେଠାକୁ ଆସି ଲିବ୍ରିଙ୍କୁ ବିବାହ କରିବାପାଇଁ

ପ୍ରଧ ଫିଲିପ୍ ଉପଦେଶ ଦେଲେ । ଫିଲିପ୍‌ଙ୍କ କଥାରେ ଆସ୍ଥା ସ୍ଥାପନ କରି ଯୁବକ ଅତ୍ୟନ୍ତ ଆନନ୍ଦିତ ହେଲେ । ବନ୍ଧୁ ଦୁଃଖରେ ଲବ୍‌ଙ୍କଠାରୁ ବିଦାୟ ନେଇ ଯୁବକ ନିଜ ଗୃହ ଅଭିମୁଖରେ ଯାତ୍ରା କଲେ ।

ଘରେ ପହୁଞ୍ଚି ଯୁବକ ତାଙ୍କର ପିତାଙ୍କୁ ଭେଟିଲେ । ପିତାଙ୍କର ସ୍ୱାସ୍ଥ୍ୟ ହାନି ଦେଖି ସେ ଅତ୍ୟନ୍ତ ଦୁଃଖିତ ହେଲେ । ଯୁବକଙ୍କୁ ଦେଖି ତାଙ୍କର ପିତା କାନ୍ଦି ପକାଇଲେ । ପିତାଙ୍କର ସ୍ନେହ ମମତା ପାଇ ଯୁବକ ନିଜକୁ ଧନ୍ୟ ମନେ କଲେ । ଯୁବକ ଲବ୍ ଓ ଫିଲିପ୍‌ଙ୍କ ନିକଟକୁ ପତ୍ର ଲେଖିଲେ । ଫିଲିପ୍ ଓ ଲବ୍‌ଙ୍କଠାରୁ ପତ୍ରର ଉତ୍ତର ସେ ପାଇଲେ । କ୍ରମେ ଯୁବକଙ୍କର ପିତାଙ୍କର ରୋଗ ଅଧିକ ବଢ଼ିଲା । ତାପରେ ସେ ଲବ୍‌ଙ୍କର ଗୋଟିଏ ଚିତ୍ର ଅଙ୍କନ କରି ପାଖରେ ରଖିଲେ । ଲବ୍‌ଙ୍କର ଦ୍ୱିତୀୟ ପତ୍ର ପାଇ ଯୁବକ ଅତ୍ୟନ୍ତ ପ୍ରୀତ ହେଲେ । ଏହିପରି ଭାବରେ ଦୁଇବର୍ଷ ସମୟ ଅତିବାହିତ ହୋଇଗଲା । ତାଙ୍କ ପିତା ପରଲୋକ ଗମନ କଲେ ।

ପିତାଙ୍କ ମୃତ୍ୟୁ ପରେ ତାଙ୍କର ଅନ୍ତ୍ୟେଷ୍ଟି କ୍ରିୟା ସମାପନ କରି ଯୁବକ ଲବ୍‌ଙ୍କୁ ଆଣିବା ପାଇଁ ଜେନୋୟା ନଗରକୁ ଯାତ୍ରା କଲେ । ଅତ୍ୟନ୍ତ ଉଦ୍‌ବିଗ୍ନ ଚିତ୍ତରେ ଯୁବକ ଯାଇ ଜେନୋୟା ନଗରରେ ପହୁଞ୍ଚିଲେ । ପୂର୍ବ ବର୍ଣ୍ଣିତ ଉଦ୍ୟାନରେ ସେ ପହୁଞ୍ଚିଲେ । ଉଦ୍ୟାନର ଅବସ୍ଥା ପୂର୍ବବତ୍ ରହିଥିଲା । ଯୁବକ କ୍ରମେ ଲବ୍ ରହୁଥିବା ଗୃହ ନିକଟରେ ପହୁଞ୍ଚିଲେ । ସେଠାରେ ପହୁଞ୍ଚି ଲବ୍‌ଙ୍କର କଣ୍ଠସ୍ୱର ଶୁଣିବାକୁ ପାଇଲେ । ଲବ୍ ଗୃହ ମଧ୍ୟରେ ବସି ଗୁଣୁ ଗୁଣୁ ସ୍ୱରରେ ଗୀତଗାଇ ଗୋଟିଏ ଚିତ୍ରଅଙ୍କନ କରୁଥିଲେ । ଯୁବକ ଗୃହମଧ୍ୟରେ ପ୍ରବେଶ କରି ଲବ୍‌ଙ୍କୁ ସମ୍ବୋଧନ କରିବାମାତ୍ରେ ଲବ୍ ଚିତ୍କାରକରି ଉଠିଲେ ଓ ଯୁବକ ତାଙ୍କୁ ଆଲିଙ୍ଗନ କରିବା ମାତ୍ରେ ଲବ୍ ସଂଜ୍ଞାହୀନା ହୋଇଗଲେ । କିଛିକ୍ଷଣ ପରେ ଲବ୍ ସଂଜ୍ଞାଲାଭ କରି ଅତ୍ୟନ୍ତ ଆଶ୍ଚର୍ଯ୍ୟାନ୍ୱିତା ହେଲେ ଓ ଯୁବକଙ୍କୁ ସ୍ପର୍ଶ କରିବାକୁ ଉଚିତ ମନେକଲେ ନାହିଁ । ଲବ୍‌ଙ୍କଠାରୁ ଜଣା ପଡ଼ିଲା ଯେ ସେ ବିବାହିତା । ତା ଶୁଣି ଯୁବକ କ୍ରୋଧରେ ଅସ୍ଥିର ହୋଇ ପଡ଼ିଲେ । ତାପରେ ଲବ୍ କହିଲେ ଯେ ଯୁବକ ଯେଉଁ ଜାହାଜରେ ନେପଲ୍‌ସ୍

ଯାହା କରିଥିଲେ ଏବଂ ଜାହାଜରେ ତାଙ୍କର ମୃତ୍ୟୁ ଘଟିଛି ବୋଲି ସେ ଫିଲିପ୍‌ଙ୍କଠାରୁ ଶୁଣିଥିଲେ । ଲବ୍‌ଙ୍କର କଥାରୁ ଫିଲିପ୍‌ଙ୍କର ଷଡ଼ଯନ୍ତ୍ର ବୁଝିପାରି ଯୁବକ ଫିଲିପ୍‌ଙ୍କୁ ହତ୍ୟାକଲେ । ଲବ୍ ଫିଲିପ୍‌ଙ୍କର ମୃତଶରୀର ପାଖକୁ ଆସିବାରୁ ଯୁବକ ସେଠାରୁ ପଳାଇ ଆସି ଆପିନାଇନ୍ ପର୍ବତରେ କିଛିକାଳ ରହିଲେ । ସେ ଯେଉଁଠାରେ ରହିଲେହେଁ ସ୍ୱକୃତ ପାପକୁ ଭୁଲି ପାରିଲେ ନାହିଁ ଏବଂ ଅନୁଭବ କଲେ ସତେ ଯେପରି ଫିଲିପ୍‌ଙ୍କର ପ୍ରେତ ତାଙ୍କର ଅନୁଗମନ କରୁଅଛି । ଭୂତର ଭୟରେ ଅସ୍ଥିର ହୋଇ ସେ ଗୋଟିଏ ଭୂତର ଛବି ଅଙ୍କନ କଲେ । ସବୁବେଳେ ସେହି ଛବିକୁ ଦେଖିଲେ ତାଙ୍କର ଭୟ ଦୂରହେବ ଭାବି ସେ ତାକୁ ସବୁବେଳେ ଆଗରେ ରଖିଲେ ।

ଯେଉଁଦିନ ଯୁବକ ଗୃହସ୍ୱାମୀଙ୍କ ସଙ୍ଗରେ ଗୀର୍ଜାକୁ ଯାଇଥିଲେ ସେଠାରେ ସେ ଶୁଣିବାକୁ ପାଇଲେ ଯେ ତାଙ୍କର ଅପରାଧ ମାର୍ଜିତ ହେବ । ତେଣୁ ସେ ନିଜର ଅଜଣାକଥା ସବୁ ଲେଖି ଗୃହସ୍ୱାମୀଙ୍କୁ ଦେଇ ଭେଜନୋସ୍ୱାର ଧର୍ମାସନ ଆଗରେ ନିଜର ଦୋଷ ସ୍ୱୀକାର କରି ପ୍ରାଣଦଣ୍ଡ ପାଇବା ଉଦ୍ଦେଶ୍ୟରେ ଯାତ୍ରା କଲେ ।

ଗୃହସ୍ୱାମୀ ଗଳ୍ପଟି ଶେଷକରି କାନ୍ଦି ପକାଇଲେ । ଅତିଥିମାନେ ସେହି ଛବିକୁ ଦେଖିବାକୁ ଇଚ୍ଛା ପ୍ରକାଶ କରିବାରୁ ଗୃହସ୍ୱାମୀ ସେମାନଙ୍କ ଦିବା ସମୟରେ ଛବିଟି ନଦେଖାଇ ରାତ୍ରି ସମୟରେ ଦେଖାଇଲେ । ଛବିଟିକୁ ଦେଖି ଅତିଥିମାନେ ଗୋଟିଏ ଭୂତ ବୋଲି ଭାବିଲେ । ଚିତ୍ରକରଙ୍କର କଳାନୈପୁଣ୍ୟରେ ସେମାନେ ମୁଗ୍ଧ ହେଲେ ।

ଏହିଠାରେ ଗଳ୍ପଟିର ପରିସମାପ୍ତି ଘଟିଅଛି । କବିବର ରାଧାନାଥ ଏହି ଗଳ୍ପଟିକୁ ଅନୁବାଦ କରିବା ସମୟରେ ନିଜର ମୌଳିକତା ପ୍ରଦର୍ଶନ କରିବାକୁ ଯାଇ ଗଳ୍ପଟିକୁ ଅଯଥାରେ ଦୀର୍ଘ କରିଦେଇଛନ୍ତି । ଗଳ୍ପଟି ଗୋଟିଏ ପ୍ରଣୟମୂଳକ ବ୍ୟାପାର ଉପରେ ପ୍ରତିଷ୍ଠିତ । ମାତ୍ର ପ୍ରଣୟଜନିତ ବ୍ୟାପାରରେ ଲିପ୍ତରହି ଯୁବକଟି ଯେଉଁ ନରହତ୍ୟାରୂପକ ପାପ କରିବସିଲେ ତାହା ତାଙ୍କର ଚିତ୍ତବୃତ୍ତିକୁ ଆଲୋଡ଼ିତ କରିଦେଲା । ଲବ୍‌ଙ୍କଠାରେ ଯୁବକ ଅତିମାତ୍ରାରେ ଆସକ୍ତ

କହୁଥାଇ ପଡ଼ିଥିଲେ । ସେ କେବେହେଲେ ଭାବ ନଥିଲେ ଯେ ଲସି ତାଙ୍କୁ ଛାଡ଼ି ଅନ୍ୟର ଅଙ୍କଶାୟିନୀ ହୋଇ ପାରନ୍ତି । ବହୁତ ଆଶାକରି ସେ ଯେତେବେଳେ ନିଜର ଆଶାର ସୌଧ ଧୂଳିସାତ୍ ହେବାର ଦେଖିଛନ୍ତି ସେତେବେଳେ ସେ କଣ କରିବେ କିଛି ଠିକ୍ କରିପାରି ନାହାନ୍ତି । ତାଙ୍କର ଚିତ୍ତବିଭ୍ରମ ଘଟିଛି । ସେ ଫିଲିପ୍‌ଙ୍କ ଉପରେ ପ୍ରତିଶୋଧ ପରାୟଣ ହୋଇ ତାଙ୍କୁ ହଠାତ୍ ହତ୍ୟା କରିଛନ୍ତି । ଫିଲିପ୍‌ଙ୍କ ଉପରେ ତାଙ୍କର କ୍ରୋଧ ଏତେ ଅଧିକ ପରିମାଣରେ ଘନୀଭୂତ ହୋଇଯାଇଥିଲା ଯେ ଫିଲିପ୍‌ଙ୍କର ମୃତଶରୀରକୁ ସେ ପଦାଘାତ ନକରି ଛାଡ଼ି ନାହାନ୍ତି । ତାଙ୍କର ସେ ଅବସ୍ଥା ଦେଖିଲେ ଯେ କେହି ତାଙ୍କୁ ପାଗଳ ବୋଲି ଭାବିବାର କଥା । ମାତ୍ର ନରହତ୍ୟା କରିବାପରେ ଲସିଙ୍କୁ ଦେଖିବାମାତ୍ରକେ ତାଙ୍କର କ୍ରୋଧ ଅନ୍ୟଦିଗକୁ ଗତିକଲା । ସେ ଅନୁଭବ କଲେ ସତେ ଯେପରି ତାଙ୍କର ଅନ୍ତର ଶତଧା ବିଦୀର୍ଣ୍ଣ ହୋଇଗଲା । ସେ ଲକ୍ଷ୍ୟହରା ହୋଇ ଧାଇଁଲେ । ଯେଉଁଠାରେ ଆଶ୍ରୟ ଗ୍ରହଣ କଲେହେଁ ତାଙ୍କରି ପାପ ତାଙ୍କୁ ସବୁବେଳେ ଭୀତତ୍ରସ୍ତ କରାଇଲା । ସେହି ଭୟରୁ ରକ୍ଷାପାଇବା ପାଇଁ ସେ ଭୂତର ଚିତ୍ର ଅଙ୍କନ କଲେ । କାରଣ ପିଲାଦିନରୁ ତାଙ୍କ ଅନ୍ତରରେ ଭୂତର ପ୍ରସଙ୍ଗ ବିଶେଷ ଭାବରେ ସ୍ଥାନ ମାଡ଼ି ବସିଥିଲା । ଯୁବକଙ୍କର ଅନୁତାପ ପରେ ଗୀର୍ଜାରେ ତାଙ୍କର ଉପଯୁକ୍ତ ଈଶ୍ୱର ସନ୍ଧାନ ସେ ପାଇଲେ ।

ଗଳ୍ପଟିର ପରିଣତି ଶିକ୍ଷଣୀୟ ହୋଇଅଛି । ଏପରି ଏକ ଗଳ୍ପ ବାଛି ଅନୁବାଦ କରିବାପାଇଁ ରାଧାନାଥ ଏହି ଦୃଷ୍ଟିରୁ ଗ୍ରହଣ କରିଅଛନ୍ତି ବୋଲି ମନେ ହୁଏ । କବିବର ରାଧାନାଥ ଓଡ଼ିଆ ସାହିତ୍ୟରେ କବିର ଆସନ ଲାଭ କରିବା ପୂର୍ବରୁ ଗଦ୍ୟସାହିତ୍ୟରେ ସାଧନା କରିବାକୁ ପ୍ରଥମେ ଚେଷ୍ଟିତ ହୋଇଥିଲେ । ମାତ୍ର ପଦ୍ୟ ଅପେକ୍ଷା ଗଦ୍ୟରେ ସେ ବିଶେଷ ପାରଦର୍ଶିତା ପ୍ରଦର୍ଶନ କରିପାରିବେ ନାହିଁ ବୋଲି ତାଙ୍କର ହୃଦ୍‌ବୋଧ ହେବାରୁ ଓଡ଼ିଆ କବିତା ରଚନା କରିବାରେ ପ୍ରୟାସୀ ହେଲେ । ବିବେକୀ ପ୍ରବନ୍ଧ ଓ ଇତାଲୀୟ ଯୁବା ଗଳ୍ପକୁ ରାଧାନାଥ ବାମ୍‌ସ ସାହେବଙ୍କ ପ୍ରରୋଚନା ପରେ ଲେଖିଥିଲେ । ଏହି ଦୁଇଟିଗୋଟି ରଚନା କବିବର ରାଧାନାଥଙ୍କର ସାଧନା ପ୍ରବୃତ୍ତିର ସୂଚନା ପ୍ରଦାନ କରିଥାଏ ।

ବିବେକୀ ପ୍ରବନ୍ଧରେ ରାଧାନାଥ ଯେଉଁ ଗଦ୍ୟଶୈଳୀ ପ୍ରଦର୍ଶନ କରିଅଛନ୍ତି ଇତାଲୀୟ ଯୁବା‌ରେ ପ୍ରାୟ ସେହି ଶୈଳୀ ପ୍ରବର୍ତ୍ତନ କରିଅଛନ୍ତି । ରାଧାନାଥଙ୍କର ଗଦ୍ୟଶୈଳୀ ଏହି ଗଳ୍ପରେ ବିଶେଷ ଆକର୍ଷଣୀୟ ହୋଇପାରିନାହିଁ । ତାଙ୍କ ରଚନାର କେତେକ ଉଦ୍ଧୃତ ଏଠାରେ ଦିଆଯାଇପାରେ ।

(୧) "ପ୍ରତିମୂର୍ତ୍ତି ଦେଖି ଆମ୍ଭର ମନରେ ଭୟ ସଞ୍ଚରିଲା । କିପାଇଁ ଏପରି ହେଲା, କହି ନପାରୁ ।"

(୨) "ଆନ ତିନିଜଣ ଅତିଥି ହସିଲେ ।"

(୩) "ଗୃହସ୍ୱାମୀ କହିଲେ ହସିବାର କଥା ନୁହେ ଟି !"

(୪) "ଯେବେ ଆପଣଙ୍କର କଷ୍ଟ ନହୁଏ ତେବେ ସେହି ଯୁବାଙ୍କର ବୃତ୍ତାନ୍ତ କହିବା ହେଉନ୍ତୁ ।"

(୫) "ଅନନ୍ତର ଦିନକରେ ଆମ୍ଭର କୌଣସି ଧନୀବନ୍ଧୁ ଆମ୍ଭଙ୍କୁ ନିମନ୍ତ୍ରିଲେ ।"

(୬) "ଆମ୍ଭେ ପୁଣି ସେଥିର ପ୍ରସଙ୍ଗ ନକଲୁ ।"

(୭) "ଆମୋଦରୁ ମନ ମାରିଦେଲୁ ।"

(୮) "ଅତିଥିମାନେ କହିଲେ ଆପଣ ଯାହା କହିବା ହେଲେ ତହିଁରେ ଛିବର ତ କୌଣସି କଥା ନାହିଁ ।"

(୯) "ସେ ସ୍ନେହ ଦୂଳହୋଇ ଆମ୍ଭଙ୍କୁ ଚଳାଉଥିଲେ ।"

(୧୦) "ଏହିପରି ସ୍ଥାନରେ ଆମ୍ଭେ ବାଲ୍ୟକାଳ ଗମିଲୁଁ ।"

(୧୧) "ପିତାଙ୍କ ଘର କେଉଁଠାରେ ଅବସ୍ଥିତ ଥିଲା ଆମ୍ଭେ ତାହା ଜାଣି ନଥିଲୁଁ ।

(୧୨) "ଅମ୍ଭଠାରେ ଏଇପରି ବ୍ୟବହାର ନକରି ପ୍ରଭୁ ଭୃତ୍ୟଠାରେ ଯେପରି କରଇ, ସେହିପରି କଲେ ।"

(୧୩) "ଆମ୍ଭେ ଆନନ୍ଦରେ ମଗ୍ନ ହୋଇ ଥରକୁ ଥର ସେହି ମୂର୍ତ୍ତି ଲୋଚନାର ପ୍ରତିମୂର୍ତ୍ତି ଲେଖିଲୁଁ । ଯେତେଥର ଲେଖିଲୁଁ ସେତେଥର ଲେଖିବାକୁ ମନବଳିଲା ।"

(୧୪) "ଆମ୍ଭେ ଏହିରୂପେ ଥୋକାଏ ଦିନ ଯାପିଲୁଁ ।"

(୧୫) "ନିର୍ଦ୍ଦୋଷ ମନୁଷ୍ୟ ସ୍ୱଭାବତଃ ସୁଖୀ ହୁଅଇ ।"

(୧୬. "ସେ ଯାହାହେଉ ଏବେ ଆନ ବିଷୟ ଶୁଣ ।"

ଏହିସବୁ ବାକ୍ୟ ପଠନ କରିବା ସମୟରେ ପାଠକ ଏହାକୁ ଊନବିଂଶ ଶତାବ୍ଦୀର ଓଡ଼ିଆ ଗଦ୍ୟର ପ୍ରକୃଷ୍ଟ ଉଦାହରଣ ରୂପେ ଗ୍ରହଣ କରିବାପାଇଁ କୁଣ୍ଠାବୋଧ କରିଥାଏ । ବ୍ରଜନାଥ ବଡ଼ଜେନାଙ୍କର ଚତୁର ବିନୋଦରେ ବ୍ୟବହୃତ ହୋଇଥିବା ଓଡ଼ିଆ ଗଦ୍ୟଶୈଳୀର ଏହା ସହିତ ଯଥେଷ୍ଟ ସାମଞ୍ଜସ୍ୟ ପରିଲକ୍ଷିତ ହୋଇଥାଏ । କବିବର ରାଧା-ନାଥଙ୍କର ସାହିତ୍ୟିକ ପ୍ରତିଭାର ପ୍ରକୃଷ୍ଟ ପରିଚୟ ଦେବାକୁ ଏହି ଅନୂଦିତ ଗଳ୍ପ ଏକାନ୍ତ ଅକ୍ଷମ । କବିବର ରାଧାନାଥଙ୍କର ପରବର୍ତ୍ତୀ ଜୀବନର କାବ୍ୟମାନଙ୍କରେ ଗୃହୀତ ହୋଇଥିବା ପ୍ରଣୟମୂଳକ କଥାବସ୍ତୁଗୁଡ଼ିକ ସହିତ ଏହି ଗଳ୍ପର କଥାବସ୍ତୁଗତ ସଂଯୋଜନାର ଯେ ସଂପର୍କ ରହିଅଛି ଏହା ସ୍ୱୀକାର କରାଯାଇପାରେ । ଓଡ଼ିଆ ସାହିତ୍ୟର ଅଧିକାଂଶ ସମାଲୋଚକଗଣ ବିବେକୀ ବା ଇଟାଲୀୟ ଯୁବାକୁ କୌଣସି ଗୁରୁତ୍ୱ ନଦେବାର ଦେଖାଯାଇଥାଏ । ମାତ୍ର ଏ ଦୁଇଟି ରଚନାର ଗୁରୁତ୍ୱକୁ ଭୁଲିଗଲେ ରାଧାନାଥ ସାହିତ୍ୟର ମୁଖଶାଳା ବିଷୟରେ ଧାରଣା କରିହେବ ନାହିଁ ।

## ମେଘଦୂତ

୧୮୭୪ ସାଲରେ ମେଘଦୂତ ଉତ୍କଳ ଦର୍ପଣରେ ପ୍ରକାଶ ପାଇ-ଥିଲା । ଇଟାଲୀୟ ଯୁବାର ଅନୁବାଦ ପରେ ଏହା ରାଧାନାଥଙ୍କର ଆଉ ଗୋଟିଏ ଅନୁବାଦ । ଇଂରେଜୀ ଭାଷାରୁ ଇଟାଲୀୟ ଯୁବାକୁ ଓଡ଼ିଆ ଭାଷାରେ ଅନୁବାଦ କରିବା ପରେ ରାଧାନାଥ ବୋଧହୁଏ ପାଠକମାନଙ୍କର ପ୍ରବୃତ୍ତିକୁ ଅନୁଧ୍ୟାନ କରୁଥିଲେ । ଇଟାଲୀୟ ଯୁବା ଓଡ଼ିଆ ପାଠକ ମହଲରେ ବିଶେଷ ଭାବରେ ଆଦୃତ ନହେବାରୁ ସେ ଦୁର୍ବଳ-ଗଦ୍ୟ-ସାହିତ୍ୟରେ ନିଜର ଅସଫଳତା ଲକ୍ଷ୍ୟକରି ପଦ୍ୟସାହିତ୍ୟରେ ମେଘଦୂତକୁ

ଅନୁବାଦ କରି ଆଉ ଏକ ପରୀକ୍ଷା କଲେ । ଇଟାଲୀୟ ଯୁବା ଭଳି ଗଳ୍ପରେ କୌଣସି ନୂତନତ୍ୱ ନଥିଲା ଯାହାକି ସେ ସମୟର ଓଡ଼ିଆ ପାଠକମାନଙ୍କୁ ମୁଗ୍‌ଧ କରିଥାଆନ୍ତା । ଇଟାଲୀୟ ଯୁବା ପରେ ପରେ ମେଘଦୂତକୁ ଅନୁବାଦ କରି ରାଧାନାଥ ଗଦ୍ୟସାହିତ୍ୟ ଅପେକ୍ଷା ପଦ୍ୟସାହିତ୍ୟରେ ତାଙ୍କର ଅଧିକ ପାରଦର୍ଶିତା ପ୍ରଦର୍ଶନ କଲେ । ମେଘଦୂତର ଅନୁବାଦ କବିବର ରାଧାନାଥଙ୍କୁ କମ୍ ପ୍ରଶଂସିତ କରିନାହିଁ ।

ମେଘଦୂତର ଅନୁବାଦ ଯେତେବେଳେ ପ୍ରକାଶ ପାଇଲା ସେତେବେଳେ ପାଠକମାନେ ତାହାକୁ ଏକ ଅନୂଦିତ କବିତାରୂପରେ ଗ୍ରହଣ ନକରି ଏକ ମୌଳିକ କବିତାର ମର୍ଯ୍ୟାଦା ଦେବାକୁ ପଶ୍ଚାତ୍‌ପଦ ହୋଇ ନଥିଲେ । ମେଘଦୂତ କଟକ ପଣ୍ଡିତ କ୍ଲାସ୍ ପ୍ରଥମ ଶ୍ରେଣୀର ପାଠ୍ୟପୁସ୍ତକ ଭିତରେ ବହୁକାଳ ଧରି ରହିଥିଲା (୧) । କୌଣସି ଉନ୍ନତ ସାହିତ୍ୟର ଭାବକୁ ଓଡ଼ିଆ ଭାଷାରେ କେବଳ ଅନୁବାଦ କରି ସାହିତ୍ୟକର ମର୍ଯ୍ୟାଦା ଲଭ କରିବା ଅସମ୍ଭବ ମନେକରି ରାଧାନାଥ ମେଘଦୂତ ଅନୁବାଦ ପରେ ବିଦେଶୀ ସାହିତ୍ୟର ଭାବ ଆହରଣ କରି ତାହାକୁ କାବ୍ୟରେ ଗର୍ଭିତ କରିବାଦ୍ୱାରା ଓଡ଼ିଆ କବିଭାବରେ ଅପ୍ରତିଦ୍ୱନ୍ଦ୍ୱୀ ଆସନର ଅଧିକାରୀ ହୋଇଅଛନ୍ତି । ତେଣୁ ଇଟାଲୀୟ ଯୁବାଠାରୁ ଆରମ୍ଭ କରି ବେଣୀ ସଂହାର ପର୍ଯ୍ୟନ୍ତ କବିବର ରାଧାନାଥ ଓଡ଼ିଆ ସାହିତ୍ୟକୁ ଯାହା ଦାନ କରିଅଛନ୍ତି ତାହା ତାଙ୍କର କବି ଜୀବନର ପ୍ରଚେଷ୍ଟା ନାମରେ ପରୀକ୍ଷା ଓ ନିରୀକ୍ଷାର ସମାହାର । ଏହି ପରୀକ୍ଷା ପରେ ରାଧାନାଥ ୧୮୮୫ ସାଲରେ ତାଙ୍କର ସାହିତ୍ୟ ସାଧନାର ଉପଯୁକ୍ତ ମାର୍ଗ ପ୍ରଦର୍ଶନ କରିଅଛନ୍ତି କେଦାରଗୌରୀ ରଚନାରେ ।

ମହାକବି କାଳିଦାସଙ୍କର ଅମରକୃତି ମେଘଦୂତର ଖ୍ୟାତି କେବଳ ଭାରତରେ ନୁହେଁ, ସମଗ୍ର ବିଶ୍ୱରେ ପରିବ୍ୟାପ୍ତ । କବି ଶିଲର୍ କାଳିଦାସଙ୍କର ମେଘଦୂତର ଛାୟାରେ ମେରିଆ ଷ୍ଟୁଆର୍ଟ ରଚନା କରିଥିଲେ । ମେଘଦୂତର ଇଂରେଜୀ ଅନୁବାଦ (The Cloud Messenger) କରିଛନ୍ତି ହୋରେସ୍ ହେମ୍ୟାନ୍ ଉଇଲ୍‌ସନ୍ । ମ୍ୟାକ୍ସ ମୂଲର ଓ ସୁଜା ଏହାକୁ ଜର୍ମାନୀ ଭାଷାରେ ଅନୁବାଦ କରିଅଛନ୍ତି । ମେଘଦୂତ ଏହିପରି

(୧) ଓଡ଼ିଆ ସାହିତ୍ୟର ଇତିହାସ—ନଟବର ସାମନ୍ତରାୟ—ପୃ. ୨୬୫

ଭାବରେ ବିଶ୍ୱବିଖ୍ୟାତ ହୋଇପାରିଅଛି । ଭାରତର ପ୍ରତ୍ୟେକ ପ୍ରାଦେଶିକ ଭାଷାରେ ବହୁକବିଙ୍କ ଦ୍ୱାରା ମେଘଦୂତର ଭିନ୍ନ ଭିନ୍ନ ଅନୁବାଦ ପ୍ରକାଶିତ ହୋଇଅଛି ।

ଭାରତୀୟ ସାହିତ୍ୟରେ କୃଷ୍ଣମୂର୍ତ୍ତି ମେଘଦୂତକୁ ଅନୁସରଣ କରି "ଷୋଲ୍ଲାସ" ରଚନା କରି ଅଭିନବ କାଳିଦାସ ଭାବରେ ନିଜକୁ ପରିଚିତ କରାଇ ଅଛନ୍ତି । ରାମଶାସ୍ତ୍ରୀଙ୍କର "ମେଘ ପ୍ରତି ସନ୍ଦେଶ"; କୋଟଡ଼ ରାମଚନ୍ଦ୍ରଙ୍କର "ଘନବୃତ୍ତ" ମହାମହୋପାଧ୍ୟାୟ ପରମେଶ୍ୱର ଝା ଙ୍କର "ଯକ୍ଷମିଳନ କାବ୍ୟ" ପ୍ରଭୃତି ମେଘଦୂତର ଅନୁସରଣରେ ରଚିତ ।

ମେଘଦୂତ ସମଗ୍ର ଭାରତରେ ଯେପରି ଖ୍ୟାତିସମ୍ପନ୍ନ ଭାରତ ବାହାରେ ମଧ୍ୟ ସେହିପରି ଖ୍ୟାତି ସମ୍ପନ୍ନ । ମେଘଦୂତକୁ ପୂର୍ବମେଘ ଓ ଉତ୍ତର ମେଘ, ଏହିପରି ଦୁଇଭାଗରେ ବିଭକ୍ତ କରାଯାଇଅଛି । ପୂର୍ବ-ମେଘରେ କବି ପ୍ରକୃତିର ଅପରୂପ ଚିତ୍ରାଙ୍କନ କରିଅଛନ୍ତି ଏବଂ ଉତ୍ତର ମେଘରେ ପ୍ରେମର ବଳିଷ୍ଠତା ପ୍ରକାଶ କରି ଅଛନ୍ତି । କାଳିଦାସଙ୍କର ମେଘଦୂତ ବିଷୟରେ ଆମେରିକାର ବିଖ୍ୟାତ ସାହିତ୍ୟିକ ରାଇଡ଼ର୍ (Rider) ଯେଉଁ ମତ ପ୍ରଦାନ କରିଅଛନ୍ତି ତାହା ଏଠାରେ ଉଲ୍ଲେଖ କରାଯାଇ ପାରେ ।

"The former half is a description of external nature, yet interwoven with human feeling; the latter half is framed in natural beauty. So exquisitely is the thing done that none can say which half is superior. Of those who read this perfect poem in its original text, some are moved by the one, some by the other. Kalidas understood in the fifth century what Europe did not learn until the ninteenth and even now comprehends only imperfectly, that the world was not made for man, that man reaches his full stature only as he realizes the originality and worth of life that is not humane. That Kalidas seized this truth is a

magnificent tribute to his intellectual power, a quality quite as necessary to great poetry as perfection of form. Poetical fluency is not rare; intellectual grasp is not very uncommon; but the combination of the two has not been found perhaps more than dozen times since the world began. Because he possesses this harmonious combination."

ମେଘଦୂତର ଖ୍ୟାତି ଏବଂ ରସମାଧୁର୍ଯ୍ୟ କବିବର ରାଧାନାଥଙ୍କୁ ଆକୃଷ୍ଟ କରିବା ନିତାନ୍ତ ସ୍ୱାଭାବିକ । କବିବର ରାଧାନାଥହିଁ ପ୍ରଥମ ଓଡ଼ିଆ କବି ଯେ କି ମେଘଦୂତର ଓଡ଼ିଆ ଅନୁବାଦ କରିଅଛନ୍ତି । ତାଙ୍କପରେ ପଣ୍ଡିତ ଗୋପିନାଥ ନନ୍ଦ, ପଣ୍ଡିତ ଦାଶରଥି ମିଶ୍ର, ବଂଶୀଧର ମହାନ୍ତି, ରାଧାମୋହନ ଗଡ଼ନାୟକ ଓ ଜାନକୀ ବଲ୍ଲଭ ମହାନ୍ତି ପ୍ରମୁଖ ବହୁ କବି ମେଘଦୂତର ଓଡ଼ିଆ ଅନୁବାଦ ପ୍ରକାଶ କରିଅଛନ୍ତି । କବିବର ରାଧାନାଥଙ୍କର ଅନୁବାଦକୁ ସର୍ବଶ୍ରେଷ୍ଠ ବୋଲି ଗ୍ରହଣ କରାଗଲେହେଁ ତହିଁରେ କେତେକ ଦୋଷତ୍ରୁଟି ପରିଲକ୍ଷିତ ହୋଇଅଛି ।

କବି ରାଧାମୋହନ ଗଡ଼ନାୟକ ରାଧାନାଥଙ୍କର ଅନୁବାଦ ବିଷୟରେ ମତ ପ୍ରଦାନ କରି ଲେଖିଛନ୍ତି, "କବି ରାଧାନାଥ ସ୍ୱୀୟ କାବ୍ୟ ସୃଷ୍ଟିରେ ଯେଉଁପରି ସିଦ୍ଧି ପାଇଅଛନ୍ତି ମେଘଦୂତର ଅନୁବାଦରେ ମଧ୍ୟ ତଦ୍ରୂପ ସାଫଲ୍ୟଲାଭ କରିନାହାନ୍ତି । ମାତ୍ର ଅନୁବାଦରେ ମୂଳକବିଙ୍କ ଭାବକୁ ସ୍ଥାନେ ସ୍ଥାନେ ଛାଡ଼ିଦେଇ ସ୍ୱାତନ୍ତ୍ର୍ୟ ଗ୍ରହଣ କରିଅଛନ୍ତି, କେଉଁଠି କେଉଁଠି ମଧ୍ୟ ମୂଳଭାବକୁ ଓଲଟା କରି ଲେଖିଛନ୍ତି, କେଉଁଠାରେ ବା ଅଯଥା ଦୀର୍ଘ କରିଦେଇଛନ୍ତି । ବହୁତ ସ୍ଥାନରେ ଭ୍ରମ ପ୍ରମାଦ ରହି ଯାଇଛନ୍ତି" (୧) । ରାଧାନାଥଙ୍କର ଏହି ଭ୍ରମ ପ୍ରମାଦକୁ ଲକ୍ଷ୍ୟ କରି କବି ରାଧାମୋହନ ଗଡ଼ନାୟକ ନିର୍ଭୁଲ ଭାବରେ ମେଘଦୂତର ଅନୁବାଦ କରିବାରେ ସଫଳତା ଅର୍ଜନ କରିଅଛନ୍ତି । କବିବର ରାଧାନାଥ ଓଡ଼ିଆ ସାହିତ୍ୟରେ ମେଘଦୂତକୁ ପ୍ରଥମଥର ପାଇଁ ଅନୁବାଦ କରିବା ପରେ ଅନ୍ୟ କବିମାନେ କ୍ରମେ ତାହା କରିଅଛନ୍ତି । କବିବର ରାଧାନାଥଙ୍କର ଅନୁବାଦ ଓ କେତେକ କବିଙ୍କର ଅନୁବାଦ କିପରି ଭାବରେ ପ୍ରକାଶ ପାଇଅଛି ତାହା ଏଠାରେ ଉଦ୍ଧାର କରାଯାଇପାରେ ।

---

(୧) ମେଘଦୂତ-ଭୂମିକା—ରାଧାମୋହନ ଗଡ଼ନାୟକ ପୃ-୭

(୧) ମୂଳରଚନା:—

"କଶ୍ଚିତ୍ କାନ୍ତାବିରହଗୁରୁଣା ସ୍ୱାଧିକାରାତ୍ ପ୍ରମତ୍ତଃ
ଶାପେନାସ୍ତଂଗମିତମହିମା ବର୍ଷଭୋଗ୍ୟେଣ ଭର୍ତ୍ତୁଃ ।
ଯକ୍ଷଶ୍ଚକ୍ରେ ଜନକତନୟା-ସ୍ନାନପୁଣ୍ୟୋଦକେଷୁ
ସ୍ନିଗ୍ଧଚ୍ଛାୟା-ତରୁଷୁ ବସତିଂ ରାମଗିର୍ଯ୍ୟାଶ୍ରମେଷୁ ॥"

(୨) କବିବର ରାଧାନାଥ:—

"ଦକ୍ଷିଣଦେଶେ ରାମଗିରି ଶୋଭନ,
ବିମଳ ଶୁଭ୍ର ଯହିଁ ନଦୀଜୀବନ,
ଜନକକନ୍ୟା ସ୍ନାନେ ପବିତ୍ର ଅତି,
ସ୍ନିଗ୍ଧଛାୟା ଯହିଁ ତରୁ ବ୍ରତତୀ ।
ତହିଁ କୁବେର ଶାପେ ହୋଇ ପ୍ରେରିତ,
ରହିଲା ଯକ୍ଷ ଦୁଃଖେ ଆତୁର ଚିତ୍ତ,
ବର୍ଷର ଅନ୍ତେ ହେବ ଶାପମୋଚନ,
ବର୍ଷର ଅନ୍ତେ କାନ୍ତା ସଙ୍ଗେ ମିଳନ ।"

(୩) କବି ରାଧାମୋହନ ଗଡ଼ନାୟକ:—

"ଲକ୍ଷ୍ୟ-ହରା ସେ ଯକ୍ଷ ଯୁବକ
ବରଷକ ଲାଗି ପ୍ରଭୁର ଶାପେ
ଗତ-ଗୌରବ ହୃତ-ବୈଭବ
ମୁଗ୍ଧ ବଧୂର ବିରହ-ତାପେ
ରାମଗିରି ବନେ
ବନ୍ଧ୍ୟ ଆଶ୍ରମେ
ରହିଲା ଆତୁର ଅଥୟ ମନେ
ନିର୍ବାସନେ,
ସୀତା-ସ୍ନାନେ ଯହିଁ ପୁଣ୍ୟଜଳ,
ଛାୟାତରୁ-ଦଳେ ସ୍ନିଗ୍ଧଜଳ ।"

(୪) ଜାନକୀ ବଲ୍ଲଭ ମହାନ୍ତି:—

"ଅଦେଖାର ଅଭିଶାପ ବହି
ଅଭିସାର ବିଭୋରଏ ଯକ୍ଷ ଯାପିବ ବର୍ଷି
ବିରହରେ ପ୍ରିୟାହାତ ଗୃହିଁ ।

ଏଇ ସେଇ ରାମଗିରି
ଏଇ ତାର ଝରଣା ତ ଝରରେ
ଜନକନନ୍ଦିନୀ ଗଲେ
ଅବଗାହ ଯେଉଁ ଝରଣାରେ
ତରୁଲତା ଛାଇଥିବ ମନୋରମ ରାମଗିରି
ବରକ୍ଷକ ବସତିକା ଯହିଁ ।"

ଶ୍ଲୋକର ଅନୁବାଦ କରିବାକୁ ଯାଇ କବିବର ରାଧାନାଥ କିପରି ଭାବରେ ନିଜର ସ୍ୱାତନ୍ତ୍ର୍ୟ ପ୍ରଦର୍ଶନ କରିଅଛନ୍ତି, ତାହା ମେଘଦୂତର ପ୍ରଥମ ଶ୍ଲୋକର ଅନୁବାଦରେ ପ୍ରକାଶ ପାଇଅଛି । କବି କାଳିଦାସଙ୍କର ରଚନାର ପଦକ୍ରମକୁ ସେ ଆକ୍ଷରିକ ଅନୁବାଦ କରି ରକ୍ଷାକରି ନାହାନ୍ତି । ଏହି ଦୃଷ୍ଟିରୁ କବି ରାଧାମୋହନ ଗଡ଼ନାୟକଙ୍କର ଅନୁବାଦ ଯଥାର୍ଥ ହୋଇଅଛି ବୋଲି କୁହାଯାଇପାରେ । ମାତ୍ର ଏହି କ୍ରମରକ୍ଷା ନ କରି କବିବର ରାଧାନାଥ ଯେ କୌଣସି ପ୍ରକାର ଅକ୍ଷମଣୀୟ ଅପରାଧ କରିଅଛନ୍ତି, ଏକଥା କୁହାଯାଇ ନ ପାରେ । କବିବର ରାଧାନାଥଙ୍କର ସ୍ୱକୀୟ ବର୍ଣ୍ଣନାଶୈଳୀର ଏହା ଏକ ଉଦାହରଣ । କବିବର ରାଧାନାଥ ଯଦି ଏହି କ୍ରମ ରକ୍ଷାକରିବାରେ ଅସମର୍ଥ ହୋଇ ଅନୁବାଦରେ ତ୍ରୁଟି କରିଅଛନ୍ତି ବୋଲି ଧରାଯାଏ, ତାହାହେଲେ ଜାନକୀବଲ୍ଲଭ ମହାନ୍ତିଙ୍କର ତ୍ରୁଟି ଏହି ଦୃଷ୍ଟିରୁ ଆହୁରି ଅଧିକ । କବିବର ରାଧାନାଥ ମେଘଦୂତର ଆକ୍ଷରିକ ଅନୁବାଦ ନ କରି କିପରି ଭାବରେ ନିଜର ସ୍ୱାତନ୍ତ୍ର୍ୟ ପ୍ରଦର୍ଶନ କରିଅଛନ୍ତି, ତାହା ମେଘଦୂତର(ପୂର୍ବମେଘ) ୩୬ଶ ଶ୍ଲୋକର ଅନୁବାଦରୁ ପରୀକ୍ଷା କରାଯାଇପାରେ ।

(୧) ମୂଳରଚନା :—

"ଜାଲୋଦ୍‌ଗୀର୍ଣ୍ଣୈରୁପଚିତବପୁଃ କେଶସଂସ୍କାରଧୂପୈଃ
ବନ୍ଧୁପ୍ରୀତ୍ୟା ଭବନଶିଖିଭିର୍ଦତ୍ତନୃତ୍ୟୋପହାରଃ ।
ହର୍ମ୍ୟେଷ୍ୱସ୍ୟାଃ କୁସୁମସୁରଭିଷ୍ୱଧ୍ୱଖେଦଂ ନୟେଥାଃ
ଲକ୍ଷ୍ମୀଂ ପଶ୍ୟନ୍ ଲଳିତବନିତା ପାଦରାଗାଙ୍କିତେଷୁ ।"

(୨) କବିବର ରାଧାନାଥ:—

"କେଶସଂସ୍କାର ଧୂପ ଗବାକ୍ଷଦ୍ୱାରେ
ବାହାରି ମିଶୁଥିବ ତୋହୋ କାୟାରେ,

ନାଚବେ ତୋ ଦର୍ଶନେ ଗୃହ-ମୟୂର,
ଗମ୍ଭୀର କେକାରବେ ପୂରିବ ପୁର ।
କୁସୁମ-ଶୋଭି-ସୌଧତଳ୍ପ-ଆସନେ
ପଥଶ୍ରମ ଶମିବୁ ସୁଖ ଶୟନେ,
ସୀମନ୍ତିନୀ ପଦାଙ୍କ ତହିଁ ଉପରେ
ଦେଖିବୁ ହର୍ମ୍ୟେ ଯେଉଁ ରକ୍ତିମା ଝରେ ।"

(୩) କବି ରାଧାମୋହନ ଗଡ଼ନାୟକ:—

"ବାତାୟନୁ ତହିଁ ଉଠୁଥିବ ଯେଉଁ
କେଶସଂସ୍କାର ଧୂପର ଧୂମ
ଜଳଧର ! ତହିଁ ପୁଷ୍ଟ କରିବ
ଅଙ୍ଗ ତୁମ;
ବନ୍ଧୁ-ସ୍ନେହୀ ବରହିଗଣ
ଦେଖାଇବେ ତୋତେ ନୃତ୍ୟ-ଧନ ।
ତା ପରେ ଦେଖିବ ସଉଧେ ପୂରିତ କୁସୁମଗନ୍ଧ
ବନିତା-ପାଦର ଅଳତା-ଚିହ୍ନ ନୟନାନନ୍ଦ
ଲକ୍ଷ୍ମୀପୁରର ଲକ୍ଷ୍ମୀ ହେରି
ପଥଖେଦ ତୁମେ ଯିବ ହେ ଭୁଲି ।"

(୪) ଜାନକୀବଲ୍ଲଭ ମହାନ୍ତି :-

"ବାତାୟନ ଧାରୁ ଉଠୁଥିବ ଯେଉଁ
ଧୂପର ଧୂମର ଧାରା
ସେହି ତାର ଘନ ଭରିବ ପରାଣ,
ଶରୀର କରିବ ଭରା
ସାଥି ସୋହାଗରେ ଝଲସି ଉଠିବେ
ବରହୀକୁଳ
ନାଚିବା ଛଳରେ ଉପହାର ଆଣି
କରିବେ ତୁଲ
ଦେଖି ଦେଖି ଯିବ ଶୋଭାର ପସରା
କେତେକ ପଥରେ ପରା ।

ତା' ପରେ ଦେଖିବ ପାଶେ          ମନ୍ଦାକିନୀ ଉଠୁଛି ବାସେ
                                          ଅଳକାପୁରୀ
ତରୁଣୀ ଚରଣତଳ                ଅଳତା ବରଣଗାର
                                          ରହିଛି ଭରି,
କୁବେର ପୁରୀର ଭରା-ଧନ ଭଣ୍ଡାରର ସାରି
ନିରେଖି ଯିବ ହେ ଘନ ଚଳଖେଦ ଭୁଲି
                    ହୋଇବ ପରାଣ ପୂରି ।”

ମେଘଦୂତର ଅନୁବାଦ ରାଧାନାଥଙ୍କର କାବ୍ୟରଚନାର ପ୍ରସ୍ତୁତି-ପଥର ଏକ ସୋପାନ ମାତ୍ର । ଏଥିରେ ଯେଉଁ ପରିମାଣରେ ଦୋଷତ୍ରୁଟି ରହିବାର କଥା, ତାହା ନାହିଁ । ରାଧାନାଥଙ୍କର ଭବିଷ୍ୟତ କବିଜୀବନ ଲାଗି ମେଘଦୂତ ସତେ ଯେପରି ଏକ ନିର୍ଭରଶୀଳ ପ୍ରତିଶ୍ରୁତି । ମେଘଦୂତର ଅନୁବାଦରେ ରାଧାନାଥ ନିଜର ସ୍ୱାତନ୍ତ୍ର୍ୟର ଯେଉଁ ଆଦ୍ୟ ପରିଚୟ ପ୍ରଦାନ କରିଥିଲେ, ତାହା ତାଙ୍କର ପରବର୍ତ୍ତୀ କାବ୍ୟମାନଙ୍କରେ କିପରି ଭାବରେ ପୂର୍ଣ୍ଣତାଲାଭ କରିଅଛି, ତାହା ଲକ୍ଷ୍ୟ କରିବାର କଥା ।

## କବିତାବଳୀ

ମେଘଦୂତର ଅନୁବାଦ ପରେ ରାଧାନାଥ କବିତାବଳୀ ନାମରେ ତିନିଗୋଟି କବିତା ରଚନା କରିଥିଲେ । ଏହି କବିତାଗୁଡ଼ିକ ହେଲା- ପବନ, ବେଣୀସଂହାର ଓ ଭାରତେଶ୍ୱରୀ । ଏହି କବିତାଗୁଡ଼ିକ ୧୮୭୭ ସାଲରେ ପ୍ରକାଶିତ ହୋଇଥିଲା । ପବନ ଓ ବେଣୀସଂହାର କବିତା-ଦ୍ୱୟରେ ରାଧାନାଥ ଆଧୁନିକ ଓଡ଼ିଆ କବିତାର ଭିତ୍ତିଭୂମି ସ୍ଥାପନ କରି-ଅଛନ୍ତି ବୋଲି ସମାଲୋଚକମାନେ ମତପ୍ରଦାନ କରିଥାଆନ୍ତି । ରାଧାନାଥଜୀବନୀ ଲେଖକଙ୍କ ମତରେ “କବିତାବଳୀ”ର ପବନ ନାମକ କବିତାରେ ସେ ନିଜ ମନର ଭାବ ଏବଂ ପ୍ରାକୃତିକ ବର୍ଣ୍ଣନା ସ୍ଥିରରଖି ଭାଷାକୁ ଏକପ୍ରକାର ସୌନ୍ଦର୍ଯ୍ୟ ପ୍ରଦାନ କରିଅଛନ୍ତି । ପୁଣି ବେଣୀସଂହାର ଅନ୍ୟ ଏକ ଛନ୍ଦରେ ଲିଖିତ । ତହିଁରେ ବୀର ଏବଂ ରୌଦ୍ରରସ ଏକାଧାରରେ ସନ୍ନିବିଷ୍ଟ ରହି ପାଠକପାଠିକାଙ୍କ ମନ

ଅନ୍ତର୍ଣ କରୁଅଛି । ସେ ଏତେ ତରୁଣ ବୟସରେ ମାଧୁର୍ଯ୍ୟଶାଳୀନୀ କବିତା ଲେଖିପାରୁଥିଲେ, ଏହା ଚିନ୍ତାକଲେ ଆଶ୍ଚର୍ଯ୍ୟାନ୍ୱିତ ହେବାକୁ ହୁଏ । ସେତେବେଳେ ତାହାଙ୍କର ରାଜଭକ୍ତି ଏତେ ପ୍ରବଳ ହୋଇ-ଉଠିଥିଲ ଯେ, ହୃଦୟର ଆବେଗ ସମ୍ଭାଳି ନ ପାରି ମାରତେଶ୍ୱରୀ ନାମକ ଗୋଟିଏ କବିତା ରଚନା କରିଥିଲେ । କବିତାବଳୀ ରଚନା କରି ସେ ଓଡ଼ିଆ ପାଠ୍ୟପୁସ୍ତକର ଅଭାବ ମୋଚନ କରିଥିଲେ (୧) ।

ରାଧାନାଥ ଜୀବନୀର ଲେଖକ କବିତାବଳୀ ପ୍ରସଙ୍ଗରେ ରାଧାନାଥଙ୍କର ପ୍ରଶଂସା ଗାନକରିବା ନିତାନ୍ତ ସ୍ୱାଭାବିକ । କବିବର ରାଧାନାଥଙ୍କର ଜୀବନ ଓ ସାହିତ୍ୟ ବିଷୟରେ ରାଧାନାଥ-ଜୀବନୀକୁ ଏକ ନିରପେକ୍ଷ ଯୁକ୍ତିନିଷ୍ଠ ଗ୍ରନ୍ଥ ଭାବରେ ଗ୍ରହଣ କରିବାରେ ଅନେକ ପ୍ରତିବନ୍ଧକ ରହିଅଛି । ଜୀବନୀଲେଖକ ଓ ଅନ୍ୟାନ୍ୟ ଅନେକ ଆଲୋଚକ ରାଧାନାଥଙ୍କ ଜୀବନ ଓ ସାହିତ୍ୟ ବିଷୟରେ କେବଳ ପ୍ରଶଂସାରେ ଶତମୁଖ ହୋଇଅଛନ୍ତି । ପବନ ଏବଂ ବେଣୀସଂହାର ବିଷୟରେ ଜୀବନୀ-ଲେଖକ କେତେକାଂଶରେ ଯଥାର୍ଥ ମତପ୍ରକାଶ କରିଥିଲେ ହେଁ ଭାରତେଶ୍ୱରୀ ବିଷୟରେ ସେ ଯେଉଁ ମତପ୍ରଦାନ କରିଅଛନ୍ତି, ତାହା କେବେହେଲେ ଯଥାର୍ଥ ହୋଇ ନପାରେ । କବିବର ରାଧାନାଥ ରାଜଭକ୍ତିର ପ୍ରାବଲ୍ୟ ଯୋଗୁଁ ହୃଦୟର ଆବେଗକୁ ସମ୍ଭାଳି ନ ପାରି ଏହି କବିତାଟିକୁ ରଚନା କରିଥିଲେ ବୋଲି କେବେହେଲେ କୁହାଯାଇ ନ ପାରେ । ଜୀବନୀଲେଖକ ଶେଷରେ ଯେଉଁ ଗୋଟିଏ ଧାଡ଼ିରେ ମତପ୍ରଦାନ କରିଅଛନ୍ତି, ତାହାହିଁ ଯଥାର୍ଥ । ରାଧାନାଥ କେବଳ ପାଠ୍ୟପୁସ୍ତକ ଉଦ୍ଦେଶ୍ୟରେ କବିତାବଳୀର କବିତାଗୁଡ଼ିକ ଲେଖିଅଛନ୍ତି । ବିଦେଶୀ ସରକାର ପ୍ରତି ଭବିଷ୍ୟତ ଜୀବନରେ ବିଶ୍ୱସ୍ତ ଏବଂ ଆସକ୍ତ ରହିବା ପାଇଁ ଇଂରେଜଶାସନ ସମୟରେ ଇଂରେଜ ସାମ୍ରାଜ୍ୟର ବିଦ୍ୟାଳୟମାନଙ୍କରେ ଛାତ୍ରଛାତ୍ରୀମାନଙ୍କୁ ରାଜଭକ୍ତି ବିଷୟରେ ଶିକ୍ଷାଦାନ କରାଯାଉଥିଲା । ସେ ସମୟର ବିଦ୍ୟାଳୟର ପାଠ୍ୟନିର୍ଘଣ୍ଟରେ ଏହାକୁ ଅନ୍ତର୍ଭୁକ୍ତ କରାଯାଇଥିଲା । ପାଠ୍ୟନିର୍ଘଣ୍ଟର ଅନୁରୋଧରେ ପାଠ୍ୟ ପୁସ୍ତକ ରଚନା

---

(୧) ରାଧାନାଥ ଜୀବନୀ—ପୃ.୭୩୧

କରିବା ସମୟରେ କବିବର ରାଧାନାଥ ଏହି କବିତାଟିକୁ ରଚନା କରି-
ଥିଲେ । ଏଥିରେ ରାଧାନାଥଙ୍କର ହୃଦୟାବେଗର ସତ୍ତା ନ ଥିଲା । ନିଜକୁ
ଗୋଟିଏ ପୋଷା କୁକୁର ମନେକରି ନିଜର ଆତ୍ମଚରିତ ଲେଖିଥିବା
କୌଣସି ବ୍ୟକ୍ତି ଯେପରି ପୋଷା କୁକୁର ନୁହେଁ, ଭାରତେଶ୍ୱରୀ କବିତା
ରଚନା କରିଥିବା ରାଧାନାଥ ସେହିପରି କେବେହେଲେ ଏହି ଦୃଷ୍ଟିରୁ
ରାଜଭକ୍ତ ନୁହନ୍ତି । କବିତାବଳୀର କବିତାଗୁଡ଼ିକ ପାଠ୍ୟପୁସ୍ତକର
କେତେକ ସାଧାରଣ ପଦ୍ୟ ମାତ୍ର । ଏଥିରୁ ରାଧାନାଥଙ୍କର କବିତ୍ୱଶକ୍ତିକୁ
ଖୋଜି ଅଯଥାରେ ପ୍ରଶଂସା କରିବାର କୌଣସି କାରଣ ଥିଲା ବୋଲି
ମନେହୁଏ ନାହିଁ । କବିତାବଳୀ ପ୍ରକାଶିତ ହେବା ପରେ ୧୮୭୭ ସାଲରେ
ଜଣେ ଆଲୋଚକ ମତପ୍ରଦାନ କରିଥିଲେ, "ଯେମନ୍ ତେମନ୍
କବିତା ଲେଖି ନାମ ବାହାର କରିବା ଅପେକ୍ଷା ବରଂ କବିତା ନ ଲେଖିବା
ଭଲ । ଯେଉଁ କବିତା ସାହିତ୍ୟ ସଂସାରର ନମୂନା ସ୍ୱରୂପ ହେବ, ସେହିଭଳି
କବିତା ଲେଖିବା ବାଞ୍ଛନୀୟ । × × × ପ୍ରକୃତ ବୋଲୁଅଛୁଁ, ଶଂସିତ
ପୁସ୍ତକର କବିତାମାନ ଆଧୁନିକ ଉତ୍କଳର ପଦ୍ୟସଂସାରରେ ପ୍ରଥମ ନମୁନା
ସ୍ୱରୂପ ହୋଇଅଛି । ରାଧାନାଥବାବୁ ବଙ୍ଗଳା ଭାଷାରେ କବିତାବଳୀ ଲେଖି
ବଙ୍ଗସାହିତ୍ୟର ଆଲୋଚକଙ୍କ ଠାରୁ ପ୍ରଶଂସା ପାଇଅଛନ୍ତି, ଉତ୍କଳଭାଷାରେ
ଯେ ସେ ସୁକବିତା ଲେଖି ଯଶସ୍ୱୀ ହେବେ, ଏଥିରେ ବିଚିତ୍ର କି ?" (୧)

୧୮୭୭ ସାଲରେ ଜଣେ ଆଲୋଚକଙ୍କ କବିତାବଳୀ ବିଷୟରେ
ଦେଇଥିବା ଉପରୋକ୍ତ ମତକୁ ମଧ୍ୟ ଯଥାର୍ଥ ଭାବରେ ଗ୍ରହଣ କରାଯାଇ
ପାରିବ ନାହିଁ । ଏଥିରୁ ଜଣାଯାଏ ଯେ ଆଲୋଚକ ନିଶ୍ଚିତ ଭାବରେ
ଜଣେ ଆଧୁନିକପନ୍ଥୀ ଏବଂ କବିବର ରାଧାନାଥଙ୍କର ସମର୍ଥକ । ତାଙ୍କ
ମତ ଅନୁସାରେ କବିତାବଳୀର କବିତାସମୂହ ଆଧୁନିକ ଓଡ଼ିଆ
କବିତାର ଯଥାର୍ଥ ରୂପ । ଏପ୍ରକାର ମତରେ କେବେହେଲେ ସମୀଚୀନତା
ନ ଥାଇପାରେ । ପଡ଼ୋଶୀ ପ୍ରଦେଶର ବିଦ୍ୟାଳୟମାନଙ୍କରେ ପ୍ରଚଳିତ
ଥିବା ପାଠ୍ୟପୁସ୍ତକର ବିଷୟ ଅନୁକରଣରେ ଲିଖିତ କବିତାଗୁଡ଼ିକ
ଆଧୁନିକ ଓଡ଼ିଆ କବିତାର ସାର୍ଥକରୂପ ହୋଇ ନ ପାରେ । ବରଂ

(୧) ଓଡ଼ିଆ ସାହିତ୍ୟର ଇତିହାସ-ନଟବର ସାମନ୍ତରାୟ-ପୃ.୨୭୫-୨୭୭

କୁହାଯାଇପାରେ ଯେ କବିବର ରାଧାନାଥ ଆଧୁନିକ ଓଡ଼ିଆ କାବ୍ୟ-ସାହିତ୍ୟ ସୃଷ୍ଟି କରିବା ଲାଗି ଯେଉଁ ନୂତନ ଦୃଷ୍ଟିକୋଣର ଆବଶ୍ୟକତା ସେତେବେଳେ ଅନୁଭବ କରିଥିଲେ, ତାହାର ପ୍ରକାଶ କେତେକାଂଶରେ ଏହି କବିତାଗୁଡ଼ିକରେ ହୋଇଥିବାର ଦେଖିବାକୁ ମିଳେ ।

କବି 'ପବନ' କବିତାରେ ପବନକୁ ସମ୍ବୋଧନ କରି ତାର ବୈଶିଷ୍ଟ୍ୟ ପ୍ରକାଶ କରିଅଛନ୍ତି । ପବନ ସର୍ବବ୍ୟାପୀ—ପବନ ଯୋଗୁଁ ସୃଷ୍ଟିରେ ଜୀବନ ସମ୍ଭବ । ଏହି ସତ୍ୟ ସମସ୍ତଙ୍କ ନିକଟରେ ବିଦିତ ଥିଲେ ହେଁ କବିବର ରାଧାନାଥ ଏହି ସତ୍ୟକୁ ସେ ସମୟର ଏକ ନୂତନ ରୀତିରେ ଏହି କବିତାରେ ରୂପାୟିତ କରିଅଛନ୍ତି । ପବନର ଗୁରୁତ୍ୱ ପ୍ରଦର୍ଶନ କରିବାକୁ ଯାଇ କବି ଲେଖିଛନ୍ତି,

"ଚରାଚର ଜୀବର ଜୀବଧାରଣ
ତୋ ଯୋଗୁଁ ହୁଅଇ ହେ ସମୀରଣ !
ସ୍ଥଳଚର ସ୍ଥଳେ ମୀନ ଆଦି ଜଳେ
ତୋ ପ୍ରଭାବେ ନଭେ ଖଗ ଚେତନ;
ତୋ ବିନୁ ସମସ୍ତେ ହେବେ ନିଧନ ।"

ବିଦ୍ୟାଳୟର ଛାତ୍ରଛାତ୍ରୀମାନଙ୍କ ପକ୍ଷରେ ଏ ପ୍ରକାର ବର୍ଣ୍ଣନା ଯେ ଅତ୍ୟନ୍ତ ଶିକ୍ଷଣୀୟ ହୋଇଅଛି, କହିବା ବାହୁଲ୍ୟ ମାତ୍ର । କବିବର ରାଧାନାଥ ଏହି କବିତାରେ ନିଜର ପ୍ରକୃତି-ପ୍ରେମପ୍ରବଣତା ମଧ୍ୟ ପ୍ରକାଶ କରିଅଛନ୍ତି । ପବନର ଗତିବିଧି ପ୍ରକାଶ କରିବାକୁ ଯାଇ ସେ ଲେଖିଛନ୍ତି,

"ବିମଳା ତଟିନୀ ତଟ କାନନେ
ବସନ୍ତେ କୋକିଳ ଭ୍ରମର ସ୍ୱନେ
ନଦୀ କଳ କଳ ଶୁଣିଣ ଚଞ୍ଚଳ
ହୁଅଇ ତୋ ମନ ଗୃହୁଁ ବଚନେ
ନଦୀକୁ ରହସ୍ୟ ପୃଚ୍ଛୁ ବିଜନେ ।"

ପବନର ଗତିବିଧିକୁ ଚିନ୍ତା କରି କବିବର ରାଧାନାଥ କାଳ୍ପନିକତାର ସ୍ରୋତରେ ଭାସିଯାଇ ଅତୀତର କେତେକ ପୌରାଣିକ ପରମ୍ପରାର ଉଲ୍ଲେଖ କରିଅଛନ୍ତି । ପବନ କେଉଁ ଅନାଦି କାଳରୁ ବହି ଚାଲିଛି ।

କେତେ ଘଟଣା ମୁଁ ଦେଖିଛି । କେତେ ଉଲ୍ଲେଖଯୋଗ୍ୟ କାଣ୍ଡ ମୁଁ ସୃଷ୍ଟି କରିଛି । ପବନ ଯେ କେବଳ ଜୀବଜଗତକୁ ବଞ୍ଚାଇ ରଖିଛି, ତାହା ନୁହେଁ । ତାହାର କାର୍ଯ୍ୟକଳାପରେ କେତେ ପ୍ରେମାଞ୍ଚକର ଅନୁଭୂତ ଜଡିତ । ଦ୍ୱାପରଯୁଗରେ ଶ୍ରୀକୃଷ୍ଣ କଦମ୍ବମୂଳରେ ବଂଶୀନାଦ କରି ଗୋପକାମିନୀଙ୍କର ଚିତ୍ତହରଣ କରିଥିଲେ । ଗୋପକାମିନୀଙ୍କର ଚିତ୍ତହରଣ କରିଥିଲା ବଂଶୀର ସ୍ୱନ । ବଂଶୀର ସ୍ୱନ ହିଁ ପବନର ସୃଷ୍ଟି । କବି ଅତ୍ୟନ୍ତ ଦକ୍ଷତାର ସହିତ ଏହି ଭାବକୁ ବ୍ୟକ୍ତ କରିଅଛନ୍ତି ।

"ପ୍ରଫୁଲ୍ଲ ସୁରଭି କଦମ୍ବ ମୂଳେ,
ଜଳବେଣୀ ରମ୍ୟ କାଳିନ୍ଦୀ କୂଳେ
ରସରାଜ ହରି ବଂଶୀନାଦ କରି
ମୋହିଲେ ଗୋପାଳ କାମିନୀକୁଳେ
ସେ ଧ୍ୱନି ଜନମ ବାୟୁ ! ତୋ କୁଳେ ।"

ବେଣୀସଂହାର କବିତାରେ କବି ଭାରତୀୟ ପୌରାଣିକ ପରଂପରାର ଗୋଟିଏ ଘଟଣାକୁ ରୂପାୟିତ କରିଅଛନ୍ତି । ଏହାର କଥାବସ୍ତୁ ମୁଖ୍ୟତଃ ସାରଳା ମହାଭାରତରୁ ଗୃହୀତ ହୋଇଅଛି । ମହାଭାରତ ଯୁଦ୍ଧର ଏକ ଅଂଶ ଏଥିରେ ବର୍ଣ୍ଣିତ । ଦ୍ରୌପଦୀଙ୍କୁ ଅପମାନିତ କରିବା ଉଦ୍ଦେଶ୍ୟରେ ଦୁଃଶାସନ ତାଙ୍କର ଚୁଟି ଧରି ତାଙ୍କୁ ଟାଣି ଆଣି କୁରୁସଭାରେ ଠିଆକରାଇ ତାଙ୍କୁ ବିବସ୍ତ୍ରା କରିବାକୁ ଚେଷ୍ଟା କରିଥିଲା । ଦୁଃଶାସନର ଏହି ଅପଚେଷ୍ଟା ବ୍ୟର୍ଥତାରେ ପରିଣତ ହୋଇଥିଲା । ତଥାପି ଭୀମ ସେ ଦିନ ପ୍ରତିଜ୍ଞା କରିଥିଲେ ଯେ ଦୁଃଶାସନର ରକ୍ତରେ ସେ ଦ୍ରୌପଦୀଙ୍କର କେଶ ପଖାଳିବେ । ସେହିଦିନଠାରୁ ଦ୍ରୌପଦୀ ନିଜର କେଶକୁ ନ ବାନ୍ଧି ମୁକୁଳା ରଖିଲେ । ଭୀମ ଦୁଃଶାସନ ସହିତ ଯୁଦ୍ଧ କରି ତାଙ୍କୁ କବଳିତ କରିଥିଲେ ଓ ଦ୍ରୌପଦୀଙ୍କୁ ଯୁଦ୍ଧସ୍ଥାନକୁ ଡକାଇ ଦୁଃଶାସନର ଦୁଇ ବାହୁ ଉପାଡ଼ି ଆକାଶକୁ ଫିଙ୍ଗି ଦେଇଥିଲେ । ତାଙ୍କ ବାହୁରୁ ଝରୁଥିବା ରକ୍ତ ଦ୍ରୌପଦୀଙ୍କ କେଶରେ ପଡ଼ିଲା । ତା ପରେ ଭୀମ ଦୁଃଶାସନର ବକ୍ଷ ଚିରି ରକ୍ତପାନ କରିଥିଲେ । ଏହି ଯୁଦ୍ଧ ବିଷୟଟି କବିବର ରାଧାନାଥ ଅତ୍ୟନ୍ତ ଜୀବନ୍ତ ଭାବରେ ବର୍ଣ୍ଣନା କରିଅଛନ୍ତି । କବିଙ୍କର ବର୍ଣ୍ଣନାଶୈଳୀ ଏହି

କବିତାରେ ଅତ୍ୟନ୍ତ ଉପଭୋଗ୍ୟ ହୋଇଅଛି । ଭୀମ ଦୁଃଶାସନଙ୍କୁ କବଳିତ କରିବା ସମୟର ବର୍ଣ୍ଣନା ଏଠାରେ ଉଦ୍ଧାର କରାଯାଇପାରେ ।

"ଦେଖନ୍ତୁ କଉଣ ବୀର କଷ୍ଟେ ଉଠିଲା,
ଟଳିଉଠାଇ ଦୁଃଶାଙ୍କୁ ସେ ମାଡ଼ିଣ ବସିଲା,
ରଣରଙ୍ଗେ ସିଂହସମ ଅଟେ ବାୟୁସୁତ,
ମହାବୀର୍ଯ୍ୟବନ୍ତ ଯେହ୍ନୁ ବଳରେ ଅଦ୍ଭୁତ,
ମହାବାହୁ ତେଜେ ବୀର ତେଜସ୍ୱୀ ଆବର,
ହେଲା ସେ ବିରାଟମୂର୍ତ୍ତି ମହାଭୟଙ୍କର,
ମହାଶବ୍ଦେ ଭୂତଳେ ପଡ଼ିଲେ ଦୁଃଶାସନ,
ବଜ୍ରାଘାତେ ଶୈଳଚରୁ ପଡ଼ଇ ଯେସନ,
ବିନ୍ଧ୍ୟାଚଳ ତୁଙ୍ଗ ଶୃଙ୍ଗେ କୁରୁ ପାଣ୍ଡୁ ବଳ,
ଆତଙ୍କେ ଅବଶ ଚକ୍ଷୁ ବୁଜିଲେ ସକଳ,
ପର୍ବତ ଆକାରେ ପଡ଼ିଅଛି ଦୁଃଶାସନ,
ବସିଅଛି ତା ଉପରେ ପବନ ନନ୍ଦନ,
ଭୟଙ୍କର ହୁଙ୍କାରେ ଅଧର ଦନ୍ତଚିପି,
ରେ ରେ କାର କରିଣ ଗର୍ଜଇ କାଳରୂପୀ,
ଗଗନ ମାର୍ଗକୁ ତୋଳୁଅଛି ବଜ୍ରମୁଷ୍ଟି,
କି ଅବା ମନ୍ଦରଗିରି ପଡ଼ୁଅଛି ତୁଟି,
କାଳଦଣ୍ଡ ପ୍ରାୟେକ ବୁଲାଇ ଦେନି ତୋଳା,
ଚର୍ଣ୍ଣେ ଗୃପଇ ଭୀମ ଦୁଃଶାସନ ଗଳା,
ଆରେ ଆରେ ଦୁଃଶାସନ ଦୁରନ୍ତ କୌରବ
ଏବେ ତୋ ଗରବ ରଣେ ହେଲା ପରାଭବ ।"

ଭାରତଈଶ୍ୱରୀ କବିତାଟି ମହାରାଣୀ ଭିକ୍ଟୋରିଆଙ୍କ ଉଦ୍ଦେଶ୍ୟରେ ରଚିତ । ଏଥିରେ କବି ରାଜଭକ୍ତି ସୂଚକ କଥାବସ୍ତୁକୁ ରୂପଦାନ କରିଥିଲେ ହେଁ କବିଙ୍କର ଅନ୍ତରର ବାଣୀ ପ୍ରକାଶ ପାଇଅଛି କବିତାର ଶେଷାଂଶରେ । ମହାରାଣୀ ଭିକ୍ଟୋରିଆଙ୍କର ଜୟଗାନରେ ମୁଖରିତ କବିତାର ଶେଷାଂଶରେ କବି ଲେଖିଛନ୍ତି:—

"କର ଭାରତର ବାସନା ପୂରଣ
ପ୍ରଭୁ ନିରଞ୍ଜନ ! ଏ ଭିକ୍ଷା ଶ୍ରୀପଦେ,
ଭାରତ–ତପନ ପ୍ରଖର କରଣ
ପ୍ରକାଶୁ ଏ ମୃତ–ଆର୍ଯ୍ୟ–ମନଃ–ପଦ୍ମେ
ଏକତା ବିରାଜୁ ଏ ଭାରତ ସଦ୍ମେ ।"

ଭାରତବାସୀଙ୍କର ଏକତା ହିଁ କବି କାମନା କରିଅଛନ୍ତି । କବିଙ୍କର ସ୍ୱଦେଶପ୍ରୀତିର ଉଦାହରଣ ଏଥିରୁ ମିଳିଥାଏ । କବିତାବଳୀର ତିନିଗୋଟି କବିତା ମଧ୍ୟରେ କବି ତାଙ୍କର ଭବିଷ୍ୟତ ସୃଷ୍ଟି ଲାଗି ଯେ ଏକ ନିର୍ଭର ପ୍ରତିଶ୍ରୁତି ଦେଇଅଛନ୍ତି, ତାହା ମୁକ୍ତକଣ୍ଠରେ ସ୍ୱୀକାର କରିବାର କଥା ।

୧୮୭୭ ସାଲରେ କବିତାବଳୀ ରଚନା ପରେ କବିବର ରାଧାନାଥଙ୍କ ଲେଖନୀରୁ ୧୮୮୫ ସାଲ ମଧ୍ୟରେ ଆଉ କୌଣସି ଉଲ୍ଲେଖଯୋଗ୍ୟ ରଚନା ପ୍ରକାଶ ଲାଭ କରିନାହିଁ । ୧୮୮୫ ସାଲରେ ହିଁ ଆଧୁନିକ ଓଡ଼ିଆ ସାହିତ୍ୟର ଜନ୍ମଦାତା ରାଧାନାଥଙ୍କର ଆତ୍ମପ୍ରକାଶ ଓଡ଼ିଆ ସାହିତ୍ୟ ରାଜ୍ୟରେ ଏକ ଯୁଗାନ୍ତକାରୀ ବିପ୍ଳବର ବାର୍ତ୍ତା ପ୍ରଚାର କରିଥିଲା । ମଧ୍ୟଯୁଗର ରୀତିସାହିତ୍ୟର ସ୍ରୋତକୁ ଅବରୁଦ୍ଧ କରି ଆଧୁନିକ ଓଡ଼ିଆ ସାହିତ୍ୟ ସୃଷ୍ଟି ପାଇଁ କବିବର ରାଧାନାଥ ଏହି ସମୟରୁ ଅବିରତ ଲେଖନୀଚାଳନା କରିଥିଲେ । ୧୮୭୭ ସାଲଠାରୁ ୧୮୮୫ ସାଲ ପର୍ଯ୍ୟନ୍ତ ସମୟ ମଧ୍ୟରେ ରାଧାନାଥ ଯେ କିପରି ଭାବରେ ନିଜକୁ ପ୍ରସ୍ତୁତ କରୁଥିଲେ, ତାହା ତାଙ୍କର ପରବର୍ତ୍ତୀ ରଚନାମାନଙ୍କରୁ ଜଣାପଡ଼ିଥାଏ । ଏହି ସମୟ ମଧ୍ୟରେ କବିବର ରାଧାନାଥଙ୍କ ଜୀବନରେ ଘଟିଯାଇଥିବା କେତେକ ଘଟଣା ମଧ୍ୟରୁ ଭୂଦେବ ମୁଖୋପାଧ୍ୟାୟଙ୍କ ସହିତ ତାଙ୍କର ସାକ୍ଷାତ ଓ ସମ୍ପର୍କ ସ୍ଥାପନ ବିଶେଷ ଗୁରୁତ୍ୱପୂର୍ଣ୍ଣ । ଆଧୁନିକ ଓଡ଼ିଆ ସାହିତ୍ୟର ଯୁଗସ୍ରଷ୍ଟା ଆସନରେ ରାଧାନାଥଙ୍କୁ ଆସୀନ କରାଇଥିବା କାରଣମାନଙ୍କ ମଧ୍ୟରୁ ଏହା ହିଁ ପ୍ରଧାନ ।

୧୮୭୯ ସାଲରେ ବଙ୍ଗଳାର ସ୍ୱନାମଧନ୍ୟ ମନୀଷୀ ଭୂଦେବ ମୁଖୋପାଧ୍ୟାୟ ସ୍କୁଲ ଇନ୍‌ସ୍‌ପେକ୍‌ଟର ଭାବରେ ଓଡ଼ିଶାର ସ୍କୁଲ ପରିଦର୍ଶନ କରିବା ନିମିତ୍ତ କଟକ ଆସିଥିଲେ । ଏହି ସୁଯୋଗରେ କବିବର ରାଧାନାଥଙ୍କ ସହିତ ତାଙ୍କର ସାକ୍ଷାତ ଓ ସମ୍ପର୍କ ସ୍ଥାପନ ହୋଇଥିଲା ।

ସେ ବିଷୟରେ ରାଧାନାଥ ଜୀବନୀରେ ଯାହା ଲିଖିତ ହୋଇଅଛି, ତାହାକୁ ଏଠାରେ ସଂପୂର୍ଣ୍ଣ ଭାବରେ ଉଦ୍ଧାର କରାଯାଇପାରେ । କବିବର ରାଧାନାଥ ଏହି ବିବରଣୀ ଲେଖିଥିଲେ ଓ ଏହା ବଙ୍ଗଳା ସମ୍ବାଦପତ୍ର (ସଞ୍ଜୀବନୀ ଓ ବଙ୍ଗବାସୀ)ରେ ପ୍ରକାଶ ପାଇଥିଲା । ରାଧାନାଥ ଜୀବନୀ ଲେଖକ ଏହି ବିବରଣୀଟିକୁ ବଙ୍ଗଳାରୁ ଓଡ଼ିଆକୁ ଅନୁବାଦ କରିଅଛନ୍ତି ।

"ପୂଜ୍ୟପାଦ ଭୂଦେବ ମୁଖୋପାଧ୍ୟାୟଙ୍କର ଓଡ଼ିଶାକୁ ଶୁଭାଗମନ ମୋ ଜୀବନର ଗୋଟିଏ ପ୍ରଧାନ ଘଟନା । ତାହାଙ୍କ ଚରଣରେ ମୁଁ ଯେତେଦୂର ଋଣୀ, କୌଣସି ବଙ୍ଗବାସୀଙ୍କ ନିକଟରେ ସେତେଦୂର ଋଣୀ ନୁହେଁ । ସେ ଯେତେଦିନ ଜୀବିତ ଥିଲେ, ତାହାଙ୍କୁ ଦେବତା ମନେକରି ତାହାଙ୍କର ଶ୍ରୀଚରଣକୁ ମୁଁ ଭକ୍ତିପୁଷ୍ପରେ ପୂଜା କରିଅଛି । ବର୍ତ୍ତମାନ ସେ ଲୋକାନ୍ତରଗାମୀ ହୋଇଥିଲେ ମଧ୍ୟ ମୋ ଦୃଷ୍ଟିରେ ସେ ସର୍ବଦା ଜୀବିତ ଥିବେ ।

ସେ ସର୍ବପ୍ରଥମରେ ଯେତେବେଳେ ଓଡ଼ିଶାକୁ ଆସିଲେ, ତହିଁ ପୂର୍ବରୁ ତାହାଙ୍କ ନିକଟରେ ମୁଁ ଆଦୌ ପରିଚିତ ନ ଥିଲି । ମୋ ସମ୍ବନ୍ଧରେ ସେ କିପୂରି ପରିମାଣରେ କୁସଂସ୍କାରବିଶିଷ୍ଟ ମଧ୍ୟ ଥିଲେ । ଏକଥା ସେ ସ୍ୱୟଂ ମୋ ସମକ୍ଷରେ ସ୍ୱୀକାର କରିଥିଲେ ।

ସର୍ବପ୍ରଥମରେ ସେ କଟକରେ ଉପସ୍ଥିତ ହେଲେ । ମୁଁ ତାଙ୍କ ସମଭିବ୍ୟାହାରରେ ପୁରୀ ଯାତ୍ରା କଲି । ପୁରୀପଥରେ ପ୍ରଥମେ ତାହାଙ୍କ ସହିତ ମୁଁ ବାଲିଅନ୍ତା ଚଟିରେ ଅବସ୍ଥାନ କାଳରେ ସେ କୌଣସି କାରଣରୁ ମୋ ଉପରେ ବିରକ୍ତ ହୋଇ ତାହାଙ୍କ ମତ ସମର୍ଥନ ଉଦ୍ଦେଶ୍ୟରେ ଜର୍ମାନ କବି ଗେଟେଙ୍କର କୌଣସି ଗ୍ରନ୍ଥରୁ ଗୋଟିଏ ବାକ୍ୟ ଉଦ୍ଧାର କଲେ । ସୌଭାଗ୍ୟକ୍ରମେ ମୁଁ ସେହି ବହି ପଢ଼ିଥିଲି । ମୁଁ ତାହାଙ୍କ କଥା ସମର୍ଥନ ପୂର୍ବକ କହିଲି, 'ଆଜ୍ଞା ହଁ, ଆପଣ ଯେଉଁ ବାକ୍ୟ ଉଦ୍ଧାର କଲେ, ତାହା ଠିକ୍ ସତ୍ୟ, କିନ୍ତୁ ଏ ସ୍ଥଳରେ ତାହାର ପ୍ରୟୋଗ ଠିକ୍ ହେଲା ନାହିଁ ।' ସେ ଆହୁରି ବିରକ୍ତ ହୋଇ କହିଲେ, 'ତୁମେ କଅଣ ବୁଝି ହିଁ ଭଣିଲ ? ତୁମେ କଣ ଗେଟେଙ୍କର ନାମ ଶୁଣିଛ ? ତାଙ୍କ ବହିର ତୁମେ କୌଣସି ଖବର ରଖ କି ?'

'ଆଜ୍ଞା ! ମୁଁ ଅବଶ୍ୟ ମୂଳବହି ପଢ଼ିନାହିଁ, ଅନୁବାଦ ପଢ଼ିଥିଲି ।'

'ଅନୁବାଦର କଥା ମୁଁ କହୁଛି, ମୁଁ କଅଣ ଆଉ ମୂଳବହି ପଢ଼ିଅଛୁ ?

'ଆଜ୍ଞା ! ମୁଁ ସେହି ଅନୁବାଦ ହିଁ ପଢ଼ିଥିଲି ।'

'ତୁମେ ଏ ବହି ପଢ଼ିଛ ? ଗେଟେଙ୍କର ଆଉ କୌଣସି ବହିର ନାମ କହିପାରି ?'

ମୁଁ କେତେକ ବହିର ନାମ କହିଲି । ସେହି ପୁସ୍ତକଗୁଡ଼ିକ ମୁଁ ପଢ଼ିଥିଲି । ତାହାଙ୍କ ଆଦେଶାନୁସାରେ ମୁଁ ଏହି ବହିଗୁଡ଼ିକର ମୂଳ ବୃତ୍ତାନ୍ତ ତାହାଙ୍କୁ କହିଲି । ସେ ଅଳ୍ପକ୍ଷଣ ନୀରବ ରହି କହିଲେ—'ତୁମର ପଢ଼ିବାର ଅଭ୍ୟାସ ରହିଛି ଦେଖିଲି । ମୁଁ ଏହା ଆଶା କରି ନ ଥିଲି । ତୁମେ କି କି ଭାଷା ଜାଣ ?'

ମୋହୋର ଉତ୍ତର ପାଇ ସେ କହିଲେ, 'ତୁମେ ତୁମର ଜୀବନର ପୂର୍ବଘଟନାମାନ ମୂଳରେ କହ । ମୁଁ ଶୁଣିଥିଲି ଯେ, ତୁମେ କେବଳି ଏଣ୍ଟ୍ରାନ୍‌ସ୍ ପାଶ୍ କରିଥିଲ, କଲେଜରେ ପଢ଼ିନାହିଁ । ବର୍ତ୍ତମାନ ଦେଖୁଛି ମୋହୋର ମତ ପରିବର୍ତ୍ତନ କରିବାକୁ ହେବ ।'

ମୁଁ ମୋହୋର ସମସ୍ତ ବକ୍ତବ୍ୟ ମୂଳରେ ନିବେଦନ କଲି । ଆହାରାନ୍ତେ ସେ ପତ୍ରାଦି ଲେଖିବସିଲେ । ୨।୩ ଘଣ୍ଟା ଉତ୍ତାରୁ ମୋତେ ଡକାଇ କହିଲେ, ଏହିଗୁଡ଼ିକ ପଢ଼ିଯାଅ'।

ମୁଁ ପତ୍ରଗୁଡ଼ିକ ପଢ଼ିଲି । ଭୂଦେବବାବୁ ତାହାଙ୍କର କେତେଗୁଡ଼ିଏ ନିତାନ୍ତ ଘନିଷ୍ଠ ବନ୍ଧୁଙ୍କୁ ଏହି ପତ୍ରଗୁଡ଼ିକ ଲେଖିଥିଲେ । ପତ୍ର-ମଧ୍ୟରେ ମୋ ସମ୍ବନ୍ଧରେ କେତେକ ବିବରଣ ଦେଇ ଉପସଂହାରରେ ମୋ ବିଷୟରେ ସେମାନଙ୍କର ପୂର୍ବମତ ପରିବର୍ତ୍ତନ କରିବା ସକାଶେ ସେ ପ୍ରତ୍ୟେକ ବନ୍ଧୁଙ୍କୁ ଅନୁରୋଧ କରିଥିଲେ । ମୁଁ ତାହାଙ୍କର ଉଦାରତା ଏବଂ ପ୍ରଶସ୍ତ ମନସ୍ୱିତା ଦେଖି ଆଶ୍ଚର୍ଯ୍ୟାନ୍ୱିତ ହେଲି ।

ବାଲିଅନ୍ତାରୁ ଆମ୍ଭେମାନେ ଭୁବନେଶ୍ୱର ଗଲୁ । ଭୁବନେଶ୍ୱରର ପ୍ରାଚୀନ କୀର୍ତ୍ତିରାଜି ଦେଖି ସେ ଆହ୍ଲାଦ ଏବଂ ବିସ୍ମୟରେ ଗଦ୍‌ଗଦ୍ ହେଲେ । ଓଡ଼ିଶା ପ୍ରତି ତାହାଙ୍କର ଭକ୍ତି ବଢ଼ି ଉଠିଲା ।

ଭୁବନେଶ୍ୱର ପରିତ୍ୟାଗ କରି ଆମ୍ଭେମାନେ ଶରଦେଇପୁର ଚଟିରେ ଅବସ୍ଥାନ କଲୁଁ । ସେଠାରେ ଅବସ୍ଥାନ ସମୟରେ ଭୁବନେଶ୍ୱରର ପ୍ରାଚୀନ ଆର୍ଯ୍ୟ କୀର୍ତ୍ତିରାଜି ପ୍ରସଙ୍ଗରେ ଅନେକ କଥୋପକଥନ ହେଲା । ଏହି ପ୍ରସଙ୍ଗରୁ ସ୍ୱଭାବତଃ ସଂସ୍କୃତ ସାହିତ୍ୟର କଥା ମଧ୍ୟ ଉଠିଲା । ଓଡ଼ିଶାରେ ସଂସ୍କୃତ ଶ୍ଳୋକ ସମୂହ ଲୋକେ ସ୍ୱରସଂଯୋଗରେ ପଢ଼ି ଥାଆନ୍ତି, ଏହି କଥା ଶୁଣି ସେ ମୋତେ ସ୍ୱରସଂଯୋଗରେ କୌଣସି ଗୋଟିଏ ଶ୍ଳୋକ ପଢ଼ିବାକୁ କହିଲେ । ମୁଁ ମେଘଦୂତର ନିମ୍ନୋକ୍ତ ଶ୍ଳୋକ ମନ୍ଦାକ୍ରାନ୍ତା ଛନ୍ଦରେ ଆବୃତ୍ତି କଲି—

'ତାଂ ଜାନୀଥା ପରିମିତକଥାଂ ଜୀବିତଂ ମେ ଦ୍ୱିତୀୟଂ
ଦୂରୀଭୂତେ ମୟି ସହଚରେ ଚକ୍ରବାକୀମିବୈକାଂ ।
ଗାଢୋତ୍କଣ୍ଠାଂ ଗୁରୁଷୁ ଦିବସେଷ୍ୱେଷୁ ଗଚ୍ଛତ୍ସୁ ବାଲାଂ
ଜାତାଂ ମନ୍ୟେ ଶିଶିର ମଥିତାଂ ପଦ୍ମିନୀ ବାନ୍ୟରୂପାଂ ।

ଶ୍ଳୋକଶୁଣି ତାହାଙ୍କର ବିଶାଳ ନେତ୍ରରୁ ଅଶ୍ରୁଧାରା ପ୍ରବାହିତ ହେଲା । ଶ୍ଳୋକ ଦ୍ୱାରା ଯେପରି ତାହାଙ୍କ ହୃଦୟରେ କୌଣସି ଅନିର୍ବଚନୀୟ ଅନୁଭୂତି ଉପୁଜି ଉଠିଲା । ସେ ହଠାତ୍ କହିଲେ 'ଆହା ! କି ସାହିତ୍ୟ ! କି କୀର୍ତ୍ତି ! ଆମ୍ଭେମାନେ କଅଣ ହୋଇଗଲୁଣି !'

ସଂସ୍କୃତ ସାହିତ୍ୟ ପ୍ରସଙ୍ଗରେ ଅନୁଷଙ୍ଗତଃ ଉତ୍କଳ ସାହିତ୍ୟ କଥା ଉଠିଲା । ଉତ୍କଳର ସର୍ବପ୍ରଧାନ କବି ଉପେନ୍ଦ୍ର ଭଞ୍ଜଙ୍କର ସର୍ବପ୍ରଧାନ କାବ୍ୟ ବୈଦେହୀଶବିଳାସରୁ ମୁଁ କେତେଗୁଡ଼ିଏ ଉତ୍କୃଷ୍ଟ କବିତା ଆବୃତ୍ତି କରି ତାହାର ବ୍ୟାଖ୍ୟା ମଧ୍ୟ କରିଦେଲି ।

କବିପ୍ରବର ଉପେନ୍ଦ୍ର ଭଞ୍ଜଙ୍କର ଯେଉଁ ଯୋଡ଼ିଏ କବିତାଂଶ ରାଧାନାଥ ଭୂଦେବଙ୍କୁ ଶୁଣାଇ ମୁଗ୍ଧ କରିଥିଲେ, ତାହା ନିମ୍ନରେ ପ୍ରଦତ୍ତ ହେଲା :—

ଲାବଣ୍ୟବତୀରୁ—

ମନଦେଇ ଶୁଣ କୋବିଦେ ନୃପସୁତା ସୁକେଶୀ
କୂଳରେ ବକୁଳ ମୂଳରେ ପୀଠ ଉପରେ ବସି ।

ମରସୀଶୋଭିତ ଅନାଇ ମନନେଣ ଲୋଭିତ
ତଟଘଟନା ବଦ୍ରୁମରେ ପକ୍ଷୀପନ୍ତ୍ର ବନ୍ଦିତ
କି ମାଳଶାଢ଼ୀ ହଂସାବଳୀ ରଙ୍ଗଧଡ଼ି ହୋଇଛି,
ଅବନୀବନୀତା ବସ୍ତ୍ରାରେ କବା କଣିବାଇଛି ।
ପାବଚ୍ଛ ସ୍ୱଚ୍ଛ ସ୍ଫଟିକରେ ମାଚଣର ପ୍ରତୀତି,
ସୁବେଶୀ ପରଶ ଭ୍ରବକ୍ର ତହିଁ ନିବେଣୀ ଖ୍ୟାତ ।
ଦ୍ୱୀପଦଣ୍ଡୀ ଲଭି ମରାଳପନ୍ତ୍ର ଦିଏ ଭଉଁରୀ,
ବଢ଼ ବଡ଼ଭୀକ ବେଢ଼ିକି ଶୋଭା ଚୂର୍ଣ୍ଣ ଚଉଁରୀ ।
ଜଳ ଜମ୍ବାଳ ଆବିଳରେ ଜନମନ ହରୁଛି,
ଜଳ ନିର୍ମଳରେ ଆଦର ଆଦରଣୁଁ ପାଉଛି ।
ଗାମ୍ଭୀର ଗୁଣକୁ ପଣ୍ଡିତଠାରୁ ଗୃହୀତ କରି
ନର୍ତ୍ତକୀଠାବରୁ ଭଉଁରୀ ଶିକ୍ଷା ପରା ଏହାରି ।
ଅମୃତ ସଙ୍ଗତେ ହୋଇଛି ମିତ ମଧୁର ଗୁଣେ,
ବଧୁର ସ୍ନେହକୁ ବଧୂର କରେ ଶୀତଳପଣେ ।

ବୈଦେହୀଶ ବିଳାସରୁ:—

ବଦନ ପୂରିଅଛି ହାସ ହରଷେ
ବିକର୍ତ୍ତନଜ ଯାଇ ଶ୍ରୀରାମ ପାଶେ ଯେ
ବିବର୍ତ୍ତନ ସନ୍ତାପ ହେଲା ପ୍ରଭୁର
ବାହୁଡ଼େ କାର୍ଯ୍ୟ କରି ଦକ୍ଷିଣଗୁରୁ ଯେ ।
ବୋଲୁଁ ବୋଇଲେ ରାମ ହେ ମିତ୍ର ! ବସ
ବଡ଼ ମଙ୍ଗଳ ଯୁକ୍ତ ଭାଷ ତ ଭାଷ ଯେ
ବଧିର ବ୍ୟାଧି ସତେ ଶ୍ରୁତିରୁ ଯିବ
ବୈଦ୍ୟବୃତ ବଦନ୍ତ ଔଷଧି ଦେବ ଯେ ।
ବିଳମ୍ବକୁ କି ମହାପିପାସୀ ସହି
ବାରିପୂର୍ଣ୍ଣ କାସାର ଦେଖାଅ କାହିଁ ଯେ ।
ବୃହସ୍ପତି ଚଳନେ ବରଷେ ଘନ
ବିଗୁରେ ତଥା ଧ୍ୱସ୍ତ କଲେ ମୋ ବନ ଯେ ।

ସେ ଭବର ସୌନ୍ଦର୍ଯ୍ୟରେ ଚମତ୍କୃତ ଏବଂ ମୁଗ୍ଧ ହୋଇ କହିଲେ, 'ଏହି ଓଡ଼ିଶାକୁ ବଙ୍ଗାଳୀମାନେ ପୁଣି ବେହେଲର ଦେଶ ବୋଲି କହନ୍ତି ।' ଏହା କହି ସେ ଭଞ୍ଜକବିଙ୍କର ଜୀବନୀ ଏବଂ ରଚନା ସମ୍ବନ୍ଧରେ ମୋତେ ଅନେକ ପ୍ରଶ୍ନ କଲେ । ମୋ ନିକଟରୁ ଭଞ୍ଜକବିଙ୍କର କବିତା ମଧ୍ୟେ ମଧ୍ୟେ ସେ ଶୁଣୁଥିଲେ ଏବଂ ସେହି ରଚନାର ସେ ଏତେ-ଦୂର ପକ୍ଷପାତୀ ହୋଇଥିଲେ ଯେ, ଓଡ଼ିଶାରୁ ହୁଗୁଳୀ ପ୍ରତ୍ୟାବର୍ତ୍ତନ କରି କୌଣସି ଲବ୍ଧପ୍ରତିଷ୍ଠ ବଙ୍ଗୀୟ କବିଙ୍କ ହସ୍ତରେ ମୋତେ ଲକ୍ଷ୍ୟ କରି ଗୋଟିଏ ଆଶୀର୍ବାଦସୂଚକ କବିତା ଲେଖାଇ ତାହା ଏଡୁକେଶନ ଗେଜେଟରେ ମୁଦ୍ରିତ କରାଇଥିଲେ । ଏହା ୧୮୭୯ ସାଲର ମେ ମାସ ୨୩ ତାରିଖର ଏଡୁକେଶନ ଗେଜେଟରେ ପ୍ରକାଶିତ ହୋଇଥିଲା ।

ଶରଦେଈପୁରଠାରୁ ଆମ୍ଭେମାନେ ପୁରୀ ଚଳିଲୁଁ । ପୁରୀରେ ୨୩ ଦିନ ମାତ୍ର ଅବସ୍ଥାନ କରି ପୁଣି କଟକକୁ ଫେରିଆସିଲୁଁ । ସେ ମୋ ଉପରସ୍ଥ କର୍ମଚାରୀ ଥିଲେ ହେଁ ତାହାଙ୍କର ସହବାସ ମୋ ପକ୍ଷରେ ଉତ୍ସବମୟ ବୋଧ ହେଉଥିଲା । ସରକାରୀ କାର୍ଯ୍ୟ କରି ଆମ୍ଭେମାନେ ଯେତେବେଳେ ଅବସର ପାଉଥିଲୁଁ ସେତେବେଳେ ଇଂରାଜୀ, ସଂସ୍କୃତ ଏବଂ ଓଡ଼ିଆ ସାହିତ୍ୟର ଅନୁଶୀଳନ କରୁଥିଲୁଁ । ଅଧିକାଂଶ ସମୟରେ କାଳିଦାସ ଏବଂ ଭବଭୂତିଙ୍କ ରଚନାର ଆଲୋଚନା ହେଉଥିଲା । ସେ ପ୍ରତିଥର ଓଡ଼ିଶାରେ ୧୦।୧୫ ଦିନରୁ ଅଧିକ ରହୁ ନ ଥିଲେ, କିନ୍ତୁ ଏହି ୧୦।୨୫ ଦିନ ମଧ୍ୟରେ ମୁଁ ତାହାଙ୍କ ନିକଟରୁ ଯେତେଦୂର ଶିକ୍ଷାଲାଭ କରୁଥିଲି, ସମସ୍ତ ବର୍ଷରେ ସେ ଭଳି ଶିକ୍ଷାଲାଭ ମୋ ପକ୍ଷରେ ଦୁର୍ଘଟ ହେଉଥିଲା । ସମୟ ସମୟରେ ମୁଁ ସାହିତ୍ୟ ଚର୍ଚ୍ଚା ପ୍ରସଙ୍ଗରେ ତାହାଙ୍କ ଦ୍ୱାରା କିରୂପ ଭର୍ତ୍ସିତ ହେଉଥିଲି, ଏହାର ଗୋଟିଏ ଉଦାହରଣ ଦେଉଅଛି :

କାଳିଦାସଙ୍କର ଅଦ୍ଭୁତ ଉପମାପାରିପାଟ୍ୟ ସେଦିନ ଦିନେ କଥୋପକଥନ ହେଉଥିଲା । ମୁଁ ସେହି ପ୍ରସଙ୍ଗରେ ନିମ୍ନୋକ୍ତ କବିତା ଆବୃତ୍ତି କଲି :—

'ହରସ୍ତଂ ମୈଥିଲୀହାସଃ କ୍ଷଣ ସୌମ୍ୟାଂ ନିନାୟ ତାଂ ।
ନିର୍ବାତସ୍ତିମିତାଂ ବେଳାଂ ଚନ୍ଦ୍ରୋଦୟ ଇବୋଦଧେଃ ।'

(ସେ ଏ ଶ୍ଳୋକ ଶୁଣି କହିଲେ, 'ବଡ଼ ସୁନ୍ଦର ଉପମା, କିନ୍ତୁ ତୁମେ କଅଣ ଏହି ଶ୍ଳୋକରେ କବିଙ୍କର କୌଣସି ତ୍ରୁଟି ଦେଖୁ ନାହଁ ?' ମୁଁ ଅବାକ୍ ହୋଇ ଗୁହିଁରହିଲି । ସେ କହିଲେ, 'ତୁମର ଏତେ ପରିମାଣରେ ସ୍ଥୂଳବୁଦ୍ଧି ବୋଲି ମୋହର ଧାରଣା ନ ଥିଲା । ତୁମେ କେବଳ ଅଳଙ୍କାର ସୌନ୍ଦର୍ଯ୍ୟରେ ମୁଗ୍ଧ ହୋଇ ଚରିତ୍ରସଙ୍ଗତି ଆଡ଼କୁ ଏକାବେଳକେ ଅନ୍ଧ ହୋଇଅଛ । ତୁମେ ଦେଖୁନାହିଁ, କବି କିପରି ସ୍ଥଳରେ ସୀତାଙ୍କ ମୁଖରେ ହାସ୍ୟ ଦେଇଅଛନ୍ତି । ସୂର୍ପଣଖାର ସେହି ନିର୍ଲଜ୍ଜ ଆଚରଣରେ ସୀତାଙ୍କ ଭଳି ଅପ୍ରାକୃତା ସାଧ୍ୱୀଶୀଳା ନାରୀଙ୍କ ମୁହଁରେ ହସ ଶୋଭାପାଇଲା କି ? ଏ ସ୍ଥଳରେ ସେ ସ୍ୱୟଂ ଲଜ୍ଜାରେ ମ୍ରିୟମାଣ ହେବାର କଥା । ମନସ୍ୱିନୀ ସ୍ତ୍ରୀ ଅନ୍ୟ ସ୍ତ୍ରୀର ନିର୍ଲଜ୍ଜ ଆଚରଣ ଦେଖିଲେ ସ୍ୱୟଂ ଲଜ୍ଜିତା ହୋଇ ଥାଏ, ହସ ତ ଦୂରର କଥା ।')

ତାହାଙ୍କର ଏହି ମନ୍ତବ୍ୟ ଶୁଣି ମୋର ଚୈତନ୍ୟୋଦୟ ହେଲା; ନିଜର ଅର୍ବାଚୀନତା ସ୍ୱୀକାର କଲି ଏବଂ କହିଲି, 'କବି ମାଇକେଲ୍ ମଧୁସୂଦନ ଏହି ସ୍ଥଳରେ ଅତି ସାବଧାନ ହୋଇ ଲେଖିଅଛନ୍ତି 'ଧରମେ ! ସରମା ସଇ ! ମରିଲେ ! ସ୍ମରିଲେ ତାର କଥା ।' ମୋ ଦୃଷ୍ଟି ସେ ଆଡ଼କୁ ଏକାବେଳକେ ଯାଇନାହିଁ ।'

ଭୂଦେବ—ଚରିତ୍ର ଚିତ୍ରଣ ଏବଂ ଚରିତ୍ର ସଙ୍ଗତି ରଚନାର ସର୍ବପ୍ରଧାନ ବିଷୟ । ଦେଖ, କାଳିଦାସଙ୍କ ଭଳି ଜଗତ୍‌ପୂଜ୍ୟ କବି ମଧ୍ୟ ଏକ ଏକ ସ୍ଥାନରେ ସ୍ଖଳିତପଦ ହୋଇ ଅଛନ୍ତି, ସାମାନ୍ୟ କବିଙ୍କର ତ କଥା ନାହିଁ । ସେମାନେ ଅଳଙ୍କାରକୁ କବିତାର ପ୍ରଧାନ ଅଙ୍ଗ ମନେ କରିଥାଆନ୍ତି, କିନ୍ତୁ କାଳିଦାସଙ୍କ ଭଳି କବିଙ୍କର ଏ ଭଳି ଭ୍ରମ ଅପରିମାର୍ଜନୀୟ ।

ମୁଁ—ଏ ବିଷୟରେ ଭବଭୂତିଙ୍କର ବୋଧହୁଏ କେବେ ହିଁ ପଦସ୍ଖଳନ ଘଟି ନାହିଁ ।

ଭୂଦେବ—ଠିକ୍ ! କାଳିଦାସ ଭବଭୂତିଙ୍କ ଅପେକ୍ଷା ଶକ୍ତିଶାଳୀ ଥିଲେ ସନ୍ଦେହ ନାହିଁ, କିନ୍ତୁ ଭବଭୂତି ଅଧିକ ଚିନ୍ତାଶୀଳ ଥିଲେ ଏବଂ ଚରିତ୍ର ବିଶ୍ଳେଷଣରେ ତାଙ୍କର ଅଧିକତର ସୂକ୍ଷ୍ମଦର୍ଶିତା ଥିଲା । ତୁମେ କହିଲ ଭଲା, ତୁମ ମତରେ ନୁଥିବାର କେଉଁ କବି ଚରିତ୍ର ଚିତ୍ରଣ ବିଷୟରେ ସବାପେକ୍ଷା କୃତୀ ?

ମୁଁ—ମୋ ମତରେ ହୋମର୍, ସେକ୍‌ସ୍‌ପିଅର୍ ଏବଂ ବ୍ୟାସଦେବ ଏ ବିଷୟରେ ସର୍ବାପେକ୍ଷା କୃତୀ ।

ଭୂଦେବ—ବ୍ୟାସଦେବଙ୍କ ନାମ ସର୍ବଶେଷରେ କହିଲ କାହିଁକି ? ଏ ବିଷୟରେ ବ୍ୟାସଦେବଙ୍କ ସହିତ ଆଉ କୌଣସି କବିଙ୍କର ତୁଳନା ହୋଇ ନ ପାରେ । ଅନ୍ୟାନ୍ୟ କବିଙ୍କର ନାୟକ ନାୟିକା ଛବି ମାତ୍ର; ବ୍ୟାସଙ୍କର ନାୟକନାୟିକା ପ୍ରତିମୂର୍ତ୍ତି ବ୍ୟାସଙ୍କ ପରେ ହୋମର ।

କଟକର ଅନେକ ଭଦ୍ରବ୍ୟକ୍ତି ଭୂଦେବ ବାବୁଙ୍କର ସମ୍ମାନାର୍ଥ ଗୋଟିଏ ସଭା ଆହ୍ୱାନ କରିଥିଲେ । ଉତ୍କଳୀୟ ଓ ବଙ୍ଗବାସୀ ସମସ୍ତେ ହିଁ ଏ ଅନୁଷ୍ଠାନରେ ଯୋଗଦାନ କରିଥିଲେ । କଟକରେ ଅନେକ ଉତ୍କଳ-ବାସୀଙ୍କ ସହିତ ତାହାଙ୍କର ଆଳାପ ହୋଇଥିଲା । ବିଶେଷତଃ ସୁପ୍ରଥିତ-ନାମା ସ୍ୱର୍ଗତ ନନ୍ଦକିଶୋର ଦାସ ଏବଂ ମଧୁସୂଦନ ରାଓ ମହାଶୟଙ୍କର ସଦ୍‌ଗୁଣାବଳୀରେ ସେ ଅତ୍ୟନ୍ତ ପ୍ରୀତ ହୋଇଥିଲେ ଏବଂ ସମସ୍ତ ସମ୍ପର୍କରେ ମୋ ନିକଟରେ ସେମାନଙ୍କର ଭୂୟସୀ ପ୍ରଶଂସା କରୁଥିଲେ ।

କଟକରେ ଅବସ୍ଥାନ ସମୟରେ ମୁଁ ତାହାଙ୍କ ଅଭିମତ ଜାଣିବା ସକାଶେ ମୋ ରଚିତ ଖଣ୍ଡିଏ ବଙ୍ଗଳା କାବ୍ୟର ପାଣ୍ଡୁଲେଖ୍ୟ ତାଙ୍କୁ ଦେଇଥିଲି । ସେହି କାବ୍ୟ ମାଇକେଲଙ୍କର ବୀରାଙ୍ଗନା କାବ୍ୟ ଧରଣରେ ଲିଖିତ । ସେଥିରେ ଗୁଡିଏଗୋଟି ପୌରାଣିକ ଏବଂ ଗୋଟିଏ କାଳ୍ପନିକ ନାୟିକାଙ୍କ ପତ୍ର ଥିଲା । ସେ ମନୋଯୋଗ ପୂର୍ବକ ସମସ୍ତ ପାଠକଲେ ଏବଂ ଅନୁକୂଳ ମତ ପ୍ରକାଶ କରି କହିଲେ, 'ପୁରାତନ ବିଷୟ ଯେଉଁଥିରେ ଓ ଶ୍ରମର ଅଯଥା ବିନିଯୋଗ କର କାହିଁକି ? ତୁମର ପାଣ୍ଡୁଲେଖ୍ୟ ପାଠକରି ମୁଁ ପ୍ରୀତ ହୋଇଅଛି, ଏହାକୁ ଏଡୁକେଶନ୍ ଗେଜେଟ୍‌ରେ ଛପାଇ ଦେବି, କିନ୍ତୁ ମୁଁ ଆଶା କରୁଅଛି, ତୁମେ ନୂଆ ଗଢ଼ିବା କୁ ଚେଷ୍ଟା କରିବ । ଦେଖ ! ତୁମେ ସୁଭଦ୍ରାର ଛବି ଅଙ୍କନ କରିଅଛ, କିନ୍ତୁ ତୁମେ ସହସ୍ର ଚେଷ୍ଟାକଲେ ହେଁ ବ୍ୟାସଦେବଙ୍କ ସୁଭଦ୍ରାକୁ ଅଧିକତର ସୁନ୍ଦର କରିପାରିବ ନାହିଁ । ନୂତନ ଗଢ଼ିବାର ଚେଷ୍ଟାକର । ତୁମର ଏହି ପାଞ୍ଚୋଟି କବିତା ମଧ୍ୟରେ ଗୋଟିଏ ନୂଆ ରହିଅଛି ସତ୍ୟ, ମାତ୍ର ତହିଁରେ ଆଦିରସର ଯେ ରୂପ ଅବତାରଣା ହୋଇଅଛି, ତାହା ଉଚିତ ସୀମା ଅତିକ୍ରମ କରିଅଛି । ଆଦିରସର ଏରୂପ ଅବତାରଣା ନୈତିକ

ସ୍ୱାସ୍ଥ୍ୟର ପ୍ରତିକୂଳ, ସୁତରାଂ ପରିତ୍ୟାଜ୍ୟ । ଓଡ଼ିଶା ଅତି ସୁନ୍ଦର ଦେଶ । ଏ ଦେଶର ମନୋହର ପ୍ରକୃତି କବିତାର ସଂପୂର୍ଣ୍ଣ ଅନୁଯୋଗୀ । ଓଡ଼ିଶା ବାସ୍ତବିକ କବିତ୍ୱପୂର୍ଣ୍ଣ ଶିଶୁର ଉପଯୁକ୍ତ ଧାତ୍ରୀ (Meet nurse for a poetic child) । ଓଡ଼ିଶାର ଯେଉଁ ଆଡ଼କୁ ଚାହିଁବ ନୂଆ ଗଢ଼ିବାର ଉପାଦାନ ଯଥେଷ୍ଟ ରହିଅଛି ।' ମୁଁ କହିଲି; ନୂଆ ଘଟନା କଳ୍ପନାରୁ ଉଦ୍ଭାବନ କରି ଲେଖିବା ମୋ ଭଳି ଲୋକର ସାଧ୍ୟାତୀତ ।'

ଆମ୍ଭେମାନେ କଟକ ପରିତ୍ୟାଗ କରି ବାଲେଶ୍ୱରାଭିମୁଖରେ ଯାତ୍ରା କଲୁଁ । ୭।୮ କୋଶ ଦୂରରୁ ଦର୍ପଣ ରାଜ୍ୟର କେତେଗୁଡ଼ିଏ ପର୍ବତ ଦେଖି ଭୂଦେବ ବାବୁ ସେହି ରାଜ୍ୟ ସମ୍ବନ୍ଧରେ ମୋତେ କେତେକ କଥା ପଚାରିଲେ । କିମ୍ବଦନ୍ତୀ ଅଛି ଯେ, ଏହି ରାଜ୍ୟର ରାଜାଙ୍କ ଦର୍ପଣ ସେବା ଥିଲା । ଅର୍ଥାତ୍ ପ୍ରାଚୀନ ଉତ୍କଳୀୟ ଗଙ୍ଗବଂଶୀୟ ସମ୍ରାଟଙ୍କର ବେଶ-ବିନ୍ୟାସ ସମୟରେ ଏ ରାଜା ଦର୍ପଣ ଧାରଣ କରୁଥିଲେ । ଏହି ଅଞ୍ଚଳରେ ଜଗନ୍ନାଥ ସଡ଼କର ମାଣ୍ଡିକର ପର୍ବତର ପାଦଦେଶସ୍ଥ ଚଟି ନିକଟରେ ଗୋଟିଏ ସୁନ୍ଦର ସରୋବର ଅଛି । ଏହି ସରୋବର ନିକଟରେ ଏକଦା ଜନୈକ ଧନଶାଳୀ ପଶ୍ଚିମାଯାତ୍ରୀଙ୍କର ଗୋଟିଏ ଶିଶୁ କ୍ରୀଡ଼ା କରୁ କରୁ ହଠାତ୍ ଅଦୃଶ୍ୟ ହୋଇ କେଉଁଆଡ଼େ ଚାଲିଗଲା, ତାହାର କୌଣସି ସନ୍ଧାନ ମିଳିଲା ନାହିଁ । ଭୂଦେବ ବାବୁଙ୍କୁ ମୁଁ ଏହି ଘଟଣା କହିବାରୁ ସେ ସ୍ମିତ ମୁଖରେ କହିଲେ, 'ମୁଁ ଏ ସମ୍ବନ୍ଧରେ ଆଉ ଗୋଟିଏ ଗଳ୍ପ ଶୁଣିଥିଲି । ଗଳ୍ପଟି ଏହି—

ଉତ୍କଳ ସମ୍ରାଟଙ୍କ ଯୁବରାଜ କଟକରୁ ଥରେ ଏହି ଦର୍ପଣ ରାଜ୍ୟର ଅରଣ୍ୟରେ ମୃଗୟା କରିବାକୁ ଆସିଥିଲେ । ଦର୍ପଣ ରାଜକନ୍ୟା ତାହାଙ୍କୁ ଦେଖି ତାହାଙ୍କ ପ୍ରତି ଆସକ୍ତା ହେଲେ ଏବଂ ତାହାଙ୍କ ପିତା ଯେତେବେଳେ ଯୁବରାଜଙ୍କ ନିକଟକୁ ଦର୍ପଣ ନେଇ ସେବା ସକାଶେ ଆସିଥିଲେ, ରାଜକନ୍ୟା କୌଶଳରେ ସେହି ଦର୍ପଣ ମଧ୍ୟରେ ନିଜର ପ୍ରତିକୃତି ଏବଂ ଗୋଟିଏ ପ୍ରେମପତ୍ରିକା ସନ୍ନିବିଷ୍ଟ କରିଦେଇଥିଲେ । ଯୁବରାଜଙ୍କର ଅସାବଧାନତାରୁ ସେହି ପ୍ରତିକୃତି ଦର୍ପଣ ରାଜାଙ୍କ ସମ୍ମୁଖରେ ଦର୍ପଣରୁ ଖସିପଡ଼ିଲା । ଦର୍ପଣ ରାଜ ନିଜ କନ୍ୟାର ଆଚରଣରେ କ୍ଷୁବ୍ଧ ଏବଂ ଲଜ୍ଜିତ ହେଲେ ଏବଂ ସ୍ୱୀୟ ଭବନକୁ ପ୍ରତ୍ୟାବୃତ୍ତ ହୋଇ କନ୍ୟାକୁ କ୍ରୋଧରେ ତିରସ୍କାର କଲେ । ରାଜକନ୍ୟା ସେହି ଦୁଃଖରେ ଏହି ସରୋବରରେ ଆତ୍ମହତ୍ୟା କରିଥିଲେ । ତଦବଧି ସେହି

କହୁଥିଲ, ତୁମେମାନେ ନୂଆ ବିଷୟ ପାଅ ନାହିଁ । ଏହି ତ ଗୋଟିଏ ନୂଆ ଗଳ୍ପ । ଯତ୍ନପୂର୍ବକ ସଜାଇ ଲେଖିଲେ ଏହି ଗଳ୍ପକୁ କାବ୍ୟରେ ପରିଣତ କରିବା ସହଜ ହେବ ।' ମୁଁ ସ୍ପଷ୍ଟ ଦେଖିଲି, ମୋହର ପୂର୍ବକଥିତ ବୃତ୍ତାନ୍ତରୁ ଉପାଦାନ ସଂଗ୍ରହ କରି ମୋତେ ଉପଦେଶ ଦେବା ପ୍ରକାଶେ ମେଧାବୀ ଭୂଦେବ ବାବୁ ଏ ଗଳ୍ପ ରଚନା କରିଥିଲେ ।"(୧)

ଭୂଦେବ ମୁଖୋପାଧ୍ୟାୟଙ୍କ ସହିତ ରାଧାନାଥଙ୍କର ସାକ୍ଷାତ ଓ ସଂପର୍କ ସ୍ଥାପନ ବିଷୟରେ ରାଧାନାଥ ଯେଉଁ ଦୀର୍ଘ ବିବରଣୀ ପ୍ରଦାନ କରିଅଛନ୍ତି, ଏହି ଉଦ୍ଧୃତଟି ତାହାର ଅଂଶବିଶେଷ । ଏହି ବିବରଣୀର ଅନ୍ୟ ଅଂଶଗୁଡ଼ିକ ପ୍ରସଙ୍ଗୋଚିତ ଭାବରେ ଆଲୋଚିତ ହେବ । ଏଠାରେ ଆମକୁ କେତେଗୋଟି ବିଷୟ ଉପରେ ନିର୍ଦ୍ଦିଷ୍ଟ ଭାବରେ ଆଲୋକପାତ କରିବାକୁ ପଡ଼ିବ ।

୧୮୬୯ ସାଲରେ ଭୂଦେବବାବୁ ଓଡ଼ିଶାକୁ ଆସିଥିଲେ । ସେ ଜଣେ ଅତ୍ୟନ୍ତ ଉଦାର ପ୍ରକୃତିବିଶିଷ୍ଟ ଋଷିପ୍ରାଣ ବ୍ୟକ୍ତି ଥିଲେ । ଏ କଥା ରାଧାନାଥ ନିଜେ ପ୍ରକାଶ କରିଅଛନ୍ତି । ମାତ୍ର ଭୂଦେବବାବୁଙ୍କୁ ଋଷିପ୍ରାଣ କହିବାର କୌଣସି ଯାଥାର୍ଥ୍ୟ ନାହିଁ ! ସେ ହୋଇପାରନ୍ତି ଗୁଣଗ୍ରାହୀ, ମାତ୍ର ଓଡ଼ିଶାକୁ ଆସିବା ପୂର୍ବରୁ ଓଡ଼ିଆମାନଙ୍କ ବିଷୟରେ ହୀନମତ ପୋଷଣ କରିବା କେବେହେଲେ ଋଷିପ୍ରାଣ ବ୍ୟକ୍ତିର କାର୍ଯ୍ୟ ନୁହେଁ । ତାଙ୍କ ମତରେ ସେ ସମୟରେ ଓଡ଼ିଆମାନେ କେବଳ ଅଶିକ୍ଷିତ ନୁହନ୍ତି, ଅଯୋଗ୍ୟ ମଧ୍ୟ । ତା ନ ହୋଇଥିଲେ ସେ ରାଧାନାଥଙ୍କ ପ୍ରତି ଏପରି ବାକ୍ୟ ପ୍ରୟୋଗ କରି ନ ଥାନ୍ତେ ।' ରାଧାନାଥ ଯେତେବେଳେ ତାଙ୍କ ମୁହଁରୁ ମହାକବି ଗେଟେଙ୍କର କୌଣସି ଏକ ଉକ୍ତି ଶୁଣି ନିଜ ମତ ବ୍ୟକ୍ତ କଲେ; ସେତେବେଳେ ସେ ଆଶ୍ଚର୍ଯ୍ୟାନ୍ୱିତ ହୋଇଅଛନ୍ତି । ସେ ପର୍ଯ୍ୟନ୍ତ ତାଙ୍କର ବିଶ୍ୱାସ ଥିଲା ଯେ ଓଡ଼ିଶାର ଲୋକେ ଗେଟେଙ୍କ ନାମ ଶୁଣିନାହାନ୍ତି । ଏ ପ୍ରସଙ୍ଗରେ ସେ ରାଧାନାଥଙ୍କୁ ଯେଉଁ ପ୍ରଶ୍ନ ପଚାରିଛନ୍ତି, ତାହା ଶୁଣିଲେ ମନେହେବ ସତେ ଯେପରି ସେ ରାଧାନାଥଙ୍କୁ ଜଣେ ଛାତ୍ର ମନେକରି ପରୀକ୍ଷା କରି ଅଛନ୍ତି । ରାଧାନାଥଙ୍କର ପଢ଼ିବା ଅଭ୍ୟାସ କଥା ଶୁଣି ସେ ବିସ୍ମିତ ହୋଇଅଛନ୍ତି । ସତେ ଯେପରି ପଢ଼ିବା ଅଭ୍ୟାସଟା କେବଳ ତଥାକଥିତ ବଙ୍ଗବାସୀଙ୍କର ଥିଲା !

---

୧) ରାଧାନାଥ ଜୀବନୀ—ପୃଃ—୧୦୩

ତା ପରେ ଭୂଦେବବାବୁ ରାଧାନାଥଙ୍କୁ କହିଥିଲେ ଯେ ସେ କେବଳ ଏଣ୍ଟ୍ରାନ୍‌ସ୍ ପାସ୍ କରିଥିଲେ, କଲେଜରେ ପଢ଼ିନାହାନ୍ତି । ତେଣୁ ସେ ବିଶ୍ୱସାହିତ୍ୟ ବିଷୟରେ ଜ୍ଞାନାର୍ଜନ କରିବା ସମ୍ଭବ ନୁହେଁ । ପ୍ରତ୍ୟକ୍ଷ ଭାବରେ ରାଧାନାଥଙ୍କର ଜ୍ଞାନ ଦେଖି ଭୂଦେବବାବୁ ସ୍ତମ୍ଭିତ ହୋଇ ରାଧାନାଥଙ୍କ ବିଷୟରେ ତାଙ୍କର ମତ ପରିବର୍ତ୍ତନ କରିଥିଲେ । କେବଳ ସେତିକି ନୁହେଁ, ସେ ତାଙ୍କର ଅନ୍ୟ କେତେଜଣ ବନ୍ଧୁଙ୍କ ନିକଟକୁ ପତ୍ର ଲେଖି ରାଧାନାଥଙ୍କ ବିଷୟରେ ସେମାନଙ୍କର ମତ ପରିବର୍ତ୍ତନ କରିବାକୁ ଅନୁରୋଧ କରିଥିଲେ । ଜଣେ ଲୋକକୁ ନ ଦେଖି, ତା ସହିତ କଥାବାର୍ତ୍ତା ନ କରି ତା ବିଷୟରେ ମନ୍ଦ ଧାରଣା କରିବା କେବେହେଲେ ରୁଚିପ୍ରାଣ ବ୍ୟକ୍ତିର କାର୍ଯ୍ୟ ନୁହେଁ । ପୁଣି, ତାଙ୍କ ମତରେ କଲେଜରେ ପଢ଼ିଲେ ବିଶ୍ୱସାହିତ୍ୟ ବିଷୟରେ ଧାରଣା କରିହେବା କଥାର ମଧ୍ୟ କୌଣସି ଯୌକ୍ତିକତା ନାହିଁ । ଓଡ଼ିଶାବାସୀ ରାଧାନାଥ କଲେଜରେ ପଢ଼ି ନ ଥିବାରୁ ତାଙ୍କର ବିଶ୍ୱସାହିତ୍ୟରେ ଜ୍ଞାନ ନ ଥିବାର ଯୁକ୍ତି ବଙ୍ଗବାସୀ ଭୂଦେବ ବାବୁଙ୍କ ମୁହଁରେ ଶୋଭାପାଏ ନାହିଁ । କାରଣ ତାଙ୍କୁ ଯଦି ଜଣେ ରାଧାନାଥ ପ୍ରଶ୍ନ କରିଥାଆନ୍ତେ ଯେ ବିଶ୍ୱକବି ରବୀନ୍ଦ୍ରନାଥ ଠାକୁର କେଉଁ କଲେଜରୁ ସାହିତ୍ୟ ଶିକ୍ଷା କରିଥିଲେ, ତେବେ ସେ କ'ଣ ଉତ୍ତର ଦେଇ ଥାଆନ୍ତେ, ତାହା ତାଙ୍କୁ ଜଣା ।

ରାଧାନାଥଙ୍କୁ ଜଣେ ଓଡ଼ିଶାବାସୀ ଭାବରେ ଭୂଦେବବାବୁ ଯେ ହେୟଜ୍ଞାନ କରିଥିଲେ, ଏ କଥା ତାଙ୍କର ଉକ୍ତି ପ୍ରମାଣିତ କରିଅଛି । ଶିରଦେଇପୁର ଚଟିରେ ଅବସ୍ଥାନ କାଳରେ ମେଘଦୂତର ଆବୃତ୍ତି ଶୁଣିବା ପରେ ଭୂଦେବବାବୁ ଯେତେବେଳେ ରାଧାନାଥଙ୍କ କଣ୍ଠରୁ ବୈଦେହୀଶ ବିଳାସ ଓ ଲବଣ୍ୟବତୀର ଅଂଶବିଶେଷର ଆବୃତ୍ତି ଶୁଣିଲେ, ସେତେବେଳେ ସେ ଏକାବେଳକେ ସ୍ତମ୍ଭିତ ହୋଇ ଯାଇ-ଥିଲେ ଓ କହିଥିଲେ, "ଏହି ଓଡ଼ିଶାକୁ ବଙ୍ଗାଳୀମାନେ ପୁଣି ବେହେରାର ଦେଶ ବୋଲି କହନ୍ତି ।" ଭୂଦେବବାବୁଙ୍କ ମୁହଁର ଏହି କଥା ହିଁ ତାଙ୍କ ମନ ଭିତରର କଥାକୁ ପ୍ରକାଶ କରି ଦେଇଅଛି । ଓଡ଼ିଶା ଓ ଓଡ଼ିଆଙ୍କ ବିଷୟରେ ସମ୍ପୂର୍ଣ୍ଣ ଅଜ୍ଞ ବଙ୍ଗବାସୀମାନେ ଯେପରି ମତ ପୋଷଣ କରିଥାଆନ୍ତି, ଭୂଦେବବାବୁ ସେହିପରି ମତ ଏ ପର୍ଯ୍ୟନ୍ତ ପୋଷଣ କରିଥିଲେ । ଓଡ଼ିଆମାନଙ୍କର ଯେ ଏକ ସମୃଦ୍ଧ ସାହିତ୍ୟର

ପରମ୍ପରା ଅଛି, ସେ କଥା ବଙ୍ଗବାସୀମାନେ ସେତେବେଳେ ଜାଣି ମଧ୍ୟ ଜାଣି ନ ଥିଲେ । ଏହିପରି ଏକ ଘଟଣା ଘଟିଥିଲା ୧୮୬୯ ସାଲ ଅଗଷ୍ଟ ମାସରେ, ଯେତେବେଳେ କି ଉତ୍କଳଦୀପିକା ବିରୁଦ୍ଧରେ ମାନହାନି ମୋକଦ୍ଦମା କରିଥିଲେ କଟକ ଆଇନ କଲେଜର ଅଧ୍ୟାପକ ରାଜକୃଷ୍ଣ ମୁଖୋପାଧ୍ୟାୟ । ଏହି ମୋକଦ୍ଦମାଟି କଟକର ଆକ୍ଟିଂ ଜଏଣ୍ଟ ମାଜିଷ୍ଟ୍ରେଟ୍ ଟି. ଏମ୍. କିର୍କ୍‌ଉଡ଼ଙ୍କ ଇଜଲାସରେ ବିଚାର ହୋଇଥିଲା । ସେଠାରେ ଅନେକ ଓଡ଼ିଆ ପଣ୍ଡିତ ଓଡ଼ିଆ ସାହିତ୍ୟ ବିଷୟରେ ମାଜିଷ୍ଟ୍ରେଟ୍ ସାହେବଙ୍କୁ ପ୍ରକୃତ ତଥ୍ୟ ଅବଗତ କରାଇଥିଲେ । (୧) ଓଡ଼ିଆ ଭାଷାକୁ ବିଲୋପ କରିବା ଉଦ୍ଦେଶ୍ୟରେ ଯେଉଁ ବଙ୍ଗବାସୀମାନେ ହୀନ ଉଦ୍ୟମ କରି ଉପହାସିତ ହୋଇଥିଲେ, ସେମାନଙ୍କଠାରୁ ଭୂଦେବବାବୁଙ୍କର ପାର୍ଥକ୍ୟ କେଉଁଠି ? ଓଡ଼ିଆ ଭାଷା ବିଲୋପ ଆନ୍ଦୋଳନ ବନ୍ଦ ହେବାର ଦଶବର୍ଷ ପରେ ମଧ୍ୟ ଓଡ଼ିଆ ଭାଷା ଓ ସାହିତ୍ୟ ବିଷୟରେ ଭୂଦେବ ବାବୁଙ୍କର ଅଜ୍ଞତା ତାଙ୍କର ସଂକୀର୍ଣ୍ଣତାର ପରିଚୟ ଦିଏ ନାହିଁ । ଯେଉଁ ଭୂଦେବବାବୁ ପାଣ୍ଡିତ୍ୟ ଅର୍ଜନ କରିବା ଉଦ୍ଦେଶ୍ୟରେ ମହାକବି କାଳିଦାସଙ୍କ ଠାରୁ ଆରମ୍ଭ କରି ମହାକବି ଗେଟେଙ୍କ ପର୍ଯ୍ୟନ୍ତ ଅଗ୍ରସର ହୋଇଥିଲେ, ସେ ନିଜର ପଡ଼ୋଶୀ ପ୍ରଦେଶର ସାହିତ୍ୟ ବିଷୟରେ ଯେ ଏତେଦୂର ଅଜ୍ଞ ଥିଲେ ଏ କଥା ଭାବିଲେ ବିସ୍ମିତ ହେବାକୁ ପଡ଼େ । ଭୂଦେବ ମୁଖୋପାଧ୍ୟାୟଙ୍କର ପାଣ୍ଡିତ୍ୟକୁ ଏଠାରେ ଅବମାନନା କରା-ଯାଉଛି ବୋଲି ଯେପରି କେହି ମନେ ନ କରନ୍ତି । ଆମକୁ ସ୍ୱୀକାର କରିବାକୁ ପଡ଼ିବ ଯେ ତାଙ୍କର ପାଣ୍ଡିତ୍ୟ ଥିଲା; ମାତ୍ର ସେ ପାଣ୍ଡିତ୍ୟ ଉଦାର ପାଣ୍ଡିତ୍ୟ ନୁହେଁ । ତାଙ୍କର ପାଣ୍ଡିତ୍ୟ ଏକଦେଶଦର୍ଶୀ ମନୋବୃତ୍ତିରେ ଗଢ଼ା । ଓଡ଼ିଶାକୁ ହୀନଚକ୍ଷୁରେ ଦେଖି ଘୃଣା କରିଥିବା ବଙ୍ଗବାସୀ ଭୂଦେବବାବୁ ଯେତେବେଳେ ଓଡ଼ିଶାର ବନପର୍ବତ ଦେଖିଲେ, କାବ୍ୟ-ସାହିତ୍ୟ ଶୁଣିଲେ, ସେତେବେଳେ ନିଜ ମନର ନିକଟରେ ସେ ପୂର୍ବର ଭିତ୍ତିହୀନ ଧାରଣା ଓ ସେ ସମୟର ପରିବର୍ତ୍ତିତ ଧାରଣାକୁ ତଉଲି ନିଜ ମନର କୁସଂସ୍କାରକୁ ବା ହୀନ ଧାରଣାକୁ ଦୂର କରିବାକୁ ଉଚିତ ମନେକଲେ ।

(୧) ରଜନୀକାନ୍ତ ସମାଲୋଚନା—ନବବର ସାମନ୍ତରାୟ—ପୃ—୧—୧୨ ।

ଭୂଦେବ ମୁଖୋପାଧ୍ୟାୟ ରାଧାନାଥଙ୍କର 'ପାଣ୍ଡିତ୍ୟ'ରେ ମୁଗ୍ଧ ହୋଇ ତାଙ୍କ କବିଜୀବନ ଲାଗି ତାଙ୍କୁ କେତେକ ଉପଦେଶ ଦେଇ-ଥିଲେ । ଆଧୁନିକ ଇଂରେଜୀ ଶିକ୍ଷାର ଆଲୋକଧର ଆଲୋକିତ ଭୂଦେବ ମୁଖୋପାଧ୍ୟାୟ ରାଧାନାଥଙ୍କୁ ଆଧୁନିକ ଜଗତର ଆଲୋକ ଆଡ଼କୁ ଆକୃଷ୍ଟ କରିଥିଲେ । ଅତୀତର ମହାକବିମାନଙ୍କର ସୃଷ୍ଟିର ସମକକ୍ଷ ହେବା ଭଳି ସାହିତ୍ୟ ସୃଷ୍ଟି କରିବା କେବେହେଲେ ସମ୍ଭବ ନୁହେଁ । ତେଣୁ ନୂତନ ସୃଷ୍ଟି ପାଇଁ ସେ ରାଧାନାଥଙ୍କୁ ପ୍ରେରଣା ଦେଲେ । ରାଧାନାଥ ଭୂଦେବ ମୁଖୋପାଧ୍ୟାୟଙ୍କଠାରୁ ପ୍ରେରଣା ପାଇ ନୂତନ ସୃଷ୍ଟି ଆଡ଼କୁ ମନଦେଲେ । ସାହିତ୍ୟରେ ନୂତନତା ସୃଷ୍ଟି ପାଇଁ ଯେଉଁ କୌଶଳ ଆବଶ୍ୟକ, ତାହା ମଧ୍ୟ ଭୂଦେବବାବୁ ରାଧାନାଥଙ୍କୁ ଶିଖାଇ ଦେଲେ । ଦର୍ପଣ ରାଜ୍ୟର ପର୍ବତ ଦେଖି ଭୂଦେବ ବାବୁ ରାଧାନାଥଙ୍କୁ କେତେକ କଥା ପଚାରିଥିଲେ । ଭୂଦେବବାବୁଙ୍କୁ ରାଧାନାଥ ଶୁଣିଥିବା ଗୋଟିଏ କିମ୍ବଦନ୍ତୀ କହିଲେ, ମାତ୍ର ସେଥିରେ ସନ୍ତୁଷ୍ଟ ନ ହୋଇ ଭୂଦେବ ବାବୁ ନିଜ ମନରୁ ଏକ କାଳ୍ପନିକ କାହାଣୀ କହିଲେ । ସେ ଏହିଠାରେ ରାଧାନାଥଙ୍କୁ ଶିଖାଇଦେଲେ ଯେ ପ୍ରାଚୀନ କିମ୍ବଦନ୍ତୀକୁ ଆଶ୍ରୟ କରି କାବ୍ୟକବିତା ରଚନା ନ କରି ନୂଆ କିମ୍ବଦନ୍ତୀ ସୃଷ୍ଟି କରିବାକୁ ଚେଷ୍ଟାକର । ସେହି ଭାବରେ ମୁଗ୍ଧ ହୋଇ ରାଧାନାଥ ବିଦେଶୀ କାହାଣୀକୁ ନେଇ କାବ୍ୟକବିତା ରଚନା କଲେ ଓ ତାହାର ଫଳରେ ଏ ଦେଶର ବହୁ ସ୍ଥଳରେ ନୂତନ କିମ୍ବଦନ୍ତୀ ସୃଷ୍ଟି କରିଗଲେ । ଭୂଦେବ ବାବୁ ନିଜ ମନରୁ ଯେଉଁ କାହାଣୀଟି ରାଧାନାଥଙ୍କୁ କହିଥିଲେ ତାହା ରାଧାନାଥଙ୍କୁ କପରି ଭାବରେ ପ୍ରଭାବିତ କରିଥିଲା, ସେ ବିଷୟ ନନ୍ଦିକେଶ୍ୱରୀ କାବ୍ୟର କଥାବସ୍ତୁରେ ଅନୁସନ୍ଧେୟ । ବାଲେଶ୍ୱର ଅବସ୍ଥାନ କାଳରେ ଦିନେ ସନ୍ଧ୍ୟା ସମୟରେ ରାଧାନାଥ ଉଦ୍ୟାନ ମଧ୍ୟରେ ବସି ଆକାଶର ତାରକୁ ନିରୀକ୍ଷଣ କରିବା ସମୟରେ ଭୂଦେବବାବୁ ସେଠାରେ ଉପସ୍ଥିତ ହୋଇ ତାଙ୍କୁ ଯେଉଁ ଉପଦେଶ ପ୍ରଦାନ କରିଥିଲେ, ସେହି ଉପଦେଶ ସ୍ପଷ୍ଟଭାବରେ ଚିଲିକା କାବ୍ୟରେ ପ୍ରକାଶ ପାଇଅଛି । ଭୂଦେବବାବୁ ଓଡ଼ିଶାକୁ ପ୍ରଥମ ଥର ଆସିବାର ଏକ ବର୍ଷ ପରେ ଦ୍ୱିତୀୟ ଥର ଆସିଥିଲେ । ତାଙ୍କର ଦ୍ୱିତୀୟ ଥରର ଗସ୍ତ ସମୟରେ ରାଧାନାଥଙ୍କ ସହିତ ଯେଉଁ ସମ୍ପର୍କ ସ୍ଥାପିତ ହୋଇଥିଲା, ତାହା ଚନ୍ଦ୍ରଭାଗା କାବ୍ୟ ଆଲୋଚନା ପ୍ରସଙ୍ଗରେ ଆଲୋଚିତ ହେବ ।

କବିବର ରାଧାନାଥ ଯେତେବେଳେ ତାଙ୍କର କାବ୍ୟ ସୃଷ୍ଟି ପାଇଁ ପ୍ରସ୍ତୁତ ପଥରେ ଥିଲେ ଏବଂ କେଉଁ କୌଶଳ ଅବଲମ୍ବନ କଲେ ଯଶସ୍ୱୀ ହୋଇ ପାରିବେ ବୋଲି ଚିନ୍ତା କରୁଥିଲେ, ସେତିକିବେଳେ ଭୂଦେବ ମୁଖୋପାଧ୍ୟାୟଙ୍କ ସହିତ ତାଙ୍କର ସାକ୍ଷାତ ଓ ଆଲୋଚନା ତାଙ୍କୁ ଏକ ନିର୍ଦ୍ଦିଷ୍ଟ ପଥର ସନ୍ଧାନ ଦେଇଥିଲା । ସେହି ପଥରେ ଅଗ୍ରସର ହୋଇ ରାଧାନାଥ ଯଶସ୍ୱୀ ହୋଇଅଛନ୍ତି ।

# କେଦାରଗୌରୀ

କବିବର ରାଧାନାଥଙ୍କର କବିପ୍ରତିଭାର ଯଥାର୍ଥ ନିଦର୍ଶନ ସ୍ୱରୂପ ୧୮୮୫ ସାଲରେ ବାଲେଶ୍ୱର ସ୍ୱଦେଶ ଉତ୍କଳ ପ୍ରେସ୍‌ରୁ କେଦାର ଗୌରୀ ପ୍ରକାଶ ପାଇଲା । ସେତେବେଳେ ଏହାର ମୂଲ୍ୟ ଥିଲା ଏକ ପଇସା ମାତ୍ର । ଆଧୁନିକ ଓଡ଼ିଆ କାବ୍ୟର ଆଦ୍ୟରୂପ କେଦାର ଗୌରୀ । ତେଣୁ କେଦାରଗୌରୀର ପ୍ରକାଶକାଳ ହିଁ ଆଧୁନିକ ଓଡ଼ିଆ ସାହିତ୍ୟର ଯୁଗ ସ୍ଥାପନାର ପ୍ରକୃଷ୍ଟ କାଳ ରୂପେ ଗୃହୀତ ହୋଇଅଛି । କେଦାର-ଗୌରୀ କାବ୍ୟରେ ରାଧାନାଥ କାବ୍ୟ ଗଠନ କ୍ଷେତ୍ରରେ ଯେଉଁ ଅଭିନବ କୌଶଳ ପ୍ରଦର୍ଶନ କଲେ, ତାହା ଓଡ଼ିଆ ପାଠକମାନଙ୍କର ଚିତ୍ତବୃତ୍ତିକୁ ଯେ ସ୍ପନ୍ଦିତ କରିଥିଲା କହିବା ବାହୁଲ୍ୟ ମାତ୍ର । ୧୮୮୬ ସାଲରେ କେଦାରଗୌରୀର ଦ୍ୱିତୀୟ ସଂସ୍କରଣରେ ଉପକ୍ରମଣିକାରେ ଲେଖାଥିଲା, "ଭୁବନେଶ୍ୱରରେ କେଦାରଗୌରୀ ନାମରେ ଗୋଟିଏ ରମଣୀୟ ମନ୍ଦିର ଅଛି । ନିମ୍ନଲିଖିତ ପଦ୍ୟରେ ସେଥିର ପୌରାଣିକ କଥା ଲିପିବଦ୍ଧ ହୋଇଅଛି ।" କେଦାରଗୌରୀର ଉପକ୍ରମଣିକାରେ ଯେଉଁ କଥା ଲେଖାଯାଇଅଛି, ତାହା କେବେହେଲେ ସତ୍ୟ ନୁହେଁ । ପରେ ଯେତେ-ବେଳେ ରାଧାନାଥଙ୍କୁ ଏ ବିଷୟରେ ସମାଲୋଚନା କରାଗଲା, ସେତେ-ବେଳେ ରାଧାନାଥ ସ୍ୱୀକାର କଲେ ଯେ ଏହି କାବ୍ୟର କଥାବସ୍ତୁ ବିଦେଶୀ ସାହିତ୍ୟରୁ ଆହୃତ ।

କେଦାରଗୌରୀର କଥାବସ୍ତୁ ବିଷୟରେ ରାଧାନାଥ ଏକ ଅସତ୍ୟ ସୂଚନା ଦେଇ ପାଠକମାନଙ୍କୁ ବିଭ୍ରାନ୍ତ କରିଅଛନ୍ତି । ପରବର୍ତ୍ତୀ କାଳରେ ଜଣାପଡ଼ିଲା ଯେ ଏହା ଗ୍ରୀସ୍ ଦେଶର କବି ଓଭିଡ୍‌ଙ୍କର ମେଟାମର

ଫସିମ୍ କାବ୍ୟରୁ ଗୃହୀତ । ଏହି କଥାବସ୍ତୁ ପାଶ୍ଚାତ୍ୟ ସାହିତ୍ୟରେ ବିଭିନ୍ନ କବିଙ୍କ ଦ୍ୱାରା ଗୃହୀତ ହୋଇ କାବ୍ୟରୂପ ଲାଭ କରିଅଛି । ଇଂରେଜ କବି ଚସର୍ ଏହି କଥାବସ୍ତୁକୁ The Legend of Thisbe of Babylon ନାମରେ ଏକ ଦୀର୍ଘ କବିତାରେ ରୂପାୟିତ କରିଅଛନ୍ତି । ଚସର୍ The Legend of Good Women ନାମକ ଦୀର୍ଘ କବିତା ସଂକଳନରେ ନଅଗୋଟି ବିଖ୍ୟାତ Legend ବା ଗଳ୍ପକୁ ଅବଲମ୍ବନ କରି ଦୀର୍ଘକବିତା ରଚନା କରିଅଛନ୍ତି । ଏହି କବିତା ସଙ୍କଳନର ଦ୍ୱିତୀୟ କବିତା ହେଉଛି The Legend of Thisbe of Babylon. ସେକ୍‌ସପିଅର୍ ଏହି କଥାବସ୍ତୁକୁ ତାଙ୍କର Mid Summer Night's Dream ନାଟକର ପଞ୍ଚମ ଅଙ୍କ ପ୍ରଥମ ଦୃଶ୍ୟରେ ଉପସ୍ଥାପିତ କରିଅଛନ୍ତି । କବିବର ରାଧାନାଥ ସେକ୍‌ସପିଅର୍‌ଙ୍କ ନାଟକ ଯେ ପାଠ କରିଥିଲେ । ଏ ବିଷୟରେ ସନ୍ଦେହର ପ୍ରଶ୍ନ ଉଠି ପାରେ ନା । ମାତ୍ର ସେ ତହିଁରୁ ତାଙ୍କ କାବ୍ୟ ପାଇଁ କଥାବସ୍ତୁ ଗ୍ରହଣ ନ କରି ଓଭିଡ୍‌ଙ୍କ କାବ୍ୟରୁ ଗ୍ରହଣ କରିଥିବାର ଦେଖାଯାଏ ।

•

କେଦାରଗୌରୀର କଥାବସ୍ତୁ ଗୋଟିଏ ପ୍ରଣୟମୂଳକ ଦୁଃଖାନ୍ତ କାହାଣୀ । ହେମାଚଳ ଗିରିରେ ଲଲାଟେନ୍ଦୁକେଶରୀ ଗୋଟିଏ ସୁନ୍ଦର ନଗରୀ ସ୍ଥାପନ କଲେ । ତାହା ଭୁବନେଶ୍ୱର ନାମରେ ଖ୍ୟାତିଲାଭ କରିଥିଲା । ବିନ୍ଦୁ ସରୋବରର ଚତୁର୍ଦ୍ଦିଗରେ ପ୍ରାସାଦମାଳା ଏବଂ ତାପରେ ଘୋର ଅରଣ୍ୟର ଅବସ୍ଥିତି । ନୀଳଆକାଶରେ ଚନ୍ଦ୍ରର ଚତୁର୍ପାର୍ଶ୍ୱରେ ଧଳା ମେଘଖଣ୍ଡ ଘେରି ରହି ଯେପରି ଦୃଶ୍ୟ ସୃଷ୍ଟି କରିଥାଏ, ବିନ୍ଦୁସରୋବରର ଚତୁର୍ପାର୍ଶ୍ୱରେ ପ୍ରାସାଦମାଳାର ଅବସ୍ଥିତି ସେହି ପ୍ରକାର ଦୃଶ୍ୟ ସୃଷ୍ଟି କରିଥିଲା ।

•

ଭୁବନେଶ୍ୱରରେ କେଦାର ଓ ଗୌରୀ ନାମରେ ଜଣେ କିଶୋର ଓ ଜଣେ କିଶୋରୀ ଥିଲେ । ଦୁହିଙ୍କର ସୌନ୍ଦର୍ଯ୍ୟ ଅତୁଳନୀୟ ଥିଲା । ବାଲ୍ୟକାଳରୁ ଦୁହେ ଦୁହିଙ୍କୁ ଭଲ ପାଉଥିଲେ । କେଦାର ଓ ଗୌରୀ ପରସ୍ପର ପଡ଼ିଶା ହେଲେହେଁ ପରସ୍ପରଙ୍କ ଗୃହ ମଧ୍ୟରେ ଗୋଟିଏ କାନ୍ଥ ରହି ଦୁହିଙ୍କର ମିଳନରେ ବାଧା ଦେଉଥିଲା । ସେ ଦୁହିଙ୍କର ପିତାମାତ .

ଦୁହିଙ୍କ ମଧ୍ୟରେ ପରିଣୟର ଅନୁଷ୍ଠାଚରଣ କଲେ । ସେମାନଙ୍କର ସାକ୍ଷାତ ନିଷିଦ୍ଧ ହେଲା । ଦୁହିଙ୍କ ଘର ମଝିରେ ଥିବା କାନ୍ଥରେ ଗୋଟିଏ ରନ୍ଧ୍ର ଥିଲା । କେଦାର ଓ ଗୌରୀ ଦୁହେଁ ଦୁହିଙ୍କୁ ଭେଟିବା ପାଇଁ ଅତ୍ୟନ୍ତ ବ୍ୟଗ୍ର ହୋଇ ପଡ଼ିଲେ ହେଁ ପିତାମାତାଙ୍କର ତାଡ଼ନା ହେତୁ ତାହା ସମ୍ଭବପର ହେଉ ନ ଥିଲା । ତେଣୁ ଦୁହେଁ ପ୍ରାକ ସନ୍ଧ୍ୟା ପରେ କାନ୍ଥର ଉଭୟ ପାର୍ଶ୍ୱରେ ସେହି ରନ୍ଧ୍ର ପାଖରେ ବସି ଅଶ୍ରୁପାତ କରୁଥିଲେ । କାନ୍ଥର ରନ୍ଧ୍ର ପଥ ଦେଇ ସେ ଦୁହେଁ କଥାଭାଷା ହେଉଥିଲେ । ଏହିପରି ଭାବରେ ସେ ଦୁହେଁ ପ୍ରତିଦିନ ସେଠାରେ ମିଳିତ ହୋଇ ଉଭୟଙ୍କର ମିଳନରେ ଦେଖାଦେଇଥିବା ପ୍ରତିବନ୍ଧକ ଯୋଗୁଁ ଦୁଃଖପ୍ରକାଶ କରୁଥିଲେ । ଦିନେ ସେମାନେ ସ୍ଥିର କଲେ ଯେ ସେମାନଙ୍କ ମଧ୍ୟରେ ସ୍ଥାପିତ ହୋଇଥିବା ପ୍ରେମର ସମ୍ପର୍କକୁ ସ୍ଥାୟୀ କରିବା ସକାଶେ ଘରଛାଡ଼ି ଅନ୍ୟତ୍ର ପଳାଇବେ । ଘରୁ ବାହାରି ଯାଇ ନଗର ପ୍ରାନ୍ତରେ ଥିବା ନିର୍ଝର ନିକଟରେ ସେମାନେ ପରସ୍ପରକୁ ଭେଟିବେ ଓ ସେଠାରୁ ଇଚ୍ଛା ଅନୁସାରେ ସ୍ଥାନାନ୍ତର ଗମନ କରିବେ ।

ନିର୍ଦ୍ଦିଷ୍ଟ ଦିବସର ସନ୍ଧ୍ୟା ପରେ ଗୌରୀ ଘର ଛାଡ଼ି ଯାଇ ପୂର୍ବନିର୍ଦ୍ଧାରିତ ସ୍ଥାନରେ କେଦାରକୁ ଅପେକ୍ଷା କଲା । ଆକାଶରେ ଚନ୍ଦ୍ର ଉଦିତ ହେଲେ । ଏହି ସମୟରେ ସେହି ପଥରେ ଏକ ଭୟଙ୍କର ବ୍ୟାଘ୍ର ଆସିଲା । ମୃଗମାଂସ ଖାଇଥିବାରୁ ତାର ନଖ, ଦନ୍ତ ରକ୍ତରଞ୍ଜିତ ଥିଲା । ଗୌରୀ ବ୍ୟାଘ୍ରକୁ ଦେଖି ଡର ଡର ହୋଇ ଗୋଟିଏ ଗୁମ୍ଫାରେ ଲୁଚିବାକୁ ପଳାଇଯିବା ସମୟରେ ତାର ଉତ୍ତରୀୟଟି ଖସି ତଳେ ପଡ଼ିଗଲା । ବ୍ୟାଘ୍ର ଜଳପାନ କରି ସେହି ପଥରେ ଫେରିବା ସମୟରେ ଉତ୍ତରୀୟଟିକୁ ତାର ରକ୍ତ ଲାଗିଥିବା ଦାନ୍ତରେ ଛିଡ଼ାଇ ଟିକି ଟିକି କରିଦେଲା । କିଛି ସମୟ ପରେ କେଦାର ଗୌରୀକୁ ଭେଟିବା ଉଦ୍ଦେଶ୍ୟରେ ସେହି ପଥରେ ଆସିବାବେଳେ ବ୍ୟାଘ୍ରର ପଦଚିହ୍ନ ଦେଖି ଅନିଷ୍ଟ ଆଶଙ୍କାରେ ବିଚଳିତ ହୋଇପଡ଼ିଲା । ତା ପରେ ସେ ସଙ୍କେତସ୍ଥଳକୁ ଯାଇ ରକ୍ତାକ୍ତ ଓ ଛିନ୍ନ ଉତ୍ତରୀୟର ଅଂଶଗୁଡ଼ିକୁ ଦେଖି ଗୌରୀକୁ ବ୍ୟାଘ୍ର ମାରି ଦେଇଅଛି ଭାବି କ୍ରନ୍ଦନ କଲା ଓ ନିଜ ଛାତିରେ କୃପାଣ ଭୁଷି ତଳେ ପଡ଼ିଗଲା ।

ଏହି ଘଟଣାର ପରେ ପରେ ଗୌରୀ ଗୁହାରୁ ବାହାର ଆସିଲା ଓ କେଦାର ତଳେ ପଡ଼ି ମୃତ୍ୟୁ ଯନ୍ତ୍ରଣାରେ ଛଟପଟ ହେଉଥିବାର ଦେଖିଲା । ଗୌରୀ ନିଜକୁ ଧିକ୍କାର କରି କ୍ରନ୍ଦନ କଲା ଓ କେଦାର ଗୌରୀକୁ ଗୃହିଁଦେଇ ଅନନ୍ତ ନିଦ୍ରାରେ ଚକ୍ଷୁ ମୁଦ୍ରିତ କଲା । ଗୌରୀ ଏପରି ଅବସ୍ଥାରେ ଅତ୍ୟନ୍ତ ମ୍ରିୟମାଣ ହୋଇ ତୁରନ୍ତ କୃପାଣରେ ପ୍ରାଣବିସର୍ଜନ କଲା । ପ୍ରଣୟୀ ଓ ପ୍ରଣୟିନୀଙ୍କର ମୃତଦେହର ଏକସ୍ଥାନରେ ପଡ଼ିରହିଲା ।

ସ୍ୱପ୍ନାଦେଶ ପାଇ ରାଜା ଲଲାଟ କେଶରୀ ପ୍ରତ୍ୟୁଷରେ ସେ ସ୍ଥାନକୁ ଯାଇ ପ୍ରକୃତରେ କେଦାର ଓ ଗୌରୀଙ୍କର ମୃତଶରୀର ପଡ଼ିଥିବାର ଦେଖିଲେ । ଏକାମ୍ର ନଗରୀର ଲୋକମାନେ କେଦାର ଏବଂ ଗୌରୀଙ୍କର ଶବସତ୍କାର କରି ସେହି ସ୍ଥାନରେ ରାଜାଙ୍କ ଆଦେଶ ଅନୁସାରେ ଦେଉଳ ତୋଳାଇ କେଦାର ଏବଂ ଗୌରୀଙ୍କର ନାମ ଅନୁସାରେ ପ୍ରତିମା ସ୍ଥାପନ କରିଲେ ।

---

କେଦାରଗୌରୀର କଳ୍ପାଂଶରେ ସେପରି କୌଣସି ନୂତନତ୍ୱ ଥିଲା ପରି ମନେହୁଏ ନାହିଁ । ଏହା ଏକ ସାଧାରଣ ପ୍ରଣୟମୂଳକ ଗଳ୍ପକୁ ଅବଲମ୍ବନ କରି ରଚିତ । ଭୁବନେଶ୍ୱରର କେଦାରଗୌରୀ ମନ୍ଦିରରେ ଶିବ ଓ ପାର୍ବତୀଙ୍କର ପୂଜା ହୁଏ । ଏବେ ମଧ୍ୟ ଲୋକମାନେ ଯେତେବେଳେ ସେଠାକୁ ଯାଆନ୍ତି, ସେଠାରେ ପଣ୍ଡା ବା ପୂଜକମାନେ ରାଧାନାଥଙ୍କ କାବ୍ୟର କଥା ବସ୍ତୁ ଅନୁସାରେ କେଦାରଗୌରୀଙ୍କ ବିଷୟ ପ୍ରକାଶ କରିଥାଆନ୍ତି । ବହୁକାଳରୁ ସ୍ଥାପିତ ଏକ ଶିବମନ୍ଦିରକୁ କେନ୍ଦ୍ର କରି ରାଧାନାଥ ଯେଉଁ ନୂତନ ପରମ୍ପରାଟି ସୃଷ୍ଟି କଲେ ତାହା, ତାଙ୍କର କବିପ୍ରତିଭାର ଅନନ୍ୟ ନିଦର୍ଶନ । ପ୍ରାଚ୍ୟ ପରମ୍ପରାର ଶିବମନ୍ଦିର ଉପରେ ପାଶ୍ଚାତ୍ୟ ପରମ୍ପରାର ଗଳ୍ପକୁ ଆରୋପ କରି ରାଧାନାଥ ତାଙ୍କର କୃତବିଦ୍ୟତା ପ୍ରଦର୍ଶନ କରିଅଛନ୍ତି । ପ୍ରାଚ୍ୟ ଓ ପାଶ୍ଚାତ୍ୟ ଚିନ୍ତାଧାରାର ସମନ୍ୱୟ ସଂପାଦନ କରିବାର ଗୀତ ଏହିଠାରେ ରାଧାନାଥଙ୍କର ଶିଳ୍ପନୈପୁଣ୍ୟରେ ପ୍ରଥମଥର ପାଇଁ ପ୍ରକାଶିତ ହୋଇଅଛି । ଦର୍ପଣବର୍ଜ୍ୟର ଅରଣ୍ୟରେ ବିଚରଣ କରିବା ସମୟରେ ଭୂଦେବ ମୁଖୋପାଧ୍ୟାୟ ନିଜ କଳ୍ପନାରୁ ଯେଉଁ କାହାଣୀଟି ରାଧାନାଥଙ୍କୁ ଶୁଣାଇଥିଲେ, ରାଧାନାଥ ସେ କାହାଣୀଟି ଶୁଣି ନୂତନ କାହାଣୀ ବା ଗଳ୍ପକୁ ପୁରାତନର ପୃଷ୍ଠଭୂମି ଉପରେ ଆରୋପ କରିବା ନିମିତ୍ତ ଏହିଠାରେ ହିଁ ପରୀକ୍ଷା କରିଅଛନ୍ତି ଏବଂ

ଏହି ପରୀକ୍ଷାରେ ସଫଳତା ଲାଭ କରିଅଛନ୍ତି । ପିରାମସ୍ ଓ ଥିସ୍‌ବୀ ଗଳ୍ପଟି ପାଠ କରି ରାଧାନାଥ ପ୍ରଥମରେ ଗଳ୍ପର ସ୍ଥାନ ନିର୍ବାଚନ ପାଇଁ ଅନୁସନ୍ଧାନ କରିଅଛନ୍ତି । ନଗର ପ୍ରାନ୍ତରେ ଝରଣା, ଅରଣ୍ୟ ଓ ଶେଷରେ ସ୍ମୃତି ସ୍ଥାପନ ଉଦ୍ଦେଶ୍ୟରେ ମନ୍ଦିରନିର୍ମାଣ ପ୍ରଭୃତି ବିଷୟକୁ ଆରୋପ କରିବା ପାଇଁ ରାଧାନାଥ ବାଛି ନେଇଛନ୍ତି କେଦାରଗୌରୀ ପୀଠକୁ । ମୂଳ-ଗଳ୍ପର ବର୍ଣ୍ଣନା ଅନୁସାରେ ସ୍ଥାନର ସାମଞ୍ଜସ୍ୟ ଲକ୍ଷ୍ୟକରି ଗଳ୍ପକୁ ଆରୋପ କରିବାରେ ରାଧାନାଥ ଅତ୍ୟନ୍ତ ଦକ୍ଷତାର ପରିଚୟ ଦେଇଅଛନ୍ତି । କେବଳ କେଦାରଗୌରୀ ନୁହେଁ, ରାଧାନାଥଙ୍କର ଅଧିକାଂଶ କାବ୍ୟରେ ପାଶ୍ଚାତ୍ୟ ସାହିତ୍ୟର କଥାବସ୍ତୁର ଆରୋପ ଲାଗି ସ୍ଥାନ ନିର୍ବାଚନର କୌଶଳ ଅତ୍ୟନ୍ତ ବିସ୍ମୟକର ।

କେଦାରଗୌରୀର କଥାବସ୍ତୁରେ କବିବର ରାଧାନାଥ ମୂଳତଃ ଓଭିଡ୍‌ଙ୍କୁ ଅନୁସରଣ କରିଅଛନ୍ତି । କେତେକ ସ୍ଥଳରେ ଯେଉଁ ସାମାନ୍ୟ ପରିବର୍ତ୍ତନ ପରିଲକ୍ଷିତ ହୁଏ, ତାହା କେବଳ ସ୍ଥାନ, କାଳ ଓ ପାତ୍ର ବିବେଚନାରେ ରାଧାନାଥ କରିଅଛନ୍ତି । ଓଭିଡ୍‌ଙ୍କୁ ଅନୁସରଣ କରି ଇଂରେଜ କବି ଚସର୍ The Legend of Thisbe of Babylonର ଆରମ୍ଭରେ ଲେଖିଛନ୍ତି,

> "At Babilonie whylom fil it thus,
> The whiche toun the queen Semiramus
> Leet dichen al about and walles make
> Ful hye, of harde tyes wel y-bake". (୧)

ବେବିଲନ୍‌ରେ ଇଟା ତିଆରି ପ୍ରାଚୀର ମଧ୍ୟରେ ସେମିରାମସ୍ ନଗର ସ୍ଥାପନ କରିଥିଲେ । କବିବର ରାଧାନାଥ ଲଲାଟ କେଶରୀଙ୍କ ବିଷୟ ବର୍ଣ୍ଣନା କରି ତାଙ୍କୁ ଭୁବନେଶ୍ୱର ସହରର ନିର୍ମାତା ଭାବରେ ଉପସ୍ଥାପିତ କରିଅଛନ୍ତି । ଏଠାରେ କେବଳ ଏତିକି ଲକ୍ଷ୍ୟ କରିବାର କଥା ଯେ କବିବର ରାଧାନାଥ ସେମିରାମସ୍‌ଙ୍କ ଅନୁରୂପ ଚରିତ୍ରସୃଷ୍ଟି-କରିବା ଉଦ୍ଦେଶ୍ୟରେ ଲଲାଟ କେଶରୀଙ୍କୁ ଉପସ୍ଥାପିତ କରିଅଛନ୍ତି । ଓଭିଡ୍‌ଙ୍କ କଥାବସ୍ତୁକୁ ଅନୁସରଣ କରି ରାଧାନାଥ ଲେଖିଛନ୍ତି,

---

(୧) The Legend of Good women, Chaucer's works P. 368

"ହେମାଚଳ ଶିରେ    କଳିଙ୍ଗ କେଶରୀ
ରଚିଲେ ରମ୍ୟ ନଗର
ଉତ୍କଳ ଭୁବନେ    ଦେଶେ ଦେଶେ ଖ୍ୟାନ
ହେଲା ଭୁବନଈଶ୍ୱର ।
ବନ୍ଦ ସୁରେଶ୍ୱର    ଗୁରୁପାଶେ ସୌଧ
ସୌଧ ଅନ୍ତେ ଘୋର ବନ,
ଇନ୍ଦ୍ର ଗୁରୁବନ୍ଦେ    ଧଳା ମେଘମାଳା
ନୀଳଗଗନେ ଯେସନ ।"

ଓଭିଡ୍‌ଙ୍କଠାରୁ କଥାବସ୍ତୁ ଗ୍ରହଣ କରି ଇଂରେଜ କବି ଚସର୍ ତାଙ୍କ କବିତାରେ କିପରି ବର୍ଣ୍ଣନା କରିଅଛନ୍ତି ଓ ରାଧାନାଥ ତାଙ୍କ କାବ୍ୟରେ କିପରି ବର୍ଣ୍ଣନା କରିଅଛନ୍ତି ତାହାର, କେତେକ ଉଦାହରଣ ଏଠାରେ ଦିଆଯାଇପାରେ । କେଦାରକୁ ଅପେକ୍ଷା କରିବା ସମୟରେ ଗୌରୀ କିପରି ଅବସ୍ଥାର ସମ୍ମୁଖୀନ ହୋଇଥିଲା, ତାହା ଏଠାରେ ଲକ୍ଷ୍ୟ କରାଯାଇପାରେ ।

ଚସରଙ୍କ ଭାଷାରେ—

"Allas! than comth a wilde leonesse
Out of wode, withouten more areste,
With blody mouthe, of strangling of a beste,
To drinken of the welle, ther as she sat,
And, whan that Thisbe had espyed that,
She rist her up, with a ful drery herte,
And in a cave with dredful foot she sterte,
For by the mone she seigh hit wel withalle.
And, as she ran, her wimpel leet she falle.
And took noon heed, so sore she was a-whape[d]
And eek so glad of that she was escaped,
And thus she sit, and darketh wonder stille.
Whan that this leonesse hath dronke her fille,
Aboute the welle gan she for to winde.
And right anoon the wimpel gan she finde,
And with her blody mouth hit al torente."

କବିବର ରାଧାନାଥଙ୍କ ଭାଷାରେ —

"ସହସା ଭୀଷଣ ଶାର୍ଦ୍ଦୂଳ ଆସିଲା
ମୃଗମାର ଘୋର ନିର୍ଘୋଷରେ,
ଶୋଣିତେ ଆପ୍ଳୁତ ନଖଦନ୍ତ ତାର
ମୁଖରୁ ଶୋଣିତ ଝରେ ।
ବ୍ୟାଘ୍ରଦେଖି ଭୀରୁ ଟହ୍ଳର ଭୟରେ
ଲୁଚିଲା ଭୟ କହୁଲେ
ଛଟ ଛଟରେ ଯାଇଁ ଉତ୍ତରୀୟ ଦେହୁ
ଖସିପଡ଼ିଲା ଭୂତଳେ
ଜଳପିଇ ବନେ ବାହୁଡ଼ନ୍ତେ ବ୍ୟାଘ୍ର
ଭେଟିଲା ସେହି ବସନ,
ରକ୍ତ-ଲିପ୍ତ ମୁଖେ ଖଣ୍ଡ ଖଣ୍ଡ କରି
ଚଳାଇଲା ସେହିକ୍ଷଣ ।"

ଥିସ୍‌ବୀ ପିରାମସ୍‌ଙ୍କୁ ଅପେକ୍ଷା କରିଥିବା ସମୟରେ ଯେଉଁ ଘଟଣା ଘଟିଥିବାର ବର୍ଣ୍ଣନା ଚସର କରିଅଛନ୍ତି, ଗୌରୀ କେଦାର ଅପେକ୍ଷା କରିଥିବା ସମୟରେ ପ୍ରାୟ ସେହି ଘଟଣା ରାଧାନାଥ ବର୍ଣ୍ଣନା କରିଅଛନ୍ତି । ଓଭିଡ୍‌ଙ୍କ କଥାବସ୍ତୁରେ ସିଂହୀ ଆସିବାର ବିଷୟକୁ ଚସର୍ ଅବିକଳ ରକ୍ଷା କରିଅଛନ୍ତି । ମାତ୍ର ରାଧାନାଥ ଏଠାରେ ଓଭିଡ୍‌ଙ୍କ ବର୍ଣ୍ଣନାକୁ ଗ୍ରହଣ କରିନାହାନ୍ତି । ସ୍ଥାନ, କାଳ ଓ ପାତ୍ରର ବିବେଚନାରେ ରାଧାନାଥ ସିଂହୀ ପରିବର୍ତ୍ତେ ବ୍ୟାଘ୍ର ଆସିବାର ବର୍ଣ୍ଣନା କରିଅଛନ୍ତି । ଭୁବନେଶ୍ୱରରେ କଥାବସ୍ତୁକୁ ଆରୋପ କରି ରାଧାନାଥ ଯଦି କାବ୍ୟରେ ସିଂହୀ ଆସିବା କଥା ବର୍ଣ୍ଣନା କରିଥାଆନ୍ତେ, ତାହାହେଲେ କାବ୍ୟରେ ବର୍ଣ୍ଣନାର ଅସମୀଚୀନତା ପରିଦୃଷ୍ଟ ହୋଇଥାଆନ୍ତା । ତେଣୁ ରାଧାନାଥ ଏଠାରେ ସିଂହୀ ପରିବର୍ତ୍ତେ ବ୍ୟାଘ୍ରକୁ ଉପସ୍ଥାପିତ କରିଅଛନ୍ତି । ଏହାଛଡ଼ା ଅନ୍ୟାନ୍ୟ ବିଷୟ ପ୍ରାୟ ସମାନ ରହିଛି ।

ଥିସ୍‌ବୀ ଗୁହାରେ ଲୁଚି ରହିଥିବା ସମୟରେ ପିରାମସ୍ ସଙ୍କେତ ସ୍ଥଳକୁ ଆସିଲା । ସେଠାରେ ଥିସ୍‌ବୀର ଛିନ୍ନ ଉତ୍ତରୀୟଟି ଦେଖିବା ପରେ ଯାହା ଘଟଣା ଘଟିଲା, ତାହା ଚସର୍ ନିମ୍ନୋକ୍ତ ପ୍ରକାରରେ ବର୍ଣ୍ଣନା କରିଅଛନ୍ତି ।

"And neer he com, and fond the wimpel torn.
'Allas ! quod he, 'the day that I was born !
This o night wol us lovers bothe slee !
How sholde I axen mercy of Tisbe
Whan I am he that have you slain allas !
My bidding hath you slain, as in this cas.
Allas ! to bidde a woman goon by nighte
In place ther as peril fallen mighte,
And I so slow ! allas, I ne hadde be
Here in this place a furlong-wey or ye !
Now what leoun that be in this foreste,
My body weote he renden, or what beste
That wilde is, gnawen, mote
be now myn herte !
And with that worde he to the wimpel sterte,
And kiste hit ofte, and weep on hit ful sore.
And seide, 'wimpel, allas ! ther nis no more
But thou shalt fele as wel the blood of me
As thou hsat felt the bleding of Tisbe !
And with that worde he mroot
him to the herte.
The blood out of the wounde as brode sterte
As water, whan the conduit broken is." (୨)

ଏହିପରି ପରିସ୍ଥିତିରେ ରାଧାନାଥଙ୍କ କାବ୍ୟରେ କେଦାର ଯେତେବେଳେ ସଙ୍କେତସ୍ଥଳରେ ଆସି ପହୁଞ୍ଚନ୍ତି, ଉସଭେଠବଲେ ଯାହା ଘଟିଲା, ତାହା ନିମ୍ନୋକ୍ତ ଉକ୍ତିରୁ ଜଣାପଡ଼ିଥାଏ ।

---

(୨) The Legend of Thisbe of Babylon—
Chaucer's works P. 370.

"ଏକେତ ସ୍ଥଳରେ ଚକ୍ରାଙ୍କ ଓଢ଼ଣା
ଦେଖି ପଡ଼ିଗଲା ଭ୍ରମେ,
ଛୁଟିଲା ଛଟକେ ହୃଦୟର ତନ୍ତ୍ରୀ
ଶଲ୍ୟ ଫୁଟିଲା ମରମେ ;
ଚୌଣିକ ସମ୍ବୋଧି କହେ ବାର କାନ୍ଦି-
'ଆହା ରେ ପରମେଶ୍ୱର !
ତୋ ନିଧନ ଲାଗି ମୁହିଁ ଦିନା, ଯେଣୁ
ନ ଆସିଲି ବେଗ କରି ।
ଶ୍ୱାପଦ-ସଙ୍କୁଳ- ବନକୁ ନିତିରେ
ପ୍ରାଣାଧିକାକୁ ପେଷିଲି
ଧିକ ଏ ପ୍ରାଣକୁ ! ତୁର ପ୍ରାଣ ନେଇ
କପାଁ ଭବନେ ବସିଲି ?
ମୋତେ ମାରିବାକୁ ଦୁଃଖୁ ତାରିବାକୁ
ନାହିଁ କି ବନେ ଶାର୍ଦ୍ଦୁଳ ?
କରେ ଏ କୃପାଣ ଥାଉଁ କିପା ମୁହିଁ
ହେଉଛି ଏଡ଼େ ଆକୁଳ ?'
ଆବେଗରେ କେଦାର ହୃଦେ ଜଡ଼ାଇଲା
ରୁଧିରେ ଆର୍ଦ୍ର ଓଢ଼ଣା,
ଦର ଦର ଧାରେ ନୟନୁ ଝରିଲା
ସରିଲା ସବୁ ବାସନା ।
କୃପାଣ ହୃଦରେ ଭୁଷିଦେଇ ପୁଣି
ନିଜ କରେ ନେଲା କାଢ଼ି ;
ରକ୍ତ ସ୍ରୋତେ ତନୁ ଅବଶେ ଅବନୀ-
ତଳେ ପଡ଼ିଲା କଗୁଡ଼ି ।"

ଇଂରେଜ କବି ଟେଷର ଓ ରାଧାନାଥ ମୂଳ କଥାବସ୍ତୁକୁ ଦାଢ଼େ ଦାଢ଼େ ରକ୍ଷା କରିବା ପାଇଁ ଯତ୍ନଶୀଳ ହୋଇଅଛନ୍ତି । ମୂଳ କଥାବସ୍ତୁରେ ଏକେତ ସ୍ଥଳଟି ବେବିଲନ୍‌ର ପ୍ରଥମ ରାଜା ନିନସ୍‌ଙ୍କ କବରସ୍ଥଳ । ଟେଷର ମଧ୍ୟ ଏହାକୁ ଗ୍ରହଣ କରିଛନ୍ତି । ନିନସ୍‌ଙ୍କ କବର ନିକଟରେ ଥିଲା ଅରଣ୍ୟ । ଅରଣ୍ୟ ମଧ୍ୟରେ ନିର୍ଜନ ପରିବେଶରେ ପ୍ରଣୟୀ ଓ ପ୍ରଣୟିନୀଙ୍କର ମିଳନ-

ସ୍ଥଳ ସୂଚିତ ହୁଏବାର କଥା । କବିବର ରାଧାନାଥ ତାଙ୍କ କାବ୍ୟରେ ଗୌରୀକୁଣ୍ଡ ଥିବା ସ୍ଥାନକୁ ସର୍ବୋତସ୍ଥଳ ଭାବରେ ଗ୍ରହଣ କରିଅଛନ୍ତି । ଗୌରୀକୁଣ୍ଡ ନିକଟବର୍ତ୍ତୀ ଅଞ୍ଚଳ ଥିଲା ଅରଣ୍ୟପୂର୍ଣ୍ଣ । ତେଣୁ ରାଧାନାଥ ସର୍ବୋତସ୍ଥଳ ଭାବରେ ଗୌରୀକୁଣ୍ଡକୁ ଗ୍ରହଣ କରିବା ଦ୍ୱାରା ଓଭିଡ୍‌ଙ୍କ କଥାବସ୍ତୁକୁ ଯୁକ୍ତିଯୁକ୍ତ ଭାବରେ ଗ୍ରହଣ କରିବା ସଙ୍ଗେ ସଙ୍ଗେ ସ୍ଥାନନିର୍ବାଚନରେ କୌଶଳ ପ୍ରଦର୍ଶନ କରିଅଛନ୍ତି ।

କେଦାରଗୌରୀ କାବ୍ୟର ଶେଷାଂଶରେ କବିବର ରାଧାନାଥ ଲଲାଟକେଶରୀଙ୍କ ସ୍ୱପ୍ନବୃତ୍ତାନ୍ତକୁ ଅତ୍ୟନ୍ତ ଦକ୍ଷତାର ସହିତ ଯୋଡ଼ି ଦେଇଅଛନ୍ତି । ମୂଳକାବ୍ୟରେ ପ୍ରଣୟୀ-ପ୍ରଣୟିନୀଙ୍କର ସମାଧି-ନିର୍ମାଣକାରୀଙ୍କ ବିଷୟରେ କୌଣସି ସ୍ପଷ୍ଟ ବିବରଣୀ ନାହିଁ । ମାତ୍ର ରାଧାନାଥ ଏଠାରେ ଲଲାଟକେଶରୀଙ୍କୁ ସ୍ୱପ୍ନାଦେଶ ଦିଆଇ ନଗର-ବାସୀମାନଙ୍କ ଦ୍ୱାରା ଶବସତ୍କାର କରାଇ ଦୁହିଁଙ୍କ ସ୍ମୃତି ଉଦ୍ଦେଶ୍ୟରେ ମନ୍ଦିର ତୋଳାଇ କେଦାର ଓ ଗୌରୀଙ୍କ ନାମାନୁସାରେ ପ୍ରତିମା ସ୍ଥାପନ କରାଇଅଛନ୍ତି ।

"ଦେବିଙ୍କ ଅନଳ- ସଂସ୍କାର କଟାଇ
ଦେଉଳ ତୋଳାଇ ତହିଁ,
ଦେବିଙ୍କ ନାମରେ ପ୍ରତିମା ସ୍ଥାପିଲେ
ନରପତି ଆଜ୍ଞା ବହି ।"

କେବଳ କେଦାର ଗୌରୀ ନୁହେଁ, ରାଧାନାଥଙ୍କର ପାଶ୍ଚାତ୍ୟ-କଥାବସ୍ତୁ ଆଧାରିତ ସମସ୍ତ କାବ୍ୟର ଶେଷରେ ରାଧାନାଥ ଏହିପରି ଗୋଟିଏ ଗୋଟିଏ ଅସତ୍ୟ ଅଭିବ୍ୟକ୍ତି ଗୁନ୍ଥିଦେଇ ଏ ଦେଶର ପାଠକମାନଙ୍କର ଚିତ୍ତକୁ ବିଭ୍ରାନ୍ତ କରିଅଛନ୍ତି । କେଦାର ଓ ଗୌରୀ, ଜଣେ ପ୍ରଣୟୀ ଓ ଅନ୍ୟ ଜଣକ ପ୍ରଣୟିନୀ; ଏମାନଙ୍କ ନାମାନୁସାରେ ପ୍ରତିମା ସ୍ଥାପନ କରି ପୂଜା କରିବାରେ ଯାଥାର୍ଥ୍ୟ କଣ ଥାଇପାରେ ? ପୁଣି ଏମାନଙ୍କ ନାମାନୁସାରେ ଶିବପାର୍ବତୀଙ୍କୁ ସ୍ଥାପନ କରିବାର ଯୌକ୍ତିକତା କେଉଁଠି ? ପାଶ୍ଚାତ୍ୟ କଥାବସ୍ତୁକୁ ଆହରଣ କରି ଭୁବନେଶ୍ୱରର କେଦାରଗୌରୀ ମନ୍ଦିର ବିଷୟରେ ଏକ ଭ୍ରାନ୍ତ ଧାରଣା ସୃଷ୍ଟି କରିବାର କୌଶଳ ରାଧାନାଥ ପ୍ରଦର୍ଶନ କରିଅଛନ୍ତି ।

ରାଧାନାଥଙ୍କର ଏହି କୌଶଳ ପ୍ରଦର୍ଶନ ତାଙ୍କ କବିଜୀବନର ଏକ ବିଶିଷ୍ଟ କୃତି । ବର୍ତ୍ତମାନର କେଦାରେଶ୍ୱର ମନ୍ଦିର ବା ଗୌରୀକୁଣ୍ଡ ବିଷୟରେ କୌଣସି ଐତିହାସିକ ବା ପୌରାଣିକ ବିବରଣୀ ନାହିଁ । ରାଧାନାଥ କେଦାରେଶ୍ୱର ମନ୍ଦିର ନାମରୁ କେଦାର ଓ ଗୌରୀକୁଣ୍ଡ ନାମରୁ ଗୌରୀ ନାମକୁ ନେଇ ପିରାମସ୍ ଓ ଥିସ୍‌ବିଙ୍କୁ କେଦାର ଓ ଗୌରୀ ନାମରେ ଉପସ୍ଥାପିତ କରିଅଛନ୍ତି ।

ଆମ ଦେଶରେ ଅନେକ ସ୍ଥାନରେ ସ୍ଥାନର ବୈଶିଷ୍ଟ୍ୟ ନେଇ ଦେବଦେବୀଙ୍କର ନାମକରଣ କରାଯାଇଥାଏ । ଏହି ଦୃଷ୍ଟିରୁ କେଦାରେ-ଶ୍ୱର ମହାଦେବଙ୍କର ନାମକରଣ ହୋଇଥିବା ସମ୍ଭବପର । କେଦାର ମଧ୍ୟରେ ଈଶ୍ୱରଙ୍କର ମନ୍ଦିରକୁ ସେ ସମୟରେ କେଦାରେଶ୍ୱର ମନ୍ଦିର ବୋଲି କୁହାଯାଉଥିଲା ଭାବିଲେ ଅସମୀଚୀନ ହେବ ନାହିଁ । ଈଶ୍ୱରଙ୍କ ମନ୍ଦିର ନିକଟରେ ଗୌରୀକୁଣ୍ଡ ଥିବା ଅତି ସ୍ୱାଭାବିକ । ମାତ୍ର ରାଧାନାଥ ଏହି ସବୁ ବିଷୟକୁ ବିସ୍ମୃତିର ଅନ୍ଧକାରକୁ ଠେଲିଦେଇ ଏକ ନୂତନ ପରମ୍ପରା ସୃଷ୍ଟି କରିବାକୁ ଚେଷ୍ଟା କରି ସଫଳକାମ ହୋଇଅଛନ୍ତି ।

ଏ ବିଷୟରେ ଅଧ୍ୟାପକ ନଟବର ସାମନ୍ତରାୟଙ୍କର ମତ ଏକାନ୍ତ ପ୍ରଣିଧାନଯୋଗ୍ୟ । ସେ ଲେଖିଛନ୍ତି, "କେଦାରେଶ୍ୱର ମନ୍ଦିର ଓ ଗୌରୀକୁଣ୍ଡ ଖୁବ ପୁରାତନ; ଏମାନଙ୍କୁ ପାଶ୍ଚାତ୍ୟ ଉପାଦାନରେ ଯେଉଁ ରୂପ ଦିଆଯାଇଛି, ତାହାହିଁ ହେଉଛି ରାଧାନାଥଙ୍କ କେଦାରଗୌରୀ କବିତା, ବିଷୟବସ୍ତୁର ସୁସମ୍ବଦ୍ଧ ବିନ୍ୟାସ, ଘଟଣାସ୍ରୋତର ଅତୀବ ପ୍ରାକୃତିକତା, ମାନବ ହୃଦୟତନ୍ତ୍ରୀର ସହଜ ପରିପ୍ରକାଶ—ଏଇମାନଙ୍କ ସହଯୋଗରେ ପ୍ରାଚ୍ୟ-ପାଶ୍ଚାତ୍ୟ ବିଷୟବସ୍ତୁର ସମୀକରଣ ହୋଇଛି ଅତୀବ ସାର୍ଥକ ଓ ମୁଗ୍ଧକର । (୧)

କେଦାରେଶ୍ୱର ମନ୍ଦିର ଓ ଗୌରୀକୁଣ୍ଡ ନାମରେ କୌଣସି ଐତିହାସିକ ବା ପୌରାଣିକ ବିବରଣୀ ନ ଥିବାରୁ ଆଲୋଚକ-ମାନେ ଅନେକ ସମୟରେ ଭିନ୍ନ ଭିନ୍ନ ବିଷୟ ଉପସ୍ଥାପିତ କରିଥାଆନ୍ତି । ଏହି ବିଷୟଗୁଡ଼ିକରେ ଯୌକ୍ତିକତାର ମାତ୍ରା ବିଶେଷ ଭାବରେ ଲକ୍ଷ୍ୟ କରିବାର କଥା । ପଣ୍ଡିତ ବିନାୟକ ମିଶ୍ର ଏ ବିଷୟରେ ମତ ପ୍ରଦାନ

(୧) ଯୁଗପ୍ରବର୍ତ୍ତକ ସ୍ରଷ୍ଟା ରାଧାନାଥ-ନଟବର ସାମନ୍ତରାୟ - ପୃ. ୪୧ ।

କରି ଲେଖିଅଛନ୍ତି "ଜୈନ ସ୍ଥବିରାବଳୀ ଚରିତର ଭିକ୍ଷୁ କେଦାର ଓ ଭିକ୍ଷୁଣୀ ଗଉରୀ ଚିକିତ୍ସା ବିଦ୍ୟାରେ ପାରଦର୍ଶିତା ଲାଭ କରିଥିବାର ବର୍ଣ୍ଣିତ ଅଛି ଓ ପ୍ରାଚୀନ କାଳରେ ଭୁବନେଶ୍ୱର ଜୈନଧର୍ମର କେନ୍ଦ୍ର ଥିବାର ଜୀବନ୍ତ ପ୍ରମାଣ ଅଛି । ସେମାନେ ଯେଉଁଠାରେ ବାସକରି ଔଷଧ ବିତରଣ କରୁଥିଲେ, ସେଠାକୁ ଅବଶ୍ୟ ବହୁ ଜନସମାଗମ ହେଉଥିଲା । କାଳକ୍ରମେ ସେମାନଙ୍କର ନିଃସ୍ୱାର୍ଥପର କର୍ମର ସ୍ମୃତିଚିହ୍ନ ସ୍ୱରୂପ ମନ୍ଦିର ତୋଳା ହୋଇଥିବ । ସନ୍ୟାସୀ ଓ ସନ୍ୟାସିନୀ ହେବା ପୂର୍ବରୁ ନିଃସ୍ୱାର୍ଥପର ଗୁଣ କର୍ମରେ ପ୍ରକାଶ ପାଇବା ପରରୁ ସେମାନଙ୍କ ସ୍ମୃତିଚିହ୍ନ ରଖାଗଲା ଓ କାବ୍ୟର ଗଳ୍ପ ସତ୍ୟ ବୋଲି ଦେଶରେ ଅନେକଙ୍କର ବିଶ୍ୱାସ ଜନ୍ମିଗଲାଣି ।" (୧)

ପଣ୍ଡିତ ବିନାୟକ ମିଶ୍ରଙ୍କର ଉପରୋକ୍ତ ମତ କେତେଦୂର ଯୁକ୍ତିଯୁକ୍ତ, ସେ କଥା ଏପର୍ଯ୍ୟନ୍ତ ଆଲୋଚକମାନେ ପ୍ରକାଶ କରି ନାହାନ୍ତି । ଜଣେ ଜୈନ ଭିକ୍ଷୁ ଓ ଜଣେ ଜୈନ ଭିକ୍ଷୁଣୀଙ୍କ ନାମ ଅନୁସାରେ ଶିବ-ମନ୍ଦିରରେ ଶିବ ପାର୍ବତୀଙ୍କ ପୂଜା ହେବା ବିଧି କେବେହେଲେ ସମୀଚୀନ ମନେହୁଏ ନାହିଁ । ଭାରତରେ ଅନ୍ୟ କୌଣସି ସ୍ଥାନରେ ଜୈନ ଭିକ୍ଷୁ ବା ଭିକ୍ଷୁଣୀଙ୍କ ନାମ ଅନୁସାରେ ଶିବ ବା ପାର୍ବତୀ ସ୍ଥାପିତ ହେବାର ପରଂପରା ଦେଖାଯାଏ ନାହିଁ । ତେଣୁ ପଣ୍ଡିତ ବିନାୟକ ମିଶ୍ରଙ୍କର ଏହି ମତ ପ୍ରମାଣ-ସାପେକ୍ଷ ।

ଆଧୁନିକ ଯୁଗର ବହୁ ସମାଲୋଚକ କବିବର ରାଧାନାଥ ଓ ତାଙ୍କ ସାହିତ୍ୟ ବିଷୟରେ ଆଲୋଚନା କରିଅଛନ୍ତି । କେଦାରଗୌରୀ ବିଷୟରେ ମଧ୍ୟ ବହୁ ଆଲୋଚନା ପ୍ରକାଶ ପାଇଅଛି । କବିବର ରାଧାନାଥଙ୍କର କବି ପ୍ରତିଭାର ଆଦ୍ୟ ସଙ୍କେତ ପ୍ରଦାନ କରି କେଦାର-ଗୌରୀ ଏକ ପ୍ରଣୟମୂଳକ କାବ୍ୟ ଭାବରେ ଏ ଦେଶରେ ଅତ୍ୟନ୍ତ ଜନପ୍ରିୟ ହୋଇ ପାରିଅଛି ।

---

(୧) ଆଧୁନିକ ଓଡ଼ିଆ ସାହିତ୍ୟର ଇତିହାସ—ବିନାୟକ ମିଶ୍ର, ପୃ ୫୧

# ଚନ୍ଦ୍ରଭାଗା

୧୮୮୬ ସାଲରେ ବାଲେଶ୍ୱରସ୍ଥ ଦେ'ଙ୍କ ଉତ୍କଳ ପ୍ରେସ୍‌ରୁ ଚନ୍ଦ୍ରଭାଗା କାବ୍ୟ ପ୍ରକାଶିତ ହୋଇଥିଲା । କେଦାରଗୌରୀରେ କବି ଏକ ପ୍ରଣୟମୂଳକ କଥାବସ୍ତୁ ପରିବେଷଣ କରି ପାଠକମାନଙ୍କର ଚିତ୍ତବୃତ୍ତିକୁ ପରୀକ୍ଷା କରିବାକୁ ଚେଷ୍ଟାକରି ତାଙ୍କ କାବ୍ୟ ପ୍ରତି ପାଠକମାନଙ୍କର ଆଦର ଦେଖିବାକୁ ପାଇଥିଲେ । ଭୁବନେଶ୍ୱରରେ କେଦାରଗୌରୀ କାବ୍ୟର କଥାବସ୍ତୁକୁ ଖଞ୍ଜିଦେଇ ସେଠାରେ କେଦାରଗୌରୀ ନାମକ ଗୋଟିଏ ସ୍ଥାନ ସୃଷ୍ଟି କରିବା ପରେ କବି କୋଣାର୍କଠାରେ ଥିବା ଚନ୍ଦ୍ରଭାଗା ନଦୀର ନାମ ଅନୁସାରେ କଥାବସ୍ତୁ ଆହରଣ କରି କାବ୍ୟସୃଷ୍ଟିର ପରିକଳ୍ପନା କଲେ । କୋଣାର୍କ କ୍ଷେତ୍ରରେ ଚନ୍ଦ୍ରଭାଗା ନଦୀର ପୌରାଣିକ ପରଂପରା ବା କ୍ଷେତ୍ରମାହାତ୍ମ୍ୟର କୌଣସି ଧାର୍ମିକ ଭିତ୍ତି ଉପରେ କବି ନିଜର କାବ୍ୟକୁ ପ୍ରତିଷ୍ଠିତ କରିବାକୁ ଉଚିତ ମନେ କରି ନାହାନ୍ତି । ପ୍ରଣୟମୂଳକ କଥାବସ୍ତୁଟିଏ ଖଞ୍ଜିଦେବାପାଇଁ କବି ପୁଣି ଓଭିଡ୍‌ଙ୍କ କାବ୍ୟରେ ଥିବା ଗ୍ରୀକ୍ ପୁରାଣର ଡାଫ୍‌ନୀ ଓ ଆପୋଲୋ ଉପାଖ୍ୟାନକୁ ଗ୍ରହଣ କରିଅଛନ୍ତି । ଏହି ଉପାଖ୍ୟାନକୁ କବି ବହୁ ଅଂଶରେ ଗ୍ରହଣ କରିଥିଲେହେଁ କେତେକ ସ୍ଥଳରେ ନିଜସ୍ୱ ପ୍ରଦର୍ଶନ କରିଅଛନ୍ତି । ରାଧାନାଥଙ୍କର ଚନ୍ଦ୍ରଭାଗା କାବ୍ୟ ପ୍ରକାଶିତ ହେବାପରେ କୋଣାର୍କ କ୍ଷେତ୍ରର ଧାର୍ମିକ ଭିତ୍ତି ଅନେକ ପରିମାଣରେ ଲୋକ ଚିତ୍ତରୁ ଯେ ବିସ୍ମୃତ ହୋଇ ଯାଇଅଛି, କହିବା ବାହୁଲ୍ୟମାତ୍ର । ଚନ୍ଦ୍ରଭାଗା ବା କୋଣାର୍କ କ୍ଷେତ୍ରର ପ୍ରସିଦ୍ଧି ହରିଣ ସାହିତ୍ୟରେ ଅତ୍ୟନ୍ତ ପ୍ରାଞ୍ଜଳ ଭାବରେ ବର୍ଣ୍ଣିତ ହୋଇଅଛି । ବିଭିନ୍ନ ପୁରାଣରେ ଏହି କ୍ଷେତ୍ରର ପ୍ରସିଦ୍ଧି ଭିନ୍ନଭାବରେ ବର୍ଣ୍ଣିତ ହୋଇଥିଲେହେଁ ଏହି କ୍ଷେତ୍ରକୁ ଅର୍କକ୍ଷେତ୍ର ବା ସୂର୍ଯ୍ୟକ୍ଷେତ୍ର ଭାବରେ ଗ୍ରହଣ କରାଯାଇଥାଏ । କୋଣାର୍କ କ୍ଷେତ୍ରରେ ସୂର୍ଯ୍ୟପୂଜା ପ୍ରସଙ୍ଗରେ ଯେଉଁ ଉପାଖ୍ୟାନ ରହିଅଛି ତାହାକୁ ଗ୍ରହଣ କରି ରାଧାନାଥ ଯେ ଗୋଟିଏ ସର୍ବାଙ୍ଗସୁନ୍ଦର କାବ୍ୟ ରଚନା କରିପାରି ନ ଥାନ୍ତେ ଏକଥା ବିଶ୍ୱାସ କରାଯାଇ ନପାରେ । ତଥାପି ରାଧାନାଥ ଜାଣିଜାଣି ଏହାକୁ ଗ୍ରହଣ କରି ନାହାନ୍ତି । କାରଣ ରାଧାନାଥଙ୍କର

ସାହିତ୍ୟ ସଂସ୍କୃତିର ଆଦର୍ଶ ଥିଲା ପୁରାତନ ଉପରେ ନୂତନର ସୃଷ୍ଟି । ଏହି ଦୃଷ୍ଟିରୁ ପୁରାତନ ପୀଠ ଚନ୍ଦ୍ରଭାଗାରେ କବି ନୂତନ କାବ୍ୟସୃଷ୍ଟି ପାଇଁ ଓଡ଼ିଙ୍କ କାବ୍ୟର କଥାବସ୍ତୁକୁ ଗ୍ରହଣ କରିଅଛନ୍ତି ।

କୋଣାର୍କ କ୍ଷେତ୍ରର ପ୍ରସିଦ୍ଧି ପାଇଁ ବ୍ରହ୍ମବୈବର୍ତ୍ତ ପୁରାଣରେ ଥିବା ଉପାଖ୍ୟାନଟିକୁ ଏଠାରେ ସଂକ୍ଷେପରେ ଉଦ୍ଧାର କରାଯାଇ ପାରେ । ଚନ୍ଦ୍ରଭାଗା କାବ୍ୟର କଥାବସ୍ତୁ, ଯାହାକି ଓଡ଼ିଙ୍କ କାବ୍ୟରୁ ଗୃହୀତ, ତାହା ତୁଳନାରେ ଏହି ପୌରାଣିକ ଉପାଖ୍ୟାନଟି ଯେ ଯଥେଷ୍ଟ ହୃଦୟଗ୍ରାହୀ, ଏକଥା ସହଜରେ ଉପଲବ୍ଧି କରାଯାଇ ପାରେ । ତଥାପି କବିବର ରାଧାନାଥ ଭାରତୀୟ ପୁରାଣର ଉପାଖ୍ୟାନକୁ ଉପେକ୍ଷା କରି ଗ୍ରୀକ୍ ପୁରାଣର ଉପାଖ୍ୟାନକୁ ଗ୍ରହଣ କରିଅଛନ୍ତି କେବଳ ଆଧୁନିକ ଯୁଗର ଆଧୁନିକ ରୁଚିସଂପନ୍ନ ପାଠକମାନଙ୍କର ଚିତ୍ତକୁ ଏକ ନୂତନ ସୃଷ୍ଟି ସମ୍ପଦ ଦ୍ୱାରା ଆକୃଷ୍ଟ କରିବା ଉଦ୍ଦେଶ୍ୟରେ ।

ବ୍ରହ୍ମବୈବର୍ତ୍ତ ପୁରାଣରେ ଅଛି ଯେ, ଶ୍ରୀକୃଷ୍ଣଙ୍କ ପୁତ୍ର ଶାମ୍ବ ଥିଲେ ଜଣେ ସୁଦର୍ଶନ ଯୁବକ । ସେ ନିଜର ସୌମ୍ୟଦର୍ଶନ ପାଇଁ ବହୁ ପରିମାଣରେ ଉଦ୍ଧତ ଥିଲେ । ଶାମ୍ବଙ୍କର ଏହି ଔଦ୍ଧତ୍ୟ ନାରଦ ମହର୍ଷିଙ୍କ ପକ୍ଷରେ ନିତାନ୍ତ ଅସହ୍ୟ ଥିଲା । ସେ ଶାମ୍ବଙ୍କର ଥଟ୍ଟା ପରିହାସରେ ବାରମ୍ବାର ଉତ୍ତେଜିତ ହୋଇ ଶାମ୍ବଙ୍କଠାରୁ ପ୍ରତିଶୋଧ ନେବାକୁ ଚେଷ୍ଟା କରୁଥିଲେ । ନାରଦ ମହର୍ଷି ସ୍ୱଭାବତଃ କଳହପ୍ରିୟ । ସେ ଚିନ୍ତା କରି କରି ଶେଷରେ ଏକ ଉପାୟ ସ୍ଥିର କଲେ । ଏହି ଉପାୟକୁ କାର୍ଯ୍ୟରେ ପରିଣତ କରିବାକୁ ସେ ବଦ୍ଧପରିକର ହେଲେ । ଦିନେ ଶ୍ରୀକୃଷ୍ଣଙ୍କ ଆଗରେ ସେ ଆସି ଅଭିଯୋଗ କଲେ ଯେ ଶାମ୍ବ ତାଙ୍କର ମାତୃସମା ଗୋପୀମାନଙ୍କର ସୌନ୍ଦର୍ଯ୍ୟରେ ଆକୃଷ୍ଟ ହୋଇ ସେମାନଙ୍କର ପ୍ରୀତିରେ ଆବଦ୍ଧ ହେବାକୁ ତତ୍ପର ହୋଇ ପଡ଼ିଅଛନ୍ତି । ଶ୍ରୀକୃଷ୍ଣ ଏକଥା ଶୁଣିବା ମାତ୍ରେ ଅତ୍ୟନ୍ତ କ୍ରୁଦ୍ଧ ହେଲେ ଓ ନାରଦ ମହର୍ଷି ଏହି ବିଷୟ ପ୍ରମାଣିତ କରିବାପାଇଁ ମଧ୍ୟ ଇଚ୍ଛା ପ୍ରକାଶ କଲେ । ଦିନେ ସକାଳେ ନାରଦ ମହର୍ଷି ରୈବତକ ପର୍ବତରେ ଶ୍ରୀକୃଷ୍ଣଙ୍କୁ ଅବସ୍ଥାପିତ କରି ଶାମ୍ବଙ୍କୁ ଆସି ସମ୍ବାଦ ଦେଲେ ଯେ ଶ୍ରୀକୃଷ୍ଣ ତାଙ୍କୁ ସେଠାରେ ଭେଟିବାକୁ ଡକାଇ

ଅଛନ୍ତି । ଶାମ୍ବ ସମ୍ବାଦ ପାଇବାମାତ୍ରେ ରୈବତକ ପର୍ବତକୁ ଗଲେ । ପର୍ବତ ଉପରକୁ ଉଠିବା ସମୟରେ ଶାମ୍ବ ଦେଖିଲେ ଯେ ପର୍ବତ ପାର୍ଶ୍ୱରେ ଥିବା ହ୍ରଦରେ ସୁନ୍ଦରୀ ଗୋପୀମାନେ ସ୍ନାନ କରିବା ଛଳରେ ଜଳକ୍ରୀଡ଼ା କରୁଅଛନ୍ତି । ଯୁବକ ଶାମ୍ବଙ୍କର ଦୃଷ୍ଟି ଗୋପୀମାନଙ୍କର ଶରୀର ଉପରେ ପଡ଼ିଲା । ସେ ଯିବା ବାଟରେ କିଛି ସମୟ ଠିଆ ହୋଇ ସେମାନଙ୍କର ରୂପଯୌବନ ସନ୍ଦର୍ଶନ କଲେ । ପର୍ବତ ଉପରେ ଥାଇ ଶ୍ରୀକୃଷ୍ଣ ଏ ଦୃଶ୍ୟ ଦେଖିଲେ । ଏହା ଦେଖିବାମାତ୍ରେ ସେ ନାରଦ ମହର୍ଷିଙ୍କର ଅଭିଯୋଗକୁ ସତ୍ୟ ମନେ କଲେ ଓ ଅତ୍ୟନ୍ତ କ୍ରୋଧାନ୍ୱିତ ହୋଇ ଅଭିଶାପ ଦେଲେ ଯେ ଶାମ୍ବ ନିଜର ମାତୃସମା ଗୋପୀମାନଙ୍କ ପ୍ରତି ପାପଦୃଷ୍ଟି ପକାଇଥିବାରୁ ତାଙ୍କ ଅଙ୍ଗରେ କୁଷ୍ଠରୋଗ ଜାତ ହେଉ । ସଙ୍ଗେ ସଙ୍ଗେ ଶାମ୍ବଙ୍କର ଅଙ୍ଗରେ କୁଷ୍ଠରୋଗ ଦେଖାଦେଲା । ଶାମ୍ବ ନିଜ ପିତାଙ୍କ ନିକଟକୁ ଯାଇ ସବୁ ବିଷୟ ଅବଗତ ହେଲେ । ଏହା ନାରଦଙ୍କର ଏକ ଚକ୍ରାନ୍ତ ବୋଲି ଶ୍ରୀକୃଷ୍ଣ ଜାଣିଲେ । ମାତ୍ର ଅଭିଶାପକୁ କୌଣସି ପ୍ରକାରେ ଖଣ୍ଡନ କରାଯାଇ ନପାରେ । ଶାମ୍ବଙ୍କର ଆକୁଳ ମିନତିରେ ଶ୍ରୀକୃଷ୍ଣ ଅତ୍ୟନ୍ତ ଦୁଃଖିତ ହେଲେ ଓ ଅଭିଶାପରୁ ମୁକ୍ତ ପାଇବା ପାଇଁ ଶାମ୍ବଙ୍କୁ ଆଦେଶ ଦେଲେ ଯେ ସେ ମୈତ୍ରେୟ ବନରେ ଯାଇ ତପସ୍ୟା କରି ସୂର୍ଯ୍ୟଙ୍କୁ ସନ୍ତୁଷ୍ଟ କରନ୍ତୁ । ପିତାଙ୍କ ଆଦେଶ ଅନୁସାରେ ଶାମ୍ବ ମୈତ୍ରେୟ ବନରେ ତପସ୍ୟା କଲେ ଓ ଶେଷରେ ସୂର୍ଯ୍ୟଙ୍କଠାରୁ କୃପାଲାଭ କରି ଶାପମୁକ୍ତ ହେଲେ ।

ମୈତ୍ରେୟବନ ହେଉଛି ସୂର୍ଯ୍ୟଙ୍କର ଅଧିଷ୍ଠାନ ସ୍ଥଳ । ମୈତ୍ରେୟ ବନରେ ପରବର୍ତ୍ତୀ କାଳରେ କୋଣାର୍କ ମନ୍ଦିର ନିର୍ମିତ ହେଲା ଓ ଏହା ଅର୍କପୀଠ ଭାବରେ ସମଗ୍ର ଭାରତରେ ପ୍ରସିଦ୍ଧି ଲାଭ କଲା । ଆମର ସାମାଜିକ ପରମ୍ପରାରେ ବହୁକାଳରୁ ଏଥିପାଇଁ ଶାମ୍ବଦଶମୀ ପର୍ବ ପାଳନ କରାଯାଏ । ଏହି ଦିନ ପରିବାରର ପ୍ରତ୍ୟେକ ବ୍ୟକ୍ତି ବା ସନ୍ତାନ ଉଦ୍ଦେଶ୍ୟରେ ସୂର୍ଯ୍ୟ ଦେବଙ୍କୁ ନିର୍ଦ୍ଦିଷ୍ଟ ଭାବରେ ପ୍ରସାଦ ଉତ୍ସର୍ଗ କରାଯାଏ । ମହାଭାରତରେ ଥିବା ଉପାଖ୍ୟାନ ଏହାଠାରୁ କେତେକାଂଶରେ ପୃଥକ । କୋଣାର୍କ ମନ୍ଦିର ନିର୍ମାଣ ପ୍ରସଙ୍ଗରେ ଅନ୍ୟ ଦୁଇଗୋଟି କିମ୍ବଦନ୍ତୀ ମଧ୍ୟ ଏଠାରେ ଆଲୋଚନାର ପରିସର ମଧ୍ୟକୁ ଅଣାଯାଇ ପାରେ । ଗୋଟିଏ ହେଉଛି

ଶିବେଇ 'ସାଆନ୍ତରଙ୍କ ଜାଉ ଗିଆ ଉପାଖ୍ୟାନ ଓ ଅନ୍ୟଟି ଧରମା ଉପାଖ୍ୟାନ ।

୨

ଉତ୍କଳର ନରପତି ଲାଙ୍ଗୁଳା ନରସିଂହ ଦେବ କୋଣାର୍କଠାରେ ସୂର୍ଯ୍ୟମନ୍ଦିର ନିର୍ମାଣ କରିବାର ସଂକଳ୍ପ କରି ଶିବେଇ ସାଆନ୍ତରଙ୍କ ଉପରେ ଏହି ଭାର ଅର୍ପଣ କଲେ । ସମୁଦ୍ର ଭିତରେ ମନ୍ଦିର ନିର୍ମାଣ ଏକ ଦୁରୂହ କାର୍ଯ୍ୟ । ମିସ୍ତ୍ରୀମାନେ ପଥର ନେଇ ସମୁଦ୍ର ଭିତରକୁ ପକାଇଲେ, ମାତ୍ର କୌଣସି ପ୍ରକାରରେ ସମୁଦ୍ରର କେତେକ ଅଂଶକୁ ପୋତିବା ଅସମ୍ଭବ ହେଲା । ଶିବେଇ ସାଆନ୍ତ୍ର ବଡ଼ ବ୍ୟସ୍ତରେ ପଡ଼ିଲେ । କିପରି ଭାବରେ ମନ୍ଦିର ନିର୍ମାଣ କରିବେ ତାଙ୍କୁ ବୁଦ୍ଧି ଦିଶିଲା ନାହିଁ । ଏହିପରି ବ୍ୟଥିତ ଚିତ୍ତରେ ବନେ ଯିବା ସମୟରେ ପଥ ମଧ୍ୟରେ ରାତି ହୋଇଗଲା । ସେ ପଥପାର୍ଶ୍ୱରେ ଥିବା ଜଣେ ବୃଦ୍ଧାର ଗୃହରେ ରାତିଯାପନ ଉଦ୍ଦେଶ୍ୟରେ ଆଶ୍ରୟ ଗ୍ରହଣ କଲେ । ରାତିରେ ବୃଦ୍ଧା ତାଙ୍କୁ କିଛି ଜାଉ ଖାଇବାକୁ ଦେଲା । ଜାଉ ଅତ୍ୟନ୍ତ ଗରମ ଥିଲା । ଶିବେଇ ସାଆନ୍ତର ହଠାତ୍ ଜାଉ ଭିତରେ ହାତ ପୂରାଇ ଦେବାରୁ ତାଙ୍କ ହାତ ପୋଡିଗଲା । ବୃଦ୍ଧାଟି ଏକଥା ଦେଖି ତାଙ୍କୁ ଉପହାସ କରି କହିଲା ଯେ ଶିବେଇ ସାଆନ୍ତ୍ର ମନ୍ଦିର ନିର୍ମାଣ କଲାଭଳି ସେ ଜାଉ ଖାଉଅଛନ୍ତି । ବୃଦ୍ଧା ତ ଶିବେଇ ସାଆନ୍ତରଙ୍କୁ ଜାଣି ନଥିଲା । ତେଣୁ ଶିବେଇ ସାଆନ୍ତର ଯେତେବେଳେ ବୃଦ୍ଧାଙ୍କୁ ପଚାରିଲେ ବୃଦ୍ଧା କହିଲା ଯେ ସମୁଦ୍ର କୂଳରୁ ସିନା ପଥର ବଛାଇ ନେଲେ ନିର୍ଦ୍ଦିଷ୍ଟ ସ୍ଥାନରେ ମନ୍ଦିରଟି ତିଆରି ହୋଇ ପାରିବ । ମାତ୍ର ତାହା ନ କରି ସମୁଦ୍ର ଭିତରକୁ ପଥର ପକାଇଲେ ସମୁଦ୍ର ପୋତି ହେବ କିପରି । ସେହିପରି ପତରେ ଜାଉ ତାଳି ଦିଆଯାଇଅଛି । ଆସ୍ତେ ଆସ୍ତେ କଡ଼ରୁ ଖାଇଲେ ସିନା ଜାଉ କ୍ରମେ କ୍ରମେ ଥଣ୍ଡା ହେବ, ତାହା ନକରି ହଠାତ୍ ମଝିରେ ହାତ ଭୁଶିଦେଲେ ଜାଉ ଖାଇବା ସମ୍ଭବ ହେବ କିପରି ? ବୃଦ୍ଧାଠାରୁ ଏହି କଥା ଶୁଣିବାପରେ ଶିବେଇ ସାଆନ୍ତରଙ୍କର ଚୈତନ୍ୟୋଦୟ ହେଲା ଓ ସେହିପରି ଭାବରେ ସେ ମନ୍ଦିର ନିର୍ମାଣ କରିବାକୁ ସମର୍ଥ ହେଲେ ।

ଦ୍ୱିତୀୟ ଉପାଖ୍ୟାନଟି ମନ୍ଦିର ନିର୍ମାଣ କୌଶଳ ବିଷୟରେ ଏକ ଜାତୀୟ ଭାବାପନ୍ନ କିମ୍ବଦନ୍ତୀ । ରାଜାଙ୍କ ଆଦେଶରେ ସୂର୍ଯ୍ୟମନ୍ଦିର ନିର୍ମିତ ହେବା ସମୟରେ ଉତ୍କଳର ବାରଶତ ଦକ୍ଷଶିଳ୍ପୀ ସେଠାରେ କର୍ମକ୍ଷେତ୍ରରେ ନିଯୁକ୍ତ ହୋଇଥିଲେ । ସେମାନେ ଦିନରାତି ଲାଗି ମନ୍ଦିର ନିର୍ମାଣ କଲେ । ମାତ୍ର ମନ୍ଦିରର ଚଡ଼ାଦେଶରେ ଦଧିନଉତିଟି ବସାଇ ପାରିଲେ ନାହିଁ । ବିଶୁ ନାମକ ଜଣେ ଦକ୍ଷଶିଳ୍ପୀ ଏହି ଶିଳ୍ପୀମାନଙ୍କର ନେତୃତ୍ୱ ଗ୍ରହଣ କରିଥିଲା । ବିଶୁର ବାରବର୍ଷର ବାଳୁତ ପୁଅ ଧରମା ମନ୍ଦିର ନିର୍ମାଣ କୌଶଳରେ ଏପରି ନିପୁଣ ଥିଲା ଯେ ସେ ଯାଇ ମନ୍ଦିରର ଚୂଡ଼ା ନିର୍ମାଣ କରିଥିଲା । ଧରମାର ଚୂଡ଼ା ନିର୍ମାଣ ଜଣା ପଡ଼ିଲେ ରାଜା ଶିଳ୍ପୀମାନଙ୍କୁ ପ୍ରାଣଦଣ୍ଡ ଦେଇପାରନ୍ତି ବୋଲି ଆଶଙ୍କା କରି ସମସ୍ତ ଶିଳ୍ପୀ ଧରମାର ପ୍ରାଣୋତ୍ସର୍ଗ କାମନା କଲେ ଓ ଧରମା ସେଥିପାଇଁ ପ୍ରାଣୋତ୍ସର୍ଗ କଲା ।

କୋଣାର୍କ ମନ୍ଦିର କେବେ ଧ୍ୱସ୍ତବିଧ୍ୱସ୍ତ ହେଲା ସେ ବିଷୟ ସଠିକ ଭାବରେ ଜଣାଯାଇ ନାହିଁ । ଶୁଣାଯାଏ, ମନ୍ଦିର ଉପରେ ଏକ ଶକ୍ତିଶାଳୀ ଚୁମ୍ବକ ପଥର ଥିଲା । ଯାହାକି ସମୁଦ୍ରରେ ଯାଉଥିବା ଜାହାଜଗୁଡ଼ିକୁ କୂଳକୁ ଟାଣି ଆଣୁଥିଲା ।

ଏହିପରି ଖ୍ୟାତିଲାଭ କରିଥିବା ଉତ୍କଳର ଏକ ପୁଣ୍ୟପୀଠକୁ ଏକ ନୂତନ ସ୍ରଷ୍ଟାର ଦୃଷ୍ଟିକୋଣ ନେଇ ଯାଇଥିଲେ କବିବର ରାଧାନାଥ । ସେତେବେଳେ ତାଙ୍କ ସଙ୍ଗରେ ଥିଲେ ଭୂଦେବ ମୁଖୋପାଧ୍ୟାୟ । କୋଣାର୍କ ମନ୍ଦିରର ଭଗ୍ନାବଶେଷ ଦେଖିବା ସମୟରେ ଭୂଦେବ ଓ ରାଧାନାଥଙ୍କ ମନରେ କିପ୍ରକାର ପ୍ରତିକ୍ରିୟା ସୃଷ୍ଟି ହୋଇଥିଲା ତାହା ସେମାନଙ୍କର ଯାତ୍ରାର ବିବରଣୀରୁ ଜଣାଯାଇଥାଏ ।

"କୋଣାର୍କ (ଅର୍କକ୍ଷେତ୍ର) ଶ୍ରୀକ୍ଷେତ୍ରର ଈଶାନ୍ୟ କୋଣରେ ୧୧ କ୍ରୋଶ ଦୂରରେ ଅବସ୍ଥିତ । ଏଠାରେ ଦିଗନ୍ତବ୍ୟାପୀ ସୈକତ ପ୍ରାନ୍ତରରେ ପ୍ରାଚୀନ ସୂର୍ଯ୍ୟମନ୍ଦିରର ଭଗ୍ନାବଶେଷ ବର୍ତ୍ତମାନ ସୁଦ୍ଧା ବିରାଜିତ । ଅନତି-ଦୂରରେ ନୀଳାମ୍ବୁମାନ ସନାତନ ଅମ୍ବୁରାଶିର ଚିରନ୍ତନ କଲ୍ଲୋଳ । ପ୍ରାଚୀନ ମନ୍ଦିର ଭୂମିସାତ୍ ହୋଇ ବାଲୁକାରେ ପ୍ରୋଥିତ ହୋଇଅଛି । ବର୍ତ୍ତମାନ କେବଳ ଭଗ୍ନ ମୁଖଶାଳା ବିଶେଷ । ଏହି ମୁଖଶାଳାର କାରୁକାର୍ଯ୍ୟ ଭାରତରେ

ଅତୁଳନୀୟ କହିଲେ ଅତ୍ୟୁକ୍ତି ହେବ ନାହିଁ । ଭୂଦେବ ବାବୁ ଓ ମୁକୁନ୍ଦ ବାବୁଙ୍କ ସମଭିବ୍ୟାହାରରେ ମୁଁ କୋଣାର୍କ ଦେଖିବାକୁ ଯାଇଥିଲି । ପୁରୀଠାରୁ କୋଣାର୍କର ପଥ ନିରବଚ୍ଛିନ୍ନ ବାଲୁକା ପ୍ରାନ୍ତର । ଏହି ପ୍ରାନ୍ତରର ପୂର୍ବରେ ସମୁଦ୍ର, ପଶ୍ଚିମରେ ସର ନାମକ ଗୋଟିଏ ପ୍ରକାଣ୍ଡ ହ୍ରଦ । ସ୍ଥାନେ ସ୍ଥାନେ ବ୍ୟାଘ୍ରସଙ୍କୁଳ ନିବିଡ଼ କେତକୀ ବନ । କେଉଁଠାରେ ଅବା ସାଗର ସମୀରଣରେ ଶରମର୍ମରିତପ୍ରମାଣ ତାଳତରୁଷଣ୍ଡ । ଏହି ପ୍ରାନ୍ତରରେ ଅସଂଖ୍ୟ ହରିଣଦଳ ବିଚରଣ କରନ୍ତି । ଆମ୍ଭେମାନେ ରାତିରେ ପଥ ହରାଇ ଅଗତ୍ୟା ଅନାବୃତ ବାଲୁକା ପ୍ରାନ୍ତରରେ ଅବସ୍ଥାନ କଲୁ । ସେହି ରାତିରେ ମୁଁ ଆମ୍ଭମାନଙ୍କର କୌଣସି ସଙ୍ଗୀ ପଥିକଙ୍କ ଅନ୍ୱେଷଣରେ ଯାଇ ପ୍ରାୟ ବ୍ୟାଘ୍ର ମୁଖରେ ପଡ଼ିଥିଲି । ନକ୍ଷତ୍ର ଦେଖି ଏବଂ ପୂର୍ବଦିଗରେ ସମୁଦ୍ର କଲ୍ଲୋଳ ଶୁଣି ଆମ୍ଭେମାନେ ଦିଗନିର୍ଣ୍ଣୟ କରୁଥିଲୁଁ । ପ୍ରତ୍ୟୁଷରୁ ଭୂଦେବ-ବାବୁ ଶଯ୍ୟାରୁ ଉଠିବା ମାତ୍ରେ ସମ୍ମୁଖରେ ଯୋଡ଼ିଏ ବାଘ ଦେଖିଲେ । ସେ ଇତିପୂର୍ବେ ପ୍ରକୃତିର ନିରଙ୍କୁଶ ଅବସ୍ଥାରେ କେବେହେଁ ବ୍ୟାଘ୍ର ଦେଖି ନଥିଲେ; ଏହି ହେତୁରୁ ଏ ଦୃଶ୍ୟ ତାହାଙ୍କୁ ଅଭିଭୂତ କରି ପକାଇଥିଲା ।

ସୂର୍ଯ୍ୟୋଦୟ ଉତ୍ତାରୁ ଆମ୍ଭେମାନେ କୋଣାର୍କ ପଥରେ ଅଗ୍ରସର ହେଲୁ । ଅଳ୍ପଦୂର ଗିବା ଉତ୍ତାରୁ କୋଣାର୍କର ମୁଖଶାଳା ଦିଶିଲା । ଦୂରରୁ ଏହି ମୁଖଶାଳାର ପ୍ରଥମ ଦୃଷ୍ଟି ନିତାନ୍ତ ନୈରାଶ୍ୟାବହ । ଆମ୍ଭମାନଙ୍କର ମନେହେଲା ଯେ, ଆମ୍ଭେମାନେ କାହିଁକି ଏତେ ପରିଶ୍ରମ ସ୍ୱୀକାର କରି ଏହି ସତ୍‌ସାମାନ୍ୟ ମନ୍ଦିର ଦେଖିବାକୁ ଆସିଲୁ । ଏତେ ପରିଶ୍ରମର କଅଣ ଏହି ସତ୍କାର ? କିନ୍ତୁ ଯେତେ ନିକଟବର୍ତ୍ତୀ ହେଲୁଁ, କ୍ରମଶଃ ପ୍ରୀତି ଓ ବିସ୍ମୟ ପୂର୍ବ ନୈରାଶ୍ୟର ସ୍ଥାନ ଅଧିକାର କଲା । ଆମ୍ଭେମାନେ ମନ୍ଦିର ସମ୍ମୁଖରେ ଉପସ୍ଥିତ ହୋଇ ସ୍ତବ୍ଧ ଭାବରେ ଏବଂ ବିସ୍ମୟସ୍ତିମିତ ନେତ୍ରରେ ତାହାର ଗମ୍ଭୀର ମହାନ୍ ମୂର୍ତ୍ତି ଦେଖିବାରେ ଲାଗିଲୁ । ବାସ୍ତବିକ୍ ଏ ଦୃଶ୍ୟ ଇଂରେଜ କବି ବାଇରନ୍‌ଙ୍କର "Those days are gone, but beauty still is there, ସେ ଦିନ ସବୁ ଗଲାଣି, ତଥାପି ସୌନ୍ଦର୍ଯ୍ୟ ରହିଅଛି, ଏହି ପଂକ୍ତିର ସମ୍ପୂର୍ଣ୍ଣ ସ୍ମାରକ ଭୂଦେବ ବାବୁଙ୍କ ଚକ୍ଷୁରେ ଅଶ୍ରୁକଣା ଦିଶିଲା ।

ଜଗନ୍ନାଥ ମୁଖଶାଳାର ଉପର ଭାଗରେ ବଂଶୀନାଦରତା ଗୋଟିଏ ସ୍ତ୍ରୀ ପ୍ରତିମୂର୍ତ୍ତିର ଅଦ୍ଭୁତ ସୌନ୍ଦର୍ଯ୍ୟ ଦେଖି ତାହା ମୁଁ ଭୂଦେବ ବାବୁଙ୍କୁ ଏବଂ ମତେ ଦେଖାଇ ସେ କହିଲେ, 'ଏହି ପ୍ରତିମୂର୍ତ୍ତି ଦେଖିଲେ ଗ୍ରୀକ୍ ସେପୋର କଥା ମନେ ପଡ଼େ ନାହିଁକି ।'

ଆମ୍ଭେମାନେ ନିତାନ୍ତ କ୍ଳାନ୍ତ ହୋଇଥିଲୁଁ । ରୌଦ୍ର ମଧ୍ୟ ପ୍ରଖର ହେଲା । ଦେଉଳର ଅଦୂରବର୍ତ୍ତୀ ଗୋଟିଏ ପ୍ରକାଣ୍ଡ ପ୍ରସ୍ତରରେ ସୁନ୍ଦର ନବଗ୍ରହ ମୂର୍ତ୍ତିଗୁଡ଼ିକ ଦେଖି ବିଶାଳ ବଟବୃକ୍ଷ ଛାୟାରେ ଆଶ୍ରୟ ଗ୍ରହଣ କଲୁଁ । ଛାୟାରେ ବସି ମୁଁ ମୁଖଶାଳା ଆଡ଼କୁ ଚାହିଁ ଭୂଦେବ ବାବୁଙ୍କୁ କହିଲି, 'ଆପଣ ଏହି ପ୍ରତିମୂର୍ତ୍ତି ଦେଖି ଗ୍ରୀକ୍ ସେପୋର ସ୍ମରଣ କଲେ । କୌଣସି କୌଣସି ପ୍ରତ୍ନତତ୍ତ୍ୱବିଦ୍‌ଙ୍କ ମତରେ ଏହି ମନ୍ଦିରର ଗଠନକାର୍ଯ୍ୟ ଗ୍ରୀକ୍‌ମାନଙ୍କ ଦ୍ୱାରା ସମ୍ପନ୍ନ ହୋଇଥିଲା, ଏହି ମତବାଦ ମଧ୍ୟ ଆପଣ ଦେଖିଥିବେ ।'

ଭୂଦେବବାବୁ ଏପରି କଥିତ କ୍ଷୁବ୍ଧ ହୋଇ କହିଲେ, 'ସେରୂପ ମତବାଦ ମୁଁ ଦେଖିଅଛି ସତ୍ୟ, କିନ୍ତୁ ଏହି ମତବାଦ ଉପରେ ମୁଁ ଟିକିଏ ଟୀକା କରିବାକୁ ଇଚ୍ଛୁକ । ଗ୍ରୀକ୍‌ମାନେ ଭାରତକୁ ଆସି ଆମ୍ଭମାନଙ୍କ କୁମାରସମ୍ଭବ କାବ୍ୟ ଲେଖିଦେଇ ଯାଇଅଛନ୍ତି ।'' (୧)

କୋଣାର୍କ ମନ୍ଦିରଗାତ୍ରରେ ଶିଳ୍ପକଳାର ଅମର ନିଦର୍ଶନ ଦେଖି କବିବର ରାଧାନାଥ ଯେ ବିଶେଷ ଭାବରେ ମୁଗ୍‌ଧ ହୋଇଥିଲେ କହିବା ବାହୁଲ୍ୟମାତ୍ର । ମନ୍ଦିରଗାତ୍ରର କଳାବିଭବ ରାଧାନାଥଙ୍କ କାବ୍ୟସୃଷ୍ଟି ପାଇଁ ଉପାଦାନ ଯୋଗାଇ ପାରି ନଥିଲା, ମାତ୍ର ମନ୍ଦିରର ଅଦୂରରେ ଥିବା ଚନ୍ଦ୍ରଭାଗା ନଦୀ ଓ ସାଗରର ମିଳନ ହେଲା ରାଧାନାଥଙ୍କ କାବ୍ୟ ନିର୍ମାଣ କୌଶଳର ଭିତ୍ତି । ପ୍ରକୃତି ଉପରେ ଆଧାରିତ କଥାବସ୍ତୁକୁ ରାଧାନାଥ କାବ୍ୟରୂପ ପ୍ରଦାନ କରି ନିଜର ସୃଷ୍ଟି ପ୍ରତିଭାର ଅମର ନିଦର୍ଶନ ରଖିଯାଇଅଛନ୍ତି । ଚନ୍ଦ୍ରଭାଗା ନଦୀ ଓ ସାଗରର ମିଳନକୁ ରୂପାୟିତ କରିବା ପାଇଁ ରାଧାନାଥ ଗ୍ରହଣ କଲେ ଗ୍ରୀକ୍ ସାହିତ୍ୟର

---

(୧) ରାଧାନାଥ ଜୀବନୀ—ପୃ ୧୦୪-୧୦୫

କଥାବସ୍ତୁ । ଓଭିଡ୍‌ଙ୍କ ମେଟାମରଫସିସ୍ କାବ୍ୟରୁ ସେ ଗ୍ରହଣ କଲେ ଡାଫ୍‌ନି ଓ ଆପୋଲୋଙ୍କର ପ୍ରଣୟମୂଳକ କାହାଣୀ ।

ଓଭିଡ୍‌ଙ୍କ ବର୍ଣ୍ଣନା ଅନୁଯାୟୀରେ ଜଳଦେବତା ପେନୁଙ୍କର ଏକମାତ୍ର କନ୍ୟାର ନାମ ଡାଫ୍‌ନି । ଡାଫ୍‌ନି ଥିଲେ ଅତୁଳନୀୟ ସୌନ୍ଦର୍ଯ୍ୟ-ସମ୍ପନ୍ନା ଯୁବତୀ । କନ୍ୟାକୁ ଉପଯୁକ୍ତ ପାତ୍ରରେ ଅର୍ପଣ କରି ତାର ସନ୍ତାନ ଦେଖି ଆନନ୍ଦ ଅନୁଭବ କରିବା ପାଇଁ ପେନୁ ଇଚ୍ଛା କରିଥିଲେ । ମାତ୍ର ଡାଫ୍‌ନି ଏପରି ଏକ ଯୁବତୀ ଥିଲେ ଯେ ସେ ବିବାହ ପ୍ରସଙ୍ଗ ଶୁଣିବାକୁ ଆଦୌ ଇଚ୍ଛା କରୁ ନ ଥିଲେ । ପ୍ରେମର କଳ୍ପନା ତାଙ୍କ ପକ୍ଷରେ ଥିଲି ଅତୀବ ଯନ୍ତ୍ରଣାଦାୟକ । ଦେବତାଙ୍କର ପ୍ରେମଦୃଷ୍ଟି ଯେ ଅତ୍ୟନ୍ତ ଯନ୍ତ୍ରଣାଦାୟକ, ଏ କଥା ସେ ଡାଏନା ଉପାଖ୍ୟାନରୁ ଜାଣିଥିଲେ । ଏହି ଦୃଷ୍ଟିରୁ ମାନବ ପ୍ରେମ ପ୍ରତି ମଧ୍ୟ ତାଙ୍କର ବିତୃଷ୍ଣାଭାବ ଜାତ ହୋଇଥିଲି । ସେ ଚାହୁଁଥିଲେ ମନୋରମ ପ୍ରକୃତି କୋଳରେ ସ୍ୱାଧୀନ ଭାବରେ ବିଚରଣ କରିବାକୁ । ଯେ ଯାହା ଚାହୁଁଥିଲେ, ତାହା ତାଙ୍କୁ ମିଳିଲି ନାହିଁ ।

•

ଅପରୂପ ସୁନ୍ଦରୀ ଡାଫ୍‌ନି ଥରେ ଶିକାର କରିବା ଅବସ୍ଥାରେ ଆପୋଲୋଙ୍କର ଦୃଷ୍ଟିରେ ପଡ଼ିଲେ । ଆପୋଲୋ ତାଙ୍କର ସୌନ୍ଦର୍ଯ୍ୟରେ ମୁଗ୍ଧ ହୋଇ ତାଙ୍କ ପ୍ରତି କାମାସକ୍ତ ହେଲେ । ଶିକାର କରିବା ଅବସ୍ଥାରେ ଡାଫ୍‌ନିଙ୍କର ଅର୍ଦ୍ଧନଗ୍ନ ଶରୀରକୁ ଦେଖି ଆପୋଲୋ ନିଜ କଳ୍ପନାରେ ତାଙ୍କୁ ଅପୂର୍ବ ବସନ ଭୂଷଣରେ ମଣ୍ଡିତା ରୂପରେ ଦେଖିବାକୁ ପାଇଲେ । ଆପୋଲୋଙ୍କ ଦୃଷ୍ଟିରେ ଡାଫ୍‌ନି ଜଗତର ସର୍ବଶ୍ରେଷ୍ଠ ସୁନ୍ଦରୀ ଭାବରେ ପ୍ରତିଭାତ ହେଲେ । ସେ ପ୍ରେମରେ ପାଗଳ ହୋଇ ଉଠିଲେ । ସେ ଡାଫ୍‌ନିଙ୍କ ନିକଟକୁ ଗଲେ । ଡାଫ୍‌ନି ବେଶ୍ ଦ୍ରୁତଗତିରେ ଆଗେଇ ଯିବାବେଳେ ଆପୋଲୋ ତାଙ୍କୁ ଅନୁସରଣ କଲେ । ଆପୋଲୋ ଯେତେବେଳେ ଡାଫ୍‌ନିଙ୍କର ନିକଟତର ହେଲେ, ସେତେବେଳେ ସେ ତାଙ୍କୁ ସମ୍ବୋଧନ କରି ପଛକୁ ଫେରି ଚାହିଁବାକୁ ଅନୁରୋଧ କଲେ । ସେ ଜଣାଇଲେ ଯେ ସେ ତାଙ୍କର ପ୍ରଣୟପ୍ରାର୍ଥୀ । ସେ ନିଜର ପରିଚୟ

ଦେଇ କହିଲେ ଯେ ସେ କୌଣସି ମେଣ୍ଟ୍ରାଲଜ ମୁହାନ୍ତ, ସୁଅୁଂ ଡେଲଫିର ଦେବତା ।

ଠିକ ଏହି ପ୍ରେମ ଶ୍ରୀଅଙ୍କୁ ଉପୁକରୁ ଏବଂ ଡାଫ୍‌ନା ସେତେବେଳେ ଶୁଣିବାକୁ ପାଇଲେ ଯେ ଡେଲଫିର ଦେବତା ତାଙ୍କର ପ୍ରଣୟପ୍ରାର୍ଥୀ, ସେତେବେଳେ ସିଏ ଜୀବନ ବିକଳରେ ଆଗକୁ ଦଉଡ଼ିବାରେ ଲାଗିଲେ । ସେ ଦଉଡ଼ି ଦଉଡ଼ି ଏପରି କ୍ଳାନ୍ତ ହୋଇ ପଡ଼ିଲେ ଯେ ସେ ଅନୁଭବ କଲେ ଯେପରି ତାଙ୍କର ହୃତ୍‌ପିଣ୍ଡର ସ୍ପନ୍ଦନ ବନ୍ଦ ହୋଇଆସୁଅଛି ! ସେ ଭାବିଲେ ଯେ ତାଙ୍କର ପ୍ରାଣ ଅବିଳମ୍ବେ ଛାଡ଼ିଯିବ । ଏତିକିବେଳେ ସେ ଦେଖିପାରିଲେ ଯେ ଅରଣ୍ୟର ବୃକ୍ଷ ଗହଳି ଫାଙ୍କରେ ତାଙ୍କର ପିତାଙ୍କର ନଦୀ ପ୍ରବାହିତ ହେଉଅଛି । ସେ ସମସ୍ତ ଶକ୍ତି ସଞ୍ଚୟ କରି ନିଜକୁ ରକ୍ଷାକରିବା ପାଇଁ ପିତାଙ୍କୁ ଆହ୍ୱାନ କଲେ । ଏତିକିବେଳେ ତାଙ୍କର ପାଦ ଆଉ ଚଳିଲା ନାହିଁ ଏବଂ ଦେଖାଗଲା ଯେ ତାଙ୍କର କ୍ଷୁଦ୍ର ଶରୀର କ୍ରମେ ବୃକ୍ଷାକାରରେ ପରିଣତ ହେଲା । ତାଙ୍କର ଶରୀରରେ ବୃକ୍ଷର ବକଳ ଜନ୍ମି ଆଚ୍ଛାଦିତ ହେଲା ଓ ଶରୀରରୁ ଶାଖାପ୍ରଶାଖା ବିସ୍ତାର ଲାଭ କଲା । ଶେଷରେ ସେ ଗୋଟିଏ ଲରେଲ୍ ବୃକ୍ଷରେ ରୂପାନ୍ତରିତ ହେଲେ । ଆପୋଲୋ ଏହି ଦୃଶ୍ୟ ଦେଖି ଅତ୍ୟନ୍ତ ବ୍ୟଥିତ ଚିତ୍ତରେ ଶୋକାଭିଭୂତ ହୋଇପଡ଼ିଲେ । ଆପୋଲୋ ତାଙ୍କୁ ସମ୍ବୋଧନ କରି କହିଲେ ଯେ ବୃକ୍ଷ ଲରେଲ୍ ବୃକ୍ଷ ତାଙ୍କର ପ୍ରିୟ ହେବ ଓ ତାଙ୍କର ପତ୍ରକୁ ବିଜୟୀ ବୀରମାନେ ବିଜୟର ଚିହ୍ନ ସ୍ୱରୂପ ମସ୍ତକରେ ଧାରଣ କରିବେ ।

ଏହା ହିଁ ଉପେନ୍ଦ୍ରଙ୍କର କାବ୍ୟରେ ବର୍ଣ୍ଣିତ ଆପୋଲୋ ଏବଂ ଡାଫ୍‌ନୀଙ୍କର ପ୍ରଣୟମୂଳକ କାହାଣୀ । ଏକ ବିପ୍ରଲମ୍ଭ କାହାଣୀ ଭାବରେ ଏହା ଅତ୍ୟନ୍ତ ହୃଦୟସ୍ପର୍ଶୀ । କବିବର ରାଧାନାଥ ଉପେନ୍ଦ୍ରଙ୍କ କାବ୍ୟର କଥାବସ୍ତୁକୁ ଆହରଣ କରି କିପରି ଚିତ୍ରୋତ୍ପଳା ଚନ୍ଦ୍ରଭାଗା କାବ୍ୟ ସୃଷ୍ଟି କରିଛନ୍ତି, ତାହା ଅନୁଧ୍ୟାନ କରିବାର କଥା ।

ପୌଷମାସର ଅଭିଷେକ ଉତ୍ସବ ଉପଲକ୍ଷେ ଶ୍ରୀ ଜଗନ୍ନାଥଙ୍କ ଦର୍ଶନ ଲାଗି ଦେବଦେବୀମାନେ ନିଜ ନିଜର ପୂଜାସମ୍ଭାର ସହ ଶ୍ରୀମନ୍ଦିରର ସିଂହଦ୍ୱାରରେ ଉପସ୍ଥିତ ହୋଇଅଛନ୍ତି । ଉତ୍ସବର

ବିଭିନ୍ନ ସ୍ଥାନରେ ପୂଜିତ ହେଉଥିବା ଦେବଦେବୀମାନଙ୍କୁ କିବା ଏହି ଉପଲକ୍ଷରେ ସିଂହଦ୍ୱାରରେ ଉପସ୍ଥିତ କରାଇ ଅଛନ୍ତି । ଦେବଦେବୀ-ମାନେ ସମସ୍ତେ ଆସି ସିଂହଦ୍ୱାରରେ ଠୁଳ ହୋଇଥିବା ସମୟରେ ଦେଖାଗଲା ଯେ ରତି ଏବଂ କନ୍ଦର୍ପ ପ୍ରଭୁଙ୍କୁ ଆସି ମଧ୍ୟ ସିଂହଦ୍ୱାରରେ ଅପେକ୍ଷା ନ କରି ମନ୍ଦିର ମଧ୍ୟକୁ ପ୍ରଥମେ ପ୍ରବେଶ କଲେ । କନ୍ଦର୍ପଙ୍କର ଏ ପ୍ରକାର ଆଚରଣରେ ସୂର୍ଯ୍ୟଦେବ କ୍ଷୁବ୍ଧ ହେଲେ । ଶ୍ରୀମନ୍ଦିରରେ ଦିନ ଶେଷକଲା ପରେ ଦେବଦେବୀମାନେ ସିଂହଦ୍ୱାରରୁ ନିଜନିଜର ବାହନପୃଷ୍ଠରେ ଆରୋହଣ କରି ନିଜନିଜର ଅଧିଷ୍ଠାନ ସ୍ଥଳକୁ ଫେରିଗଲେ । ଫେରିବାବେଳେ ସୂର୍ଯ୍ୟ ଦେବ କନ୍ଦର୍ପଙ୍କୁ ଉଦ୍ଦେଶ୍ୟରେ ଏହି କହିଲେ ଯେ ସେ କନ୍ଦର୍ପଙ୍କର ଏ ପ୍ରକାର ଅହମିକାକୁ ଧ୍ୱଂସ କରିଦେବେ । ସ୍ତ୍ରୀଲୋକମାନଙ୍କର ମନକୁ ଆକର୍ଷଣ କରି କନ୍ଦର୍ପ ନିଜକୁ ବଳୀୟାନ ମନେକରୁଛନ୍ତି । ମାତ୍ର ତେଜସ୍ୱୀର ଧର୍ଷଣରେ ସେ ମୃତ୍ୟୁଲାଭ କରିବେ । ପୂର୍ବେ ଥରେ ଶିବଙ୍କର କୋପାନଳରେ ଦଗ୍ଧୀଭୂତ ହୋଇଥିଲେ । ପୁଣି ଆଉ ଥରେ ଜଳିପୋଡ଼ି ଧ୍ୱଂସ ହେବା ତାଙ୍କ ପକ୍ଷରେ ଅସମ୍ଭବ ନୁହେଁ । ଜଗତରେ ଯେତେ କୁତ୍ସିତ ଅଶାନ୍ତି-ପୂର୍ଣ୍ଣ ଆଚରଣ ଦେଖାଯାଏ, ସେସବୁର କାରଣ ହେଉଛନ୍ତି କନ୍ଦର୍ପ । ସେ ଅତ୍ୟନ୍ତ ଲଜ୍ଜାହୀନ ଭାବରେ ନିଜକୁ ତ୍ରିପୁରବିଜୟୀ ବୋଲି ମନେକରିବା ନିତାନ୍ତ ହାସ୍ୟାସ୍ପଦ କଥା ।

ସୂର୍ଯ୍ୟଦେବଙ୍କର କଥା ଶୁଣି କନ୍ଦର୍ପ ହସି ହସି କହିଲେ ଯେ ଜଗତରେ କେହି ହେଲେ ତାଙ୍କର ଶାସନରୁ ଅବ୍ୟାହତି ପାଇ ପାରିବେ ନାହିଁ । ସୂର୍ଯ୍ୟଦେବ ଯେତେ ଶକ୍ତିଶାଳୀ ହୁଅନ୍ତୁ ନା କାହିଁକି, ତାଙ୍କର ଗର୍ବକୁ ସେ ନିଶ୍ଚୟ ଦିନେ ନା ଦିନେ ଖର୍ବ କରିବେ । ଜଗତରେ ଅନ୍ଧକାରକୁ ଦୂରୀଭୂତ କରିବା ପାଇଁ ଯେପରି ସୂର୍ଯ୍ୟଙ୍କ କିରଣ ଅପେକ୍ଷା ଅଧିକ କୌଣସି ଶକ୍ତି ନାହିଁ, ସେହିପରି ଦାମ୍ଭିକଙ୍କର ଦମ୍ଭଭାବକୁ ଦୂର କରିବା ପାଇଁ କନ୍ଦର୍ପଙ୍କ ଅପେକ୍ଷା ଅଧିକ ଶକ୍ତିଶାଳୀ କେହି ନାହିଁ । ଦାରୁକୁ ଭେଦ କରିବାର ଶକ୍ତିଥିବା ଭ୍ରମର ପଦ୍ମଫୁଲର କୋଳରେ ଆବଦ୍ଧ ଥିବା ସମୟରେ ତାର ଶକ୍ତିକୁ ଭୁଲିଯାଏ, ଅର୍ଥାତ୍ ତାକୁ

ଭେଦ କରି ଶୂନ୍ୟ ଅସି ପାରେ ନାହିଁ । ଚନ୍ଦ୍ରମା ଭଳି ସୁକୁମାର ତନୁ ଏ ଜଗତରେ ନାହିଁ ବା ସୂର୍ଯ୍ୟଙ୍କ ଭଳି ତେଜସ୍ୱୀ ଶକ୍ତି ଏ ଜଗତରେ ନାହିଁ । ମାତ୍ର ଏ ଦୁହିଁଙ୍କୁ ପରସ୍ପର ପ୍ରେମରଜ୍ଜୁରେ ବନ୍ଧନ କରିଛନ୍ତି କନ୍ଦର୍ପ । ଜଗତରେ ଯେ ଯେତେ ତେଜସ୍ୱୀ ହୁଅନ୍ତୁ ନା କାହିଁକି, କନ୍ଦର୍ପ ସମ୍ମୁଖରେ ତାଙ୍କର ସମସ୍ତ ବୁଦ୍ଧିବୃତ୍ତି ପରାଜିତ ହୋଇଥାଏ । ଏହା କହି କନ୍ଦର୍ପ ସୂର୍ଯ୍ୟଙ୍କଠାରୁ ପ୍ରତିଶୋଧ ନେବା ଇଚ୍ଛାରେ ସୁଯୋଗକୁ ଅପେକ୍ଷା କରି ମୀନକେତନ ରଥରେ ଆକାଶମାର୍ଗରେ ରତିଙ୍କ ସହିତ ଲୁଚି ରହିଲେ । କନ୍ଦର୍ପ ଏହିପରି ଭାବରେ ଅପେକ୍ଷା କରିବା ପରେ ବେଲେଶ୍ୱରବନ୍ତଠାରେ ନିଜର ପ୍ରତିଶୋଧ ନେବାର ସୁଯୋଗ ଲାଭ କଲେ ।

ପର୍ଶୁରାମଙ୍କର ଶିଷ୍ୟ ସୁମନ୍ୟୁ ସାଗର ତୀରରେ ସମାଧିଯୋଗ ସାଧନ କରୁଥିଲେ । ତାଙ୍କର ପ୍ରଭାବରେ ଜଣେ ସାଗର ଅପ୍ସରୀ ଗର୍ଭରୁ ଚନ୍ଦ୍ରଭାଗା ନାମ୍ନୀ କନ୍ୟା ଜନ୍ମଗ୍ରହଣ କରିଥିଲେ । ସୁମନ୍ୟୁଙ୍କ ଆଦର-ଯତ୍ନରେ ଚନ୍ଦ୍ରଭାଗାଙ୍କର ବାଲ୍ୟାବସ୍ଥା ଅତିକ୍ରାନ୍ତ ହେଲା । କ୍ରମେ ସେ ଯୌବନରେ ପଦାର୍ପଣ କଲେ । ତାଙ୍କର ଶରୀର ଅପୂର୍ବ ଶ୍ରୀମଣ୍ଡିତ ହେଲା । ସେ ଏପରି ସୁନ୍ଦରୀ ହେଲେ ଯେ ତାଙ୍କୁ ସମଗ୍ର ସୃଷ୍ଟିରେ ସର୍ବଶ୍ରେଷ୍ଠା ସୁନ୍ଦରୀ ଭାବରେ ଗ୍ରହଣ କରାଯିବାର କଥା । ତାଙ୍କର ଯୌବନ କାଳ ଉପସ୍ଥିତ ହେବାରୁ ତାଙ୍କ ପାଇଁ ଉପଯୁକ୍ତ ବସ୍ତ୍ର ଓ ଅଳଙ୍କାର ଲକ୍ଷ୍ମୀଙ୍କ କୋଠଭଣ୍ଡାରରୁ ମିଳିଥିଲା । କାରଣ, ଚନ୍ଦ୍ରଭାଗାଙ୍କର ମାତା ଥିଲେ ଲକ୍ଷ୍ମୀଙ୍କର ବାଲ୍ୟସଙ୍ଗିନୀ ।

ଅପୂର୍ବ ସୌନ୍ଦର୍ଯ୍ୟସଂପନ୍ନା ଚନ୍ଦ୍ରଭାଗା ସବୁବେଳେ ବିଜନ ସ୍ଥାନରେ ବୁଲୁଥାଆନ୍ତି । ସେ ପ୍ରେମ ପ୍ରସଙ୍ଗକୁ ସଦାବେଳେ ବିଷ ପରି ମନେ କରୁଥିଲେ । ପୁରୁଷମାନଙ୍କ କଥା ଶୁଣିଲେ ସେ ଏପରି ଭୟ-ବିହ୍ୱଳା ହୋଇପଡ଼ନ୍ତି ଯେ ସବୁବେଳେ ସେମାନଙ୍କଠାରୁ ଦୂରରେ ରହିବାକୁ ଇଚ୍ଛା କରନ୍ତି । ମାତ୍ର ଏପରି ସୌନ୍ଦର୍ଯ୍ୟସଂପନ୍ନା ହୋଇ ନିଜକୁ ଗୋପନ କରି ରଖିବା ତାଙ୍କ ପକ୍ଷରେ କେବେହେଲେ ସମ୍ଭବ ନୁହେଁ । ଜଗତରେ ଅଥବା ସ୍ୱର୍ଗରେ ରୂପର ଆକର୍ଷଣ ଅତ୍ୟନ୍ତ ପ୍ରବଳ—ଏ କଥା ଦମୟନ୍ତୀଙ୍କ ସ୍ୱୟମ୍ବରରେ ପ୍ରମାଣିତ ହୋଇଅଛି ।

ସୂର୍ଯ୍ୟଙ୍କର ସୁନେଲି କିରଣ ପଶ୍ଚିମ ଆକାଶରେ ସୃଷ୍ଟି କରିଛି ବିଚିତ୍ର ବର୍ଣ୍ଣର ସମ୍ଭାର । ପଶ୍ଚିମାକାଶରେ ଥିବା ମେଘଖଣ୍ଡ ସୂର୍ଯ୍ୟଙ୍କର ଅସ୍ତରାଗରେ ରଞ୍ଜିତ । ଧୀର ସମୀରର ପ୍ରବାହ ପୁଲକିତ କରିଛି ଏକାନ୍ତ ହୃଦୟ । ଦିବାବସାନର ସଙ୍କେତ ଦେଉଛି କଇଁଆରିଲତା ବେଷ୍ଟିତ ବାଲୁସ୍ତୂପର ସମ୍ବର୍ଦ୍ଧମାନ ଛାୟା । ପଶ୍ଚିମ ଦିଗର ଦର୍ପଣ ସଦୃଶ ସରହ୍ରଦର ଜଳରାଶିର ଉଜ୍ଜ୍ୱଳତା ପ୍ରକାଶ ପାଉଅଛି । ମନ୍ଦ ସମୀରଣର ପ୍ରବାହ ସହ ହ୍ରଦର ଜଳରାଶିରେ ସୃଷ୍ଟି କରୁଛି ସୁବର୍ଣ୍ଣର ଅଶେଷ ତରଙ୍ଗ । ଅଦୂରରେ ନୀଳ ସାଗରର ଅମର ଧ୍ୱନି । ଶୁକ୍ତି-ବିଛୁରିତ ସିକତିଳ ପ୍ରାନ୍ତରକୁ ଫେନଚୂଡ଼ ଲହରୀ ମାଡ଼ିଆସି ବେଲେଶ୍ୱର ମହାଦେବଙ୍କ ଚରଣକୁ ଧୌତ କରୁଅଛି । ଧୀର ସମୀରଣ ନାନା ପ୍ରକାର ପୁଷ୍ପର ପରାଗରେଣୁ ବହନ କରି ଆଣୁଅଛି ଓ ଗୁଞ୍ଜନ ସହିତ ସଙ୍ଗେ ଯେପରି କନ୍ଦୁକକ୍ରୀଡ଼ାରେ ମାତିଛି । ଏହିପରି ମନୋରମ ପ୍ରାକୃତିକ ପରିବେଶ ମଧ୍ୟରେ ଦଳ ଦଳ ହୋଇ ହରିଣ ଗୁଡ଼ିଆଡେ ବୁଲିବା ସମୟରେ ସେମାନଙ୍କର ସୁନ୍ଦର ଗ୍ରୀବାକୁ ଟେକି ତରଙ୍ଗାୟିତ ଗୁହାଣୀ ତାଳି ଦେଉଅଛନ୍ତି ।

ବେଲେଶ୍ୱରବନ୍ତର ମନୋହର ପ୍ରାକୃତିକ ପରିବେଶରେ ଆସନ୍ନ ସନ୍ଧ୍ୟାର ଛାୟାଲୋକ ମଧ୍ୟରେ ସୁନ୍ଦରୀ ଚନ୍ଦ୍ରଭାଗା କନ୍ଦୁକକ୍ରୀଡ଼ାରେ ରତ ହୋଇଅଛନ୍ତି । ତାଙ୍କର ସୁନ୍ଦର କରକମଳରେ କନ୍ଦୁକର ଗତି ଉତ୍ଥିତ ଓ ପତିତ ହେଉଅଛି । କନ୍ଦୁକର ଗତି କଳନା କରିବା ସମୟରେ ଚନ୍ଦ୍ରଭାଗାଙ୍କର ଭୃରୁର ନୃତ୍ୟ ଅତ୍ୟନ୍ତ ସୁନ୍ଦର ଦିଶୁଥାଏ । ଚନ୍ଦ୍ରଭାଗାଙ୍କର ସୌନ୍ଦର୍ଯ୍ୟ କବି ଏହି ପ୍ରସଙ୍ଗରେ ବର୍ଣ୍ଣନା କରିଅଛନ୍ତି । ଚନ୍ଦ୍ରଭାଗା କନ୍ଦୁକ କ୍ରୀଡା କରିବା ସମୟରେ ଉପରକୁ କନ୍ଦୁକଟି ପକାଇ ଦେଇ ତାକୁ ଧରିବା ଆଶାରେ ହାତ ପତାଇ ଉପରକୁ ଅନାଇଁ ଦେବାକ୍ଷଣି ହଠାତ୍ ସୂର୍ଯ୍ୟଦେବଙ୍କର ଦୃଷ୍ଟି ତାଙ୍କର ମୁଖମଣ୍ଡଳ ଉପରେ ପଡ଼ିଗଲା । ସୂର୍ଯ୍ୟଦେବ ସେତେବେଳେ କୋଣାର୍କରୁ ଆକାଶମାର୍ଗରେ ଆସୁଥିଲେ । ଚନ୍ଦ୍ରଭାଗାଙ୍କର ମୁଖମଣ୍ଡଳରେ ସୂର୍ଯ୍ୟଦେବଙ୍କର ଦୃଷ୍ଟି ପଡ଼ିବାରୁ ସୂର୍ଯ୍ୟଦେବଙ୍କର ସମସ୍ତ ପ୍ରକାର ଦାମ୍ଭିକତା ଚୂର୍ଣ୍ଣୀଭୂତ ହେଲା ଓ ସେ ଚନ୍ଦ୍ରଭାଗାଙ୍କ ପ୍ରତି ଅତି ମାତ୍ରାରେ ଆକୃଷ୍ଟ ହୋଇପଡ଼ିଲେ । ସୂର୍ଯ୍ୟଦେବଙ୍କର ମନର ଅବସ୍ଥାକୁ

କୁହିପାରି କନ୍ଦର୍ପ ଏହି ସମୟରେ ତାଙ୍କ ପ୍ରତି ସମ୍ମୋହନ ଶର ପ୍ରୟୋଗ କଲେ ଓ ସେହି ଶରକୁ ବିପରୀତ ଭାବରେ ଯୋଖି ଚନ୍ଦ୍ରଭାଗାଙ୍କ ପ୍ରତି ପ୍ରୟୋଗ କଲେ । ସମ୍ମୋହନ ଶରକୁ ପ୍ରୟୋଗ କଲେ ତାହା ଅନୁରାଗ ଭାବ ସୃଷ୍ଟି କରେ; ମାତ୍ର ତାହାକୁ ବିପରୀତ ଭାବରେ ପ୍ରୟୋଗ କଲେ ତାହା ବିରାଗଭାବ ସୃଷ୍ଟି କରିଥାଏ ।

ବ୍ରାହ୍ମଣ ଯୁବକ ରୂପରେ ସୂର୍ଯ୍ୟଦେବ ଚନ୍ଦ୍ରଭାଗାଙ୍କ ନିକଟରେ ଉପନୀତ ହେଲେ । ଚନ୍ଦ୍ରଭାଗା ହଠାତ୍ ସୂର୍ଯ୍ୟଦେବଙ୍କୁ ଦେଖି ଲଜ୍ଜା ଓ ଭୟରେ ଅଧୀର ହୋଇ ସେ ସ୍ଥାନରୁ ପଳାୟନ କଲେ । ଚନ୍ଦ୍ରଭାଗା ଅତ୍ୟନ୍ତ ଦ୍ରୁତଗତିରେ ପଳାୟନ କରିବା ସମୟରେ ସୂର୍ଯ୍ୟଦେବଙ୍କର ମନ ତାଙ୍କପ୍ରତି ଦ୍ରୁତଗତିରେ ଆକୃଷ୍ଟ ହେଲା । ସୂର୍ଯ୍ୟଦେବ ଚନ୍ଦ୍ରଭାଗାଙ୍କର ପଛରେ ଧାଇଁବାକୁ ଲାଗିଲେ । ସେ ଚନ୍ଦ୍ରଭାଗାଙ୍କୁ ସମ୍ବୋଧନ କରି କହିଲେ, "ସୁନ୍ଦରି, ଏପରି ଭୟାର୍ତ୍ତ ଚିତ୍ତରେ ତୁମର ପଳାଇଯିବା ଉଚିତ ନୁହେଁ । ଚରଣର ଦାସ ପ୍ରତି ତୁମର ଏପରି ଭୟ କାହିଁକି ? ତୁମେ ମୋତେ ଜଣେ ବ୍ରାହ୍ମଣ ଯୁବକ ବୋଲି ଭାବିଅଛ, ମାତ୍ର ମୁଁ ତାହା ନୁହେଁ । ମୁଁ ସୂର୍ଯ୍ୟଦେବ, ମୁଁ ସମଗ୍ର ଜଗତକୁ ବଞ୍ଚାଇ ରଖିଅଛି ।" ଏହିପରି ଭାବରେ ସୂର୍ଯ୍ୟଦେବ ନିଜର ପରିଚୟ ଅତ୍ୟନ୍ତ ପ୍ରାଞ୍ଜଳ ଭାବରେ ଜ୍ଞାପନ କଲେ । ସୂର୍ଯ୍ୟଦେବଙ୍କର ଶତ ଅନୁରୋଧ ସତ୍ତ୍ୱେ ଚନ୍ଦ୍ରଭାଗା ଆଗକୁ ଦଉଡ଼ିବାରେ ଲାଗିଥାଆନ୍ତି । ପଳାୟନ ସମୟରେ ଚନ୍ଦ୍ରଭାଗାଙ୍କର ଅସ୍ତବ୍ୟସ୍ତ ଶରୀରର ସୌନ୍ଦର୍ଯ୍ୟ ଅଧିକତର ପ୍ରତିଫଳିତ ହେଉଥାଏ । ଚନ୍ଦ୍ରଭାଗାଙ୍କର ପଳାୟନ ଓ ସୂର୍ଯ୍ୟଦେବଙ୍କର ଅନୁଧାବନକୁ କବି ହଳଧରଦାସ ସଞ୍ଚାରେ ପଳାୟନ ଓ ଅନୁଧାବନ ସହିତ ତୁଳନା କରିଅଛନ୍ତି ।

ଚନ୍ଦ୍ରଭାଗା ଏହିପରି ଭାବରେ ଧାଇଁ ଧାଇଁ ସାଗରର ବେଳାଭୂମିରେ ପହଞ୍ଚିଲେ । ସେଠାରେ ସେ ନିଜ ମାତାଙ୍କୁ ସମ୍ବୋଧନ କରି ତାଙ୍କୁ ବିପଦରୁ ଉଦ୍ଧାର କରିବା ପାଇଁ ଆକୁଳ ମିନତି କଲେ । ଏହି ସମୟରେ ହଠାତ୍ ସାଗରରୁ ପର୍ବତ ଆକାରରେ ନୀଳ ତରଙ୍ଗ ଉଠି ଆସିଲା ଓ ତାହା ଦେହରେ ଚନ୍ଦ୍ରଭାଗାଙ୍କର ଅସ୍ତିତ୍ୱ ବିଲୀନ ହୋଇଗଲା । ଚନ୍ଦ୍ରଭାଗା ସାଗର ତରଙ୍ଗରେ ମିଶିଯିବାର ଦେଖି ସୂର୍ଯ୍ୟଦେବଙ୍କ ମନରେ ହଠାତ୍ ଭୟ ଜାତ

ହେଲା । ଏତିକିବେଳେ ଏକ ଭୟଙ୍କର ଗର୍ଜନ ଶୁଣି ସୂର୍ଯ୍ୟଦେବ ପଶ୍ଚିମ ଦିଗକୁ ଚାହିଁ ଦେଖିଲେ ଯେ ନିଜର ପ୍ରିୟ ଅଧିଷ୍ଠାନସ୍ଥଳ କୋଣାର୍କ ମନ୍ଦିର ଧୂଳିସାତ୍ ହୋଇଅଛି ।

ଚନ୍ଦ୍ରଭାଗାଙ୍କର ଜନକ ସୁମନ୍ତ୍ର ଧ୍ୟାନଦ୍ୱାରା ସୂର୍ଯ୍ୟଦେବଙ୍କର ଏ ପ୍ରକାର ଅନ୍ୟାୟ ଆଚରଣ ବିଷୟରେ ଅବଗତ ହୋଇ କ୍ରୋଧଭରେ ଅଭିଶାପ ଦେଲେ । ସେହି ଅଭିଶାପ ଫଳରେ କୋଣାର୍କ ମନ୍ଦିର ଭୂଲୁଣ୍ଠିତ ହେଲା । କନ୍ଦର୍ପଙ୍କର ବିଷମଦଣ୍ଡ ଭୋଗ କରି ସୂର୍ଯ୍ୟଦେବ ନିଜ ସ୍ଥାନକୁ ଫେରିଗଲେ । ସେହିଦିନଠାରୁ କୋଣାର୍କକ୍ଷେତ୍ରରୁ ସୂର୍ଯ୍ୟପୂଜା ବନ୍ଦ ହୋଇଗଲା ଓ ସେହିସ୍ଥାନ ମରୁଭୂମିରେ ପରିଣତ ହେଲା । କୋଣାର୍କ ମନ୍ଦିରର ମୁଖଶାଳା କେବଳ ବର୍ତ୍ତମାନ ଠିଆ ହୋଇ ରହି ଏହି କାହାଣୀର ପ୍ରତିଧ୍ୱନି କରୁଅଛି ।

କବିବର ରାଧାନାଥ ଏହି କଥାବସ୍ତୁକୁ ତାଙ୍କର ଚନ୍ଦ୍ରଭାଗା କାବ୍ୟରେ ରୂପାୟିତ କରିଅଛନ୍ତି। ଚନ୍ଦ୍ରଭାଗା କାବ୍ୟର କଥାବସ୍ତୁ ପାଇଁ କବି ଓଭିଡ୍‌ଙ୍କ କାବ୍ୟର କଥାବସ୍ତୁକୁ କିପରି ଭାବରେ ଗ୍ରହଣ କରି ନିଜର ବୈଶିଷ୍ଟ୍ୟ ପ୍ରଦର୍ଶନ କରିଅଛନ୍ତି, ତାହା ହିଁ ଦେଖିବାର କଥା । ରାଧାନାଥ ଚନ୍ଦ୍ରଭାଗା କାବ୍ୟ ରଚନା କରିବା ପରେ ଏ ଦେଶର ସୁଧୀ ପାଠକମାନେ ତାଙ୍କର ଆହରଣ ସୂତ୍ର ବିଷୟରେ ଅବହିତ ହୋଇ ପାରି ନ ଥିଲେ । ଏ ବିଷୟରେ ଭବଭୂତି ରାୟଙ୍କର ଉକ୍ତି ଉଦ୍ଧାରଯୋଗ୍ୟ । "ଚନ୍ଦ୍ରଭାଗାର ଗଳ୍ପଟି ରାଧାନାଥ କେଉଁଠାରୁ ସଂଗ୍ରହ କରିଥିଲେ ତାହା ଅଜ୍ଞାତ । ପ୍ରଚଳିତ କିମ୍ବଦନ୍ତୀରୁ ସେ ଅନେକ ବିଷୟ ସଂଗ୍ରହ କରିଥିଲେ; କିନ୍ତୁ ଏ କ୍ଷେତ୍ରରେ ସେ ପ୍ରଚଳିତ କିମ୍ବଦନ୍ତୀରୁ ଗଳ୍ପଟି ସଂଗ୍ରହ କରିଥିଲେ କି ନାହିଁ ତାହା ଆହ୍ମେମାନେ ସମ୍ୟକ୍ ଭାବରେ ଅବଗତ ନୋହୁଁ । ସମ୍ଭବତଃ Greek mythology (ଗ୍ରୀକପୁରାଣ) ରେ ଆପୋଲୋ ଓ ଡାଫ୍ନୀଙ୍କର ପ୍ରଣୟ ବ୍ୟାପାର ସମ୍ବନ୍ଧରେ ଯେଉଁ ଗଳ୍ପ ଅଛି, ତାହା ସେହି ଗଳ୍ପ ଅବଲମ୍ବନରେ ରଚିତ ।"(୧) କବିବର ରାଧାନାଥ ଯେତେବେଳେ ଚନ୍ଦ୍ରଭାଗା କାବ୍ୟ ରଚନା କରିଥିଲେ ସେତେବେଳେ ମଧ୍ୟ ଭବଭୂତି ରାୟଙ୍କ ପରି ଆଲୋଚକ ଚନ୍ଦ୍ରଭାଗା କାବ୍ୟର ଆହୃତ ବିଷୟବସ୍ତୁ ସମ୍ବନ୍ଧରେ ନିଶ୍ଚିତ ମତ ପୋଷଣ କରିପାରି-

(୧) ରାଧାନାଥ ଜୀବନୀ—ପୃ, ୬୦୧-୬୦୨

ନାହାନ୍ତି । ସେ ଗ୍ରୀକ୍ ପୁରାଣର ଆପୋଲୋ ଏବଂ ଡାୟୁାନାଙ୍କର ପ୍ରଣୟମୂଳକ କାହାଣୀକୁ ଏହାର ସୂତ୍ର ଭାବରେ କେବଳ ଅନୁମାନ କରିଅଛନ୍ତିମାତ୍ର । ତେଣୁ ଚନ୍ଦ୍ରଭାଗା କାବ୍ୟରେ ରାଧାନାଥଙ୍କର ମୌଳିକତା କେତେ ପରିମାଣରେ ରହିଛି ଓ ଆହରଣ କେତେ ପରିମାଣରେ ରହିଛି ସେ ବିଷୟରେ ଆଲୋଚନା କରି ଦେଖାଇଦେବା ଆଲୋଚକଙ୍କ ପକ୍ଷରେ ଅସମ୍ଭବ ହୋଇଅଛି ।

ଓଭିଡ଼ଙ୍କ କାବ୍ୟର କଥାବସ୍ତୁ ଅନୁସାରେ ଆପୋଲୋ ଡାଫ୍‌ନୀଙ୍କର ସୌନ୍ଦର୍ଯ୍ୟରେ ମୁଗ୍‌ଧ ହୋଇ ପଡ଼ିଲେ । ଆପୋଲୋ ଅତ୍ୟନ୍ତ ଶକ୍ତିଶାଳୀ ଥିଲେ ଓ ସେ ଶତ୍ରୁମାନଙ୍କୁ ଦମନ କରିବାରେ ଅତ୍ୟନ୍ତ ଦକ୍ଷ ଥିବାରୁ ତାଙ୍କର ବିଶେଷ ଭାବରେ ଗର୍ବ ଅଭିମାନ ଥିଲା । ଆପୋଲୋ କ୍ୟୁପିଡ଼ଙ୍କୁ ଶର ସଜ୍ଜିତ ହେବାର ଦେଖି ତାଙ୍କ ପ୍ରତି ନିତାନ୍ତ ନିର୍ମମ ବାକ୍ୟ ପ୍ରୟୋଗ କଲେ । ତେଣୁ ଉଭୟଙ୍କ ମଧ୍ୟରେ କଳହର ସୂତ୍ରପାତ ହେଲା । ଏହି କଳହ ହିଁ ଉଭୟଙ୍କର ଦ୍ୱନ୍ଦ୍ୱସୃଷ୍ଟିର କାରଣ । ଏହି ଦ୍ୱନ୍ଦ୍ୱ ମଧ୍ୟରେ ଆପୋଲୋ ଓ ଡାଫ୍‌ନୀଙ୍କର ପ୍ରେମମୂଳ କାହାଣୀ ଖଚିତ ହେବାର କୌଣସି ଯାଥାର୍ଥ୍ୟ ଅନୁଭୂତ ହୁଏ ନାହିଁ । ମାତ୍ର କବିବର ରାଧାନାଥଙ୍କ ଲେଖନୀରେ ସୂର୍ଯ୍ୟଦେବ ଓ କନ୍ଦର୍ପଙ୍କର ଦ୍ୱନ୍ଦ୍ୱର କାରଣ ଅତ୍ୟନ୍ତ ଯୁକ୍ତିଯୁକ୍ତ ଭାବରେ ରୂପଲାଭ କରିଅଛି । ପୁଷ୍ୟାଭିଷେକ ଉପଲକ୍ଷରେ ଶ୍ରୀଜଗନ୍ନାଥଙ୍କର ଦର୍ଶନ ପାଇଁ ସିଂହଦ୍ୱାରରେ ଦେବଦେବୀମାନେ ଏକତ୍ରିତ ହୋଇଥିବା ସମୟରେ କନ୍ଦର୍ପ ଓ ରତି ଶେଷରେ ଆସି ମଧ୍ୟ ପ୍ରଥମରେ ମନ୍ଦିର ମଧ୍ୟକୁ ପ୍ରବେଶ କରିବା ସୂର୍ଯ୍ୟଦେବଙ୍କ ପକ୍ଷରେ ଅସହ୍ୟ ହେଲା । ସେ କନ୍ଦର୍ପଙ୍କ ପ୍ରତି କ୍ରୋଧ ପ୍ରକାଶ କରି ନିଜର ଶକ୍ତି ସାମର୍ଥ୍ୟର ପରିଚୟ ଦେଲେ । ସୂର୍ଯ୍ୟଦେବ କନ୍ଦର୍ପଙ୍କୁ ଯେଉଁପରି ଭାବରେ ଆକ୍ଷେପ କରିଛନ୍ତି ତାହା କବିଙ୍କ ବର୍ଣ୍ଣନା ଶୈଳୀର ଏକ ସାର୍ଥକ ନିଦର୍ଶନ ।

"ସ୍ତ୍ରୈଣଜନ ମନମଜ୍ଜାଇ ତୋର ଏତେ ଗୁମାନ
ତେଜସ୍ୱି-ଧର୍ଷଣ-ପ୍ରମାଦେ ହିନେ ଯିବ ତୋ ପ୍ରାଣ ।
ହର କୋପାନଳେ ଥରେ ତୁ ଜଳିଥିଲୁ ମଦନ,
ପୁଣି ଜଳିବାକୁ ଏ ଦେହେ ପରା ବଳୁଛି ମନ !

ସଂସାରେ ଯାବତ କଳଙ୍କ ଭାର ଅଛୁ କରଚ୍ଛା
ନୀଗ୍ରୀ, ନାଗ୍ରୀ-ରଙ୍କ ନରଙ୍କ ତୁହ୍ମ ଅଛୁ ଦେବତା ।
ଘୁରି ଫୁଲଧନୁ ଧରି ତୁ ସୁରେ ବୋଲାଉ ଶୁର,
ଲଜ୍ଜା ଯାର ନାହିଁ ପାରେ ସେ ହେଲେ ଜଣି ବିପୁର ।"

ସୂର୍ଯ୍ୟଦେବଙ୍କର ଏ ପ୍ରକାର ଆକ୍ଷେପୋକ୍ତିରେ କନ୍ଦର୍ପ ବିଚଳିତ ନ ହୋଇ ଅତ୍ୟନ୍ତ ସାହସର ସହିତ ହସିହସି ଉତ୍ତର ଦେଇଅଛନ୍ତି । ଏହି ଉତ୍ତରରେ କନ୍ଦର୍ପଙ୍କର ଶକ୍ତିସାମର୍ଥ୍ୟର ପରାକାଷ୍ଠା ପ୍ରକାଶ ପାଇଅଛି ।

"ଶୁଣି ସୂର୍ଯ୍ୟବାଣୀ କହନ୍ତି ହସି ହସି ମଦନ,
ଜଗତେ କେ ଲଙ୍ଘି ପାରିବ ଫୁଲଧନୁ ଶାସନ ?
ଯେତେ ଦମ୍ଭ କର, ହେଲେ ମୁଁ ଦମ୍ଭ ହରିବି ଦିନେ
ତୁମ୍ଭ ପ୍ରତିକୂଳେ ତୁମ୍ଭଙ୍କୁ ସାକ୍ଷୀ କରିବି ଦିନେ ।
ତମୋ ଦମ୍ଭହର ଜଗତେ ତୁମ୍ଭ କର ସରିକେ ?
ଦର୍ପି ଦମ୍ଭହର ତେସନ ଫୁଲଶର ସରିକେ ?
ଦାରୁଭେଦ କ୍ଷମ ଭ୍ରମର ପଶି କମଳ କୋଳେ
ପାସୋରେ ଆପଣା ବିକ୍ରମ ପ୍ରେମ-ମୋହନ-ଭୋଳେ ।
ସୁକୁମାରପଣେ ନଳିନୀ ତୁଲେ କେ ଅଛି ଆନ ?
ତା ସଙ୍ଗେ ତୁମ୍ଭଙ୍କୁ ଛନ୍ଦିଲି ସିନା ଫୁଲ କମାଣ ?
ଯେ ଯେତେ ତେଜସ୍ୱୀ ତା ତେଜ ମୋତେ ଅଛଇ ଜଣା,
ଫୁଲ ଶର ଆଗେ ପଡ଼ିଲେ ବୁଦ୍ଧି ହୁଅଇ ବଣା ।"

ଓଭିଡ୍‌ଙ୍କ କାବ୍ୟରେ ବର୍ଣ୍ଣିତ ଅଛି ଯେ ପାର୍ଣ୍ଣାସସ୍ ପର୍ବତର ଶିଖର-ଦେଶରେ ଥାଇ କ୍ୟୁପିଡ୍ ଆପୋଲୋ ଓ ଡାଫ୍‌ନୀଙ୍କ ପ୍ରତି ଦୁଇଗୋଟି ଶର ପ୍ରୟୋଗ କରିଛନ୍ତି । ଆପୋଲୋ ଯେତେବେଳେ ଡାଫ୍‌ନୀଙ୍କୁ ଦେଖିଛନ୍ତି, ସେତେବେଳେ ଡାଫ୍‌ନୀ ଶିକାରରେ ବ୍ୟସ୍ତ ଥିଲେ । ତାଙ୍କର ଅର୍ଦ୍ଧନଗ୍ନ ଶରୀର, ଅନାଚ୍ଛାଦିତ ବାହୁ ଓ ଅବିନ୍ୟସ୍ତ କୁନ୍ତଳ ଆପୋଲୋଙ୍କୁ ମୁଗ୍ଧ ବିଭୋର କରିଦେଲା ଯେ ମନେ ମନେ କଳ୍ପନା କଲେ ଯେ ଏ ସୁନ୍ଦରୀ ଯେବେ ଜଗତର ଶ୍ରେଷ୍ଠ ଭୂଷଣରେ ମଣ୍ଡିତା ହେବ ତେବେ, କିପରି ସୁନ୍ଦର ଦେଖା-ଯିବେ । କଳ୍ପନା ନେତ୍ରରେ ଆପୋଲୋ ଦେଖିଲେ ଡାଫ୍‌ନୀଙ୍କର ସେହି ଅପରୂପ

ସୌନ୍ଦର୍ଯ୍ୟ । ତା ପରେ ତାଙ୍କର ଚିତ୍ତରାଜ୍ୟରେ ସୃଷ୍ଟି ହେଲା ତାଙ୍କୁ ଲାଭ କରିବା ନିମିତ୍ତ ଆକୁଳତା । ଚନ୍ଦ୍ରଭାଗା କାବ୍ୟରେ ରାଧାନାଥ ଚନ୍ଦ୍ରଭାଗାଙ୍କର ସୌନ୍ଦର୍ଯ୍ୟ ବର୍ଣ୍ଣନା ଉପରେ ଅଧିକ ଗୁରୁତ୍ୱ ଦେଇଅଛନ୍ତି । ଚନ୍ଦ୍ରଭାଗାଙ୍କର ସୌନ୍ଦର୍ଯ୍ୟକୁ ସେ ପ୍ରଥମରେ ବର୍ଣ୍ଣନା କରିବା ପରେ କନ୍ଦୁକ କ୍ରୀଡ଼ା ସମୟରେ ଦ୍ୱିତୀୟଥର ପାଇଁ ବର୍ଣ୍ଣନା କରିଅଛନ୍ତି । ଶିକାର କରିବା ସମୟରେ ତାପସୀଙ୍କର ସୌନ୍ଦର୍ଯ୍ୟ ବର୍ଣ୍ଣନା ତୁଳନାରେ କନ୍ଦୁକକ୍ରୀଡ଼ା ସମୟରେ ଚନ୍ଦ୍ରଭାଗାଙ୍କର ସୌନ୍ଦର୍ଯ୍ୟ ବର୍ଣ୍ଣନା ଅଧିକ ମନୋରମ ହୋଇଅଛି ବୋଲି କୁହାଯାଇପାରେ ।

"କନ୍ଦୁକକ୍ରୀଡ଼ାରେ ସୁନ୍ଦରୀ ଆଜ ରତ ଏ ସ୍ଥଳେ,
ଉଠୁଛି ପଡୁଛି କନ୍ଦୁକ ଗୁରୁ କରକମଳେ ।
କନ୍ଦୁକର ଗତି କଲାନ୍ତେ କ୍ରୀଡ଼ା-ଲୋଲ-ଲୋଚନ,
ଚଳ ଭ୍ରୂ-ଯୁଗ୍ମ-ନର୍ତ୍ତନ ଦିଶେ କିବା ଶୋଭନ ।
ଲମ୍ବିତ ସୁଗୋଲ ନିତମ୍ବ ବିମ୍ବେ ହେମମେଖଳା
ସ୍ତନାଙ୍କୁରେ ବ୍ୟସ୍ତେ ଦୋଳଇ ମୋତିମାଳା ତରଳା ।
ଚଞ୍ଚଳେ ଦୋଳଇ କୁଣ୍ଡଳ ଦୋଳେ ନୀଳ ଅଳକ
ଲାବଣ୍ୟ ଦର୍ପଣ ପରାୟେ ଝଳେ ଗଣ୍ଡ ଫଳକ ।
ଅର୍ଦ୍ଧେନ୍ଦୁ ଲଲାଟେ ସିନ୍ଦୂର ବିନ୍ଦୁ ରମଇ ଆଖି
ନୁହଁଇ ସିନ୍ଦୂର, ରହିଛି ସ୍ମର ହୃଦୟ ଲଖି ।
ଦଶନ ଅଂଶୁକ ମିଶଇ ନାଶାମଣି-ଅଂଶୁକେ,
ମୃଗମଦ ବିନ୍ଦୁ ସୁନ୍ଦର ଶୋହେ ଗୁରୁ ଚିବୁକେ,
କାମ-କାଳିକୁଟ-କାଳିମା ଭ୍ରୂରୁ ସୁଚାଇ ଧରେ,
ପ୍ରବାଳ-ଲତା କି ଅଧର, ଆହା ରୂପସାଗରେ !
ବିନାସ ବିଲୋଳ-ଲୋଚନ-ତାର କନ୍ଦୁକ ସଙ୍ଗେ
ଉଦ୍‌ବେଗେ ଭ୍ରମଇ ଚୌଦିଗେ କିବା ମଧୁର ରଙ୍ଗେ ।
ଭୁଟେ ଯୁବା-ଧୈର୍ଯ୍ୟ କବଚ ପ୍ରତି କଟାକ୍ଷ ଶରେ,
ଉଠେ ନବଶୋଭା-ତରଙ୍ଗ ପ୍ରତି ଅଙ୍ଗ ଭଙ୍ଗୀରେ ।
ଅସମ୍ଭାଳେ ଫିଟି କୁନ୍ତଳ ଭୂମି ଯାଏ ଚରଣି,
ଯେଉଁଣେ ଅନାଉଛି ଲଳନା ଫୁଲ ଯାଏ ବରଷି ।

ଦୁକୂଳ କବରୀ ସମ୍ଭାଳୁ ଅଛି ଦକ୍ଷିଣେତରେ;
ଫିଙ୍ଗୁଛି ଧରୁଛି କନ୍ଦୁକ ବାମା ଦକ୍ଷିଣ କରେ ।"

'ଚନ୍ଦ୍ରଭାଗାଙ୍କର ଏପରି ସୌନ୍ଦର୍ଯ୍ୟ ଅବଲୋକନ କରି କନ୍ଦର୍ପ ସୂର୍ଯ୍ୟଦେବଙ୍କଠାରୁ ତାଙ୍କର ଈପ୍ସିତ ପ୍ରତିଶୋଧ ନେବାପାଇଁ ଉପଯୁକ୍ତ ସୁଯୋଗ ପାଇଗଲେ । ଏହିପରି ଏକ ସୁଯୋଗର ଅପେକ୍ଷାରେ ଥିଲେ କ୍ୟୁପିଡ୍ ଓଭିଡ୍ଙ୍କ କାବ୍ୟରେ । କ୍ୟୁପିଡ୍ ଡାଫ୍ନୀଙ୍କ ସୌନ୍ଦର୍ଯ୍ୟ ଦେଖି ଆପୋଲୋଙ୍କୁ ତାଙ୍କ ପ୍ରତି ଆସକ୍ତ କରିବା ପାଇଁ ଆପୋଲୋ ଏବଂ ଡାଫ୍ନୀଙ୍କ ପ୍ରତି ଦୁଇଗୋଟି ଶର ନିକ୍ଷେପ କରିଅଛନ୍ତି । କ୍ୟୁପିଡ୍ଙ୍କର ଶର ନିକ୍ଷେପ କରିବାର ବର୍ଣ୍ଣନା ଓଭିଡ୍ଙ୍କ କାବ୍ୟରେ ଯେପରି ଭାବରେ ଅଛି, ତାହାର ଇଂରେଜୀ ଅନୁବାଦ ଏଠାରେ ଉଦ୍ଧାର କରାଯାଇପାରେ ।

"He (Cupid) stood upon the shady heights of Parnassus, and drew two weapons out of his arrow-bearing quiver, of different workmanship, the one repels; the other excites desire. That which causes love is of gold, and is brilliant, with a sharp point; that which repels, it is blunt, and contains lead beneath the reed. This one the God fixed in the Nymph, the daughter of Peneus, but with the other he wounded the very marrow of Apollo, through his bones pierced by the arrow. Immediately the one is in love, the other flies from the very name of a lover, rejoicing in the recesses of woods, and in the spoils of wild beasts taken in haunting, and becomes a rival of the virgin Phoebe." (୧)

କ୍ୟୁପିଡ୍ ଆପୋଲୋ ଓ ଡାଫ୍ନୀଙ୍କୁ ଯଥାକ୍ରମେ ଗୋଟିଏ ସୁବର୍ଣ୍ଣ ଓ ଗୋଟିଏ ସୀସା ନିର୍ମିତ ଶର ନିକ୍ଷେପ କରିଅଛନ୍ତି । ସୁବର୍ଣ୍ଣର ଶର ଅନୁରାଗ

(୧) ଯୁଗ ପ୍ରବର୍ତ୍ତକ ସ୍ରଷ୍ଟା ରାଧାନାଥ—ନଟବର ସାମନ୍ତରାୟ-ପୃ.୬୭

ସୃଷ୍ଟି କରେ ଓ ସୀସାରେ ଶର ବିରାଗ ସୃଷ୍ଟି କରେ । କବିବର ରାଧାନାଥ ଚନ୍ଦ୍ରଭାଗା କାବ୍ୟରେ ଏହି ପରିସ୍ଥିତିର ବର୍ଣ୍ଣନା ସୌନ୍ଦର୍ଯ୍ୟ ମଧ୍ୟରେ ବିବେଚନା ଶକ୍ତିର ପରିଚୟ ଦେଇଅଛନ୍ତି । ରାଧାନାଥ ଦୁଇଗୋଟି ଶର ପ୍ରୟୋଗର କଳ୍ପନା ନ କରି କେବଳ ସମ୍ମୋହନ ବାଣର ଦୁଇପ୍ରକାର ପ୍ରୟୋଗର କଳ୍ପନା କରିଅଛନ୍ତି । ସମ୍ମୋହନ ବାଣକୁ ସଳଖ ପ୍ରୟୋଗ କଲେ ତାହା ଅନୁରାଗ ସୃଷ୍ଟି କରେ ଏବଂ ତାହାକୁ ଓଲଟା ପ୍ରୟୋଗ କଲେ ତାହା ବିରାଗଭାବ ସୃଷ୍ଟି କରେ । ତେଣୁ ରାଧାନାଥ ଲେଖିଛନ୍ତି,

> "ଫୁଲକାଣ୍ଡ ଫୁଲ କୋଦଣ୍ଡ ଗୁଣ୍ଡେ ଆକର୍ଣ୍ଣ ଟାଣି,
> ସମ୍ମୋହନ ବାଣ ରବିଙ୍କ ଦେଲେ ହୃଦୟେ ହାଣି ।
> ବିପରୀତେ ମୀନକେତନ ଯୋଞ୍ଜି ସେ ଫୁଲଶର,
> ବିରାଗେ ମୃଗାକ୍ଷିଗଞ୍ଜିନୀ ତନୁ କଲେ ଜର୍ଜର ।
> ଅନୁରାଗ ମନେ ଉପୁଜେ ଯେଉଁ କୁସୁମବାଣେ,
> ଓଲଟା ଯୋଖିଲେ ସେ ବାଣ ପୁଣି ବିରାଗ ଆଣେ ।
> ମନେ ଅନୁରାଗ ବିରାଗ କର୍ମପନେ ତାହାର,
> ପଞ୍ଚଶାମେ ତେଣୁ ବିରସ ମନୋଭବ ବିକାର ।"

ଓଭିଡ୍‌ଙ୍କ କାବ୍ୟବର୍ଣ୍ଣିତ ସୁବର୍ଣ୍ଣ ଓ ସୀସକ ନିର୍ମିତ ଶର ପ୍ରୟୋଗର ଅନୁସରଣରେ କବିବର ରାଧାନାଥ ସମ୍ମୋହନ ବାଣର ଉଭୟବିଧ ପ୍ରୟୋଗ କରିଥିଲେ ହେଁ ତହିଁରେ ତାଙ୍କର ମୌଳିକତା ପରିଲକ୍ଷିତ ହୋଇଅଛି । ଓଡ଼ିଆ ସାହିତ୍ୟର କେତେକ ସମାଲୋଚକ ଏହି ଶରପ୍ରୟୋଗ ବିଷୟରେ ଯାଥାର୍ଥ୍ୟ ନାହିଁ ବୋଲି ମତପ୍ରଦାନ କରିଥାଆନ୍ତି । ସେମାନେ ଯୁକ୍ତି ପ୍ରଦର୍ଶନ କରନ୍ତି ଯେ, ଡାଫ୍‌ନିଙ୍କର ପ୍ରେମବିତୃଷ୍ଣ ମନୋବୃତ୍ତି ପୂର୍ବରୁ ଥିଲା । ଆପୋଲୋଙ୍କ ପ୍ରତି ସୁବର୍ଣ୍ଣନିର୍ମିତ ଶର ପ୍ରୟୋଗ କରିବା ପରେ ଡାଫ୍‌ନିଙ୍କ ପ୍ରତି ସୀସକ ନିର୍ମିତ ଶର ପ୍ରୟୋଗ କରିବାର ଆବଶ୍ୟକତା କଣ ବା ଥିଲା ? ଏହାକୁ ଆଲୋଚକମାନେ କବିକଳ୍ପନାର ଏକ ତ୍ରୁଟି ଭାବରେ ଗ୍ରହଣ କରନ୍ତି । ସେହି ଦୃଷ୍ଟିରୁ ଦେଖିଲେ ଚନ୍ଦ୍ରଭାଗାଙ୍କ ପ୍ରତି ସମ୍ମୋହନ ବାଣକୁ ବିପରୀତ ଭାବରେ ପ୍ରୟୋଗ କରିବାର ଆବଶ୍ୟକତା ନ ଥିଲା ।

ଡାଫ୍‌ନୀଙ୍କର ପିତା ଡାଫ୍‌ନୀଙ୍କୁ ବିବାହଦେଇ ନାତିନାତୁଣୀ ଦେଖିବା ପାଇଁ ଇଚ୍ଛୁକ । ମାତ୍ର ଡାଫ୍‌ନୀ ପ୍ରେମ ବିଷୟରେ ଏକାନ୍ତ ବୀତସ୍ପୃହ । ସେ ଦେବତାଙ୍କର ପ୍ରେମକାହାଣୀର ଭୟାବହତା ତାଏନା ଉପାଖ୍ୟାନରୁ ଅବଗତ ହୋଇଥିଲେ । ତେଣୁ ସେ ଦେବତା ହେଉ ବା ମାନବ ହେଉ କୌଣସି ପ୍ରକାର ଜଗତରେ ପ୍ରେମର ପରିସରକୁ ଆସିବାକୁ ଭୟ କରୁଥିଲେ ଏବଂ ସେଥିପାଇଁ ସେ ଚିରକୁମାରୀ ରହିବାର ବର ପ୍ରାର୍ଥନା କରିଥିଲେ । ତାଙ୍କର ଏ ପ୍ରକାର ମନୋଭାବକୁ ଲକ୍ଷ୍ୟକରି ଆଲୋଚକମାନେ ଯୁକ୍ତି କରନ୍ତି ଯେ ତାଙ୍କ ପ୍ରତି ସୀସକ ନିର୍ମିତ ଶର ପ୍ରୟୋଗର ଆବଶ୍ୟକତା ନଥିଲା । ମାତ୍ର ଏଠାରେ ଆଉ ଗୋଟିଏ କଥା ମନେରଖିବାକୁ ପଡ଼ିବ । କ୍ୟୁପିଡ୍ ଯେତେବେଳେ ଆପୋଲୋଙ୍କ ପ୍ରତି ସୁବର୍ଣ୍ଣ ନିର୍ମିତ ଶର ପ୍ରୟୋଗ କଲେ, ସେତେବେଳେ ଆପୋଲୋଙ୍କଠାରେ ଅନୁରାଗର ଭାବ ସଞ୍ଚାରିତ ହେଲା ଏବଂ ସେହି ଶରର ଶକ୍ତି ଅନୁସାରେ ଆପୋଲୋଙ୍କ ଦୃଷ୍ଟିପଥରେ ଯେଉଁ ଯୁବତୀ ପଡ଼ିବେ ସେ ତାଙ୍କ ପ୍ରତି ଲୁବ୍ଧ ହେବାର କଥା । ଆପୋଲୋଙ୍କ ଦୃଷ୍ଟିପଥରେ ଡାଫନୀ ପଡ଼ିବାବେଳେ ସୁବର୍ଣ୍ଣନିର୍ମିତ ଶରର ପ୍ରତିକ୍ରିୟା ଫଳରେ ସେ ଡାଫ୍‌ନୀଙ୍କ ପ୍ରତି ଆକୃଷ୍ଟ ହେବାର ଯୌକ୍ତିକତା ଯେତିକି ଅଛି, ଡାଫ୍‌ନୀ ଆପୋଲୋଙ୍କ ପ୍ରତି ଆକୃଷ୍ଟ ହେବାର ଯୌକ୍ତିକତା ମଧ୍ୟ ସେତିକି ଅଛି । ତେଣୁ କବି କଳ୍ପନାରେ ସୀସକ ନିର୍ମିତ ଶରପ୍ରୟୋଗ ଦ୍ୱାରା ସୁବର୍ଣ୍ଣ ନିର୍ମିତ ଶର ପ୍ରୟୋଗର ପ୍ରତିକ୍ରିୟା କେବଳ ଆପୋଲୋଙ୍କଠାରେ ଓ ସୀସକ ନିର୍ମିତ ଶରର ପ୍ରତିକ୍ରିୟା କେବଳ ଡାଫ୍‌ନୀଙ୍କଠାରେ ସୃଷ୍ଟି କରାଯାଇଅଛି ।

କବିବର ରାଧାନାଥଙ୍କ କାବ୍ୟରେ ମଧ୍ୟ ଚନ୍ଦ୍ରଭାଗାଙ୍କର ପ୍ରେମବିତୃଷ୍ଣ ମନୋବୃତ୍ତିର ପ୍ରକାଶ ଘଟିଅଛି । ଅପରୂପ ସୌନ୍ଦର୍ଯ୍ୟର ଆଧାର ଚନ୍ଦ୍ରଭାଗାଙ୍କ ବିଷୟରେ କବି ଲେଖିଛନ୍ତି—

"କୁମୁଦ ହାସିନୀ ସୌନ୍ଦର୍ଯ୍ୟମଦେ ସଦା ବିହ୍ୱଳ,<br>
ପ୍ରମୋଦେ ଭ୍ରମଇ ପ୍ରମଦା ସଦା ବିଜନସ୍ଥଳ ।<br>
ବିଷପ୍ରାୟେ ପ୍ରେମ ପ୍ରସଙ୍ଗେ ସଦା ଅରୁଚି ତାର,<br>
ପୁରୁଷ କଥାକୁ ଡରେ ସେ କଟେ ଦୂରୁ ଜୁହାର ।

ପ୍ରେମର ପ୍ରସଙ୍ଗକୁ ଚନ୍ଦ୍ରଭାଗା ବିଷ ପ୍ରାପ୍ତ କ୍ଲାନ୍ତ କରିଥାଆନ୍ତି । ପୁରୁଷଙ୍କ ବିଷୟରେ ଶୁଣିବା ମାତ୍ରେ ସେ ଦୂରରୁ ଜୁହାର କରିଥାଆନ୍ତି । ଏଥିରୁ ସ୍ପଷ୍ଟ ଭାବରେ ପ୍ରମାଣିତ ହେଉଅଛି ଯେ ଡାଫ୍‌ନିଙ୍କ ଚରିତ୍ରର ପ୍ରେମବିତୃଷ୍ଣ ମନୋଭାବ ଚନ୍ଦ୍ରଭାଗାଙ୍କ ଠାରେ ଅନୁରୂପ ଭାବରେ ଥିଲା । କବିବର ରାଧାନାଥ ଏପରି ପରିସ୍ଥିତିରେ ଓଭିଡ୍‌ଙ୍କ ପଥକୁ ଅନୁସରଣ କରି ସମ୍ମୋହନ ବାଣର ବିପରୀତ ପ୍ରୟୋଗ କରିଅଛନ୍ତି । କନ୍ଦର୍ପ ଯେତେବେଳେ ଚନ୍ଦ୍ରଭାଗାଙ୍କର ସୌନ୍ଦର୍ଯ୍ୟ ଦେଖି ତାଙ୍କ ପ୍ରତି ସୂର୍ଯ୍ୟଙ୍କୁ ଆକୃଷ୍ଟ କରି ପ୍ରତିଶୋଧ ନେବା ପାଇଁ ଇଚ୍ଛାକଲେ, ସେତେବେଳେ ସେ ସୂର୍ଯ୍ୟଦେବଙ୍କ ପ୍ରତି ସମ୍ମୋହନ ବାଣ ପ୍ରୟୋଗ କଲେ । ଫଳରେ ସୂର୍ଯ୍ୟଦେବ ସମ୍ମୋହନ ବାଣର ଶକ୍ତି ଅନୁସାରେ ଚନ୍ଦ୍ରଭାଗାଙ୍କ ପ୍ରତି ଯେତିକି ଆକୃଷ୍ଟ ହେବାର କଥା, ସେହି ସମ୍ମୋହନ ବାଣର ଶକ୍ତି ଅନୁସାରେ ଚନ୍ଦ୍ରଭାଗା ମଧ୍ୟ ସୂର୍ଯ୍ୟଦେବଙ୍କ ପ୍ରତି ସେତିକି ଆକୃଷ୍ଟ ହେବାର କଥା । ତେଣୁ କବିବର ରାଧାନାଥ ଏଠାରେ ସମ୍ମୋହନ ବାଣକୁ ବିପରୀତ ଭାବରେ ଚନ୍ଦ୍ରଭାଗାଙ୍କ ପ୍ରତି ପ୍ରଯୁକ୍ତ କରାଇଅଛନ୍ତି । ଏହା ଫଳରେ ସମ୍ମୋହନ ବାଣର ପ୍ରତ୍ୟକ୍ଷ ପ୍ରୟୋଗର ପ୍ରତିକ୍ରିୟା କେବଳ ସୂର୍ଯ୍ୟଦେବଙ୍କଠାରେ ସୃଷ୍ଟି ହେବା ଓ ସମ୍ମୋହନ ବାଣର ବିପରୀତ ପ୍ରୟୋଗର ପ୍ରତିକ୍ରିୟା କେବଳ ଚନ୍ଦ୍ରଭାଗାଙ୍କଠାରେ ସୃଷ୍ଟି ହେବାର କଥା । ସୁତରାଂ ସୂର୍ଯ୍ୟଦେବଙ୍କ ଅନ୍ତରରେ ଅନୁରାଗ ଓ ଚନ୍ଦ୍ରଭାଗାଙ୍କ ଅନ୍ତରରେ ବିରାଗ ସୃଷ୍ଟି ହେବାର କଥା ଓ ତାହା ହିଁ ହୋଇଅଛି ।

ଓଭିଡ୍‌ଙ୍କ କାବ୍ୟରେ ଆପୋଲୋ ଯେତେବେଳେ ଡାଫ୍‌ନିଙ୍କ ନିକଟରେ ପ୍ରେମ ନିବେଦନ କରିଛନ୍ତି, ସେତେବେଳେ ଡାଫ୍‌ନି ଭୟରେ ପଳାୟନ କରିଅଛନ୍ତି । ଡାଫ୍‌ନିଙ୍କର ପଳାୟନକାଳୀନ ସୌନ୍ଦର୍ଯ୍ୟ ଆପୋଲୋଙ୍କ ଚକ୍ଷୁରେ ଅଧିକ ବିଶେଷ ଭାବରେ ଝଲସି ଉଠିଛି ।

"The daughter of Pencus flies from him, about to say still more, with limpid steps, and together with him she leaves his unfinished address. Then too, she appeared lovely, the winds exposed her from the view, and the gusts meeting

her, fluttered about her garments, as they came in contact, and the light breeze spread behind her careless looks, and thus, by her flight, was her beauty increased. But the youthful God has not patience any longer to waste his blandishments, and as love urges him on, he follows her steps with hastening pace." (୧)

ରାଧାନାଥଙ୍କ ଲେଖାରେ ଉତ୍ପ୍ରାଣ୍ତର ଚନ୍ଦ୍ରଭାଗା ଯେତେବେଳେ ପଳାୟମାନା, ସେତେବେଳେ ତାଙ୍କର ସୌନ୍ଦର୍ଯ୍ୟ ସୂର୍ଯ୍ୟଦେବଙ୍କ ଚକ୍ଷୁରେ ଅଧିକତର ଭାବରେ ପ୍ରକାଶିତ ହୋଇଅଛି । ଏହି ବର୍ଣ୍ଣନାରେ କବିବର ରାଧାନାଥ ଓଭିଡ୍‌ଙ୍କ ବର୍ଣ୍ଣନାର ସୂତ୍ର ଆହରଣ କରିଥିଲେ ହେଁ ତାଙ୍କର ବର୍ଣ୍ଣନାର ସୌକର୍ଯ୍ୟ ଯେ ଏକାନ୍ତ ମନୋରମ ହୋଇଅଛି, କହିବା ବାହୁଲ୍ୟମାତ୍ର ।

"ପଳାୟନେ ପୁଣି ସୁନ୍ଦରୀ ଦିଶେ ସୁନ୍ଦରତର,
ଅସମ୍ଭାଳ-ବେଶ-ଭୂଷଣେ ଆହା କି ମନୋହର !
ଶାଣଶୀର୍ଣ୍ଣ ପ୍ରାୟେ ଅଙ୍ଗନା ଅଙ୍ଗ ଗୁରୁ ବଳନ,
ବସନ ଉଡ଼ାଇ ଦେଖାଏ ରଙ୍ଗେ ସିନ୍ଧୁ ପବନ ।
ଚୁମ୍ବି ଚରଣକୁ ଚିକୁର ରାଜି ଦୋଳେ ଚରମେ
ମଦନ-କେତନ ଉଡ଼ଇ କିବା ଶୋଭା ଆଶ୍ରମେ !"

ଆପୋଲୋଙ୍କ ନିକଟରୁ ଡାଫ୍‌ନୀ ଉପରେ ପଳାୟନ କରିବା ବେଳର ବର୍ଣ୍ଣନାରେ ଓଭିଡ୍ Grey-houud ଓ Hare ର ଗତିର ଉପମା ଦେଇଅଛନ୍ତି । ମାତ୍ର ରାଧାନାଥ ଚନ୍ଦ୍ରଭାଗା ଓ ସୂର୍ଯ୍ୟଦେବଙ୍କ ଗତିକୁ ହଳଧାବସନ୍ତ ଓ ଛଞ୍ଚାଣର ଗତି ସହିତ ତୁଳନା କରିଅଛନ୍ତି । ରାଧାନାଥଙ୍କର ଏହି ବର୍ଣ୍ଣନା ଯେପରି ଜୀବନ୍ତ ସେହିପରି ହୃଦୟସ୍ପର୍ଶୀ ।

ଡାଫ୍‌ନୀ ଉପରେ ଦଉଡ଼ି ଦଉଡ଼ି ଅବଶ ହୋଇପଡ଼ିବା ବେଳକୁ ଦେଖିଲେ ଯେ ଅରଣ୍ୟର ବୃକ୍ଷ ଫାଙ୍କରେ ପିତାଙ୍କର ନଦୀ ବହିଯାଉଅଛି

(୧) ମୃଗପ୍ରବର୍ତ୍ତିକ ସ୍ରଷ୍ଟା ରାଧାନାଥ—ନଠବ ୨ ସାମନ୍ତରାୟ-ପୃ ୫୭

ସେ ସେଠାରୁ ଆଉ ଆଗକୁ ଚଳିପାରିଲେ ନାହିଁ । ତେଣୁ ସେଠାରେ ସେ ପିତାଙ୍କୁ ପ୍ରାର୍ଥନା କଲେ. "Give me my father thy aid if your rivers have divine powers. Oh Earth, either yawn to swallow me, or by changing it distory that form, by which I have pleased too much, and which causes me to be injured" ଚନ୍ଦ୍ରଭାଗା-କାବ୍ୟରେ ଚନ୍ଦ୍ରଭାଗା ଦଉଡ଼ ଦଉଡ଼ ସାଗର ବେଳାରେ ଉପସ୍ଥିତ ହେଲେ ଓ କାତର କଣ୍ଠରେ ନିଜ ମାତାଙ୍କ ଉଦ୍ଦେଶ୍ୟରେ ଆକୁଳ ମିନତି କଲେ ।

"ଦୁଃଖ ଫେଡ଼ ମୋର ଜନନୀ, ହର ଏ ରୂପ ମୋର,
ବିଭୂଷଣ ହୋଇ ହେଲା ଏ ସିନା ଦୂଷଣ ଘୋର ।
ଦିବ୍ୟ ରୂପ ତୋର ତା ସଙ୍ଗେ ଅଛୁ ଦିବ୍ୟ ଶକତି,
ଶକ୍ତିହୀନ ରୂପ କେବଳ ସିନା ଲଭେ ଦୁର୍ଗତି ।"

ଡାଫ୍ନୀଙ୍କ ପ୍ରାର୍ଥନା ପରେ ତାଙ୍କର ପରିଣତି ଓଭିଡ୍ ଯାହା ସୂଚିତ କରିଛନ୍ତି,

"Hardly had she ended her prayer, when a heavy torper seizes her limbs, and her soft breasts are covered with a thin bark. Her hair grows in to green leaves, her arms into branches, her feet, the moment before so swift, adhere by sluggish roots, a leafy canopy over spreads her features, her elegance alone remains in her."

ଡାଫ୍ନୀଙ୍କ ବୃକ୍ଷରେ ରୂପାନ୍ତରିତ ହେବା ଏକ ଅବାସ୍ତବ ପରିକଳ୍ପନା ଭବରେ ପ୍ରତୀତ ହୋଇଥାଏ । କବିବର ରାଧାନାଥ ଚନ୍ଦ୍ରଭାଗାଙ୍କୁ ନେଇ ସାଗର ବେଳାରେ ଉପନୀତ କରାଇବା ପରେ ଯାହା ଘଟିଲା, ତାହା ହେଉଛି,

"ଏମନ୍ତ କହନ୍ତେ ଉଠିଲା ଊର୍ମି ପର୍ବତାକାର,
ମାଳବାହୁ ମେଳ ସାଗର କରିବା କଲେ ବିସ୍ତାର ?
ମହାକଳରବେ ଉଡ଼ିଲେ ନଭେ ଜଳ-ବିହଙ୍ଗ,

ବେଳାମୁଖେ ମାଡ଼ିଆସିଲା ବିଶ୍ୱଗ୍ରାସୀ ତରଙ୍ଗ ।
ମିଶିଯାଏ ଯଥା ପ୍ରଭାତ ତାରା ରବି-କିରଣେ,
ମିଶିଯାଏ ଯଥା ଜୀବାତ୍ମା ବିଶ୍ୱ-ଆତ୍ମା-ଚରଣେ,
ମିଶିଯାଏ ଯଥା ଚପଳା ନୀଳ ଜଳଦ-ଅଙ୍ଗେ,
ମିଶିଗଲା ତଥା ଅବଳା ସେହି ନୀଳ-ତରଙ୍ଗେ ।"

ଚନ୍ଦ୍ରଭାଗୀ ସାଗର ଲହରୀରେ ମିଶିଯିବାରେ ଅବାସ୍ତବ ପରିକଳ୍ପନା ନାହିଁ ବୋଲି କୁହାଯାଇପାରେ । ଚନ୍ଦ୍ରଭାଗାଙ୍କର ଚରମ ଦୁର୍ଦ୍ଦଶାର କାହାଣୀ ସୁମନ୍ୟୁ ଜାଣିପାରିଲେ ଯୋଗବଳରେ । ତାଙ୍କର ଅଭିଶାପରେ କୋଣାର୍କ ମନ୍ଦିର ଧୂଳିସାତ୍ ହେଲା । ଓଭିଡ୍‌ଙ୍କ କାବ୍ୟରେ ଏପ୍ରକାର ପରିକଳ୍ପନା ନାହିଁ । ଆପୋଲୋଙ୍କ ଇଚ୍ଛା ଅନୁସାରେ ଲରେଲ୍ ବୃକ୍ଷର ପତ୍ର ସମର-ବିଜୟୀମାନଙ୍କର ଶିରୋଭୂଷଣ ହେଲା; ମାତ୍ର ରାଧାନାଥଙ୍କ କାବ୍ୟରେ ସୂର୍ଯ୍ୟଦେବ ପାଇଲେ ଶାସ୍ତି । ଏ ଶାସ୍ତି କେବଳ ସୂର୍ଯ୍ୟଦେବଙ୍କଠାରେ ସୀମିତ ହୋଇ ରହିଲା ନାହିଁ । ଏ ଶାସ୍ତି ପ୍ରକାରାନ୍ତରରେ ମିଳିଲା ଓଡ଼ିଆଜାତିକୁ । ଓଡ଼ିଆଜାତିର ଅପୂର୍ବ ଶ୍ରୀମଣ୍ଡିତ କଳାବିଭବ କୋଣାର୍କ ମନ୍ଦିର ଭୂଲୁଣ୍ଠିତ ହେଲା । ସୁମନ୍ୟୁଙ୍କର ଅଭିଶାପ ଫଳରେ କୋଣାର୍କ ମନ୍ଦିର ଭୂଲୁଣ୍ଠିତ ହେବା କଥାକୁ କେତେକ ଆଲୋଚକ ଜାତୀୟତାର ନିନ୍ଦା ବୋଲି ପ୍ରକାଶ କରିବା ସ୍ଥଳେ ଅନ୍ୟ କେତେକ ଆଲୋଚକ ଏହାକୁ ଜାତୀୟତାର ଯଥାର୍ଥ ମୂଲ୍ୟାୟନ ବୋଲି ମତ ପ୍ରଦାନ କରନ୍ତି ।

ସୁମନ୍ୟୁଙ୍କ ଅଭିଶାପ ଫଳରେ କୋଣାର୍କ ମନ୍ଦିରର ପତନ ଘଟିଲା ବୋଲି କବିବର ରାଧାନାଥ ଯାହା ବର୍ଣ୍ଣନା କରିଅଛନ୍ତି, ତାହା ଐତିହାସିକ ସତ୍ୟ ନୁହେଁ । ପ୍ରକୃତରେ ଏହି ମନ୍ଦିର କେବେ ଯେ ଧୂଳିସାତ୍ ହେଲା, ତାହା କେହି ଗଣନା କରି କହିପାରି ନାହାନ୍ତି । ଏ ବିଷୟରେ ଐତିହାସିକ ପରମାନନ୍ଦ ଆଚାର୍ଯ୍ୟ ମତପ୍ରଦାନ କରିଅଛନ୍ତି, "ମୋଗଲ ରାଜତ୍ୱରେ ମୁସଲମାନ ଅତ୍ୟାଚାର ଯୋଗୁଁ କୋଣାର୍କ ମନ୍ଦିର ଅପ୍ରତିଷ୍ଠା ହେବାରୁ ଖୋର୍ଦ୍ଧା ରାଜା ସେଠାରେ ଥିବା ସୂର୍ଯ୍ୟମୂର୍ତ୍ତି ପୁରୀର ଜଗନ୍ନାଥ ମନ୍ଦିରକୁ ସ୍ଥାନାନ୍ତରିତ କଲେ । ଏଥିପାଇଁ କୋଣାର୍କ ମନ୍ଦିରରୁ ସୂର୍ଯ୍ୟଦେବତାଙ୍କ ପୂଜା ଉଠିଗଲା । ଖୋର୍ଦ୍ଧା ରାଜା ନରସିଂହ ଦେବ

ଖ୍ରୀ:୧୭୨୭ରେ କୋଣାର୍କ ମନ୍ଦିର ମାପ କରାଇଥିଲେ - ଅର୍ଥାତ୍ ସେତେବେଳେ କୋଣାର୍କ ମନ୍ଦିର ଭଙ୍ଗି ନ ଥିଲା । ପରେ ପ୍ରାକୃତିକ କାରଣରୁ ମନ୍ଦିର ଅନ୍ୟାନ୍ୟ ବହୁ ମନ୍ଦିର ସଦୃଶ ଭଙ୍ଗି ପଡ଼ିଲା । ୧୮୩୭ ରେ ଫର୍ଗୁସନ୍ ସାହେବ କୋଣାର୍କ ମନ୍ଦିରର ଯେଉଁ ଚିତ୍ର ଅଙ୍କିତ କରିଥିଲେ ସେଥିରୁ ଦେଖାଯାଏ ଯେ ଦକ୍ଷିଣପାର୍ଶ୍ୱରେ ମନ୍ଦିରର କାନ୍ଥ ୨୭୦ରୁ ଅଧିକ ଉଚ୍ଚ ଥିଲା । ୧୮୭୦ ବେଳକୁ ସେତକ ମଧ୍ଯ ଭଙ୍ଗି ପଡ଼ିଥିଲା; କିନ୍ତୁ ରାଧାନାଥ ଏସବୁ ଐତିହାସିକ କଥା ସ୍ମରଣ ନ କରି ମନ୍ଦିର ପତନର କାରଣ ଦେଖାଇ ଅଛନ୍ତି ଯେ ସୂର୍ଯ୍ୟଦେବତାଙ୍କ ଅସମ୍ମାନତା ଲାଗି ସୁମନ୍ୟୁ ତପସ୍ୱୀଙ୍କ ଅଭିଶାପରେ ମନ୍ଦିର ଭଙ୍ଗି-ପଡ଼ିଲା । କବି ମାନଙ୍କେ କାବ୍ୟର ଉତ୍କର୍ଷ ସାଧନ ଲାଗି ଐତିହାସିକ ସତ୍ୟ ଉପରେ କବିକଳ୍ପନା ଦ୍ୱାରା ବିଷୟର ଉତ୍କର୍ଷ ସାଧନ କରି ପାରନ୍ତି—ରାଧାନାଥ ସେହିପରି କରିଥିବାର ଅନୁମିତ ହୁଏ ।"(୧)

କବି ଯେତେବେଳେ ତାର କାବ୍ୟ ରଚନା କରେ, ସେତେବେଳେ ସେ ଯେ ଇତିହାସକୁ ଦାଢ଼େ ଦାଢ଼େ ଅନୁସରଣ କରି ଚାଲିବ, ଏପରି କିଛି ନିୟମ ନାହିଁ । କବିର ଆଦର୍ଶ ଐତିହାସିକର ଆଦର୍ଶଠାରୁ ଭିନ୍ନ । ଏହି ପ୍ରସଙ୍ଗରେ ଅଧ୍ୟାପକ ନଟବର ସାମନ୍ତରାୟଙ୍କର ମତ ଉଦ୍ଧାର ଯୋଗ୍ୟ "ବାସ୍ତବ ଜଗତରେ ଯାହା ଅନ୍ଧକାର ରୂପରେ ସତ୍ୟ, ଓଡ଼ିଆ ଭାଗ୍ୟାକାଶରେ ଦେଖାଦେଇଥିବା ମର୍ମନ୍ତୁଦ ହୀନାବସ୍ଥା ସେହି ବାସ୍ତବ ସତ୍ୟର ସାହିତ୍ୟିକ ସତ୍ୟ ରୂପମାତ୍ର । ସେହି ହେତୁରୁ ମନ୍ଦିର ପତନର ବାସ୍ତବ ଇତିହାସ ସାହିତ୍ୟସ୍ରଷ୍ଟା ନିକଟରେ ବରାଟ ନୁହେଁ; ବାସ୍ତବ ମଧ୍ଯ ନୁହେଁ । ଯାହା ସମ୍ପୂର୍ଣ୍ଣ ଅନୈତିହାସିକ, ତାକୁ ହିଁ ମୂଳପିଣ୍ଡ କରି ସ୍ରଷ୍ଟା ଗଢ଼ିଛି କଳାର ଲଳିତ ସୌନ୍ଦର୍ଯ୍ୟବିଭବ— ମନ୍ଦିର ପତନ ଏ ସୃଷ୍ଟି ପରିକଳ୍ପନାର ବହିଃପ୍ରକାଶ ମାତ୍ର । ଓଡ଼ିଆଜାତିର ଭାଗ୍ୟ ବିପର୍ଯ୍ୟୟ ଓ ଦାରୁଣ ଅଧଃପତନ ଏକମାତ୍ର ଦେବତାର ଅଭିଶାପ ହେତୁ ସମ୍ଭବପର । ଯେଉଁ ଜାତି ନିଜକୁ ତିଳ ତିଳ ହତ୍ୟାକରି ସୂକ୍ଷ୍ମକଳାର ସୂକ୍ଷ୍ମତର ଅନୁଭୂତିକୁ ସୂକ୍ଷ୍ମତମ ରୂପ ଦେବାରେ ସମର୍ଥ, ସେ ଜାତି ସେ କଳା,

(୧) ରାଧାନାଥଙ୍କ ଅନନ୍ୟ ପ୍ରତିଭା—ପରମାନନ୍ଦ ଆଚାର୍ଯ୍ୟ-ପୃ. ୦୭-୪୭

ଯେ ଅନୁଭୂତି ଓ କଳାର ସେ ରୂପ ଅମର; ନମସ୍ୟ ଓ ଚିରନ୍ତନ । ସେ ଜାତି, ସେ କଳା, ସେ ରୂପର ପତନ କେଉଁ ମନୁଷ୍ୟ ହାତରେ ସମ୍ଭବ ହୋଇପାରେ କି ?" [୧] କବିବର ରାଧାନାଥଙ୍କର କାବ୍ୟ ନିର୍ମାଣ-କୌଶଳ ଓ କାବ୍ୟର ଅନ୍ତର୍ନିହିତ ଭାବକୁ ହୃଦୟଙ୍ଗମ ନ କରି ଯେଉଁମାନେ ଏହି ଦୃଷ୍ଟିରୁ ରାଧାନାଥ ଜାତୀୟତାର ବିରୋଧୀ ବୋଲି ମତ ପ୍ରଦାନ କରନ୍ତି, ସେମାନଙ୍କର ମତକୁ କେବେହେଲେ ଗ୍ରହଣ କରାଯାଇ ନ ପାରେ ।

ରାଧାନାଥ ତାଙ୍କର କାବ୍ୟକବିତାର କଥାବସ୍ତୁରେ ବିଦେଶୀ ଉପାଖ୍ୟାନକୁ ସ୍ଥାନ ଦେଇଥିବା ଯୋଗୁଁ ତାଙ୍କ ଜୀବଦ୍ଦଶାରେ ମଧ୍ୟ ତାଙ୍କୁ ଜାତୀୟତାର ବିରୋଧୀ ଭାବରେ ଚିହ୍ନିତ କରାଯାଇଥିଲା । ଯେଉଁମାନେ ରାଧାନାଥଙ୍କର କାବ୍ୟ କବିତାର ଅନ୍ତର୍ନିହିତ ଉପାଦାନ ଉପରେ ସୂକ୍ଷ୍ମଦୃଷ୍ଟି ନିକ୍ଷେପ କରନ୍ତି ନାହିଁ, ଆହରଣ ସତ୍ତ୍ୱେ କବିଙ୍କର ମୌଳିକତା ପ୍ରତି ଦୃଷ୍ଟି ଦିଅନ୍ତି ନାହିଁ କେବଳ ସେହିମାନେହିଁ ଜାତୀୟତାର ଏପରି ଦାବି ଦେଇଥାଆନ୍ତି । ସୁମନ୍ୟୁ ମହର୍ଷିଙ୍କୁ ବିଦେଶୀ କାବ୍ୟର ଚରିତ୍ର ଭାବରେ ଯେଉଁମାନେ ଗ୍ରହଣ କରନ୍ତି, ସେମାନେ ତାଙ୍କ ଅଭିଶାପ ଫଳରେ କୋଣାର୍କ ମନ୍ଦିରର ପତନକୁ ଜାତୀୟତା ବିରୋଧୀ ବୋଲି ମନେ କରନ୍ତି । ଗ୍ରୀକ ସାହିତ୍ୟର ପେନୁ ଓଡ଼ିଆ ସାହିତ୍ୟର ସୁମନ୍ୟୁ ନୁହନ୍ତି । କବିବର ରାଧାନାଥ ଭାରତୀୟ ପରମ୍ପରା ଅନୁସାରେ ସୁମନ୍ୟୁଙ୍କୁ ଜଣେ ଋଷି ଭାବରେ ଗ୍ରହଣ କରିଅଛନ୍ତି । ରାଧାନାଥଙ୍କୁ ଜାତୀୟତାର ବିରୋଧୀ ବୋଲି ଯେଉଁମାନେ ମତପ୍ରଦାନ କରିଅଛନ୍ତି ସେମାନେ ତାଙ୍କ କାବ୍ୟର ଆହରଣ ସୂତ୍ରକୁ ଅନୁମୋଦନ ନ କରିବା ଦ୍ୱାରା ଏପରି ମତ ପ୍ରଦାନ କରନ୍ତି । ସତ୍ୟବାଦୀ ଗୋଷ୍ଠୀର ଉଗ୍ର ଜାତୀୟବାଦୀ କବି ନୀଳକଣ୍ଠ ଏହି ଉଦ୍ଦେଶ୍ୟରେ ରାଧାନାଥଙ୍କୁ ଆକ୍ଷେପ କରିଅଛନ୍ତି ।

"ଚନ୍ଦ୍ରହାସେ ବାଳା ଆସିବେ ଚନ୍ଦ୍ରଭାଗା ସୁନ୍ଦରୀ
ଯବନାମା କବି ନାୟିକା ନାଟକ ଆଚରି ।"

ପଣ୍ଡିତ ନୀଳକଣ୍ଠଙ୍କର ଏହି ଆକ୍ଷେପୋକ୍ତିର ଅନ୍ତର୍ନିହିତ ସ୍ୱର ଅତ୍ୟନ୍ତ ନିର୍ମମ । ତାଙ୍କ ମତରେ ରାଧାନାଥ କୋଣାର୍କ କ୍ଷେତ୍ରର ପବିତ୍ରତା

(୧) ଯୁଗ ପ୍ରବର୍ତ୍ତକ ସ୍ରଷ୍ଟା ରାଧାନାଥ—ପୃ.୯୧.

ନଷ୍ଟ କରିଅଛନ୍ତି । ମାତ୍ର ଏପରି ମତ ଯେ ନିତାନ୍ତ ନିର୍ମମ; ଏ କଥାକୁ ଅସ୍ୱୀକାର କରାଯାଇ ପାରିବ ନାହିଁ ।

କୋଣାର୍କ ମନ୍ଦିରକୁ କେନ୍ଦ୍ରକରି କବିବର ରାଧାନାଥ ଚନ୍ଦ୍ରଭାଗା କାବ୍ୟ ରଚନା କରିଥିଲେହେଁ କୋଣାର୍କ ମନ୍ଦିରର ପ୍ରାଧାନ୍ୟ ଏହି କାବ୍ୟରେ ସ୍ପଷ୍ଟ ଭାବରେ ପ୍ରକାଶଲାଭ କରି ନାହିଁ ବୋଲି କୁହାଯାଇପାରେ । ଏହାର କାରଣ ହେଉଛି, ରାଧାନାଥ ପାରଂପରିକ ରୀତିରେ କାବ୍ୟ ରଚନାର ପକ୍ଷପାତୀ ନ ଥିଲେ । ନୂତନ ସୃଷ୍ଟି କରିବା ପାଇଁ ସେ ଯେତେବେଳେ କୋଣାର୍କକ୍ଷେତ୍ରର ପ୍ରାକୃତିକ ପରିବେଶକୁ ପରୀକ୍ଷା କରିନନ୍ତି, ସେତେବେଳେ ଚନ୍ଦ୍ରଭାଗା ନଦୀର ମୁହାଣ ତାଙ୍କୁ ବିଶେଷ ଭାବରେ ଉତ୍ସାହିତ କରିଅଛି । ନାୟିକା ଚନ୍ଦ୍ରଭାଗା ଏଠାରେ ବାସ୍ତବରେ ଚନ୍ଦ୍ରଭାଗା ନଦୀ । ସମୁଦ୍ରରେ ଚନ୍ଦ୍ରଭାଗା ନଦୀର ପତନ ହେଉଛି ସମୁଦ୍ର ଲହରୀରେ ନାୟିକା ଚନ୍ଦ୍ରଭାଗାଙ୍କର ସନ୍ନିଲୋପର ସୂଚନା । କବି ଏଠାରେ ଚନ୍ଦ୍ରଭାଗା ନଦୀ, ସୂର୍ଯ୍ୟଦେବ ଓ ସମୁଦ୍ରକୁ କାବ୍ୟରେ ମୂର୍ତ୍ତିମନ୍ତ କରି ଅତ୍ୟନ୍ତ ଦକ୍ଷତା ସହକାରେ ବର୍ଣ୍ଣନାକୌଶଳ ପ୍ରଦର୍ଶନ କରିଅଛନ୍ତି । ଚନ୍ଦ୍ରଭାଗା ନଦୀ କୋଣାର୍କ ମନ୍ଦିରର ସମ୍ମୁଖରେ ଦକ୍ଷିଣାଭିମୁଖୀ ହୋଇ ସମୁଦ୍ରରେ ପଡ଼ିଅଛି । ନଦୀ ସ୍ଥଳଭାଗରେ ପ୍ରବାହିତ ହୋଇ ସମୁଦ୍ରରେ ପତିତ ହୋଇଥାଏ । ଚନ୍ଦ୍ରଭାଗା ନଦୀ ସ୍ଥଳପଥରେ ପ୍ରବାହିତ ହୋଇ ସମୁଦ୍ର ସହିତ ମିଶିଯିବାର ପ୍ରତ୍ୟକ୍ଷ ଦୃଶ୍ୟ କବିବର ରାଧାନାଥଙ୍କୁ ଚନ୍ଦ୍ରଭାଗା ନାୟିକାଙ୍କର ସମୁଦ୍ରରେ ମିଶିଯିବାର ପରିକଳ୍ପନାରେ ସହାୟତା କରିଅଛି । ଏପରି ପରିକଳ୍ପନା କେବଳ ପରିକଳ୍ପନା ନୁହେଁ । ଏଥିରେ ବାସ୍ତବତାର ସତ୍ତା ରହିଅଛି । ମାତ୍ର ଓଭିଡ୍‌ଙ୍କ କାବ୍ୟରେ ଡାଫ୍‌ନୀ ଲରେଲ୍ ବୃକ୍ଷରେ ରୂପାନ୍ତରିତ ହେବା ପରିକଳ୍ପନାରେ ବାସ୍ତବତାର ସତ୍ତା ନାହିଁ ବୋଲି କୁହାଯାଇପାରେ ।

ଚନ୍ଦ୍ରଭାଗା ନଦୀର ସତ୍ତା ବର୍ତ୍ତମାନ ଅତ୍ୟନ୍ତ କ୍ଷୀଣ । ଏହା ବର୍ତ୍ତମାନ ଏକ କ୍ଷୁଦ୍ର ଜଳାଶୟ ଭାବରେ ରହିଅଛି ବୋଲି କୁହାଯାଇ ପାରେ । ମାଘ ସପ୍ତମୀ ଦିନ ପ୍ରତ୍ୟୁଷରେ ଧର୍ମପ୍ରାଣ ନରନାରୀ ଏହିଠାରେ ସ୍ନାନ କରିଥାଆନ୍ତି । ବର୍ତ୍ତମାନ ଚନ୍ଦ୍ରଭାଗାତୀର୍ଥର ଅସ୍ତିତ୍ୱ ନିତାନ୍ତ

ସଙ୍କୀର୍ଣ୍ଣ ହେଲେ ହେଁ ଅତୀତରେ ଏହା ଏକ ନଦୀ ଥିଲା । ଏହି ନଦୀରେ ବର୍ଷାଦିନରେ ଜଳପ୍ରବାହ ଯୋଗୁଁ ନଦୀର ଦୈର୍ଘ୍ୟ ସୂଚିତ ହେଉଥିଲା । ବର୍ଷାଦିନ ପରେ କ୍ରମେ ଜଳପ୍ରବାହ ସଙ୍କୁଚିତ ହୋଇଆସେ । ଶୀତଦିନରେ ବର୍ଷାଦିନ ଅପେକ୍ଷା ଜଳପ୍ରବାହର ମାତ୍ରା କମ୍ ଜଣାଯାଏ । ମାତ୍ର ଗ୍ରୀଷ୍ମଋତୁରେ ଚନ୍ଦ୍ରଭାଗା ନଦୀର ଶଯ୍ୟା ସ୍ଥଳଭାଗ ଆଡ଼ୁ କ୍ରମେ ଶୁଷ୍କ ହୋଇଆସେ । ଗ୍ରୀଷ୍ମକାଳରେ ଦେଖିଲେ ଜଣାଯାଏ ଯେ କ୍ରମେ କ୍ରମେ ନଦୀର ଜଳପ୍ରବାହ ଶୀର୍ଣ୍ଣାକାର ଧାରଣ କରି ଶୁଷ୍କ ହୋଇ ହୋଇ ସମୁଦ୍ରତୀରରେ ଥିବା ମୁହାଣରେ ଆସି ରହିଯାଏ । ଗ୍ରୀଷ୍ମ-ଦିନରେ ସୂର୍ଯ୍ୟକିରଣ ଯୋଗୁଁ ନଦୀର ଜଳଧାର ଏହିପରି ଭାବରେ ଛୁଡ଼ି ଛୁଡ଼ି ଆସି ଶେଷରେ ସମୁଦ୍ରତୀରରେ ରହିଯାଏ । ତେଣୁ ଏଠାରେ ସୂର୍ଯ୍ୟଦେବ, ଚନ୍ଦ୍ରଭାଗା ଓ ସାଗର; ଏହି ତିନି ଜଣଙ୍କୁ କ୍ରମାନ୍ୱୟରେ ଅବସ୍ଥାପିତ କରାଯାଇ ଚନ୍ଦ୍ରଭାଗା ଓ ସୂର୍ଯ୍ୟଦେବଙ୍କର ଗତିକୁ ଚନ୍ଦ୍ରଭାଗା ନଦୀ ଓ ସୂର୍ଯ୍ୟକିରଣର ପ୍ରଭାବରେ ଗ୍ରୀଷ୍ମଋତୁରେ ତାର ପରିଣତି ବିଷୟ ଚିନ୍ତାକରାଯାଉ । କାବ୍ୟରେ ବର୍ଣ୍ଣନା କରାଯାଇଅଛି; ଅଗ୍ରଭାଗରେ ଚନ୍ଦ୍ରଭାଗା ଧାବମାନା, ପଶ୍ଚାତରେ ସୂର୍ଯ୍ୟଦେବ । ଚନ୍ଦ୍ରଭାଗା ଶେଷରେ ଆସି ସାଗରବେଳାରେ ଉପନୀତା ହେଲେ ଓ ସାଗରର ଲହରୀରେ ମିଶିଗଲେ । ଗ୍ରୀଷ୍ମଋତୁରେ ସୂର୍ଯ୍ୟକିରଣର ପ୍ରଖରତାରେ ଚନ୍ଦ୍ରଭାଗା ନଦୀର ପ୍ରବାହ କ୍ରମେ ସ୍ଥଳଭାଗ ଆଡ଼ୁ ଛୁଡ଼ି ଛୁଡ଼ି ଆସି ଶେଷରେ ସମୁଦ୍ର ତୀରବର୍ତ୍ତୀ ମୁହାଣରେ ସମୁଦ୍ର ତରଙ୍ଗ ସହିତ ମିଶିଯାଇଥାଏ । କବିବର ରାଧାନାଥଙ୍କର ଏହି ପ୍ରତ୍ୟକ୍ଷ ଜ୍ଞାନ ନାୟିକା ଚନ୍ଦ୍ରଭାଗାଙ୍କୁ ସମୁଦ୍ର ତରଙ୍ଗରେ ମିଶିଯିବା ଲାଗି ପରିକଳ୍ପନାରେ ସାହାଯ୍ୟ କରିଥିବାର ଅନୁମାନ କରାଯାଇପାରେ । ଆମ ଦେଶରେ ବହୁ ନଦୀକୁ କେନ୍ଦ୍ରକରି ପ୍ରଚଳିତ ଥିବା କିମ୍ବଦନ୍ତୀ ଯେ ରାଧାନାଥଙ୍କୁ ଏ ଦିଗରେ ବାସ୍ତବବାଦୀ ଚିନ୍ତାଧାରା ଯୋଗାଇଅଛି, କହିବା ବାହୁଲ୍ୟ ମାତ୍ର । ଏହିପରି ଏକ କିମ୍ବଦନ୍ତୀ ଏଠାରେ ଉଦ୍ଧାର କରାଯାଇ-ପାରେ ।

"ମୋର ଜଣେ ଛାତ୍ର ଏ ସମ୍ପର୍କରେ ଲେଖିଥିଲେ, ଆମ ଗାଁ ଟି ଶତଯୋଜନା ଓ ଲୁଣାନଦୀର ସଙ୍ଗମସ୍ଥଳରେ ଅବସ୍ଥିତ । ଲୁଣାନଦୀ

ଗାଁର ଉତ୍ତର ପାର୍ଶ୍ୱରେ ବହିଯାଇଛି ଓ ଚନ୍ଦ୍ରଭାଗା ଗ୍ରାମର ପଶ୍ଚିମ ପଟରେ ବହିଆସି ସାତପୁରିଆ ବଟ ପାଖରେ ମିଳିଯାଇଅଛି । କମ୍ବଦନ୍ତୀ ଅଛି, ଲବଣଦୈତ୍ୟ ଚନ୍ଦ୍ରଭାଗା କନ୍ୟାକୁ ଗୋଡ଼ାଇ ଗୋଡ଼ାଇ ଆସି ଏଠାରେ ଦେଖିଥିଲା । ଲବଣଦୈତ୍ୟ ଚନ୍ଦ୍ରଭାଗା କନ୍ୟାକୁ ଧରିବା ମାତ୍ରେ ଦୁହେଁ ଦୁଇଟି ନଈ ହୋଇ ବୋହିଗଲେ । ଚନ୍ଦ୍ରଭାଗା ଲୁଣାର ଗର୍ଭରେ ପଡ଼ି ନିଜର ସତ୍ତା ହରାଇଲା" । (୧)

ଚନ୍ଦ୍ରଭାଗା କାବ୍ୟର କଥାବସ୍ତୁ ବିଷୟରେ ରାଧାନାଥଙ୍କର ପରିକଳ୍ପନା ଯେ ଓଭିଡ଼୍‌ଙ୍କ କାବ୍ୟ ବର୍ଣ୍ଣିତ କଥାବସ୍ତୁର ଅନୁସରଣ, ଏ କଥା ଆଲୋଚକମାନେ ଗ୍ରହଣ କରିଅଛନ୍ତି । ଆଲୋଚନାର ପରିସରକୁ ଆହୁରି ଅଧିକ ବ୍ୟାପକ କରିବାକୁ ଯାଇ ପଣ୍ଡିତ ବିନାୟକ ମିଶ୍ର ମତ ପ୍ରଦାନ କରିଅଛନ୍ତି, "ମୃତ ବ୍ୟକ୍ତିର ଅସ୍ଥି ସାଇତି ରଖିବା ପାଇଁ ବୈଠି ଖଞ୍ଜା ଗୋଲାକାର ମୃତ୍ତିକା ପାତ୍ର ପ୍ରାଚୀନ କାଳରେ ଗ୍ରୀସ୍ ଦେଶରେ ବ୍ୟବହୃତ ହେଉଥିଲା । ଏପରି ଏକ ପାତ୍ରର ଗାତ୍ରରେ ଏକ କୁମାରୀ ଓ ତାହାକୁ ଧରିବା ପାଇଁ ଗୋଡ଼ାଇବା ଯୁବକର ଚିତ୍ର ଥିଲା । ଏହି ପାତ୍ର ଗ୍ରୀସ୍‌ର ଅରଣ୍ୟରେ ଥିଲା । ଏହାକୁ ଦେଖି ପ୍ରଶଂସିତ ଶୈଳୀ ଓ ଛନ୍ଦରେ କୀଟ୍‌ସ୍ କବିତା ଲେଖିଥିଲେ । ଏହି କବିତା ପଢ଼ି ହେଉ ବା ଗ୍ରୀକ ପ୍ରାଚୀନ ଗଳ୍ପ ପଢ଼ି ହେଉ, କଥାବସ୍ତୁର ସ୍ଥୂଳଭାବ ରାଧାନାଥଙ୍କ ଚିତ୍ତରେ ଜାତ ହୋଇଥିଲା । ଆମ ଦେଶର ପୁରାଣରେ ସମୁଦ୍ର ମନ୍ଥନ କାଳରେ ମୋହିନୀ ରୂପରେ ବିଷ୍ଣୁ ଅସୁରଙ୍କୁ ମୁଗ୍ଧ କରି ରଖିବାରୁ ଦେବତାମାନେ ନିର୍ବିବାଦରେ ସମୁଦ୍ର ମନ୍ଥନ କରି ଅମୃତ ପାଇଲେ । ବିଷ୍ଣୁଙ୍କ ମୋହିନୀ ମୂର୍ତ୍ତି ପଛରେ ଶିବ ଗୋଡ଼ାଇଥିବାର ପ୍ରବାଦ ବଳରାମ ଦାସ ଲେଖିଅଛନ୍ତି, କିନ୍ତୁ ଏସବୁ ଆଖ୍ୟାନ ସହିତ କୋଣାର୍କ ମନ୍ଦିରର କୌଣସି ସଂପର୍କ ନାହିଁ; ତଥାପି ନିଜର କପୋଳରୁ ଆଖ୍ୟାନ କଳ୍ପନା କରିବା ପାଇଁ ଅନ୍ୟ ସାହିତ୍ୟର ଆଖ୍ୟାନମାନଙ୍କରୁ ରାଧାନାଥ ଆଭାସ ପାଇଥିବେ; କିନ୍ତୁ ମୁସଲମାନଧର୍ମର ପ୍ରଭାବରେ ସେତେବେଳେ ଦେବଦେବୀ ପ୍ରତି ଭକ୍ତି ଓଡ଼ିଆ ହୃଦୟରେ ଊଣା ହୋଇଥିଲା । ବ୍ୟକ୍ତିଗତ ପ୍ରତିଭା ପ୍ରତି

(୧) ଯୁଗ ପ୍ରବର୍ତ୍ତକ ସ୍ରଷ୍ଟା ରାଧାନାଥ—ନଟବର ସାମନ୍ତରାୟ—ପୃ.୧୭.

କାହାର ସମ୍ମାନ ନ ଥିଲା । ଶିଳ୍ପର ପତନ ଘଟିଥିଲା । ଏଣୁ ମନ୍ଦିର ଏପରି ନିର୍ମାଣ କରାଯାଇଥିଲା ଯେ, ତାହା ଆପେ ଆପେ ଭାଙ୍ଗି ପଡ଼ିଥିଲା ।"(୧)

ଚନ୍ଦ୍ରଭାଗା କାବ୍ୟର କଥାବସ୍ତୁର ପରିକଳ୍ପନାରେ ଜଣେ କୁମାରୀ ପଛରେ ଅନ୍ୟ ଜଣେ ପୁରୁଷ ଗୋଡ଼ାଇବା ଚିତ୍ର ମୁଖ୍ୟ ନୁହେଁ । ଗ୍ରୀସ୍ ଦେଶର ପାତ୍ର ଉପରେ ଥିବା ଚିତ୍ର ବା କୀଟ୍‌ସଙ୍କର କବିତା ପଢ଼ି ରାଧାନାଥ ଯେ ଚନ୍ଦ୍ରଭାଗାଙ୍କ ପଛରେ ସୂର୍ଯ୍ୟଦେବଙ୍କ ଗୋଡ଼ାଇବାର ଚିତ୍ର କଳ୍ପନା କରିଅଛନ୍ତି, ଏ କଥା ଭାବିବାର କୌଣସି କାରଣ ନାହିଁ । ଚନ୍ଦ୍ରଭାଗା କାବ୍ୟର ଏହି ବର୍ଣ୍ଣନା ଓଭିଡ୍‌ଙ୍କ କାବ୍ୟର ବର୍ଣ୍ଣନାର ଅନୁରୂପ ବୋଲି ଗ୍ରହଣ କରାଯାଇପାରେ

କବିବର ରାଧାନାଥ ଗ୍ରୀକ୍ ସାହିତ୍ୟରୁ କଥାବସ୍ତୁ ଗ୍ରହଣ କରିଥିଲେ ହେଁ ସ୍ୱକୀୟ ମୌଳିକତାରେ କାବ୍ୟଟିକୁ ସର୍ବାଙ୍ଗସୁନ୍ଦର କରିପାରିଛନ୍ତି । କାବ୍ୟର କଥାବସ୍ତୁ ଲାଗି ପ୍ରଥମରେ ସୂର୍ଯ୍ୟଦେବ ଓ କନ୍ଦର୍ପଙ୍କର ଦ୍ୱନ୍ଦ୍ୱ ସୃଷ୍ଟି କରିବା ପାଇଁ କବି ଜଗନ୍ନାଥଙ୍କର ସ୍ନାନାଭିଷେକ ଉତ୍ସବ ଅବକାଶକୁ ଗ୍ରହଣ କରିଅଛନ୍ତି । ଏହି ଅବକାଶରେ ଯେଉଁ ଯେଉଁ ଦେବଦେବୀମାନେ ଶ୍ରୀଜଗନ୍ନାଥଙ୍କ ସିଂହଦ୍ୱାରରେ ସମବେତ ହୋଇଥିବା କଥା କବି ବର୍ଣ୍ଣନା କରିଅଛନ୍ତି, ସେମାନଙ୍କର ପ୍ରାଧାନ୍ୟ ଓ ସେମାନଙ୍କର ଅଧିଷ୍ଠାନ ସ୍ଥଳର ବୈଶିଷ୍ଟ୍ୟ ସୂଚିତ ହୋଇଅଛି । ଏହି ବର୍ଣ୍ଣନାଦ୍ୱାରା ଉତ୍କଳର ପ୍ରକୃତି ଅତ୍ୟନ୍ତ ମନୋରମ ଭାବରେ ପ୍ରକାଶ ପାଇଅଛି । କାଳିଜାଈ ଠାକୁରାଣୀଙ୍କ ପ୍ରସଙ୍ଗରେ କବି ଲେଖିଛନ୍ତି,

"ଚିଲିକା-ଲହରୀ-ମାଳିକା ଭେଦି ଗିରି ଉତ୍ଥିତ
ଚଉଦିଗେ ମୀନ ଚିଲିକା ବକ୍ଷ ତରଙ୍ଗାପ୍ଲୁତ ।
ଚନ୍ଦ୍ରାଲୋକେ ଯହିଁ ନିଶୀଥେ ଜଳଦେବୀ ସଙ୍ଗୀତ
ଶୁଣନ୍ତି ଚକିତେ ନାବିକେ ଦୂରେ ବାହୁଁ ବୋଇତ ।
କାଳିଜାଈ ଦେବୀ ଆଗତ ଗୁଡ଼ି ସେ ଗିରିଚୂଡ଼ା
ଦିଶଇ ପରମ ମଞ୍ଜୁଳ ଶିରେ କୈଳିଙ୍ଗୀ କୁଡ଼ା ।"

(୧) ଆଧୁନିକ ଓଡ଼ିଆ ସାହିତ୍ୟର ଇତିହାସ—ବିନାୟକ ମିଶ୍ର ପୃ-୫୭

କାଳଜାଈ ଠାକୁରାଣୀଙ୍କ ବର୍ଣ୍ଣନା ପ୍ରସଙ୍ଗରେ କବି ଚଳିକା ହ୍ରଦର ସୌନ୍ଦର୍ଯ୍ୟ ବର୍ଣ୍ଣନା କରିଅଛନ୍ତି । ରାଧାନାଥଙ୍କର ଆହରଣ ଶୈଳୀର ଚମତ୍କାରିତା ରଣପୁରର ତାରାଦେବୀଙ୍କ ପ୍ରସଙ୍ଗରେ ପ୍ରକାଶିତ ହୋଇଅଛି । ରାଧାନାଥ ଥିଲେ ବହୁଶାସ୍ତ୍ରଦର୍ଶୀ ପଣ୍ଡିତ । ସେ ଏହି ବର୍ଣ୍ଣନାରେ ଅତ୍ୟନ୍ତ ଚତୁରତାର ସହିତ ମହାକବି କାଳିଦାସଙ୍କର କୁମାର ସମ୍ଭବର ଏକ ବର୍ଣ୍ଣନାର ଭାବକୁ ଗ୍ରହଣ କରିଅଛନ୍ତି । ତାରାଦେବୀଙ୍କ ବିଷୟରେ ସେ ଲେଖିଛନ୍ତି,

> "ନରେନ୍ଦ୍ର-ମଉଳି-କୁସୁମ-ରେଣୁ-ରକ୍ତ ଚରଣା,
> ମୈନାକ-ଶିଖରବାସିନୀ ରଣପୁରମଣ୍ଡନା ।"

ରଣପୁରର ରାଜାମାନଙ୍କର ଉପାଧି ନରେନ୍ଦ୍ର । ରଣପୁରର ରାଜାଙ୍କ ମସ୍ତକ ମଣ୍ଡିତ ପୁଷ୍ପର ପରାଗ ରେଣୁରେ ଯାହାଙ୍କର ପଦ ରକ୍ତବର୍ଣ୍ଣ ଧାରଣ କରିଅଛି, ମଣିନାଗ ପର୍ବତର ଶିଖର ଦେଶରେ ଅଧିଷ୍ଠାନ କରୁଥିବା ସେହି ରଣପୁରମଣ୍ଡନା ତାରାଦେବୀ ଶ୍ରୀକ୍ଷେତ୍ରକୁ ଆସିଅଛନ୍ତି । ରଣପୁରରେ ପ୍ରାଚୀନ କାଳରେ ନରବଳି ପ୍ରଚଳିତ ଥିବାର ଶୁଣାଯାଏ । ରଣପୁରର ରଜା ମୁଣ୍ଡରେ ଓ କାନରେ ମନ୍ଦାରଫୁଲ ଖୋସି ପର୍ବ ଦିବସମାନଙ୍କରେ ତାରାଦେବୀଙ୍କ ପଦରେ ଶିରସ୍ପର୍ଶ କରୁଥିବାର ଶୁଣାଯାଏ । ଏହି ବିଷୟଟିକୁ କବି ତାରାଦେବୀଙ୍କ ପ୍ରସଙ୍ଗରେ ସୂଚିତ କରିଅଛନ୍ତି । ରାଜାଙ୍କ ମସ୍ତକରେ ଥିବା ଫୁଲର ସ୍ପର୍ଶରେ ତାରାଦେବୀଙ୍କର ପଦ ରକ୍ତବର୍ଣ୍ଣରେ ରଞ୍ଜିତ ହେବା ଏକ ସହଜ କବି କଳ୍ପନା ହୋଇପାରେ । ମାତ୍ର ଏଠାରେ ଲକ୍ଷ୍ୟ କରାଯାଇ ପାରେ ଯେ କବିବର ରାଧାନାଥ ଏହି କଳ୍ପନା ପାଇଁ ମହାକବି କାଳିଦାସଙ୍କ ନିକଟରେ କେତେକ ପରିମାଣରେ ଋଣୀ । କୁମାର ସମ୍ଭବ କାବ୍ୟରେ ଉମାଙ୍କ ମୁଖରେ ଶିବଙ୍କ ମାହାତ୍ମ୍ୟ ପ୍ରସଙ୍ଗରେ କାଳିଦାସ ଲେଖିଛନ୍ତି,

> "ଅସମ୍ପଦସ୍ତସ୍ୟ ବୃଷେଣ ଗଚ୍ଛତଃ ପ୍ରଭିନ୍ନଦିଗ୍‌ବାରଣବାହନୋ ବୃଷା
> କରୋତି ପାଦାବୁପଗମ୍ୟ ମୌଳିନା ବିନିଦ୍ର ମନ୍ଦାରରଜୋଽରୁଣାଙ୍ଗୁଳିଃ ।"

ଶିବଙ୍କର ମାହାତ୍ମ୍ୟ ପ୍ରଖ୍ୟାପନ କରିବା ଉଦ୍ଦେଶ୍ୟରେ ଉମା ଛଦ୍ମବେଶଧାରୀ ବୃଦ୍ଧଗୃହୀଙ୍କୁ କହୁଅଛନ୍ତି, "ଶିବ ଦରିଦ୍ର, ସେ ଗୋଟିଏ ବୃଷଭ ଉପରେ ବସି ଯିବା ଆସିବା କରନ୍ତି; ମାତ୍ର ଇନ୍ଦ୍ର ବିରାଟ ଐରାବତ ହସ୍ତୀ ଉପରେ ବସି ଯିବା ଆସିବା କରନ୍ତି । ଶିବ ବୃଷଭ ପୃଷ୍ଠରେ ବସି ଯିବାବେଳେ ଐରାବତ ହସ୍ତୀ ଉପରେ ବସି ଯାଉଥିବା ଇନ୍ଦ୍ର ଯେବେ ତାଙ୍କୁ ଦେଖନ୍ତି ତେବେ ହଠାତ୍ ସେ ଐରାବତ ହସ୍ତୀ ପୃଷ୍ଠରୁ ଅବତରଣ କରି ଶିବଙ୍କ ପାଦଦେଶରେ ମସ୍ତକ ଲଗାଇ ପ୍ରଣାମ କରନ୍ତି । ଇନ୍ଦ୍ରଙ୍କ ମୁକୁଟରେ ଥିବା ପାରିଜାତ ଫୁଲର ପରାଗରେଣୁ ଶିବଙ୍କ ପାଦଅଙ୍ଗୁଳିରେ ଲାଗି ତାହାକୁ ସୁରଞ୍ଜିତ କରେ ।" କାଳିଦାସଙ୍କର ଏହି ଭାବ ରାଧାନାଥଙ୍କୁ ଯେ ପ୍ରଭାବିତ କରିଅଛି, କହିଲେ ଅନ୍ୟଥା ହେବ ନାହିଁ ।

ପ୍ରକୃତିପ୍ରେମୀ ରାଧାନାଥଙ୍କ କାବ୍ୟ କବିତାରେ ଉତ୍କଳର କମନୀୟ ପ୍ରକୃତି ଯେପରି ଭାବରେ ପ୍ରକାଶଲାଭ କରିଅଛି ତାହା ଅନନ୍ୟସାଧାରଣ । ଅସାମାନ୍ୟା ସୁନ୍ଦରୀ ଚନ୍ଦ୍ରଭାଗାଙ୍କର କନ୍ଦୁକ କ୍ରୀଡ଼ା ବର୍ଣ୍ଣନା କରିବା ସମୟରେ କବି ପ୍ରକୃତିର ଅସାମାନ୍ୟ ସୌନ୍ଦର୍ଯ୍ୟର ଚିତ୍ର ଅଙ୍କନ କରିଅଛନ୍ତି ।

"ମଧୁର ପ୍ରଦୋଷସମୟୁ ସ୍ୱର୍ଣ୍ଣ କିରଣ ବୋଳା,
କାଦମ୍ବିନୀ ଖେଳେ ଗଗନେ ଧୀରସମୀର ଦୋଳା ।
ଗୋଧୂଳିଗଗନ ସୁଚିତ୍ର ଦିଶେ ଶତବରଣେ,
ଶତମନୋରଥ ଝଲକେ ଯେହ୍ନେ ଆଶାକାନନେ ।
କଇଁସାରିଲତା ଶ୍ୟାମଳ ଶୈଳସ୍ତୂପର ଗୁମ୍ଫା
ଦିବା ଅବସାନ ଦେଖିଣ କ୍ରମେ ବିସ୍ତାରେ କାୟା ।
ବାରୁଣୀ ଦର୍ପଣ ପରାୟେ ଝଟକେ ସର-ସଲିଳ,
ସୁବର୍ଣ୍ଣ ଲହରୀ ସୃଜଇ ତହିଁ ମନ୍ଦ ଅନିଳ ।
ନୀଳପାରାବାର ଅଦୂରେ ଗାଏ ଅମର ଗୀତ,
ଅମର ତରଙ୍ଗ ନର୍ତ୍ତନେ ବେଳା ହୁଏ ଧ୍ୱନିତ ।

ଶୁକ୍ତି-ତାରକିତ-ସୈକତେ ଫେନର ଉଲ୍ଲଙ୍ଘି
ଚୁମ୍ବେ ଚନ୍ଦ୍ରଚୂଡ ଚରଣ ସ୍ତରେ ସ୍ତରେ ସଞ୍ଚରି ।
ନାନାଜାତି ପୁଷ୍ପରେଣୁ ଧୀରେ ହରେ ସମୀର;
ଗୁଡ଼କଙ୍କ ଯେନି କନ୍ଦୁକ କ୍ରୀଡ଼ା କରେ ସମୀର ।
ଯୂଥ ଯୂଥ ହୋଇ ଭ୍ରମନ୍ତି ନାନାରଙ୍ଗେ ହରିଣ
ତରଙ୍ଗ ଗୃହାଣୀ ଗୃହାନ୍ତି ଗୃରୁ ଗ୍ରୀବା ତୋଳିଣ ।"

ପ୍ରକୃତି ବର୍ଣ୍ଣନା ସମୟରେ କବିବର ରାଧାନାଥ ତାଙ୍କର ସୌନ୍ଦର୍ଯ୍ୟ ପ୍ରେମପ୍ରବଣତାର ପରିଚୟ ଦେଇଅଛନ୍ତି । କେବଳ ପ୍ରକୃତି ବର୍ଣ୍ଣନାରେ ନୁହେଁ, ଚନ୍ଦ୍ରଭାଗାଙ୍କର ସୌନ୍ଦର୍ଯ୍ୟ ବର୍ଣ୍ଣନାରେ କବିଙ୍କର ସୌନ୍ଦର୍ଯ୍ୟ-ପ୍ରିୟତା ଅଧିକ ସ୍ପଷ୍ଟ ।

"ନେତ୍ରଯୁଗେ ଯୁବା ପିଅନ୍ତି ଯେଉଁ ରୂପ ଅମୃତ,
ସେ ଅମୃତେ କଲା ଯୌବନ ବାଳା ତନୁ ଧଉତ ।
ଶୋଭି ସେ ଲଭିଲା ଅପ୍‌ସରୀ ଦିବ୍ୟଶୋଭାକୁ ବଳି
ଫୁଟିଲା ଲାବଣ୍ୟ ସରସେ ନବ କମଳକଳୀ ।
ସ୍ୱଭାବେ ସୁବର୍ଣ୍ଣ, ଯୌବନ ହେଲା ଯୋଗ୍ୟ ଶାଣ,
ରୂପାସ୍ତ୍ର ହେଲା ରୂପସୀ ଚକ୍ଷୁ ଅମୋଘ ବାଣ ।"

ସୁନ୍ଦରୀ ଚନ୍ଦ୍ରଭାଗାଙ୍କର ସୌନ୍ଦର୍ଯ୍ୟରେ ଅଭିଭୂତ ହୋଇ ସୂର୍ଯ୍ୟଦେବ ତାଙ୍କପ୍ରତି ବନଯୋକ୍ତି ପ୍ରକାଶ କରିବା ଓ ତାଙ୍କର ପଶ୍ଚାଦ୍ଧାବନ କରିବା ବର୍ଣ୍ଣନାକୁ ଏ ଦେଶର ବହୁ ପାଠକ ଗ୍ରହଣ କରିପାରି ନାହାନ୍ତି । ସୂର୍ଯ୍ୟଦେବଙ୍କ ଚରିତ୍ରକୁ ଏହାଦ୍ୱାରା କଳୁଷିତ କରାଯାଇ ଅଛି ବୋଲି ବହୁ ପାଠକ ରାଧାନାଥଙ୍କୁ ଆକ୍ଷେପ କରି ଅଛନ୍ତି । ପ୍ରକୃତ ପକ୍ଷରେ ଦେଖିଲେ ଜଣାଯାଏ, ଏଥିପାଇଁ ରାଧାନାଥ ଦାୟୀ ନୁହନ୍ତି । ଏ ଦେଶର ପୁରାଣ ସାହିତ୍ୟରେ ବହୁ ଦେବଦେବୀ-ମାନଙ୍କ ପ୍ରସଙ୍ଗରେ ଏପ୍ରକାର ବହୁ ବର୍ଣ୍ଣନା ରହିଅଛି । ସୂର୍ଯ୍ୟଦେବଙ୍କ ମୁଖରେ କବି ପ୍ରକାଶ କରିଛନ୍ତି,

"ମନ୍ଦବଳେ କୁନ୍ତୀ ଆକର୍ଷି ମୋତେ ଆଣିଥିଲୁ,
ଆ ାଲୁ ଲାବଣ୍ୟ-ରଜ୍ଜୁରେ ବାନ୍ଧି ଭୁଞ୍ଜି ଛଳିଲା ।"

ପୁରାଣ ସାହିତ୍ୟରେ ଦେବଦେବୀମାନଙ୍କ ବିଷୟରେ ଏପ୍ରକାର ବହୁ ବର୍ଣ୍ଣନା ଥିଲେହେଁ ଏଦେଶର ଲୋକେ ତାହାକୁ ଧର୍ମଶାସ୍ତ୍ର ଭାବରେ ଗ୍ରହଣ କରି ତହିଁରେ ଚରିତ୍ରଗତ ଦୋଷ ଲକ୍ଷ୍ୟ କରିପାରିନାହାଁନ୍ତି । ମାତ୍ର କାବ୍ୟ ସାହିତ୍ୟରେ ଏପ୍ରକାର ବର୍ଣ୍ଣନା ଲୋକଚିତ୍ତକୁ ବିକ୍ଷିପ୍ତ କରିଦେଇଅଛି । ପୁଣି, ଯେଉଁମାନେ ଆଧୁନିକ ସାହିତ୍ୟର ଆଧୁନିକତା ପ୍ରତି ସଚେତନ ନୁହନ୍ତି ସେମାନେ ଏପ୍ରକାର ଦୋଷ ବାଛିବସିବା ନିତାନ୍ତ ସ୍ୱାଭାବିକ । ଏ ପ୍ରସଙ୍ଗରେ ଅଧ୍ୟାପକ ନଟବର ସାମନ୍ତରାୟଙ୍କ ମତ ଏଠାରେ ଉଦ୍ଧାର କରାଯାଇପାରେ ।

"ଶିବ, ଚନ୍ଦ୍ର, ଶଚୀ, ଇନ୍ଦ୍ର ଯେଉଁ କୀର୍ତ୍ତି ଅର୍ଜ୍ଜନ କରିଛନ୍ତି, ତାହା ତୁଳନାରେ ସୂର୍ଯ୍ୟଙ୍କର ଅପରାଧଟା କଣ ଏତେ ବେଶୀ ? ତଥାପି ରାଧାନାଥ ହେଲେ ବହୁ ନିନ୍ଦିତ ଓ ଅଭିଶପ୍ତ । ତା'ର କାରଣ ହେଉଛି, (କ) ପୁରାଣରେ ଦେବତାଙ୍କର ଅପକୀର୍ତ୍ତି ଘୋଷିତ ହୋଇଥିଲେହେଁ ଏଦେଶର କୌଣସି ବିଶିଷ୍ଟ କାବ୍ୟରେ ଏ ଅପକୀର୍ତ୍ତିକୁ ପ୍ରଧାନ ସ୍ଥାନ ଦିଆଯାଇନାହିଁ । (ଖ) ଚିରାଚରିତ ନ୍ୟାୟରେ କାବ୍ୟରସାସ୍ୱାଦନ କରି ଆସୁଥିବା ଲୋକେ ଚନ୍ଦ୍ରଭାଗାର ବିଷୟକୁ ସହୃଦୟ ଚକ୍ଷୁରେ ଦେଖିବାରେ ଅକ୍ଷମ ହୋଇଥିଲେ । ଆଧୁନିକ ଶିକ୍ଷାଲାଭ କରି ରାଧାନାଥ ଯେଉଁ ବିଶିଷ୍ଟ ମନୋବୃତ୍ତି ଗଢି ସେହି ଆଦର୍ଶରେ କାବ୍ୟ ସୃଷ୍ଟି କରିଥିଲେ ସେମିତି ନୂତନ ମନୋବୃତ୍ତି ସେ ସମୟରେ ଏହି ଲୋକଙ୍କର ଆଦୌ ହୋଇ ନଥିଲା । ଏ ମନୋବୃତ୍ତିର ଅଭାବ ହେତୁ ଲୋକେ ତାଙ୍କ କାବ୍ୟରେ ଥିବା ଲଳିତ କଳା ସୌନ୍ଦର୍ଯ୍ୟ ଅନୁଭବ କରିବାରେ ଅକ୍ଷମ ହୋଇଥିଲେ ।" (୧)

କବିବର ରାଧାନାଥ ଯେ ଚନ୍ଦ୍ରଭାଗା କାବ୍ୟରେ ସୂର୍ଯ୍ୟଦେବଙ୍କ ଚରିତ୍ରକୁ ଦୂଷିତ କରିଦେଇଅଛନ୍ତି, ଏପ୍ରକାର ମତବାଦ ସମ୍ପୂର୍ଣ୍ଣ ଏକ-ଦେଶଦର୍ଶୀ ମନୋବୃତ୍ତିର ପରିଚାୟକ । ଭାରତୀୟ ପୁରାଣମାନଙ୍କରେ

(୧) ଯୁଗପ୍ରବର୍ତ୍ତକ ସ୍ରଷ୍ଟା ରାଧାନାଥ, ପୃ—୮୧—୮୨

ଦେବଦେବୀଙ୍କର କାର୍ଯ୍ୟକଳାପକୁ ଅନେକ କ୍ଷେତ୍ରରେ ଯୌନ ଭାବରେ ବର୍ଣ୍ଣନା କରାଯାଇଅଛି । ତାହା ନିତାନ୍ତ ମାତ୍ସରର ବର୍ଣ୍ଣନା ବୋଲି କୁହାଯାଇ ପାରେ । କେବଳ ଭାରତୀୟ ପୁରାଣ ନୁହେଁ, ଗ୍ରୀକ୍ ପୁରାଣରେ ବର୍ଣ୍ଣିତ ଦେବଦେବୀଙ୍କ ଆଚରଣ ମଧ୍ୟ ଏହି ଦୃଷ୍ଟିରୁ ଦୋଷାବହ ମନେହୋଇ ପାରେ । ହେଫିଷ୍ଟସ୍ ହେଉଛନ୍ତି ଗ୍ରୀକ୍ପୁରାଣର ଅଗ୍ନିଦେବତା । ତାଙ୍କ ପତ୍ନୀ ହେଉଛନ୍ତି ଆଫ୍ରୋଡାଇଟ୍ । ଏରସ୍, ପରସ୍ ଓ ଆଙ୍କସେସ ପ୍ରଭୃତି ଦେବତାମାନେ ଆଫ୍ରୋଡାଇଟ୍ଙ୍କ ସହ ସମ୍ଭୋଗ କ୍ରିୟାରେ ଲିପ୍ତଥିଲେ । ମେନାଲସ୍ଙ୍କ ପତ୍ନୀ ହେଲେନ୍ ପାରିସ୍ଙ୍କ ସହିତ ପଳାୟନ କରିଥିଲେ । ଇଅସ୍, ସେଲେନ୍ ଓ ଘୃଥା ପ୍ରଭୃତି ଦେବୀମାନଙ୍କ ସହିତ ବହୁ ଦେବତା ପ୍ରଣୟାସକ୍ତ ଥିଲେ । ଇଅସ୍ଙ୍କର ବହୁ ପ୍ରେମିକ ଥିଲେ । ସେମାନଙ୍କ ମଧ୍ୟରେ ସେଫାଲସ୍, ଓରିଅନ୍ ଓ ଟିଥୋନସ୍ ପ୍ରମୁଖ ପ୍ରଧାନ । ଏହିପରି ଭାବରେ ପୁରାଣରେ ଦେବଦେବୀମାନଙ୍କ ସମ୍ବନ୍ଧରେ ଲେଖା ହୋଇଯାଇଅଛି । ତଥାପି ଦେବଦେବୀମାନଙ୍କର ଚରିତ୍ର ତହିଁରେ ଦୂଷିତ ହୋଇନାହିଁ, ମାତ୍ର କାବ୍ୟ ସାହିତ୍ୟରେ ବର୍ଣ୍ଣନା କରିଦେଲେ ଦେବଦେବୀମାନଙ୍କର ଚରିତ୍ର ଦୂଷିତ ହେବାର ଆକ୍ଷେପ ଶୁଣିବାକୁ ମିଳିଥାଏ । ଏପ୍ରକାର ଆକ୍ଷେପ ନିତାନ୍ତ ଅସାର ଓ ଯୁକ୍ତିହୀନ ବୋଲି କୁହାଯାଇ ପାରେ ।

ଚନ୍ଦ୍ରଭାଗା କାବ୍ୟର ପ୍ରତ୍ୟେକ ଛନ୍ଦରେ କବିବର ରାଧାନାଥଙ୍କର କବି ପ୍ରତିଭାର ସମ୍ୟକ୍ ନିଶ୍ଚିତ ଭାବରେ ଅନୁଭୂତ ହୋଇଥାଏ । ସମୟର ସ୍ରୋତରେ କୋଣାର୍କ ମନ୍ଦିରର ଅତୁଳ ରୂପ ବିଭବ ଭିନ୍ନଭିନ୍ନ କବିମାନଙ୍କୁ ଭିନ୍ନଭିନ୍ନ ଭାବରେ କାବ୍ୟ କବିତା ରଚନା କରିବାକୁ ଅନୁପ୍ରାଣିତ କରିଅଛି । ଉତ୍କଳମଣି ଗୋପବନ୍ଧୁଙ୍କ ଲେଖନୀରୁ ଜନ୍ମ ନେଇଛି ଧର୍ମପଦ, ମାୟାଧର ମାନସିଂହଙ୍କ ଲେଖନୀରୁ ଜନ୍ମନେଇଛି କୋଣାର୍କ ଓ କବି ସଚ୍ଚିଦାନନ୍ଦ ରାଉତରାୟଙ୍କ ଲେଖନୀରୁ ଜନ୍ମନେଇଛି କୋଣାର୍କ କବିତା । ମାତ୍ର ଏହିସବୁ କାବ୍ୟକବିତାର ସୃଷ୍ଟିସମ୍ପଦକୁ ତୁଳନାତ୍ମକ ଭାବରେ ବିଚାର କଲେ ଚନ୍ଦ୍ରଭାଗା କାବ୍ୟର ବୈଶିଷ୍ଟ୍ୟ ଯେ କୌଣସି ପାଠକ ବା ଆଲୋଚକର ବିବେଚନାରେ ସ୍ୱୀକୃତ ଲାଭ

କରିବ । ଚନ୍ଦ୍ରଭାଗା କାବ୍ୟ ସୌନ୍ଦର୍ଯ୍ୟପିପାସୁ କବିବର ରାଧାନାଥଙ୍କର ଏକ ସାର୍ଥକ ସୃଷ୍ଟି ବୋଲି ଆମକୁ ଗ୍ରହଣ କରିବାକୁ ପଡ଼ିବ ।

# ବାମଣ୍ଡା ରାଜସଭାରେ ଲିଖିତ କବିତା ଓ ଭ୍ରମଣକାରୀର ପତ୍ର:

୧୮୮୬ ସାଲରେ କବିବର ରାଧାନାଥ ଦଶଦିନ ଛୁଟି ନେଇ ବାମଣ୍ଡା ଯାତ୍ରା କରିଥିଲେ । ସେଠାରେ ସେ ମାଧ୍ୟପଦ କବିତା ରଚନା କରି ବାମଣ୍ଡା ରାଜାଙ୍କୁ ଉପହାର ଦେଇଥିଲେ । ଏହି କବିତାଟି ରାଜସଭାର ତୋଷାମୋଦକାରୀମାନଙ୍କୁ ଲକ୍ଷ୍ୟକରି ରଚିତ ହୋଇଥିଲା ରାଧାନାଥଙ୍କ କବିପ୍ରତିଭାରେ ମୁଗ୍ଧ ଗୁଣଗ୍ରାହୀ ବାମଣ୍ଡା ରାଜା ସୁଚଳଦେବ କବିତାଟି ପାଠକରି ଅତ୍ୟନ୍ତ ପ୍ରୀତ ହେବା ସଙ୍ଗେ ସଙ୍ଗେ ରାଧାନାଥଙ୍କୁ ପାଞ୍ଚଶତ ଟଙ୍କା ପୁରସ୍କାର ଦେଇଥିଲେ । କବିବର ରାଧାନାଥଙ୍କର ବାମଣ୍ଡାଭ୍ରମଣ ବିଷୟରେ ରାଧାନାଥ-ଜୀବନୀରେ ସୂଚିତ ହୋଇଅଛି, "୧୮୮୬ ସାଲରେ ୧୦ଦିନର ଛୁଟି ଗ୍ରହଣ କରି ରାଧାନାଥ ସର୍ବପ୍ରଥମେ ବାମଣ୍ଡା ଯାଇଥିଲେ । ରାଜା ସର୍ ବାସୁଦେବଙ୍କ ଅନେକ ଥର ପତ୍ରାଦ୍ଵ ଲେଖି ନିମନ୍ତ୍ରଣ କରିଥିବାରୁ ସେ ଛୁଟିଯୋଗେ ତାଳଚେରଠାରୁ ବାମଣ୍ଡା ଯାଇ ସେଠାରୁ ପାଲଲହଡ଼ା ଓ କେନ୍ଦୁଝର ମାର୍ଗରେ ପ୍ରତ୍ୟାବର୍ତ୍ତନ କରିଥିଲେ । ବାମଣ୍ଡା ସେତେବେଳେ ମଧ୍ୟପ୍ରଦେଶର ଅନ୍ତର୍ଭୁକ୍ତ ଥିବାରୁ ରାଧାନାଥଙ୍କର ଦର୍ଶନୀୟ ଇଲାକାର ସୀମାର ବାହାରେ ଥିଲା । ଏହି ହେତୁରୁ ବାମଣ୍ଡା ଯିବାପାଇଁ ତାଙ୍କୁ ଛୁଟି ନେବାକୁ

ହୋଇଥିଲା । ରଜା ସର୍ ବାସୁଦେବ ସୁଡଳଦେବଙ୍କର ଗୁଣଗ୍ରାହକତା ବିଷୟ ଭାବିଲେ ଚମତ୍କୃତ ହେବାକୁ ହୁଏ । ରାଧାନାଥ ରାମଣ୍ଡା ରାଜଧାନୀ ଦେବଗଡ଼ରେ ପହଞ୍ଚିବା ମାତ୍ରକେ ୧୧ ଗୋଟି ତୋପ ଦେଇ ତାହାଙ୍କ ଆଗମନବାର୍ତ୍ତା ଘୋଷଣା କଲେ । ଏଣୁ ଶତଶତ ଲୋକେ ତାହାଙ୍କୁ ଦେଖିବାକୁ ଧାଇଁ ଆସିଲେ । ସାଧାରଣ ବ୍ୟକ୍ତି, ଯାହାଙ୍କର କୌଣସି କ୍ଷମତା ନାହିଁ, ତାହାଙ୍କ ସମ୍ମାନରକ୍ଷାର ଏଭଳି ବ୍ୟବସ୍ଥା ବୋଧହୁଏ ଦେଶରେ ନୂତନ । ପୁଣି ଜଣେ ସାଧାରଣ ବ୍ୟକ୍ତି ପ୍ରତି ଜଣେ ମହାଯଶା ରଜାଙ୍କ ପକ୍ଷରୁ ଏଭଳି ସମ୍ମାନ ପ୍ରଦର୍ଶନ ଏଯୁଗରେ କାହିଁକି, ସବୁଯୁଗରେ ବୋଧହୁଏ ହାସ୍ୟକର ବ୍ୟାପାର ।"

କବିବର ରାଧାନାଥ ରାମଣ୍ଡା ରାଜଦରବାରରେ ଉପସ୍ଥିତ ହୋଇ ରଜାଙ୍କୁ ଭେଟି ଦେବାଲାଗି ପାଞ୍ଚପଦ କବିତା ରଚନା କଲେ । ଏହି କବିତା ଭେଟି ଦେଇ ସେ ବାମଣ୍ଡା ରାଜଦରବାରୁ ପାଇଲେ "କବିବର" ଉପାଧି ଏବଂ ପାଞ୍ଚଶତ ଟଙ୍କା ପୁରସ୍କାର । ଏହି କବିତାଟି ଉତ୍କଳ ସାହିତ୍ୟ ୩୨ଶ ଭାଗ ୪ର୍ଥ ସଂଖ୍ୟା, ପୃ୧୭୧ରେ ପ୍ରକାଶ ପାଇଥିଲା ।

"ଧିକ ତୋଷାମୋଦ ଧିକ ଧିକ ତୋର
ଘୃଣିତ ମ୍ଳାନ ଜୀବନ
ଧିକ ତୋ ଜୀବିକା ଧିକ ଧିକ ସେହି
ଜୀବିକା–ଜନିତ ଧନ ।୧।
ସନ୍ତୁବାଦ ହୋଇ କ୍ଷଣେ ବଞ୍ଚିଥିଲେ
ଯୁଗେ ବଞ୍ଚିଥିବା ପର,
ତୋଷାମୋଦ ହୋଇ ଅମର ହେଲେ ହେଁ
ମରିଯିବା ସଙ୍ଗେ ସର ।୨।
ଲାଗୁଅଛି ସ୍ୱାଦୁ ଖୋସାମୋଦ ବାଣୀ
ସଜ ସରସୁଲ ପରି,

ସାବଧାନ ସେହି          ପୁଲକରେ ହୋଇଛୁ
କରୁଛ ଜହ୍ନର ଉପ । ୩।

କହୁଅଛ ସ୍ତବେ          ତୁମ୍ଭକାର୍ଯ୍ୟ ଲାଗି
ସମର୍ପି ପାରଇ ପ୍ରାଣ,
ନିଜକାର୍ଯ୍ୟ ହେତୁ          ସମସ୍ତ ଆସିଲେ
ନାଶିପାରେ ତୁମ୍ଭ ପ୍ରାଣ । ୪।

ତୁମ ସ୍ୱପକ୍ଷଙ୍କ          ନିନ୍ଦା କଥା କହି
ମୋଦ ଜନ୍ମାଏ ସେ ମନେ
ଜାଣିଥାଅ ସେହି          ନିଷ୍ଠୁପ୍ରକୃତି ସେହି
ନିନ୍ଦୁକ ବୃନ୍ଦରୁ ଜଣେ । ୫।"

ଏହି କବିତାଟି କବିବର ରାଧାନାଥଙ୍କର କବିପ୍ରତିଭାର କୌଣସି ଏକ ସମୁଜ୍ଜ୍ୱଳ ଦିଗର ଯେ ସ୍ୱମାନ୍ୟତମ ପରିଚୟ ଦେବାକୁ ଅକ୍ଷମ, ଏକଥା ମୁକ୍ତକଣ୍ଠରେ ସ୍ୱୀକାର କରାଯାଇପାରେ । ତଥାପି, ଏହି କବିତା ଭେଟି ଦେଇ ରାଧାନାଥ ପାଇଛନ୍ତି ଆଶାତୀତ ସମ୍ମାନ ଓ ଉପଢୌକନ । ଏଠାରେ ଏତିକି ମାତ୍ର ଅନୁମାନ କରାଯାଇପାରେ ଯେ ବାମଣ୍ଡାରାଜ ସୁଚଳଦେବ ରାଧାନାଥଙ୍କ କବି-ପ୍ରତିଭାରେ ଏଥିପୂର୍ବରୁ ମୁଗ୍ଧ ହୋଇ ସାରିଥିଲେ । ତାଙ୍କୁ ସମ୍ମାନିତ କରିବାପାଇଁ ଅପେକ୍ଷା କରି ତାଙ୍କୁ ବାରମ୍ବାର ନିମନ୍ତ୍ରଣ କରୁଥିଲେ । ରାଧାନାଥ ବାମଣ୍ଡାର ରାଜଧାନୀ ଦେବଗଡ଼ ଠାରେ ପହଞ୍ଚିବା କ୍ଷଣି ତୋପଧ୍ୱନି ସହ ତାଙ୍କୁ ଯେ ଉଚ୍ଛ୍ୱସିତ ସମ୍ବର୍ଦ୍ଧନା ଜ୍ଞାପନ କରାଯାଇଥିଲା ତାହା ରାଧାନାଥଙ୍କ ଜୀବନର ଏକ ପ୍ରଧାନ ଘଟଣା । ସୁଚଳଦେବଙ୍କ ସହିତ ରାଧାନାଥଙ୍କର ସମ୍ପର୍କ ଅତ୍ୟନ୍ତ ଘନିଷ୍ଠ ହୋଇଥିଲା । ବାମଣ୍ଡାର ଆତିଥେୟତାରେ ରାଧାନାଥ ଅତ୍ୟନ୍ତ ମୁଗ୍ଧ ହୋଇଥିଲେ । ସେ ଲେଖିଥିଲେ "ବାମଣ୍ଡାର ଆସ୍ଥାପୂର୍ଣ୍ଣ ଆଡ଼ମ୍ବରଶୂନ୍ୟ, ସୁରୁଚିସମ୍ପନ୍ନ ଆତିଥେୟତା ବାମଣ୍ଡାର ପକ୍ଷାନ୍ତର ମାତ୍ର । ଏହିଥର ମୋହର ବାମଣ୍ଡାରେ ଅବସ୍ଥିତି ଆଶାତୀତ ଦୀର୍ଘ ହୋଇଥିଲା । ତିନିଦିନ ଅବସ୍ଥାନର ସଂକଳ୍ପ ଥିଲା, କିନ୍ତୁ ମହାରାଜଙ୍କ ଇଚ୍ଛାରେ ବଶମ୍ବଦ

ହୋଇ ସାତଦିନ ରହିଲି । ଏରୂପ ଆଜି ସାତୋଟି ଦିନ ସମସ୍ତ
ବର୍ଷ ମଧ୍ୟରେ ମୋ ଭାଗ୍ୟରେ ଘଟିବା ଦୁଷ୍କର ।"

୧୮୮୬ ସାଲରେ ନବସମ୍ବାଦରେ 'ଭ୍ରମଣକାରୀର ପତ୍ର'
ପ୍ରକାଶିତ ହୋଇଥିଲା । ଏଥିରେ ରାଧାନାଥ ତାଙ୍କର ତାଳଚେର,
ବାମଣ୍ଡା, ଲହରା ଓ କେନ୍ଦୁଝର ଭ୍ରମଣ ବିଷୟ ବର୍ଣ୍ଣନା କରିଅଛନ୍ତି ।
ଏହି ବର୍ଣ୍ଣନାରେ ଓଡ଼ିଶାର ଗଡ଼ଜାତର ପ୍ରାକୃତିକ ଦୃଶ୍ୟର ସୁସ୍ପଷ୍ଟ
ବିବରଣୀ ପ୍ରଦତ୍ତ ହୋଇଅଛି । ବାମଣ୍ଡା ବର୍ଣ୍ଣନାରେ ରାଧାନାଥ
ବାମଣ୍ଡା ରାଜାଙ୍କର ଉଚ୍ଛ୍ୱସିତ ପ୍ରଶଂସାରେ ଶତମୁଖ ହୋଇପଡ଼ିଛନ୍ତି ।
କବି ଏହି ଯାତ୍ରାର ଅନୁଭୂତିରେ ଉତ୍କଳ ପ୍ରକୃତିର ଯେଉଁ
ଅଭିନବ ରୂପ ଦର୍ଶନ କରିବାର ସୁଯୋଗ ପାଇଛନ୍ତି, ତାହା ତାଙ୍କର
କାବ୍ୟମାନଙ୍କରେ ପ୍ରକୃତିବର୍ଣ୍ଣନାରେ ପ୍ରକାଶ ପାଇଅଛି । ବାମଣ୍ଡାର
ରାଜଧାନୀ ଦେବଗଡ଼ଠାରେ କବି ପ୍ରଧାନପାଟ ଜଳପ୍ରପାତ ଦେଖି ତାର
ସୌନ୍ଦର୍ଯ୍ୟରେ ଅଶେଷ ପ୍ରୀତିଲାଭ କରିଅଛନ୍ତି । ପ୍ରଧାନପାଟ ବିଷୟକ
ବର୍ଣ୍ଣନା କବିଙ୍କ ଲେଖାରେ ଅତ୍ୟନ୍ତ ଦୀର୍ଘ ହୋଇଅଛି । କବିବର
ରାଧାନାଥ ଲେଖିଛନ୍ତି, "ପୂର୍ବୋକ୍ତ ପ୍ରଧାନପାଟ ଜଳପ୍ରପାତ ବାମଣ୍ଡାର
ସର୍ବପ୍ରଧାନ ଦୃଶ୍ୟ । କେନ୍ଦୁଝରର ଖଣ୍ଡାଧାର ପ୍ରପାତ ଆମ୍ଭେମାନେ
ଦେଖିନାହୁଁ, ମାତ୍ର ପଞ୍ଚବଟୀର ଅନତି ଦୂରବର୍ତ୍ତୀ ଗୋଦାବରୀର
ଜଳପ୍ରପାତ ଏବଂ ଜବଲପୁରର ନିକଟସ୍ଥ ନର୍ମଦାର ଧୂଆଁଧାର
ନାମକ ଜଳପ୍ରପାତ ଆମ୍ଭେମାନେ ଏଥିପୂର୍ବେ ଦେଖିଥିଲୁ । ତଥାପି
ପ୍ରଧାନପାଟ ସମ୍ମୁଖରେ ଦଣ୍ଡାୟମାନ ହୋଇ ଆମ୍ଭେମାନେ ଭାବିଲୁ
ଯେ, ଏ ଦୃଶ୍ୟ ନ ଦେଖିଲେ ଚକ୍ଷୁଷ୍ମାନର ପୂର୍ଣ୍ଣଫଳରୁ ବଞ୍ଚିତ
ହୋଇଥାନ୍ତୁ । × × × × × × ଦୂରରୁ ଦେଖିଲେ ବୋଧହେବ,
ଯେମନ୍ତ ଲକ୍ଷ ଲକ୍ଷ ହୀରକଖଣ୍ଡ ପୁଞ୍ଜୀଭୂତ ହୋଇ ସ୍ୱର୍ଗରୁ ଖସୁଅଛି । ପ୍ରପାତର
ଶିରୋଦେଶରେ ବନ୍ଧୁର ଶିଳାର ପ୍ରତିଘାତ ନିବନ୍ଧନ ଜଳବିନ୍ଦୁ
ଇତସ୍ତତଃ ବିକ୍ଷିପ୍ତ ହୋଇ ମୁକ୍ତାବୃଷ୍ଟି ହେଲା ପ୍ରାୟ ବୋଧ
ହେଉଅଛି । ଜଳର ଶୀକରରେ ଇନ୍ଦ୍ରଧନୁ ନୃତ୍ୟକରୁଅଛି । ଘୋର
ଅରଣ୍ୟ ଏବଂ ଗିରିକନ୍ଦରର ସୁଲଭ ନିର୍ଜନତାରେ ଏହି ଅଦ୍ଭୁତ ଦୃଶ୍ୟ

ଦେଖିଲେ ମନ କପରି ହୁଏ, ତାହା ଯେବେ ତୁମ୍ଭର ଅନୁଭବ କରିବାର ଇଚ୍ଛା ଥାଏ, ଛତ୍ରଭଙ୍ଗା କୃଟକ ଠାରେ ପ୍ରଧାନପାଟ ଦେଖି ଆସ । ବିନା ଦର୍ଶନରେ ଏଭାବ ଅନୁଭୂତ ହେବାର ନୁହେଁ ।"

କବିବର ରାଧାନାଥ ଚିଲିକା କାବ୍ୟ ରଚନା କରିବା ସମୟରେ ତାଙ୍କର ଏହି ଭାବ କପରି ଭାବରେ ପ୍ରକାଶ ପାଇଅଛି ତାହା ପାଠକ ଉପଲବ୍ଧି କରିଥାଏ । ପ୍ରଧାନପାଟ ଜଳପ୍ରପାତ ସନ୍ଦର୍ଶନ କରିବା ସମୟରେ କବିଙ୍କ ମନରେ ଯେଉଁ ଭାବ ଉଦିତ ହୋଇଥିଲା ତାହା ସେ ଧୂଆଁଧାର ପ୍ରପାତ ବିଷୟ ବର୍ଣ୍ଣନା କରିବା ସମୟରେ ଲେଖିଛନ୍ତି ।

"ଭ୍ରମିଲି ଖିଷଣ ବିନ୍ଧ୍ୟାଦ୍ରି-କାନ୍ତାର,
ଧୂଆଁଧାରେ ଯହିଁ ହୋଇ ଶତଧାର
ଭୈରବ ଆରବେ ରେବା ଦେଇ ଲମ୍ଫ
ଜନମାଏ ଜନମାନସେ ପ୍ରକମ୍ପ,
ଶୁଭ୍ର ସ୍ବଚ୍ଛ ପୟଃ-ପ୍ରପାତ-ଶୁଭଗା
ହର-ଜଟା-ଭ୍ରଷ୍ଟା ଯଥା ତ୍ରିପଥଗା,
ଶୀକର-ଜଳଦେ ବିଶ୍ଵବସୁ କର
ସୃଜେ ଯହିଁ ଶକ୍ରଚାପ ମନୋହର,
ଶୁଣିଲି ଶ୍ରବଣେ ସେ ଭୈରବରବ
ଉଚ୍ଚେ ଦେଖିଲି ସେ ଜଳର ତାଣ୍ଡବ ।"

ଉମରକୋଟର ହେତୁରେ କବି ଓଡ଼ିଶାର ପ୍ରାକୃତିକ ଦୃଶ୍ୟର ଯେଉଁ ବର୍ଣ୍ଣନା କରିଛନ୍ତି ତାହା ତାଙ୍କର ପରବର୍ତ୍ତୀ କାବ୍ୟମାନଙ୍କରେ ଅନେକ ସ୍ଥଳରେ ପ୍ରକାଶ ପାଇଅଛି । ବାମଣ୍ଡା ରାଜାଙ୍କ ସହିତ ତାଙ୍କର ସମ୍ପର୍କ ଏହି ପତ୍ରରେ ସୂଚିତ ହୋଇଅଛି । କବିବର ରାଧାନାଥ ଯେଉଁଠାରେ ସୁଯୋଗ ପାଇଛନ୍ତି ସେଠାରେ କାବ୍ୟର ପ୍ରସଙ୍ଗକ୍ରମରେ ବାମଣ୍ଡା ବିଷୟ ବା ବାମଣ୍ଡାଧିପଙ୍କ ବିଷୟ ବର୍ଣ୍ଣନା କରିଛନ୍ତି । ମହାଯାତ୍ରା ମହାକାବ୍ୟରେ କବି ବର୍ଣ୍ଣନା କରିଛନ୍ତି,

"ଦୈବ୍ୟ ଅବଧାନେ ଆସ୍ଥି ଏଗୀତ ତୁମ୍ଭର
ହେ ବୀରେନ୍ଦ୍ର ମନ୍ତ୍ରନାଦ-ପ୍ରଚାର ପତି,
ବାମଣ୍ଡାମଣ୍ଡଳେଶ୍ୱର, ଉତ୍କଳମଣ୍ଡନ,
ତୁମ୍ଭ ଶୁଭ-ଆବିର୍ଭାବେ ଦୋଳନ୍ତି ଉଲ୍ଲାସେ;
ଦେବଦୁର୍ଗ, ଦେବ, ଏବେ ତୀର୍ଥ ସାରସ୍ୱତ,
ବୁଧହଂସ-କେଳିସରଃ ଅବଦ୍ୟା ଉଷରେ,
ରଜତ କାଞ୍ଚନ ମୁକ୍ତାମଣିରେ ରଚିତ
ଧନମତ୍ତ ଭୂପଙ୍କର ଚିର୍ଣ୍ଣିଧନରାଶି;
ତୁଚ୍ଛ ଅଳଙ୍କାରେ ତୁମ୍ଭେ ପ୍ରୀତ ନବନାଇ,
ଅପ୍ରାକୃତ ଅଳଙ୍କାର ଖୋଜିଲ ଯତନେ,
ହେ ନୃପସବିତା, ପଶି କବିତା ଭଣ୍ଡାରେ,
ସେ ଭଣ୍ଡାରୁ ବାଛି ବାଛି ସଜାଡ଼ି କୌଶଳେ
ଦେଖାଇଲ ନବଭୂଷା ଉତ୍କଳ ବଧୂକେ ।"

ଏହିପରି ଭାବରେ କବିଙ୍କର ଭାବରାଜି ମଧ୍ୟରେ ତାଙ୍କର ଅନୁଭୂତିର ରୂପାୟନ ଅତ୍ୟନ୍ତ ହୃଦ୍ୟ ହୋଇଅଛି । କେନ୍ଦୁଝର ବା ଲହଡ଼ାରେ କବିବର ରାଧାନାଥ ଯେଉଁସବୁ ଦୃଶ୍ୟ ଅବଲୋକନ କରିଛନ୍ତି ସେସବୁର ବର୍ଣ୍ଣନା ତାଙ୍କର କାବ୍ୟମାନଙ୍କରେ ଅତ୍ୟନ୍ତ ସଂକ୍ଷିପ୍ତ ପରିସରରେ ହେଲେହେଁ ମନୋହର ରୂପ ଧାରଣ କରିଅଛି ।

ବାମଣ୍ଡା ରାଜସଭାରେ ଲିଖିତ ପାଞ୍ଚପଦ କବିତା ବା ଭ୍ରମଣକାହାଣୀର ପଥ ରାଧାନାଥଙ୍କର ସାହିତ୍ୟ ସୃଷ୍ଟିରେ କୌଣସି ଗୁରୁତ୍ୱପୂର୍ଣ୍ଣ ଭୂମିକାର ଅଧିକାରୀ ନୁହନ୍ତି ; ମାତ୍ର କବିବର ରାଧାନାଥଙ୍କର ବାମଣ୍ଡାରାଜ ସୁଢ଼ଳଦେବଙ୍କ ସହିତ ସମ୍ପର୍କ ଏବଂ ତାଙ୍କ ଉତ୍ସାହରେ ଓଡ଼ିଆ ସାହିତ୍ୟର ଉନ୍ନତିଲାଗି ନୂତନ କ୍ଷେତ୍ରର ସୃଷ୍ଟିକୁ କେବେହେଲେ ଅସ୍ୱୀକାର କରାଯାଇ ନପାରେ । ବନ୍ଦ୍ୟୋପାଧ୍ୟାୟ ବାମଣ୍ଡାରାଜଙ୍କର ଓଡ଼ିଆ ସାହିତ୍ୟ ପ୍ରତି ଅନୁରାଗ ଓ ଓଡ଼ିଆ ସାହିତ୍ୟର ଉନ୍ନତିଲାଗି ଦେବଗଡଠାରେ ଜଗନ୍ନାଥବଲ୍ଲଭ ପ୍ରେସ୍ ସ୍ଥାପନ, ସମ୍ବଲପୁର ହିତୈଷିଣୀର ସୃଷ୍ଟି ପ୍ରଭୃତି ବିଷୟ କେବେହେଲେ ବିସ୍ମୃତ ହେବାର ନୁହେଁ ।

୧୮୮୭ ସାଲରେ ବାମଣ୍ଡାର ରାଜଧାନୀ ଦେବଗଡଠାରେ ରାଜା ବାସୁଦେବ ସୁଡଳଦେବ ଜଗନ୍ନାଥବଲ୍ଲଭ ପ୍ରେସ୍ ନାମକ ଏକ ମୁଦ୍ରାଯନ୍ତ୍ର ସ୍ଥାପନ କରିଥିଲେ । ରାଧାନାଥଙ୍କ ସହିତ ତାଙ୍କର ସାକ୍ଷାତ ହେବା ଫଳରେ ଆଲୋଚନା କ୍ରମେ ୧୮୮୭ ସାଲରେ "ସମ୍ବଲପୁର ହିତୈଷିଣୀ" ନାମକ ଏକ ସାପ୍ତାହିକ ପତ୍ରିକା ପ୍ରକାଶ କରାଗଲା । ପଣ୍ଡିତ ନୀଳମଣି ବିଦ୍ୟାରତ୍ନଙ୍କ ସମ୍ପାଦନାରେ ଏହି ପତ୍ରିକା ଓଡ଼ିଆ ସାହିତ୍ୟର ଉନ୍ନତିକଳ୍ପେ ସୁଦୃଢ ପଦକ୍ଷେପ ନେଇପାରିଥିଲା । ରାଧାନାଥ-ରାୟ, ମଧୁସୂଦନ ରାଓ, ଲାଲ୍ ରମାନାରାୟଣ ରାୟ, ବିଶ୍ୱନାଥ କର, ଫକୀର ମୋହନ ସେନାପତି, ଭୋଳାନାଥ ସାମନ୍ତରାୟ, ଗୋବିନ୍ଦ ଚନ୍ଦ୍ର-ମହାପାତ୍ର, ଦାମୋଦର କବିରତ୍ନ, ଚିନ୍ତାମଣି ମହାପାତ୍ର, ଗଙ୍ଗାଧର ମେହେର, ଚନ୍ଦ୍ରମୋହନ ମହାରଣା, ପଣ୍ଡିତ ଆର୍ତ୍ତତ୍ରାଣ ଶତପଥୀ, ଡାକ୍ତର ରାମକୃଷ୍ଣ ସାହୁ, ପଣ୍ଡିତ ମଧୁସୂଦନ ତର୍କବାଚସ୍ପତି, ପଣ୍ଡିତ ଚିନ୍ତାମଣି ମିଶ୍ର, ପଣ୍ଡିତ ଭାଗୀରଥୀ ରଥ, ଯୁବରାଜ ସଚ୍ଚିଦାନନ୍ଦ, ରାଜକୁମାର ବଳଭଦ୍ରଦେବ, ଜଳନ୍ଧର ଦେବ, ଦୀନବନ୍ଧୁ ପ୍ରଧାନ, କରୁଣାକର ସାହୁ, ଶ୍ୟାମସୁନ୍ଦର ନନ୍ଦ ପ୍ରମୁଖ ବହୁ ପ୍ରଥିତଯଶା କବି ଓ ଲେଖକଙ୍କର ଲେଖାରେ ହିତୈଷିଣୀର ପୃଷ୍ଠାମାନ ମଣ୍ଡିତ ହୋଇଥିଲା । କବିବର ରାଧାନାଥଙ୍କର ଚାରିଖଣ୍ଡ କାବ୍ୟ ଓ ଯଯାତିକେଶରୀ କାବ୍ୟ ପ୍ରଥମେ ହିତୈଷିଣୀରେ ହିଁ ପ୍ରକାଶ ପାଇଥିଲା ।

ଓଡ଼ିଆ ସାହିତ୍ୟର ଉନ୍ନତି ଲାଗି କବିବର ରାଧାନାଥ ସୁଡ଼ଳ ଦେବଙ୍କଠାରୁ ଅମୂଲ୍ୟ ପ୍ରେରଣା ଲାଭ କରିଥିବା ଯୋଗୁଁ ତାଙ୍କର କାବ୍ୟ କବିତାରେ ବାମଣ୍ଡା ତଥା ବାମଣ୍ଡାରାଜାଙ୍କର ପ୍ରଶସ୍ତି ପ୍ରକାଶ ପାଇଅଛି । ଆଧୁନିକ ଓଡ଼ିଆ ସାହିତ୍ୟର ଆଲୋଚନା ପ୍ରସଙ୍ଗରେ ଏହି ବିଷୟକୁ ଭୁଲିଗଲେ ଚଳିବ ନାହିଁ । ଭ୍ରମଣକାରୀର ପତ୍ରରେ କବିବର ରାଧାନାଥଙ୍କର ଅନୁଭୂତି ଯେପରି ଭାବରେ ପ୍ରକାଶ ପାଇଅଛି, ସେହି ଅନୁଭୂତି ପୁଣି ସମୟ କ୍ରମେ ତାଙ୍କର କାବ୍ୟକବିତାରେ ପ୍ରକାଶ ପାଇଅଛି ।

# ନନ୍ଦିକେଶ୍ୱରୀ

୧୮୮୭ ସାଲ ନଭେମ୍ବର ମାସରେ ନନ୍ଦିକେଶ୍ୱରୀ କାବ୍ୟ କଟକ ଭିକ୍ଟୋରିଆ ପ୍ରେସ୍‌ରୁ ପ୍ରକାଶିତ ହୋଇଥିଲା । ଭିକ୍ଟୋରିଆ ପ୍ରେସ୍ ଦୁର୍ଲଭଦେବଙ୍କ ପ୍ରେରଣାବଳେ କଟକରେ ପ୍ରତିଷ୍ଠିତ ହୋଇଥିଲା । ନନ୍ଦିକେଶ୍ୱରୀ କାବ୍ୟ ପ୍ରକାଶ ପାଇବା ସଙ୍ଗେ ସଙ୍ଗେ ଆଲୋଚକମାନଙ୍କର ଦୃଷ୍ଟି ଆକର୍ଷଣ କରିଥିଲା । ନନ୍ଦିକେଶ୍ୱରୀ କାବ୍ୟର କଥାବସ୍ତୁକୁ ଉପସ୍ଥାପନ କରିବା ପାଇଁ କବି ନନ୍ଦିକେଶ୍ୱରୀ 'ପୀଠକୁ ଉପଯୁକ୍ତ ସ୍ଥାନ ରୂପରେ ଗ୍ରହଣ କରିଅଛନ୍ତି । କବିବର ରାଧାନାଥଙ୍କର ଅନ୍ୟାନ୍ୟ କାବ୍ୟମାନଙ୍କର କଥାବସ୍ତୁ ଉପସ୍ଥାପନା ଲାଗି ଯେଉଁ କୌଶଳ ଗୃହୀତ ହୋଇଅଛି ନନ୍ଦିକେଶ୍ୱରୀ କାବ୍ୟପାଇଁ ସେହି କୌଶଳ ଅନୁସୃତ ହୋଇଅଛି । କାବ୍ୟର ଶେଷାଂଶରେ କବିଙ୍କର ବର୍ଣ୍ଣନାରେ ଏହା ପ୍ରକାଶ ପାଇଅଛି । ନନ୍ଦିକେଶ୍ୱରୀ କାବ୍ୟର କଥାବସ୍ତୁ ପାଇଁ ରାଧାନାଥ ଗ୍ରୀକ୍ ପୁରାଣର ସିଲା ଉପାଖ୍ୟାନ ଓ ବାଇରନ୍‌ଙ୍କର ସିଜ୍ ଅଫ୍ କୋରିନ୍ଥ କାବ୍ୟକୁ ଗ୍ରହଣ କରିଅଛନ୍ତି । ଏହି କାବ୍ୟର କଥାବସ୍ତୁରେ କବି ଓଡ଼ିଶାର ଇତିହାସକୁ କେତେକାଂଶରେ ଗର୍ଭିତ କରିବାକୁ ଚେଷ୍ଟା କରି ନିଜର କଳ୍ପନାପ୍ରବଣତାର ପରିଚୟ ଦେବା ସଙ୍ଗେ ସଙ୍ଗେ ଐତିହାସିକ ଉପାଦାନର ମୂଲ୍ୟକୁ ଅସ୍ୱୀକାର କରିଅଛନ୍ତି । ଏହି କାବ୍ୟର କଥାବସ୍ତୁରେ ଯେଉଁ କେତେକ ଅଂଶ ଓଡ଼ିଶାର ଇତିହାସ ସ୍ୱରୂପ ପ୍ରତିଭାତ ହୁଏ, ତାହା ଯଥାର୍ଥରେ ଇତିହାସ ବୋଲି କୁହାଯାଇ ପାରିବ ନାହିଁ ।

କାବ୍ୟଟି ଦୁଇଗୋଟି ସର୍ଗରେ ବିଭକ୍ତ ହୋଇଅଛି । ପ୍ରଥମ ସର୍ଗରେ କାବ୍ୟସ୍ଥିତ ବିଷୟବସ୍ତୁର ଭୂମିକା ପ୍ରଦତ୍ତ ହୋଇଅଛି ଓ ଦ୍ୱିତୀୟ ସର୍ଗରେ କଥାବସ୍ତୁର ଗତି ଓ ପରିଣତି ବର୍ଣ୍ଣିତ

ହୋଇଅଛି । ପ୍ରଥମ ସର୍ଗରେ ଉତ୍କଳ ପ୍ରକୃତିର ଅମର ଆଲେଖ୍ୟ ଅଙ୍କିତ ହୋଇଅଛି ବୋଲି କୁହାଯାଇପାରେ । କାବ୍ୟର ଆରମ୍ଭରେ କାଠଯୋଡ଼ି ନଦୀର ସମରସଜ୍ଜା ବର୍ଣ୍ଣିତ ହୋଇଅଛି । ଉତ୍କଳର ରାଜଧାନୀ ବାରାବାଟୀ ଦୁର୍ଗରେ ଉତ୍କଳନରେଶ ସୁବର୍ଣ୍ଣକେଶରୀ ଅବସ୍ଥାନ କରୁଥାଆନ୍ତି । ତାଙ୍କର ରାଜତ୍ୱ ସମୟରେ କଳିଙ୍ଗ ନଗରୀର ରାଜା ଚୋଡ଼ଗଙ୍ଗଦେବ ଉତ୍କଳ ଆକ୍ରମଣ କଲେ । ଚୋଡ଼-ଗଙ୍ଗଦେବଙ୍କର ସୈନ୍ୟବଳ ଓ ଶକ୍ତିସାମର୍ଥ୍ୟ ଅତ୍ୟଧିକ ପରିମାଣରେ ଥିଲା । ଚୋଡ଼ଗଙ୍ଗ କଟକ ନଗରୀ ପର୍ଯ୍ୟନ୍ତ ଅଗ୍ରସର ହୋଇ କାଠଯୋଡି ନଦୀ ତୀରରେ ଶିବିର ସ୍ଥାପନ କଲେ । ଚୋଡ଼ଗଙ୍ଗଙ୍କର ସୈନ୍ୟମାନଙ୍କ ସହିତ ଯୁଦ୍ଧକ୍ଷେତ୍ରରେ ସମ୍ମୁଖୀନ ହେବାପାଇଁ ଉତ୍କଳର ବିଭିନ୍ନ ଅଞ୍ଚଳରୁ ବହୁ ବୀରସୈନିକ ଆସିଥିଲେ । ସେମାନଙ୍କ ବିଷୟ ବର୍ଣ୍ଣନା କରିବା ପ୍ରସଙ୍ଗରେ କବି ଉତ୍କଳର ବିଭିନ୍ନ ସ୍ଥାନର ପ୍ରାକୃତିକ ଦୃଶ୍ୟର ବାସ୍ତବ ତଥା ମନୋରମ ଚିତ୍ର ଅଙ୍କନ କରିଅଛନ୍ତି ।

ଚୋଡ଼ଗଙ୍ଗ ଦେବଙ୍କର ଆକ୍ରମଣ ଏପରି ପ୍ରବଳ ଥିଲା ଯେ ଉତ୍କଳର ବୀରମାନେ ବାରମ୍ବାର ପ୍ରତିରୋଧ କରିବାକୁ ଚେଷ୍ଟାକରି ମଧ୍ୟ ବିଫଳମନୋରଥ ହେଲେ । ଉତ୍କଳ ନରେଶ ସୁବର୍ଣ୍ଣକେଶରୀ ସ୍ୱଳ୍ପ ପରେ ଯୁଦ୍ଧ ହାରି ଶେଷରେ ବାରାବାଟୀ ଦୁର୍ଗର ଦ୍ୱାରରୁଦ୍ଧ କରିବା ପାଇଁ ଆଦେଶ ଦେଲେ ଏବଂ ଏହି ଆକ୍ରମଣରୁ ଉତ୍କଳକୁ ରକ୍ଷା କରିବା ପାଇଁ ଗଡଚଣ୍ଡୀଙ୍କ ମନ୍ଦିରରେ ଅନଶନ କରି ଅଧା ପଡିଲେ । ଚଣ୍ଡୀ ସୁବର୍ଣ୍ଣକେଶରୀଙ୍କୁ ସ୍ୱପ୍ନାଦେଶ ଦେଲେ ଯେ ଗଙ୍ଗାଙ୍କ ବାକ୍ୟ ଅନୁସାରେ ଶିବ ଚୋଡ଼ଗଙ୍ଗଙ୍କୁ ଉତ୍କଳର ସିଂହାସନରେ ଆସୀନ କରିବା ପାଇଁ ଇଚ୍ଛା କରିଅଛନ୍ତି । ଶିବଙ୍କର ଇଚ୍ଛା କେବେହେଲେ ବିଫଳ ହୋଇ ନପାରେ । ସମ୍ମୁଖ ସମରରେ ଚୋଡ଼ଗଙ୍ଗଙ୍କୁ ପରାଜିତ କରିବା ସମ୍ଭବ ନୁହେଁ । ତେଣୁ ଗଡ଼ଦ୍ୱାର ରୁଦ୍ଧ କରି ଗଡ଼ମଧ୍ୟରେ ରହିବାକୁ ପଡ଼ିବ । ଚଣ୍ଡୀ ରାଜାଙ୍କୁ ଏକ ଜୈବମଣି ଦାନକରି କହିଲେ ଯେ ସେହିମଣି ରାଜାଙ୍କର ଶିରରେ ଥିବା ପର୍ଯ୍ୟନ୍ତ ଶତ୍ରୁପକ୍ଷର ବୀରମାନେ କେବେହେଲେ ଗଡମଧ୍ୟରେ ପ୍ରବେଶ କରିପାରିବେ ନାହିଁ ।

ରାଜା ଯେବେ ଅସାବଧାନତା ବଶତଃ ସେହି ମଣିଟିକୁ ହରାଇ ବସନ୍ତି
ତେବେ ତାର ପରିଣାମରେ ସେ ଉତ୍କଳର ସିଂହାସନ ହରାଇ
ବସିବେ । ଚଣ୍ଡୀଙ୍କର ଏହି ଆଦେଶ ଅନୁସାରେ ରାଜା ନିଦ୍ରାଭଙ୍ଗିବା
କ୍ଷଣି ଗଡଦ୍ୱାର ରୁଦ୍ଧ କରିବାପାଇଁ ଆଦେଶ ଦେଲେ ।

ଗ୍ରେଡ଼ଗଙ୍ଗଙ୍କର ସୈନ୍ୟମାନେ ବହୁଦିନ ଧରି ଗଡ଼ମଧ୍ୟରେ
ପ୍ରବେଶ କରିବାକୁ ଚେଷ୍ଟାକରି ସଫଳକାମ ହୋଇ ପାରିଲେ ନାହିଁ ।
ସେମାନେ ଯୁଦ୍ଧ କରି କରି କ୍ରମେ ଧୈର୍ଯ୍ୟହରା ହୋଇପଡ଼ିଲେ ।
ଏପରି ଅବସ୍ଥା ଦେଖି ଗଡ଼ ଅଧିକାର କରିବାର ଆଶା ଗ୍ରେଡ଼ଗଙ୍ଗଙ୍କ
ମନରୁ କ୍ରମେ ମିଳେଇ ଯିବାକୁ ବସିଲା । ଗ୍ରେଡ଼ଗଙ୍ଗଙ୍କର ସୈନ୍ୟମାନେ
ନିଜଦେଶକୁ ଫେରିଯିବା ଲାଗି ଚିନ୍ତା କଲେ । ଯେଉଁଦିନ ସୈନ୍ୟମାନେ
ସ୍ୱଦେଶକୁ ପ୍ରତ୍ୟାବର୍ତ୍ତନ କରିବା ଲାଗି ଠିକ୍ କରିଥିଲେ ତାର
ପୂର୍ବଦିନ ଗ୍ରେଡ଼ଗଙ୍ଗ ସଭାରେ ପ୍ରକାଶ କଲେ ଯେ ସେ ଗଙ୍ଗାଙ୍କ
ଦ୍ୱାରା ସ୍ୱପ୍ନାଦିଷ୍ଟ ହୋଇଛନ୍ତି । ଉତ୍କଳରୁ ବୌଦ୍ଧଧର୍ମର ଉଚ୍ଛେଦସାଧନ
କରି ଉତ୍କଳରେ ବୈଷ୍ଣବ ଧର୍ମର ପ୍ରସାର ପାଇଁ ସେ ଇଚ୍ଛା କରନ୍ତି ।
ସେତେବେଳକୁ ଉତ୍କଳର ସେନାପତି ବାସୁଦେବ ବିଦ୍ରୋହ କରି
ଗ୍ରେଡ଼ଗଙ୍ଗଙ୍କ ଶିବିରରେ ଉପସ୍ଥିତ ହୋଇ ସାରିଥାଆନ୍ତି ।

ଦକ୍ଷିଣରୁ ଆସିଥିବା ଅକ୍ରମଣକାରୀ ଗ୍ରେଡ଼ଗଙ୍ଗଙ୍କର
ସୈନ୍ୟମାନେ ସ୍ୱଦେଶକୁ ପ୍ରତ୍ୟାବର୍ତ୍ତନ କରୁଅଛନ୍ତି ବୋଲି ସମ୍ବାଦ
ଯେତେବେଳେ ବଡ଼ନାସି ଗଡ଼ରେ ପହୁଞ୍ଚିଲା ସେତେବେଳେ
ବଡ଼ନାସି ଗଡ଼ମଧ୍ୟରେ ଥିବା ଉତ୍କଳର ବୀରମାନେ ଅତ୍ୟନ୍ତ
ଆନନ୍ଦିତ ହେବା ନିତାନ୍ତ ସ୍ୱାଭାବିକ । ସେମାନେ ଅତ୍ୟନ୍ତ
ହର୍ଷୋତ୍‌ଫୁଲ୍ଲ ଚିତ୍ତରେ ଗଡ଼ଚଣ୍ଡୀଙ୍କର ଆରାଧନା ପାଇଁ ଆଡ଼ମ୍ବରପୂର୍ଣ୍ଣ
ଆୟୋଜନରେ ଲାଗିପଡ଼ିଲେ । ଗ୍ରେଡ଼ଗଙ୍ଗଙ୍କର ପ୍ରତ୍ୟାବର୍ତ୍ତନ
ସମ୍ବାଦରେ ଉତ୍କଳରେ ସମସ୍ତେ ଯେତେବେଳେ ଆନନ୍ଦିତ
ସେତେବେଳେ ଜଣେ ମାତ୍ର ଆନନ୍ଦ ଅନୁଭବ କରିପାରିଲେ ନାହିଁ ।
ସେ ହେଉଛନ୍ତି ଉତ୍କଳର ରାଜବାଳା ନନ୍ଦିକା । ରବି ଅସ୍ତ
ସମୟରେ ସେତେବେଳେ ଗଡ଼ ମଧ୍ୟରେ ସମସ୍ତେ ନିଦ୍ରାଭିଭୂତ

ନନ୍ଦିକା ସେତେବେଳେ କ୍ରୋଧିତ । ତାଙ୍କର ନାଁଥିଲି ତାଙ୍କୁ ଚନ୍ଦ୍ରାଠାରୁ ପାଗଳାମି କହିଦେଲା । ଯୁଦ୍ଧ କ୍ଷେତ୍ରରେ ଚୋଡ଼ଗଙ୍ଗ ଯୁଦ୍ଧ କରିବା ସମୟରେ ଗଡ଼ ମଧ୍ୟରେ ଥାଇ ନନ୍ଦିକା ତାଙ୍କୁ ବାରମ୍ବାର ନିରୀକ୍ଷଣ କରି ତାଙ୍କର ରୂପ ଓ ବୀରତ୍ୱରେ ଏପରି ମୁଗ୍ଧ ହୋଇ ପଡ଼ିଥିଲେ ଯେ ସେ ନିଜକୁ ଚୋଡ଼ଗଙ୍ଗଙ୍କର ପ୍ରଣୟିନୀ ଭାବରେ ଉତ୍ସର୍ଗ କରି ସାରିଥିଲେ । ସେ ଯେତେବେଳେ ଶୁଣିଲେ ଯେ ଚୋଡ଼ଗଙ୍ଗ ମାତ୍ର ଗୋଟିଏ ବର୍ଷର ଅବସାନ ପରେ ସ୍ୱଦେଶକୁ ପ୍ରତ୍ୟାବର୍ତ୍ତନ କରିବେ ଚୋଡ଼ଗଙ୍ଗଙ୍କର ସେହି ଅପୂର୍ବ ରୂପୈଶ୍ୱର୍ଯ୍ୟ ଆଉ ତାଙ୍କର ଦୃଷ୍ଟି ପଥାରୂଢ଼ ହେବ ନାହିଁ ସେତେବେଳେ ସେ ଅଭିମାନରେ ବିଚଳିତ ହୋଇ ପଡ଼ିଲେ ।

ଉତ୍କଳର ମନ୍ତ୍ରୀ ବାସୁଦେବ ସୁବର୍ଣ୍ଣକେଶରୀଙ୍କ ନିକଟରେ ଏହା ପୂର୍ବରୁ ପ୍ରସ୍ତାବ ଦେଇଥିଲେ ଯେ ଉତ୍କଳର ନରେଶ ଚୋଡ଼ଗଙ୍ଗଙ୍କୁ ନିଜର ଜାମାତା ପଣରେ ବରଣ କରି ତାଙ୍କ ହସ୍ତରେ ଉତ୍କଳର ସିଂହାସନ ଅର୍ପଣ କରନ୍ତୁ । ମାତ୍ର ଏହି ପ୍ରସ୍ତାବରେ ଉତ୍କଳ ନରେଶ ଆଦୌ ସମ୍ମତ ହେଲେ ନାହିଁ । ଫଳରେ ବାସୁଦେବ ବିଦ୍ରୋହୀ ହେଲେ ଏବଂ ସ୍ୱଦେଶର ମର୍ଯ୍ୟାଦାକୁ ଲଙ୍ଘନ କରି ଚୋଡ଼ଗଙ୍ଗଙ୍କ ଶିବିରରେ ଉପସ୍ଥିତ ହୋଇ ତାଙ୍କ ପକ୍ଷରେ ଯୋଗଦେଲେ । ବାସୁଦେବଙ୍କ ସହାୟତାରେ ଚୋଡ଼ଗଙ୍ଗ ଉତ୍କଳ ଆକ୍ରମଣ କରିଥିଲେ ।

ନନ୍ଦିକା ବହୁ ଚିନ୍ତାପରେ ସ୍ଥିର କଲେ ଯେ ସେ ଚୋଡ଼ଗଙ୍ଗଙ୍କ ଶିବିରକୁ ଯାଇ ତାଙ୍କ ନିକଟରେ ନିଜର ମନର କଥା ପ୍ରକାଶ କରିବେ । ସେ ମନେ କରିଥିଲେ ଯେ ତାଙ୍କ କଥା ଶୁଣି ହୁଏତ ଚୋଡ଼ଗଙ୍ଗ ତାଙ୍କୁ ପତ୍ନୀରୂପେ ଗ୍ରହଣ କରିବେ । ଏହା ଫଳରେ ଉଭୟଙ୍କର ମନର ବାସନା ପୂରଣ ହେବ ଏବଂ ଉତ୍କଳ ଯୁଦ୍ଧର ପରାଭବରୁ ରକ୍ଷା ପାଇବ । ନନ୍ଦିକା ଏପରି ଭାବରେ ପ୍ରେମ ପାଗଳିନୀ ହୋଇ ପଡ଼ିଥିଲେ ଯେ ସେତେବେଳେ ତାଙ୍କ ସମ୍ମୁଖରେ ଦେଶ, ପିତାମାତା, ମାନସମ୍ମାନ କୌଣସିଟି ବଡ଼ ମନେ ହୋଇ

ନଥିଲା । ପିତା ଶୋଇଥିବା ଅବସ୍ଥାରେ ସେ ଅତ୍ୟନ୍ତ ନିର୍ମମ ଭାବରେ ତାଙ୍କ ମସ୍ତକରୁ ଜୈନମଣିଟି ବାହାର କରିନେଲେ ଏବଂ ଦକ୍ଷିଣ ଦିଗର ଦୁର୍ଗ ଦ୍ୱାରଟି ଖୋଲି ସେହି ପଥରେ ବାହାରିଗଲେ ।

ସେତେବେଳକୁ ରାତିର ଶେଷ ପ୍ରହର—ଚନ୍ଦ୍ର ଅସ୍ତୋନ୍ମୁଖୀ । ନନ୍ଦିକା ଯାଇ ଗ୍ରେଡ଼ରଙ୍ଗଙ୍କର ଶିବିରର ଦ୍ୱାର ଦେଶରେ ଉପସ୍ଥିତ ହେଲେ । ଗ୍ରେଡ଼ରଙ୍ଗ ସେତେବେଳେ ଶିବିର ସମ୍ମୁଖରେ ବସି ଯୁଦ୍ଧ ବିଷୟରେ ଚିନ୍ତାମଗ୍ନ ଥିଲେ । ଅପ୍ରତ୍ୟାଶିତ ଭାବରେ ସମ୍ମୁଖରେ ଜଣେ ଯୁବତୀଙ୍କୁ ଦେଖି ତାଙ୍କର ବିସ୍ମୟ ସୀମା ଅତିକ୍ରମ କଲା । ନନ୍ଦିକା ଅତି ନିକଟରେ ନିଜର ପ୍ରେମିକ ଗ୍ରେଡ଼ରଙ୍ଗଙ୍କୁ ଦେଖି ତାଙ୍କ ରୂପଲାବଣ୍ୟରେ ଆହୁରି ମୁଗ୍ଧ ହେଲେ ଓ ନିଜର ପରିଚୟ ସଙ୍ଗେ ସଙ୍ଗେ ନିଜର ଅଭିଳାଷ ଗ୍ରେଡ଼ରଙ୍ଗଙ୍କ ନିକଟରେ ପ୍ରକାଶ କଲେ । ପିତାଙ୍କ ମସ୍ତକରୁ ନେଇ ଯାଇଥିବା ଜୈନମଣିଟିକୁ ଗ୍ରେଡ଼ରଙ୍ଗଙ୍କ ହାତକୁ ଟେକିଦେଲେ ନନ୍ଦିକା; ପ୍ରତିଦାନରେ ମାଗିଲେ କେବଳ ତାଙ୍କର ପ୍ରଣୟ ।

ଏପରି ଏକ ଅପ୍ରତ୍ୟାଶିତ ପରିସ୍ଥିତି ଗ୍ରେଡ଼ରଙ୍ଗଙ୍କ ଚିତ୍ତବୃତ୍ତିକୁ ବଦଳାଇ ଦେଲା । ସେ ନନ୍ଦିକାଙ୍କର ଏତାଦୃଶ କାର୍ଯ୍ୟକୁ ଅତ୍ୟନ୍ତ ନିର୍ମମ ଭାବରେ ଆକ୍ଷେପ କଲେ । ସେ ନନ୍ଦିକାଙ୍କୁ ଦେଶଦ୍ରୋହୀ ରାଜଦ୍ରୋହୀ ପିତୃଦ୍ରୋହୀ ବୋଲି ଧିକ୍କାର କଲେ । ନନ୍ଦିକା ଆଶା କରିଥିଲେ କଣ ଆଉ ପାଇଲେ କଣ ? ଭ୍ରମ ତାଙ୍କର ଏତେବେଳେ ଦୂର ହେଲା । ସେ ବୁଝିପାରିଲେ କେତେବଡ଼ ଅପରାଧ ସେ କରିଛନ୍ତି । ଅନୁତାପର ଦଂଶନରେ ସେ ଆକୁଳା ହେଲେ । ଗ୍ରେଡ଼ରଙ୍ଗ ନନ୍ଦିକାଙ୍କୁ ଗ୍ରହଣ କରିବା ପରିବର୍ତ୍ତେ ଗୋଟିଏ ଶିବିକାରେ ବସାଇ ତାଙ୍କୁ ବଡ଼ାନାସି ଦୁର୍ଗକୁ ପଠାଇଦେଲେ । ଶିବିକାରେ ବସି ଘରକୁ ଫେରିବା ପଥରେ ନନ୍ଦିକା ପିତାମାତା ଓ ସ୍ୱଜନଙ୍କ ଉଦ୍ଦେଶ୍ୟରେ ଖଣ୍ଡିଏ ପତ୍ର ଲେଖି ଅପମାନ ଓ ଲଜ୍ଜାରେ ବିଚଳିତ ହୋଇ ଆତ୍ମହତ୍ୟା କଲେ । ବଡ଼ାନାସି ଦୁର୍ଗରେ ଶିବିକା

ପଡ଼ନ୍ତି । ଶିବଜୀଉ ଦ୍ୱାର ଖୋଲିବାରୁ ଦେଖାଗଲା ଯେ ନନ୍ଦିନୀ ମୃତ୍ୟୁ ବରଣ କରିଅଛନ୍ତି । ସୁବର୍ଣ୍ଣକେଶରୀ କନ୍ୟାର ଏହିପରି ପରିଣତିରେ ଦୁଃଖିତ ହେଲେ ଏବଂ ମହାନଦୀ ଗର୍ଭରେ ଥିବା ପଥରରେ ତାଙ୍କର ଶବସଂସ୍କାର କରାଇ ସେଠାରେ ଏକ ସମାଧି ନିର୍ମାଣ କଲେ । ସେହି ସ୍ଥାନରେ ଚଣ୍ଡୀମନ୍ଦିର ମଧ୍ୟ ନିର୍ମିତ ହେଲା । ସେହିଦିନଠାରୁ ଚଣ୍ଡୀ ଓ ନନ୍ଦିନୀଙ୍କ ନାମ ଅନୁସାରେ ସେହି ପଥରର ନାମ ହେଲା ନନ୍ଦିକେଶରୀ ପଥର ।

କନ୍ୟାର ବିୟୋଗରେ ଶୋକସନ୍ତପ୍ତ ଉତ୍କଳକେଶରୀ ଚୋଡ଼ଗଙ୍ଗଙ୍କ ହସ୍ତରେ କୌସ୍ତୁଭମଣି ଓ ଉତ୍କଳସିଂହାସନ ଅର୍ପଣ କରି ବଡ଼ମାନସି ଗଡ଼ ତ୍ୟାଗକରି ଚାଲିଗଲେ । ବାଙ୍କୀ ନିକଟସ୍ଥ ସୁବର୍ଣ୍ଣପୁର ଠାରେ ସେ ତାଙ୍କର ଜୀବନର ଶେଷଭାଗ ଅତିବାହିତ କଲେ । ଚୋଡ଼ଗଙ୍ଗ କୌସ୍ତୁଭମଣିକୁ ନିଜେ ନରଖି ପୁରୀଧାମର ଶ୍ରୀଜଗନ୍ନାଥଙ୍କୁ ଉପହାର ସ୍ୱରୂପ ପ୍ରଦାନ କରିଥିଲେ ।

ନନ୍ଦିକେଶରୀ କାବ୍ୟର କଥାବସ୍ତୁ ପାଇଁ କବିବର ରାଧାନାଥ ଓଡ଼ିଶାର ଇତିହାସକୁ କେତେକାଂଶରେ ତାଙ୍କର ପ୍ରେରଣା ଭାବରେ ଗ୍ରହଣ କରିଅଛନ୍ତି । ଚୋଡ଼ଗଙ୍ଗଙ୍କର ଉତ୍କଳ ଆକ୍ରମଣ ବିଷୟ ଓଡ଼ିଶାର ଇତିହାସରେ ଯେଉଁ ଭାବରେ ରହିଅଛି ତାହାକୁ ରାଧାନାଥ ସେହିଭଳି ଭାବରେ ଗ୍ରହଣ ନକରି କାବ୍ୟ ନିର୍ମାଣର ପରିକଳ୍ପନାରେ ଭିନ୍ନଭାବରେ ଉପସ୍ଥାପିତ କରିଅଛନ୍ତି । ନନ୍ଦିକେଶରୀ କାବ୍ୟ ପାଠ କରିବା ସମୟରେ ରାଜା ସୁବର୍ଣ୍ଣକେଶରୀ, ମନ୍ତ୍ରୀ ବାସୁଦେବ, ଚୋଡ଼ଗଙ୍ଗ ପ୍ରଭୃତି ଉତ୍କଳ ଇତିହାସର ଚରିତ୍ରଭାବରେ ଆବିର୍ଭୂତ ନହୋଇ କବି କଳ୍ପନାର ସମ୍ପୂର୍ଣ୍ଣ ଏକ ନୂତନଜଗତର ଚରିତ୍ର ଭାବରେ ଆବିର୍ଭୂତ ହୁଅନ୍ତି । ରାଜବାଳା ନନ୍ଦିନୀ କବିଙ୍କ ଲେଖନୀରେ ଏକ ବିସ୍ମୟକର ସୃଷ୍ଟି । ସେଥିପାଇଁ କବି କିପରି ଭାବରେ ପାଶ୍ଚାତ୍ୟ ସାହିତ୍ୟ ଉପରେ ନିର୍ଭର କରିଅଛନ୍ତି ତାହା ଆଲୋଚନାରୁ ଜଣା ପଡ଼ିଥାଏ । ନନ୍ଦିନୀ ଚରିତ୍ର ସୃଷ୍ଟି ପାଇଁ କବିବର ରାଧାନାଥ ଗ୍ରୀକ୍ ପୁରାଣର ସିଲାଙ୍କୁ କିପରି ଭାବରେ ଗ୍ରହଣ କରିଅଛନ୍ତି ତାହା ଏଠାରେ ପରୀକ୍ଷା କରି ଦେଖାଯାଇ ପାରେ ।

କ୍ରୀଟ୍‌ର ରାଜା ମିନସ୍ । ସେ ମେଗାରେ ଦୁର୍ଗ ଅବରୋଧ କରିଥିଲେ । ଏହି ଯୁଦ୍ଧ ବହୁଦିନ ଧରି ଚାଲିଥିଲା । ମେଗାରାର ରାଜାଙ୍କ ନାମ ନିସାସ୍ । ତାଙ୍କର କନ୍ୟା ସିଲା । ମିନସ୍ ଯେତେବେଳେ ଯୁଦ୍ଧ କରୁଥିଲେ ସେତେବେଳେ ଦୁର୍ଗର ଗମ୍ବୁଜ ଉପରୁ ସିଲା ମିନସଙ୍କର ଶୌର୍ଯ୍ୟ ଓ ସାହସ ଦେଖି ମୁଗ୍ଧ ହୋଇଥିଲେ । ସେ ମିନସ୍‌ଙ୍କ ପ୍ରତି ପ୍ରେମାବେଗରେ ଆକୃଷ୍ଟ ହୋଇ ପଡ଼ିଥିଲେ । ସେ ତାଙ୍କର ପିତାଙ୍କଠାରୁ ଜାଣିଥିଲେ ଯେ ମିନସ୍ କେବେହେଲେ ଯୁଦ୍ଧରେ ଜୟଲାଭ କରିପାରିବେ ନାହିଁ । ନିସାସ୍‌ଙ୍କ ମଥାରେ କେବଳ ସୁନେଲୀ ରଙ୍ଗର କେଶ ଥିଲା । ତାହା ଗଡ଼ଦେବୀଙ୍କର ରକ୍ଷା କବଚ ବୋଲି ନିସାସ୍ ସମସ୍ତଙ୍କୁ ଜଣାଇ ଦେଇଥିଲେ । ସିଲା କ୍ରମେ କ୍ରମେ ମିନସ୍‌ଙ୍କ ପ୍ରତି ଅଧିକ ଆକୃଷ୍ଟ ହୋଇ ଯୁଦ୍ଧ କିପରି ବନ୍ଦ ହେବ ଏବଂ ସେ କିପରି ମିନସ୍‌ଙ୍କୁ ତାଙ୍କର ପତିରୂପେ ପାଇବେ ସେଥିପାଇଁ ବାରମ୍ବାର ଚିନ୍ତାକଲେ । ମିନସ୍‌ଙ୍କୁ ପାଇବା ପାଇଁ ସେ ଏତେ ପ୍ରେମାନ୍ଧ ହୋଇ ପଡ଼ିଲେ ଯେ ଦିନେ ରାତିରେ ସମସ୍ତେ ଶୋଇ ପଡ଼ିଥିବା ସମୟରେ ଅତ୍ୟନ୍ତ ସାବଧାନତା ସହକାରେ ପିତାଙ୍କ ମସ୍ତକରୁ ସ୍ୱର୍ଣ୍ଣାଭ କେଶଗୁଚ୍ଛକୁ କାଟିନେଲେ । ତାପରେ ସେ ମିନସ୍‌ଙ୍କର ଶିବିରରେ ପହଞ୍ଚି ତାଙ୍କ ନିକଟରେ ପ୍ରଣୟ ଭିକ୍ଷା କଲେ । ମିନସ୍‌ଙ୍କର ହୃଦୟର ପ୍ରତିଦାନରେ ସେ ପିତାଙ୍କର ରକ୍ଷାକବଚ ସେହି ସ୍ୱର୍ଣ୍ଣାଭ କେଶଗୁଚ୍ଛକୁ ଦେବାପାଇଁ ଇଚ୍ଛା ପ୍ରକାଶ କଲେ । ମିନସ୍ ଥିଲେ ଯଥାର୍ଥରେ ବୀର । ସେ ସିଲାଙ୍କର ଏପ୍ରକାର ଆଚରଣ ପ୍ରତି ଅସନ୍ତୋଷ ପ୍ରକାଶ କରି ସିଲାଙ୍କୁ ଫେରାଇ ଦେଲେ । ସିଲା ଲଜ୍ଜା ଓ ଅପମାନରେ ଜର୍ଜରିତା ହୋଇ ରାଜପ୍ରାସାଦକୁ ଫେରିଲେ ନାହିଁ । ମେଗାରା ଜୟକରିବା ପରେ କ୍ରୀଟାନ୍‌ମାନେ ନିଜ ଦେଶକୁ ଫେରିବା ସମୟରେ ମିନସ୍ ଯେଉଁ ଜାହାଜରେ ବସିଥିଲେ ସେହି ଜାହାଜର ପଛଅଙ୍ଗକୁ ଧରିବାପାଇଁ ସମୁଦ୍ରକୁ ଡେଇଁ ପଡ଼ିଲେ । ସେହି ସମୟରେ ତାଙ୍କର ପିତା ନିସାସ୍ ଗୋଟିଏ ଈଗଲ୍ ରୂପ ଧାରଣ କରି ତାଙ୍କ ଉପରକୁ ଝାମ୍ପ ଦେଲେ । ସିଲା ସମୁଦ୍ରରେ ବୁଡ଼ି ମରିପାରିଲେ ନାହିଁ । ସେ ପ୍ରୀତି ଉଦ୍ଦେଶ୍ୟରେ ପାଣ୍ଡୁଶିଗ୍ନା

ହୋଇଥିବାରୁ କୌଣସି ଏକ ଦେବତା ତାଙ୍କ ପ୍ରତି ଦୟାର୍ଦ୍ର ହୋଇ ତାଙ୍କୁ ଗୋଟିଏ ପକ୍ଷୀରେ ପରିଣତ କରିଦେଲେ ।

ଗ୍ରୀକ ପୁରାଣର ସିଲ୍ଲ ଉପାଖ୍ୟାନର କାବ୍ୟବସ୍ତୁ ସହିତ ରାଧାନାଥଙ୍କର ଚନ୍ଦ୍ରଭାଗା କାବ୍ୟର କଥାବସ୍ତୁର ସାମଞ୍ଜସ୍ୟ ବହୁ ପରିମାଣରେ ପରିଲକ୍ଷିତ ହୋଇଥାଏ । ଚନ୍ଦ୍ରଭାଗା ଚରିତ୍ର ସୃଷ୍ଟିର ଅନ୍ତରାଳରେ ସିଲ୍ଲ ଚରିତ୍ରର ପ୍ରେରଣା ରାଧାନାଥଙ୍କଠାରେ ଲକ୍ଷ୍ୟ କରିବାର କଥା । ମାତ୍ର ସିଲ୍ଲ ଚରିତ୍ରର ପରିଣତି ଚନ୍ଦ୍ରଭାଗା ଚରିତ୍ରର ପରିଣତି ସହିତ ସମାନ ନୁହେଁ । ସିଲ୍ଲ ଗୋଟିଏ ପକ୍ଷୀରେ ପରିଣତ ହେଲେ ମାତ୍ର ଚନ୍ଦ୍ରଭାଗା ଆତ୍ମହତ୍ୟା କଲେ । ଏଥିପାଇଁ କବିବର ରାଧାନାଥ ବିଖ୍ୟାତ ଇଂରେଜ କବି ବାଇରନ୍‌ଙ୍କର କୋରିନ୍ଥ ଅବରୋଧ (Seige of Corinth ର କଥାବସ୍ତୁ ଏବଂ ବର୍ଣ୍ଣନାଶୈଳୀକୁ କପରି ଭାବରେ ଗ୍ରହଣ କରିଅଛନ୍ତି ତାହା ଦେଖିବାର କଥା ।

ଆଲ୍‌ପ୍ ହେଉଅଛନ୍ତି ଭେନିସ୍‌ର ଜଣେ ସମ୍ଭ୍ରାନ୍ତ ବୀର । ଭେନିସ୍‌ର ରାଜକୁମାରୀ ଫ୍ରାନ୍‌ସେସ୍‌କୋଙ୍କ ସହିତ ତାଙ୍କର ଗଭୀର ପ୍ରଣୟ ଥିଲା । ଆଲ୍‌ପ୍ ଏବଂ ଫ୍ରାନ୍‌ସେସ୍‌କୋଙ୍କର ମିଳନ ହେବା ପୂର୍ବରୁ ଆଲ୍‌ପ୍ ନିଜର ଦୁଷ୍କୃତି ଲାଗି ରାଜ୍ୟରୁ ନିର୍ବାସିତ ହେଲେ । ଏଥିରେ ସେ ଅତ୍ୟନ୍ତ କ୍ଷୁବ୍ଧ ହୋଇ ରାଜାଙ୍କଠାରୁ ପ୍ରତିଶୋଧ ନେବା ପାଇଁ କାର୍ଯ୍ୟପନ୍ଥା ଗ୍ରହଣ କଲେ । ସେ ମୁସଲମାନ ଧର୍ମ ଗ୍ରହଣ କରି ତୁର୍କ ସେନାଧକ୍ଷ ରୂପେ ଭେନିସ୍ ଆକ୍ରମଣ କଲେ ଓ କୋରିନ୍ଥ ଦୁର୍ଗ ଅବରୋଧ କଲେ । ଆଲ୍‌ପଙ୍କର ଉଦ୍ଦେଶ୍ୟ ଥିଲା ଭେନିସ୍‌ର ରାଜା ମିନୋଟିଙ୍କୁ ପରାସ୍ତ କରି ଫ୍ରାନ୍‌ସେସ୍‌କୋଙ୍କୁ ବିବାହ କରିବା । ରାଜକୁମାରୀ ଫ୍ରାନ୍‌ସେସ୍‌କୋ ଆଲ୍‌ପଙ୍କ ପ୍ରେମପାଶରେ ଆବଦ୍ଧା ମଧ୍ୟ, ମାତ୍ର ସେ ତାଙ୍କର ପ୍ରେମପାଇଁ ଅତିମାତ୍ରାରେ ସ୍ୱାର୍ଥସର୍ବସ୍ୱା ନଥିଲେ । ନିଜ ଦେଶ, ଧର୍ମ ଓ ପିତାଙ୍କର ସମ୍ମାନକୁ ସେ ନିଜର ପ୍ରେମ ଅପେକ୍ଷା ଅଧିକ ଉଚ୍ଚସ୍ଥାନ ଦେଉଥିଲେ । ବହୁଦିନ ଧରି ଦୁର୍ଗ ଅବରୋଧ ଲାଗି ରହିଲା । ଯୁଦ୍ଧ ଚାଲିଥିବା ସମୟରେ ଦିନେ ରାତିରେ ରାଜକୁମାରୀ ଫ୍ରାନ୍‌ସେସ୍‌କୋ ଦୁର୍ଗ ବାହାରକୁ ଆସି ନିର୍ଜନରେ ଆଲ୍‌ପଙ୍କୁ ଭେଟିଲେ । ରାଜକୁମାରୀ ଫ୍ରାନ୍‌ସେସ୍‌କୋ

ଅଲପ୍‌ଙ୍କୁ ଅନୁରୋଧ କଲେ ଯେ ସେ ମୁସଲମାନ ଧର୍ମ ପରିତ୍ୟାଗ କରି ନିଜ ଧର୍ମକୁ ଫେରିଆସନ୍ତୁ ଏବଂ ନିଜ ଦେଶର ମର୍ଯ୍ୟାଦା ରକ୍ଷା କରନ୍ତୁ । ଆଲପ୍ ପ୍ରତିଶୋଧ ବହ୍ନିରେ ଜଳୁଥିଲେ ସେ ସେ ପ୍ରକୃତିସ୍ଥଙ୍କ କଥାକୁ ଆଦୌ ଗୁରୁତ୍ୱ ଦେଲେ ନାହିଁ । ପ୍ରକୃତିସ୍ଥଙ୍କ ବାଧ୍ୟହୋଇ ଆତ୍ମହତ୍ୟା କଲେ । ତାପରେ ଅଲପ୍ ଯୁଦ୍ଧକ୍ଷେତ୍ରରେ ନିହତ ହେଲେ ଓ ତାଙ୍କର ସୈନ୍ୟମାନେ ପ୍ରତିଶୋଧପରାୟଣ ହୋଇ କୋଣାର୍କ ଦୁର୍ଗ ଓ କୋଣାର୍କର କୀର୍ତ୍ତିକୁ ଧ୍ୱଂସ କରିଦେଲେ ।

କବିବର ରାଧାନାଥ ପାଶ୍ଚାତ୍ୟ ମହାକାବ୍ୟର ଏହି ଦୁଇଟି କଥାକୁ ସମ୍ମିଶ୍ରଣ କରି ତାଙ୍କର ମନ ଅନୁଯାୟୀ ତାଙ୍କ କାବ୍ୟଲାଗି କଥାବସ୍ତୁ ନେବାପାଇଁ ଯେତେବେଳେ ଇଚ୍ଛା କରିଛନ୍ତି ସେତେବେଳେ ତାଙ୍କ ସମ୍ମୁଖରେ ଓଡ଼ିଶାର ଇତିହାସରେ ଥିବା ଚୋଡ଼ଗଙ୍ଗଙ୍କ ବିଷୟ ତାଙ୍କୁ ଯଥେଷ୍ଟ ପ୍ରେରଣା ଯୋଗାଇଅଛି । ପ୍ୟାରୀମୋହନଙ୍କର ଉତ୍କଳ ଇତିହାସରେ ଅଛି, "ସୁବର୍ଣ୍ଣକେଶରୀ କେଶରୀବଂଶର ଶେଷରାଜା ଥିଲେ । ତାଙ୍କର ସନ୍ତାନ ସନ୍ତତି ନଥିଲେ । ଦକ୍ଷିଣ ଦେଶରୁ ଚୋଡ଼ଗଙ୍ଗ ନାମକ ଜଣେ ନୃପତି ଓଡ଼ିଶା ଆକ୍ରମଣ କରି ୧୧୩୨ ଖ୍ରୀଷ୍ଟାବ୍ଦରେ ତାଙ୍କୁ ପରାସ୍ତ କରିଥିଲେ ଓ ସେହି ପରାଭବ ସଙ୍ଗେ ଓଡ଼ିଶାରୁ କେଶରୀବଂଶୀୟ ରାଜତ୍ୱ ଲୋପପ୍ରାପ୍ତ ହେଲା ।" (୧) ଏହାଛଡ଼ା ଚୋଡ଼ଗଙ୍ଗ ଦେବଙ୍କ ବିଷୟରେ ଆଉ ଯାହା ଶୁଣାଯାଏ ସେସବୁକୁ ପ୍ୟାରୀମୋହନ ଐତିହାସିକ ସତ୍ୟରୂପରେ ଗ୍ରହଣ କରିନାହାନ୍ତି ।

ମାଦଳା ପାଞ୍ଜିରେ କେଶରୀବଂଶର ବିଲୟ ଲାଗି ବାସୁଦେବ ରଥ ଓ ଚୋଡ଼ଗଙ୍ଗଙ୍କ ପ୍ରସଙ୍ଗ ବର୍ଣ୍ଣିତ ହୋଇଅଛି । ତାହା କହୁଅଛି, "ଶ୍ରୀ ସିଦ୍ଧେଶ୍ୱର କଲ୍ପବଜା ବ୍ରାହ୍ମଣ ବାସୁଦେବ ରଥଠାରୁ ଅଡ଼ର ଟଙ୍କା ନେଇ ଅଭ ଅରେ ଚୋଡ଼ା ଜଣଙ୍କୁ ଲେଖିଦେଲାକୁ ଏ ବାସୁଦେବ ରଥ ରାଜାଙ୍କୁ କହିଲେ, ମୁଁ ଟଙ୍କା କରଜ ଦେଇଅଛି । ଏବେ ଚୋଡ଼ାଜଣେ ଉତ୍କଳ ଲଗାଉଅଛି । ରାଜା କହିଲେ, ତୁ ବାସୁ ସେ ଚୋଡ଼ା ଜାଣେ । ଏମନ୍ତ ଶୁଣି ସେ ବ୍ରାହ୍ମଣ ବାସୁଦେବ ରଥ ଭୁବନେଶ୍ୱରଙ୍କୁ ସେବା କଲେ । ଭୁବନେଶ୍ୱର ଦେବ ପ୍ରସନ୍ନ ହୋଇଲେ ।

(୧) ଓଡ଼ିଶାର ଇତିହାସ—ପ୍ୟାରୀମୋହନ ଆଚାର୍ଯ୍ୟ—ପୃ. ୭୦ .

ଏ କାହ୍ନୁଦେବ ଉଠେ ଜମାଇଲେ କେଶରୀ ରାଜତ୍ୱ ନ କରିବେ । ଏଥିକୁ ଭୁବନେଶ୍ୱରଦେବ ଆଜ୍ଞା ହୋଇଲା । ତୁ ଦକ୍ଷିଣ ଯାଇ ଗୋକର୍ଣ୍ଣେଶ୍ୱରଙ୍କ ତୀର୍ଥରୁ ଯେ ବାଣ୍ଡିପୁଅ ଚୋରଗଙ୍ଗ ଅଛି ତାକୁ ଆମ୍ଭ ଆଜ୍ଞାରେ ଆଣି ଓଡ଼ିଶାରେ ରାଜତ୍ୱ କରାଇବୁ । × × × × ଗୋକର୍ଣ୍ଣେଶ୍ୱରଙ୍କ ତୀର୍ଥ ଗଙ୍ଗାଦେବୀ ଗର୍ଭୁ ସମ୍ଭୂତ । ଗଙ୍ଗବଂଶରୁ ଜାତ ଆଦ୍ୟ ପାଠ ଚୁଡ଼ଙ୍ଗଦେବ । ଏ ଚୁଡ଼ଙ୍ଗଦେବ ବେତାଳସାଧ । ଜିତାଇମା ନଗ୍ରଦେବୀ କଳତା । ମାନ୍ଧାତାପଣ୍ଟ ମନ୍ତ୍ରୀ କେଶରୀବଂଶ ରାଜା ସିଦ୍ଧକଳ୍ପ କେଶରୀ ରଜାକୁ ଉଚ୍ଛିନ୍ନ କରାଇ ରାଜା କଲା ।"(୧)

କବିବର ରାଧାନାଥ ଓଡ଼ିଶାର ଇତିହାସରୁ ସୁବର୍ଣ୍ଣକେଶରୀ ଓ ଚୋଡ଼ଗଙ୍ଗଙ୍କ ବିଷୟ ଗ୍ରହଣ କରି ଯେଉଁ ଦୁହିଁଙ୍କୁ ସିଲ୍‌ଭେଲ୍ଲର ନିନାସ୍ ଓ ମିନସ୍‌ଙ୍କ ଢାଞ୍ଚାରେ ଗଢ଼ିଛନ୍ତି । ନନ୍ଦିନୀଙ୍କୁ ସିଲ୍ଭ ରୂପରେ ଗଢ଼ି ମଧ୍ୟ ନନ୍ଦିନୀଙ୍କ ଜୀବନର ଶେଷ ପରିଣତିକୁ ସିଲ୍ଭଙ୍କ ଜୀବନର ଶେଷ ପରିଣତିର ଅନୁରୂପ କରିନାହାନ୍ତି । ନନ୍ଦିନୀଙ୍କର ଆତ୍ମହତ୍ୟା କୋଣାର୍କ ଅବଲୋକରେ ଫ୍ରାନ୍‌ସେସ୍ କୋଙ୍କର ଆତ୍ମହତ୍ୟାର ଅନୁରୂପ ମଧ୍ୟ ନୁହେଁ । ନନ୍ଦିନୀ ଚୋଡ଼ଗଙ୍ଗଙ୍କ ଦ୍ୱାରା ପ୍ରତ୍ୟାଖ୍ୟାତା ହେବା ପରେ କ୍ଷୋଭ ଓ ଅପମାନରେ ଆତ୍ମହତ୍ୟା କରିଛନ୍ତି ; ମାତ୍ର ଫ୍ରାନ୍‌ସେସ୍‌କୋ ଏପ୍ରକାର ପରିସ୍ଥିତିରେ ପଡ଼ି ଆତ୍ମହତ୍ୟା କରିନାହାନ୍ତି । ସେ ଆଲ୍‌ଫ୍‌ଙ୍କୁ ନିଜଧର୍ମକୁ ଫେରିଆସି ସ୍ୱଦେଶର ମହତ୍ତ୍ୱ ରକ୍ଷା କରିବା ନିମନ୍ତେ ବହୁତ ଅନୁରୋଧ କରି ବିଫଳ ମନୋରଥ ହେଲେ । ସେ ଭାବିଲେ, ଆଲ୍‌ଫ୍ ଯୁଦ୍ଧକରି ତାଙ୍କ ପିତାଙ୍କୁ ପରାସ୍ତ କରିବେ ଏବଂ କୋରିନ୍ଥ୍ ଦୁର୍ଗକୁ ଧ୍ୱଂସ କରିଦେବେ । ସେ ହୁଏତ ଆଲ୍‌ଫ୍‌ଙ୍କୁ ତାଙ୍କର ଜୀବନର ସାଥୀରୂପେ ପାଇବେ ; ମାତ୍ର ସ୍ୱଦେଶର ଅବସ୍ଥା କଣ ହେବ ? ଏହି ସମ୍ମାନବୋଧ ତାଙ୍କୁ ଆତ୍ମହତ୍ୟା କରିବାକୁ ବାଧ୍ୟ କରିଛି । ପାଶ୍ଚାତ୍ୟ ସାହିତ୍ୟର କଥାବସ୍ତୁର କଙ୍କାଳକୁ ରାଧାନାଥ ଗ୍ରହଣ କରିଥିଲେହେଁ ସ୍ୱକୀୟ ପ୍ରତିଭା ବଳରେ ତାଙ୍କ କାବ୍ୟର କଥାବସ୍ତୁ ତଥା ଚରିତ୍ରମାନଙ୍କର ବିକାଶ ଏବଂ ପରିଣତିରେ ସ୍ୱାତନ୍ତ୍ର୍ୟ ପ୍ରଦର୍ଶନ କରିଅଛନ୍ତି ।

---

(୧) ମାଦଳା ପାଞ୍ଜି—ପ୍ରାଚୀ ସଂସ୍କରଣ—ପୃ. ୨୧—୨୨.

ନନ୍ଦକେଶରୀ କାବ୍ୟର ପୂର୍ବାର୍ଦ୍ଧରେ କାଠଯୋଡ଼ି ଘାଟରେ ସମରସଜ୍ଜାର ଚିତ୍ର ବାଇରନ୍‌ଙ୍କ କାବ୍ୟର ସମରସଜ୍ଜା ଚିତ୍ରର ଅନୁରୂପ ହୋଇଅଛି ବୋଲି କୁହାଯାଇପାରେ । କବିବର ରାଧାନାଥ ବର୍ଣ୍ଣନା କରିଛନ୍ତି,

"କାଠଯୋଡ଼ି ଘାଟରେ ଶୋଭିଲା ଶିବିର,
କୋଳାହଳ ପୂର୍ଣ୍ଣ କାଠଯୋଡ଼ି ତୀର,
ଧାଡ଼ି ଧାଡ଼ି ହୋଇ ମହାନଦ ପାଏ,
ଶୁଭ୍ର ତାମ୍ବୁ ଶୋଭେ ଖଡ଼ ଶୈଳ ପ୍ରାୟେ,
ଉଡ଼ିଲା କେତନ ମନ୍ଦ ସମୀରଣେ,
ଝକଝକେ ଅସ୍ତ୍ର ପ୍ରଦୋଷ କିରଣେ,
ବାଦ୍ୟ ବେଦେ କମ୍ପିଲା ଅବନୀ,
ନଦୀ ଗର୍ଭେ ଉଠେ ଶବ୍ଦ ପ୍ରତିଧ୍ୱନି,
ଲକ୍ଷ ବସିଛନ୍ତି କାହିଁ ଯୋଧାଦଳ,
କ୍ଷଣେ କ୍ଷଣେ ଉଠେ ହର୍ଷ କୋଳାହଳ,
କାହିଁ ତଲବାର ଖେଳ-ବାଡ଼ି କରେ,
ବଳ୍ଲି ପରସ୍ପେ ଝଟକେ ପୌରକଟେ,
ମଲ୍ଲଯୁଦ୍ଧେ କାହିଁ କମ୍ପେ ରଙ୍ଗସ୍ଥଳୀ,
ତାଳି ଦେଉଛନ୍ତି ଦର୍ଶକ ମଣ୍ଡଳୀ,
କାହିଁ ଅଶ୍ୱାରୋହୀ ଯେଣେ ଅଶ୍ୱବର
କଦମେ ବୁଲଇ ଦେଖାଇ ଚକ୍କର,
କାହୁଁ ଧରି ଅସ୍ତ୍ର ମାଜୁଛନ୍ତି ଲୋକେ,
କାହିଁ ଅବା ଗଳ୍ପ କରୁଛନ୍ତି ଥୋକେ,
ଅବଗାହୁଛନ୍ତି କସ ଦଳେ ଦଳେ
ବୃଷମ ଚରାଏ ଦନ୍ତୀ ସ୍ରୋତଜଳେ,
ଦାଣ୍ଡେବଳ ଅଶ୍ୱାବର ତରୁତଳ
ରଢ଼ିବାଉଛି ଗ୍ରୀବା ଟେକି ଲମ୍ବଦଳ,
ଖରବାହୀ ଯେତେ ଉର୍ଦ୍ଧ୍ୱପଦ ଜନ୍ତ,
ଭ୍ରମୁଛନ୍ତି ଦୂରେ ଦଳେ ଦଳେ ଚରି ।"

ବାଇରନ୍‌ଙ୍କ ପଦ୍ୟରେ ଅଛି,

"On dun Cithaeron's ridge appears
The gleam of twice ten thousand spears;
And downward to the Isthmian plain,
From shore to shore of either main,
The tent is pitch'd, the crescent shines
Along the Moslem's leaguering lines;
And the dusk Spahi's bands advance
Beneath each bearded pacha's glance;
And for and wide as eye can reach
Thd turban'd cohorts throng the beach;
And there the Arab's camel kneels,
And there his steed the Tartar wheels;
The Turcoman hath left his herd,
The sabre round his loins to gird;
And there the volleying thunders pour,
Till waves grow smoother to the roar.
The trench is dug, the cannon's breath
Wings the far hissing globe of death;
Fast whirl the fragments from the wall,
Which crumbles with the ponderous ball;
And from that wall the foe replies,
O'er dusty plain and smoky skies,
With fires that answer fast and well
The summons of the Infidel."

ମିନସ୍ ଏବଂ ଆଲ୍‌ପ୍‌ଙ୍କର ଶିବିର ସମୁଦ୍ରର ତୀରଦେଶରେ ବର୍ଣ୍ଣିତ ହୋଇଅଛି । କରିନ୍ଥ ନଗରୀ ନିକଟରେ ମ୍ଲେଚ୍ଛଗଣଙ୍କର ଶିବିରର ବର୍ଣ୍ଣନା ଦେବା ନିମନ୍ତେ କବିବର ପ୍ରଧାନତଃ ସମୁଦ୍ରର ସ୍ଥିତି ପାଇନାହାନ୍ତି । ତେଣୁ ସେ କାଠଯୋଡ଼ି ତୀରକୁ ଶିବିର ସ୍ଥାପନର ସ୍ଥାନରୂପେ ବର୍ଣ୍ଣନା କରିଅଛନ୍ତି । ପାର୍ଶ୍ୱଜାଳ ଧରି ପୁଷ୍କଳଗିବା

ଓ ଦୁର୍ଗ ଅବରୁଦ୍ଧ ହେବା ହେତୁ ଉପର୍ଯ୍ୟୁକ୍ତ ଦୁଇଗୋଟି କାବ୍ୟର କଥାରେ ଯେପରି ବର୍ଣ୍ଣିତ ରାଧାନାଥଙ୍କ କାବ୍ୟରେ ସେହିପରି ବର୍ଣ୍ଣିତ ।

ଉତ୍କଳ ନରେଶଙ୍କ ପକ୍ଷରେ ଯୁଦ୍ଧ କରିବାପାଇଁ ଉତ୍କଳର ବିଭିନ୍ନ ସ୍ଥାନରୁ ବୀରମାନେ ଆସି ସମବେତ ହୋଇଥିଲେ । ଏହି ପ୍ରସଙ୍ଗରେ କବିବର ରାଧାନାଥ ଉତ୍କଳର ବିଭିନ୍ନ ସ୍ଥାନର ପ୍ରାକୃତିକ ବର୍ଣ୍ଣନା ଅତ୍ୟନ୍ତ ଜୀବନ୍ତ ଭାବରେ ଦେଇଅଛନ୍ତି । ଏହି ବର୍ଣ୍ଣନାରେ କବିଙ୍କର ସୌନ୍ଦର୍ଯ୍ୟପ୍ରେମର ଅଦ୍ଭୁତ ପ୍ରକାଶ ଘଟିଅଛି । ଏହି ବର୍ଣ୍ଣନାର କେତେକାଂଶ ଏଠାରେ ଉଦ୍ଧାର କରାଯାଇପାରେ ।

"ବହୁଦ୍ୱାରଶୋଭୀ ପୁର ଚଉଦ୍ୱାର,
ଉତ୍ତର କୋଶଳା ମୌଳି-ଅଳଙ୍କାର,
ସ୍ନେହ ବଢାଇଲେ ବିଳାସିନୀ ପ୍ରିୟା
ଯା ଘାଟକ ଠେଳ ଠକ୍କିଳ ଛତିଆ
ବିନାୟକ ଶୈଳ ଦପ ଦର୍ପଣୀର,
ଉଦ୍‌ଘୋଷ ଯାର ଶୁଭ୍ର ଝର ନୀର,
ଚନ୍ଦନ-ନିକୁଞ୍ଜ-ମଞ୍ଜୁଳା ଅଳଙ୍ଗ
ସୁରୂପା ବିରୂପା ଯହିଁ କଲେ ଗତି,
ବିରଜାମଣ୍ଡଳ ଯେତେବୀର-ପଲ୍ଲୀ,
ପୃଥ୍ୱୀ ମନେ ଯହିଁ ଜଡ଼ିତ ନାଗବଲ୍ଲୀ,
ପରସ୍ପରେ ଭ୍ରମ ନିନ୍ଦିବାରେ ସଦା
ଚମ୍ପାଚୂଡ଼ ଯହିଁ ବଳାନ୍ତ ଶରଧା,
ଭଦ୍ରକ ଯାପାଦେ ବେଢିଅଛି ଛନ୍ଦ,
ଉତ୍କଳେ କାଳନ୍ଦୀ ରୂପିଣୀ ସାଳନ୍ଦୀ ।"

ଏହିପରି ପ୍ରକୃତି ବର୍ଣ୍ଣନାରେ କବିଙ୍କର ଲେଖନୀ ଚଳଚଞ୍ଚଳ ହୋଇ ଉଠିଅଛି । ଏହି ବର୍ଣ୍ଣନାରେ କବିବର ରାଧାନାଥଙ୍କର ପ୍ରତ୍ୟକ୍ଷ ଜ୍ଞାନ ବିଶେଷ ପ୍ରଣିଧାନ ଯୋଗ୍ୟ ।

ଦୀର୍ଘକାଳ ଧରି ଗୈରଗଙ୍କ ବାରାବାଟି ଦୁର୍ଗକୁ ଅବରୁଦ୍ଧ କରି ରଖିବା ଫଳରେ ଗଡ଼ମଧ୍ୟରେ ସୁବର୍ଣ୍ଣକେଶରୀ ଅବରୁଦ୍ଧ ହୋଇ ରହିଲେ । ତାଙ୍କ ଆଦେଶରେ ଗଡ଼ଦ୍ୱାର ରୁଦ୍ଧହେଲା ଓ ସେ ଗଡ଼ଚଣ୍ଡୀଙ୍କର ଶରଣାପନ୍ନ ହେଲେ । ଯୁଦ୍ଧ ବିପଦ ଓ ପରାଜୟରୁ ରକ୍ଷା ପାଇବା ପାଇଁ ମିନସ୍‌ଙ୍କୁ ଫେଟିସ୍ ରକ୍ଷାକବଚ ଦେଇଥିଲେ । ସେହିପରି ଗଡ଼ଚଣ୍ଡୀ ସୁବର୍ଣ୍ଣକେଶରୀଙ୍କୁ ସ୍ୱପ୍ନଦର୍ଶନ ଦେଇ ଜୈତ୍ରମଣି ଦାନ କରିଛନ୍ତି । ଇଲିୟଡ଼ର ରକ୍ଷାକବଚ ଏବଂ ନନ୍ଦକେଶରୀ କାବ୍ୟର ଜୈତ୍ରମଣି ସମାନ ପରିସ୍ଥିତିରେ ପ୍ରଦତ୍ତ ଏବଂ ଉଭୟଙ୍କର ଶକ୍ତି ମଧ୍ୟ ସମାନ । କବିବର ରାଧାନାଥଙ୍କର ବର୍ଣ୍ଣନା ଅନୁସାରେ,

"ସ୍ୱପନେ ଚଣ୍ଡିକା ଭୂପଙ୍କ ଅଗ୍ରତେ
ଉଭାହୋଇ ଆଜ୍ଞା ଦେଲେ ଏହିମତେ,
ଶତ୍ରୁ ତୋର ଦେବବଳେ ବଳଆର
ସମ୍ମୁଖ ସଂଗ୍ରାମେ ଅଟେ ଦୁର୍ନିବାର,
ଦୁର୍ନିବାର ଦାବବହ୍ନି ଯଥା ବନେ
ଶୈଳ ସ୍ରୋତସ୍ୱତୀ ଅଥବା ପ୍ଲାବନେ,
ଦେବୀ ଚନ୍ଦ୍ର ଚୂଡ଼-ମୌଳି-ନିବାସିନୀ
ସହାୟ ତାହାର ସୁରତରଙ୍ଗିଣୀ,
ଗଙ୍ଗାବାକ୍ୟେ ତାକୁ ଦେବ ଚନ୍ଦ୍ରଚୂଡ଼
ବାଞ୍ଛନ୍ତି ଦେବାକୁ ଉତ୍କଳେ ମହୁଡ଼,
ମନାସନ୍ତି ମହାରୁଦ୍ର ଯାହା ମନେ,
ନିଷ୍ପତ୍ତି ରୂପେ ତା ଫଳେ ତ୍ରିଭୁବନେ,
ଶକ୍ତି ନାହିଁ, ବତ୍ସ, କାହାର ଜଗତେ
ନିଷ୍ପତ୍ତିକି ନେବ ନିଜ ଇଚ୍ଛାପଥେ;
ସମ୍ମୁଖ ସଂଗ୍ରାମେ ଶତ୍ରୁ ଜିଣିବାର
ଆଶା ତୁଚ୍ଛ, ରୁଦ୍ଧ କର ଗଡ଼ଦ୍ୱାର;
ଶତ୍ରୁ ଦର୍ପହାରୀ ଏହି ଜୈତ୍ରମଣି
ଚିନ୍ତାମଣି ରୂପେ ପିନ୍ଧିବୁ ନୃମଣି,

ଯାବତ ଏମଣି ଥିବ ତୋର ଶିରେ,
ଭେଦ ନପାରିବେ ଦୁର୍ଗ ଶତ୍ରୁ ଶରେ;
ରଖି ନପାରିଲେ ଏହା ଯତ୍ନ କରି
ରାଜଦଣ୍ଡ ନିବ କରୁଁ ଅପହରି ।"

ବହୁଦିନ ଧରି ଦୁର୍ଗ ଅବରୋଧ କରିବା ସତ୍ତ୍ୱେ ବାରାଣସୀ-ଦୁର୍ଗର ପତନ ଘଟିଲା ନାହିଁ । ଚୋଡ଼ଗଙ୍ଗ ବିଜୟର ଆଶା ପରିତ୍ୟାଗ କରି ସ୍ୱଦେଶ ପ୍ରତ୍ୟାବର୍ତ୍ତନର ନିଷ୍ପତ୍ତି ଗ୍ରହଣ କଲେ । ଏହି ନିଷ୍ପତ୍ତିକୁ କାର୍ଯ୍ୟରେ ପରିଣତ କରିବାର ପୂର୍ବରାତ୍ରରେ ଗଙ୍ଗାଙ୍କ ସହିତ ଚୋଡ଼ଗଙ୍ଗଙ୍କର ସାକ୍ଷାତ କବିବର ରାଧାନାଥଙ୍କର କାବ୍ୟନିର୍ମାଣ କୌଶଳର ଏକ ଦୃଷ୍ଟାନ୍ତ । ବିଦେଶୀ ସାହିତ୍ୟର କଥାବସ୍ତୁ ସହିତ ନିଜସ୍ୱ ପୁରାଣ ଶାସ୍ତ୍ରକୁ ସମନ୍ୱିତ କରିବା ନିମନ୍ତେ ରାଧାନାଥ ଅତ୍ୟନ୍ତ ଯତ୍ନଶୀଳ ହୋଇ ଅଛନ୍ତି । ଗଙ୍ଗାଙ୍କ ସହିତ ଚୋଡ଼ଗଙ୍ଗଙ୍କର ସାକ୍ଷାତ ପ୍ରସଙ୍ଗକୁ ସମୀକ୍ଷା କରି ଅଧ୍ୟାପକ ବେଣୁଧର ରାଉତ ମତପ୍ରଦାନ କରିଛନ୍ତି, "ଚୋଡ଼ଗଙ୍ଗ ଅବସାଦ ଓ ବିଜୟ-ବିଫଳ ଯୁଦ୍ଧର ନିର୍ଣ୍ଣୀତ ଶେଷ ରାତିରେ ଭ୍ରମଣ ପରେ ଗଙ୍ଗାଙ୍କୁ ଭେଟିଲେ, କିନ୍ତୁ ଗଙ୍ଗା ପର୍ବତ ତଳେ ହ୍ରଦଟିଏ ଭିଆଇ ଅବତୀର୍ଣ୍ଣା ହେବାର କଥା, ହୁଏତ ଆଲ୍ଫ ନୀରବ ନିଶୀଥରେ ଫ୍ରାନ୍ସେସ୍କାଙ୍କୁ ଆକସ୍ମିକ ଭେଟିବାର ଗୋଟିଏ ସୂଚନା । କାରଣ ପରିସ୍ଥିତି ପ୍ରାୟ ଏକାପରି । ଉଭୟ କ୍ଷେତ୍ରରେ ଏହା ନିର୍ଣ୍ଣୀତ ଶେଷ ରାତି । ସିନ୍ଧୁରେ ଏ ଶେଷରାତି ଅପ୍ରତ୍ୟାଶିତ । ତଥାପି ଏହା ଉପରେ ଭାଗ୍ୟର ଫଳାଫଳ ନିର୍ଭର କରିଛି । ରାତିର ଉତ୍ତର ଭାଗ । ପର୍ବତ ସନ୍ନିକଟ, ସେଠି ନିକଟରେ ସମୁଦ୍ର, ଏଠି ତୁଙ୍ଗଭଦ୍ରା । ଚୋଡ଼ଗଙ୍ଗ ଏକ ତରୁତଳେ ଧ୍ୟାନମଗ୍ନ, ଆଲ୍ଫ ଚିନ୍ତାମଗ୍ନ । ଆଲ୍ଫ ହଠାତ୍ ଏକ କଣ୍ଠସ୍ୱର ଶୁଣିଲେ । ଚକିତ ହୋଇ ଦେଖିଲେ, ଗୋଟିଏ ଅନିନ୍ଦ୍ୟସୁନ୍ଦରୀ ତରୁଣୀର ମୂର୍ତ୍ତି । ଚମକପଡ଼ି କହୁଛନ୍ତି,

"God of my fathers ! What is here ?
Who art thou ? and wherefore sent
So near a hostile armament ?

ତାପରେ ସେ ଫ୍ରାନ୍‌ସିସ୍କୋ ଆଲ୍‌ଡ୍‌ଙ୍କୁ ସ୍ୱଧର୍ମ ମାହାତ୍ମ୍ୟ ମନେରଖି ସେହିଭଳି କରିବାକୁ କହୁଛନ୍ତି । ତେଣୁ ମାତୃଦେବୀ ଗଙ୍ଗା ମଧ୍ୟ ଫ୍ରାନ୍‌ସିସ୍କୋଙ୍କ ପରି ଧ୍ୟାନମଗ୍ନ ଗୈରଙ୍ଗଙ୍କ ସମ୍ମୁଖରେ ଧର୍ମବୀର ହେବାକୁ ନିର୍ଦ୍ଦେଶ ଦେଉଛନ୍ତି । ସମୁଦ୍ର ସେପରି ସେ କବିର ଦୃଷ୍ଟିରୁ ବାଦ୍ ପଡ଼ିନାହିଁ, ଏଠି ହୁଏତ ସେଇ କଳ୍ପନାରେ ଚୂଡ଼ଙ୍ଗଦେବର ସ୍ମୃତିକୁ ରାଧାନାଥ କବିଭାବରେ ପୁଣି ଥରେ ଅଦ୍ଭୁତ ଭାବରେ ସୃଷ୍ଟି କରିଛନ୍ତି । ଗୈରଙ୍ଗ ଓ ଆଲ୍‌ଡ୍‌ଙ୍କର ଏଇ ସମୁଦ୍ର ଯାତ୍ରାର ଦୃଶ୍ୟ ଏହାପରି ।" (୧)

ଗଙ୍ଗା ଗୈରଙ୍ଗଙ୍କ ନିକଟରେ ଉତ୍କଳରୁ ଶକ୍ତି ଉପାସନ ଦୂରକରି ବୈଷ୍ଣବଧର୍ମର ପ୍ରଚାର କରାଇବା ବିଷୟ ପ୍ରକାଶ କରିଛନ୍ତି ।

"ସମ୍ପ୍ରତିର ଚିହ୍ନ ଉଠାଇବା ଆଶେ
ଆଣିଲି, ବାଳକ, ତୋତେ ଏ ପ୍ରବାସେ,
ଯହିଁ ଦେବବ୍ରତ ଦ୍ୱାପରେ ଯେମନ୍ତ
ସ୍ଥାପିଲେ ବୈଷ୍ଣବଧର୍ମ ଭୂଭାରତେ,
ତୁ ହିଁ ଶାକ୍ତମତ, ଶାକ୍ତ ଅନାଚାର
ଉଠାଇ ବୈଷ୍ଣବ ଧର୍ମକୁ ପ୍ରଚାର
କରିବାକୁ ଏକା ତୁହି ସେ ଭାଜନ,
ଅଛି ଶକ୍ତି ତୋର ଅଛି ପୁଣି ମନ
ରଣେ ଦେଖାଇଲୁ ସାହସ ବିଷମ,
ନ ଡରିଲୁ ଅଗ୍ରେ ଉଗ୍ର ଦେଖି ଯମ;
ଯୁଦ୍ଧବୀରଙ୍କର ଯେତେ ଗୁଣମାନ
ତୋଠାରେ ସକଳ ହୋଇଛି ପ୍ରମାଣ,
ମାତ୍ର ଯୁଦ୍ଧବୀର ନୁହେଁ ଧର୍ମବୀର,
ଜଡ଼ନା ନୁହଇ କେବେ ମଣିହାର;
ଧର୍ମବୀର ବିନା ଧର୍ମସଂସ୍ଥାପନ
କରିବାକୁ ଅନ୍ୟ ନୁହନ୍ତି ଭାଜନ,"

(୧) ରାଧାନାଥ ଚରିତ — ରାଧାନାଥଙ୍କ ନନ୍ଦିକେଶ୍ୱରୀ-ପୃ. ୮୨-୮୩

ଧର୍ମ-ଅସ୍ତ୍ରେ ଯେହୁ କରନ୍ତି ବିଜୟ
ଯୁଦ୍ଧରେ ତାଙ୍କ ମନୁଷ୍ୟ ହୃଦୟ,
ଉପୁଜାଏ ବାହୁବଳ ଦେବ ଦୃଢ଼,
ଧର୍ମବଳ ଆଣିଦଏ ଶତ୍ରୁ ପ୍ରୀତି,
ଧର୍ମଯୁଦ୍ଧେ ସେହି ପ୍ରୀତି ଲଭିବାର
ନିଯୁକ୍ତ ଫିଟାଇଦେବ ତୋତେ ଦ୍ୱାର
ଯୁଝିବାକୁ ହେବ ଏକା ଏ ସମରେ
ତତ୍ତ୍ୱ ସହାୟ ଥିଲେ ହରବରେ,
ଭାଗ୍ୟର ମୀମାଂସା ହେବ ତୋର ଆଜ,
ଲଭିବୁ କି ଚିର ଯଶଃ ଅବା ଲାଜ ।”

ଗଙ୍ଗା ଗୈରଙ୍ଗଙ୍କୁ ଯେଉଁ ବାଣୀ ଶୁଣାଇଛନ୍ତି ତହିଁରେ ମହାନଦୀର ମହିମା ଅତ୍ୟନ୍ତ ଚିତ୍ତାକର୍ଷକ । କବି ପୌରାଣିକ ପ୍ରବାଦଗୁଡ଼ିକୁ ଏକତ୍ରକରି ମହାନଦୀର ମାହାତ୍ମ୍ୟ ପ୍ରକାଶ କରିବା ସଙ୍ଗେ ସଙ୍ଗେ ସ୍ୱଦେଶ ପ୍ରୀତିର ଅପୂର୍ବ ଦୃଷ୍ଟାନ୍ତ ଦେଇଅଛନ୍ତି । ଏହି ବର୍ଣ୍ଣନା ଅତ୍ୟନ୍ତ ଦୀର୍ଘ ହୋଇଅଛି । ଏହି ବର୍ଣ୍ଣନାରେ କବି ବ୍ରାହ୍ମୀ ନଦୀ ପ୍ରସଙ୍ଗରେ ଲେଖିଛନ୍ତି ,

“ ଏହି ସେହି ବ୍ରାହ୍ମୀ ବ୍ରହ୍ମାଣ୍ଡ ପାବନୀ ,
ଯାର କୃପାଯୋଗୁଁ ଉତ୍କଳେ ଅବନୀ
ପ୍ରସବୁଛି ନାନା ଶସ୍ୟ ଅବିରତ ,
ବୈତରଣୀ ସଙ୍ଗେ ହୋଇଣ ସଙ୍ଗତ ,
ଯାର ଜଳରାଶି ଅନୂପ ଉତ୍କଳେ
ମହାସିନ୍ଧୁ ସଙ୍ଗେ ଯୁଝେ କୁତୂହଳେ
ପ୍ରଧାନ ପାଟର ପ୍ରପାତ ଭୀଷଣ
ନିର୍ଜନ ଗହନେ ଗର୍ଜେ ଅନୁକ୍ଷଣ ,
ନୀର-ଆସ୍ତରଣ ଭୃଗୁ-ପୃଷ୍ଠେ ଯାର
ଯାତ୍ରିକଙ୍କୁ ଦିଏ ସହସ୍ର ଧିକ୍କାର ,

ନିରନ୍ତର ଚନ୍ଦ୍ର-ସୀମନ୍ତ ପରଶ୍ୱେ
କନ୍ଦ୍ଧନୁ ସର ଶିରେ ଶୋଭାପାଏ,
ଯହିଁ କେଳିଲୋଳ ଜଳଦେବୀ କେଳି
ଉଧୁଯାଏ ଶତ ସଲିଳ-ହାବେଳି
ରଚିବେ ଯାଙ୍କରେ ରୁଚିର ନବର
ଦୂର ଭବିଷ୍ୟତେ ତୋର ବଂଶଧର"

କାବ୍ୟର ପାଦଟୀକାରେ କବି ସୂଚନା ଦେଇଛନ୍ତି, "ବାମଣ୍ଡାର ରାଜଧାନୀ ଦେବଗଡ଼ ଏହି ଭବିଷ୍ୟଦ୍‌ବାଣୀର ଲକ୍ଷ୍ୟ ଅଟେ; ଚୂଡ଼ଙ୍ଗଦେବ ବାମଣ୍ଡା ରାଜବଂଶର ଆଦିପୁରୁଷ ଅଟନ୍ତି ।" ପୁଣି, କବି ନନ୍ଦିକେଶ୍ୱରୀ କାବ୍ୟକୁ ବାମଣ୍ଡାଧିପ ବାସୁଦେବ ସୁଡଳ ଦେବଙ୍କ ଉଦ୍ଦେଶ୍ୟରେ ଉତ୍ସର୍ଗ କରି ଲେଖିଛନ୍ତି, "ଏହି କ୍ଷୁଦ୍ର ପୁସ୍ତକର ନାୟକ ଆପଣଙ୍କର ପୂର୍ବପୁରୁଷ ଅଟନ୍ତି ଏବଂ ବର୍ତ୍ତମାନ କାଳରେ ଆପଣ ଯେହି ଉଜ୍ଜ୍ୱଳବଂଶର ଗୌରବକେତନ ରୂପେ ଉତ୍କଳଭୂମିକୁ ଅଳଙ୍କୃତ କରିଅଛନ୍ତି ।"

କବିବର ରାଧାନାଥଙ୍କର ଏହି ଉତ୍ସର୍ଗପତ୍ରର ଉକ୍ତି ଉପରେ ମତପ୍ରକାଶ କରି ଅଧ୍ୟାପକ ନଟବର ସାମନ୍ତରାୟ ଲେଖିଛନ୍ତି, "ସୁଡଳ-ଦେବଙ୍କ ପୂର୍ବପୁରୁଷ ଚୋଡ଼ଗଙ୍ଗଦେବ ଓ ନନ୍ଦିକେଶ୍ୱରୀ କାବ୍ୟର ନାୟକ ଚୋଡ଼ଗଙ୍ଗଦେବ ଏକ ଏବଂ ଅଭିନ୍ନ ନୁହନ୍ତି । କାରଣ, ପ୍ରଥମ ଚୋଡ଼ଗଙ୍ଗଦେବ ଏକ ଐତିହାସିକ ବ୍ୟକ୍ତି; କିନ୍ତୁ ଦ୍ୱିତୀୟଟି ଦେଉଛି ଏକ ଐତିହାସିକ ନାମ ମାତ୍ର । ସୁତରାଂ, ଏ କାବ୍ୟର ଉତ୍ସର୍ଗପତ୍ରରୁ ଶେଷଧାଡ଼ି ପର୍ଯ୍ୟନ୍ତ ସର୍ବତ୍ର କେବଳ ମିଥ୍ୟାର ଏକ ମନୋଜ୍ଞ ଆବରଣ ଦିଆଯାଇ ସମଗ୍ର କାବ୍ୟଟିକୁ ମଞ୍ଜୁଳ କରାଯାଇଛି ।" (୧)

ଚୂଡ଼ଙ୍ଗଦେବ ବିଷୟରେ କବି ବର୍ଣ୍ଣନା କରି ଅଛନ୍ତି,
"ନବତୀର୍ଥ ଆଜ ମୋର ଆବିର୍ଭାବେ,
ଉପୁଜିଲ, ବତ୍ସ, ଏ ବିଜନ ଠାବେ,

(୧) ଓଡ଼ିଆ ସାହିତ୍ୟର ଇତିହାସ-ନଟବର ସାମନ୍ତରାୟ—ପୃ. ୨୭୮

ଏହି ତୀର୍ଥେ ଆସି ଏପୁଣ୍ୟ ତିଥିରେ
ପ୍ରତିବର୍ଷେ ସ୍ନାନ କରିବୁ ଏ ଘାରେ,
ବୋଲିଲେ ଏହା ଉତ୍କଳେ ସମସ୍ତେ
ରେତଗଙ୍ଗା ଦହ ତୋର ନାମ ମତେ ।"

କାବ୍ୟର ପାଦଟୀକାରେ କବି ଲେଖିଛନ୍ତି, "ଚୁଡଙ୍ଗଦହ—ଏହି ହ୍ରଦ କଟକରୁ ୪କୋଶ ଦୂରବର୍ତ୍ତୀ ସାରଙ୍ଗଗଡ଼ର ନିକଟସ୍ଥ ଅରଣ୍ୟ ମଧ୍ୟରେ ଅବସ୍ଥିତ । ଏହା ଅତ୍ୟନ୍ତ ଗଭୀର ଏବଂ ଏହାର ଜଳ ଅତି ନିର୍ମଳ । କେହି କେହି କହନ୍ତି ଯେ ଏହା ମଧ୍ୟରେ ଗଙ୍ଗାଦେବୀଙ୍କର ମନ୍ଦିର ଅଛି ଏବଂ ବିଗତ ନଅଙ୍କରେ କିଞ୍ଚିତ ଜଳ ଶୁଷ୍କ ହୋଇଯିବାରୁ ଉକ୍ତ ମନ୍ଦିରର ଚୂଡ଼ା ଦୃଷ୍ଟିଗୋଚର ହୋଇଥିଲା ।" କବିଙ୍କର ଏହି ମତ କିମ୍ବଦନ୍ତୀ ଉପରେ ପ୍ରତିଷ୍ଠିତ । ଏଥିରେ ଐତିହାସିକ ସତ୍ୟର ସତ୍ତ୍ୱା ଆଦୌ ନାହିଁ ବୋଲି କୁହାଯାଇପାରେ ।

ବରାନାସି ଦୁର୍ଗ ବିଷୟରେ କବି ଯେଉଁ ବର୍ଣ୍ଣନା ଦେଇ ଅଛନ୍ତି ତାହାର ଐତିହାସିକତା ବିଷୟରେ ପ୍ରତ୍ନତତ୍ତ୍ୱବିତ୍ ପରମାନନ୍ଦ ଆଚାର୍ଯ୍ୟ ମତ ପ୍ରଦାନ କରିଛନ୍ତି, "୧୯୪୯ ପର୍ଯ୍ୟନ୍ତ କଟକ ସହରର ସ୍ଥାପୟିତା ପ୍ରକୃତ କିଏ, ତାହା ଜଣାଯାଇନଥିଲା । 'ନଗରି ଗ୍ରାମ'ରୁ ପ୍ରାପ୍ତ ତମ୍ବାପଟାରୁ ଜଣାଗଲା ଯେ ଗଙ୍ଗବଂଶୀୟ ନୃପତି ଅନଙ୍ଗଭୀମ ଦେବ ମହାନଦୀ କୂଳରେ 'ଅଭିନବ ବାରଣସୀ କଟକ' ସ୍ଥାପନ କରିଥିଲେ 'ଅଭିନବ ବାରଣସୀ କଟକ' ସ୍ଥାପିତ ହେବା ପୂର୍ବରୁ କଟକ ପଥର ବନ୍ଧର ପ୍ରୟୋଜନ ନଥିଲା । 'କଟକ' ନାମ ବହୁ ପରିବର୍ତ୍ତନର ଅବଶେଷ, । ପ୍ରଥମେ ଅଭିନବ ଶବ୍ଦ ଉଠିଗଲା ଓ 'ବାରଣସୀ କଟକ' ରହିଲା । ମୁସଲମାନ ଇତିହାସରେ 'କଟକ ବନାରସ' ହେଲା । ଶେଷକୁ 'ବାରାଣସୀ' ଶବ୍ଦ ମଧ୍ୟ ଉଠିଗଲା ଓ କେବଳ କଟକ ରହିଲା ମୋଗଲ ରାଜତ୍ୱରେ । ରଘୁନାଥଙ୍କ ବ୍ୟବହୃତ 'ବଡ଼ାନସି', 'ବାରଣସୀ' ଶବ୍ଦର ଅପଭ୍ରଷ୍ଟ ବା ରଘୁନାଥଙ୍କ ପ୍ରୟୋଗ ଅନୁସାରେ ଏହା ଏକ ନୂତନ ଶବ୍ଦ ହୋଇପାରେ । ମୋର ମନହୁଏ 'ବଡ/ନାସି' ଶବ୍ଦର ଉଚ୍ଚାରଣଗତ

ନୌସାଦୃଶ୍ୟ ଥିଲେ ମଧ୍ୟ ସନ୍ଦେହରେ ଏହା ଦୂରହିଁ ନୁହେଁ । ‘ବଡ଼ାନୂଆଗାଁ’ର ଅର୍ଥ ନଥାଇ ‘ନାସି’ ସେଇଁଠାରେ “ବଡ଼ା’ ବା ବନ୍ଧ ହୋଇଅଛି । ମହାନଦୀର ଚନ୍ଦନଘାଟ ଠାରୁ ଦକ୍ଷିଣ କୂଳରେ ଓ କାଠଯୋଡ଼ିର ବାମ କୂଳରେ ପଥରବନ୍ଧ ଗଠିତ ଥିବାର ଦେଖାଯାଏ । ଏବେ କାଠଯୋଡ଼ି ପଥରବନ୍ଧର ପଶ୍ଚିମରେ ସେଇଁଠାରେ ‘ବଡ଼ାନାସି’ ଗ୍ରାମ ଅବସ୍ଥିତ ଅଛି ତାହା ଏବେ କାଠଯୋଡ଼ି ନଦୀର ଗର୍ଭଥିଲା । ରାଧାନାଥଙ୍କ ‘ବଡ଼ାନାସି’ ଗଡ ଆଧୁନିକ “ବଡ଼ାନାସି’ ଗ୍ରାମରେ କଳ୍ପିତ ହୋଇଅଛି । ସପ୍ତଦଶ ଶତାବ୍ଦୀରେ କଟକ ସହର ଅବସ୍ଥାପିତ ହୋଇଥିଲେ ମଧ୍ୟ ତାହାର ଇତିହାସ ଅଦ୍ୟାପି ତମସାଚ୍ଛନ୍ନ ଅଛି । ( ୧ )

ରାଜବାଳା ନନ୍ଦିକା ଜେମାଦେଈଙ୍କ ପୁରରେ ଥାଇ ଶୈରଗଙ୍ଗଙ୍କର ରୂପଦେଖି ଅତ୍ୟନ୍ତ ମୁଗ୍ଧ ହୋଇଥିଲେ । ସେ ଏପରି ଭାବରେ ତାଙ୍କ ପ୍ରତି ମୁଗ୍ଧ ହୋଇଥିଲେ ଯେ ନିଜକୁ ତାଙ୍କ ନିକଟରେ ସମର୍ପଣ କରିଦେଇଥିଲେ । କବିଙ୍କ ବର୍ଣ୍ଣନାରେ ଏହା ଅତ୍ୟନ୍ତ ପ୍ରାକୃତିକ ହୋଇଅଛି ।

“ଶୈରବୀରଙ୍କର ଲଳିତ ମୂରତି,<br>
ଦେଖି ହେଉଥିଲା ହୃଦୟୁ କରତି,<br>
ଦେଖିଲା ଯେଦିନ ଶୈରଙ୍କୁ ରୂପସୀ<br>
ଗଲା ମନ ତାର ନିଜ ବଶୁଁ ଖସି ।”

ତାପରେ ନନ୍ଦିକା ଯେତେବେଳେ ଶୁଣିବାକୁ ପାଇଲେ ଯେ ଶୈରଗଙ୍ଗ ନିଜ ଦେଶକୁ ଫେରିଯାଉଛନ୍ତି ସେତେବେଳେ ତାଙ୍କର ମନୋରାଜ୍ୟରେ ସୃଷ୍ଟି ହେଲା ବିଷମ ଆଲୋଡ଼ନ । ପିତାଙ୍କ ମସ୍ତକରୁ ଦୈବମଣି ଶୈରଜର ସେ ଶୈରଗଙ୍ଗଙ୍କ ଶିବିର ଉଦ୍ଦେଶ୍ୟରେ ଗଡ଼ମଧ୍ୟରୁ ନିର୍ଗତ ହେଲେ । ନନ୍ଦିକା ଯେତେବେଳେ ଶୈରଗଙ୍ଗଙ୍କ ସମ୍ମୁଖରେ ଉପସ୍ଥିତ ହୋଇଛନ୍ତି ସେତେବେଳେ ତାଙ୍କର ଅପୂର୍ବ

( ୧ ) ରାଧାନାଥଙ୍କ ଅନନ୍ୟ ପ୍ରତିଭା—ପରମାନନ୍ଦ ଆଚାର୍ଯ୍ୟ—ପୃ ୪୦-୪୧

ସୌନ୍ଦର୍ଯ୍ୟର ବର୍ଣ୍ଣନା କବିବର ରାଧାନାଥଙ୍କ ଲେଖନୀରେ ଅତ୍ୟନ୍ତ ଚିତ୍ତାକର୍ଷକ ହୋଇଅଛି । ନନ୍ଦିକା ଗ୍ୟେରଗଙ୍ଗଙ୍କ ନିକଟରେ ନୈଷମଣି ଅର୍ପଣ କରି ନିଜର ଅଭିଳାଷ ପ୍ରକାଶ କଲେ । ତାଙ୍କରି ଆଶା ଥିଲା, ଗ୍ୟେରଗଙ୍ଗ ତାଙ୍କୁ ସାଦରେ ଗ୍ରହଣ କରିବେ; ମାତ୍ର ନନ୍ଦିକାଙ୍କର ସବୁ ସ୍ୱପ୍ନ ଓ ଆଶା ଉନ୍ମାଦନାକୁ ଧୂଳିସାତ୍ କରି ଗ୍ୟେରଗଙ୍ଗଙ୍କ ମୁଖରୁ ବାହାରିଲା,

"ଯାର କୀର୍ତ୍ତିବଳ- ଅମରସାକ୍ଷିଣୀ
ନାଭିଦେଶୁ ଯହେ ବହେ ତରଙ୍ଗିଣୀ,
ଏକାମ୍ରେ ଯାହାର ଅସଂଖ୍ୟ ଦେଉଳ
ଦିଶେ ଯଶୋରାଶି ହୋଇ ମୂର୍ତ୍ତ ଭୂଲ,
ଯାର କୀର୍ତ୍ତିମାଳା ଏହି ଚିତ୍ରଶାଳା—
କାଠଯୋଡ଼ି-ବେଧ-ନିତମ୍ବେ ମେଖଳା
ଚପାଳ ଲଲାଟ ମରକତ ଭୂପ
ଅଟନ୍ତି ଯେ କୁଳ-କେତନ ସ୍ୱରୂପ,
ସେହି କୁଳେ ଜାତ ଭୂପକ ଦୁଃଶୀଳା ?
କେ କହିବ ମୋତେ କେମନ୍ତେ ମିଶିଲା
ଦେବବାଣୀ ସଙ୍ଗେ ଆସି ଅପଭାଷା,
ପୂତ ଭଗୀରଥି-ସ୍ରୋତେ କର୍ମନାଶା ?
ମଲ୍ଲିକ, ସହିଲେ ଏ ଘୋର ପାତକ ?
ସର୍ବଂସହା ନାମ ହେଲା କି ସାର୍ଥକ ?
ପବିତ୍ର କେଶରୀ ବଂଶେ ଜାତ ହୋଇ
ଦେଶଦ୍ରୋହୀ, ରାଜଦ୍ରୋହୀ, ପିତୃଦ୍ରୋହୀ,
ତିନି ମହାପାପ ଏକ କରଣିରେ
ଅଦ୍ଭୁତ ସାଧନା ତୋର ଧରଣୀରେ,
କି ସାହସେ ତୋର ଚିତ୍ତବୃତ୍ତି ଗଲା
ଏ ଦାରୁଣ କାର୍ଯ୍ୟ ଭୁ ପୁଣି ଅବଳା ?"

ଗ୍ୟେରଗଙ୍ଗଙ୍କ ମୁଖରେ କବି ଉତ୍କଳର ଯେଉଁ ମହନୀୟତା-ପ୍ରକାଶ କରିଅଛନ୍ତି ତାହା କବିଙ୍କର ଦେଶପ୍ରାଣତାର ଅନନ୍ୟସାଧାରଣ

ଅଭିବ୍ୟକ୍ତି । ଗୌରଚଙ୍ଗଙ୍କ ନିକଟରୁ ନିରାଶ ହୋଇ ନନ୍ଦିକା ନିଜର
କଳଙ୍କିତ ମୁଖ ଆଉ ବା ଦେଖାନ୍ତେ କିପରି ? ତେଣୁ ସେ ପତ୍ରଟିଏ
ଲେଖି ଆତ୍ମହତ୍ୟା କଲେ । ତାଙ୍କର ପତ୍ରରେ ଥିଲା,

"ନାଥ, ଜୀବଲୀଳା ସରୁଛି ମୋହୋର
ଅନ୍ତିମେ ବନ୍ଦିଲି ତୁମ୍ଭ ଶ୍ରୀପଦର,
ଶିରର ହେନ ଯାଉଅଛି ତାପଭର,
ତହିଁ, ଯହିଁ, ଚିରମୁକ୍ତ କୃପାଦ୍ୱାର,
କୁଳପାଂଶୁଳାକୁ ବନ୍ଧୁହୀନ ବନ୍ଧି
ପାପଭରୁଁ ଏବେ ମୁକ୍ତ ହେବେ ମନ୍ତ୍ରୀ,
ଦୁଃସ୍ୱପ୍ନ ପରିଏ ପାସୋରି ଅଚିରେ
ମୋ ସ୍ମୃତି ନିଭିବ ମୋହୋ ସମାଧିରେ,
କନ୍ଦିବ ମାତାଙ୍କୁ ସୁତାକୁ ନଶୋଚି
ସ୍ମୃତିପଟୁଁ ତାକୁ ପକାଇବେ ପୋଛି,
ବରିଥିଲି ଯାଙ୍କୁ ପ୍ରାଣପତି କରି,
ବାସ୍ତେଖି ଜାଣିବ ନିଜପୁଅ ପରି,
ଅଭାଜନ ହେଲି ମୁହିଁ ସିନା, ପିତଃ,
ନୋହିବ ତୁମ୍ଭର ଧର୍ମ ବିଚଳିତ,
ବିଚଳି ଯେ ଠାବେ ମାନବ ସଞ୍ଚାର,
କରାଇବ ମୋର ପିଣ୍ଡର ଧିକ୍କାର,
ଦୁଃଖିନୀକି, ହାହା, ବିଧି ହେଲେ ବାମ
ଏ ଜୀବର ହେଲା ଏହି ପରିଣାମ
ସ୍ଥିର ପ୍ରାଣପିବା-ପଥରେ ହେଲିଣି,
ଶ୍ରୀପଦ-ପଙ୍କଜୁଁ ହେଉଛି ମେଲାଣି ।"

ନନ୍ଦିକାଙ୍କର ପତ୍ର ପାଠ କରି ସୁବର୍ଣ୍ଣକେଶରୀଙ୍କ ପ୍ରାଣରେ
ଯେ କି ବ୍ୟଥା ଲାଗିଥିବ ତାହା କଳ୍ପନାତୀତ । କନ୍ୟାର ଅନ୍ତିମ ଅନୁରୋଧ
ସେ ରକ୍ଷା କରିଛନ୍ତି ।

" ରାଜା ଅଙ୍ଗମଦେ ରାଜପରିଜନ,
ବସିଲେ ଯେମାର ଅନ୍ତିମ ମଣ୍ଡନ,
ବିଜନ ପଥାକୁ ନେଇ ଜନଯାନେ,
ଅନ୍ତ୍ୟେଷ୍ଟି ସାଧିଲେ ନିଶ୍ଚିତ ବିଧାନେ,
ସମାଧି ରଚିଲେ ଶିଳ୍ପୀକୁଳ ଆସି
ଅବଶେଷ ଏବେ ଯାର ଶିଳାରାଶି,
ଛାଡ଼ିଦେଲେ ତହିଁ ପାଳିତ ଯେମାର
ମୟୂର ମୟୂରୀ ମୃଗୀ କୃଷ୍ଣସାର,
ଚଣ୍ଡୀ ଗୃହ ତହିଁ ହେବାରୁ ଗଠିତ,
ଯେଣୁ ନାମେ ପଥା ଅଦ୍ୟାପି କଥିତ । "

ନନ୍ଦିକାଙ୍କର ସମାଧି ଏବଂ ଚଣ୍ଡୀଙ୍କର ମନ୍ଦିର; ଏହି ଉଭୟ ନାମର ସମ୍ମିଶ୍ରଣରେ (ନନ୍ଦିକା + ଈଶ୍ୱରୀ) ନନ୍ଦିକେଶ୍ୱରୀ ପଥା ନାମିତ ହେବା କଥା କବିବର ରାଧାନାଥ ପ୍ରତିପାଦିତ କରିଅଛନ୍ତି । ମାତ୍ର ଏହାର ଅନ୍ତରାଳରେ କୌଣସି ଐତିହାସିକ ସତ୍ୟର ସତ୍ତା ଅନୁଭୂତ ହୁଏ ନାହିଁ । ନନ୍ଦିକେଶ୍ୱରୀ ପଥା ବିଷୟରେ ରାଧାନାଥ ଜୀବନୀର ଲେଖକ ଲେଖିଛନ୍ତି, "ସେତେବେଳେ କଟକର ଉପକଣ୍ଠବର୍ତ୍ତୀ ମହାନଦୀ ମଧ୍ୟସ୍ଥିତ ନନ୍ଦିକେଶ୍ୱରୀ ପଥାରେ ଥିବା ନନ୍ଦିକାର ମୁଗୁନି ପ୍ରସ୍ତର ନିର୍ମିତ ସୁଦୃଶ୍ୟ ସମାଧି କଟକର ଗୋଟିଏ ସୁଦୃଶ୍ୟ ବସ୍ତୁ ରୂପେ ପରିଗଣିତ ହେଉଥିଲା । ସେ ସମାଧିର ମୁଗୁନି ପ୍ରସ୍ତର ସ୍ତମ୍ଭଗୁଡ଼ିକ ଅପହୃତ ଏବଂ ସ୍ଥାନାନ୍ତରକୁ ବିଭିନ୍ନ ବ୍ୟକ୍ତିଙ୍କ କର୍ତ୍ତୃକ ନୀତ ହୋଇଅଛି । ସମାଧିର ଅବଶେଷ ଯାହା ରହିଅଛି, ତାହା ବର୍ତ୍ତମାନ କଣ୍ଟୁ ନୁହେଁ । (୧)

ରାଧାନାଥ ଜୀବନୀ ଲେଖକ ଯେପରି ଭାବରେ ନନ୍ଦିକେଶ୍ୱରୀ ପଥାରେ ଥିବା ସମାଧିକୁ ରାଜବାଳା ନନ୍ଦିକାଙ୍କର ସମାଧି ଭାବରେ ଗ୍ରହଣ କରିଅଛନ୍ତି ତାହା ଉପରେ ଆସ୍ଥା ସ୍ଥାପନ କରିଯାଇ ନପାରେ । ଓଡ଼ିଶାର ଇତିହାସରେ ଯେଉଁ ନନ୍ଦିକାଙ୍କର ଅସ୍ତିତ୍ୱ ନାହିଁ ତାଙ୍କର

(୧) ରାଧାନାଥ ଜୀବନୀ—ପୃ.୧୨୨

ସମାଧିର ଅସ୍ତିତ୍ୱକୁ କପର ବା ସ୍ୱୀକାର କରାଯିବ । ରାଧାନାଥ ଜୀବନୀର ଲେଖକଙ୍କର ଏହି ମତବାଦ ରାଧାନାଥଙ୍କ କାବ୍ୟର କଥାବସ୍ତୁ ଦ୍ୱାରା ପ୍ରଭାବିତ । ଉତ୍କଳ ନରେଶ ସୁବର୍ଣ୍ଣକେଶରୀ ନିଃସନ୍ତାନ ଥିଲେ । ମାତ୍ର ହରେକୃଷ୍ଣ ମହତାବ ତାଙ୍କର ଓଡ଼ିଶା ଇତିହାସରେ ତାଙ୍କୁ ଅପୁତ୍ରିକ ଭାବରେ ଗ୍ରହଣ କରିଅଛନ୍ତି, କାରଣ ନନ୍ଦିକା ତାଙ୍କର କନ୍ୟା । ଡକ୍ଟର ମହତାବଙ୍କର ଏହି ମତ ମଧ୍ୟ କବିବର ରାଧାନାଥଙ୍କର ନନ୍ଦିକେଶ୍ୱରୀ କାବ୍ୟର କଥାବସ୍ତୁ ଦ୍ୱାରା ପ୍ରଭାବିତ ।

କନ୍ୟାର ଅନୁମ ଅନୁରୋଧ ଅନୁସାରେ ସୁବର୍ଣ୍ଣକେଶରୀ ଗେଙ୍ଗରଙ୍କ ହସ୍ତରେ କୌଷମଣି ଓ ଉତ୍କଳର ସିଂହାସନ ଅର୍ପଣ କରି ଅଂଶୁପା ହ୍ରଦର ଖାନତେଣ୍ଡୀ ପ୍ରଦେଶରେ ବନବାସୀ ହେଲେ । ଅଂଶୁପା ହ୍ରଦର ଅନତିଦୂରରେ ବାଙ୍କ ଥାନା ଅନ୍ତର୍ଗତ ସୁବର୍ଣ୍ଣପୁର ଗ୍ରାମ ଅବସ୍ଥିତ । ଏହି ଗ୍ରାମର ନାମକରଣକୁ ଲକ୍ଷ୍ୟ କରି କବିବର ରାଧାନାଥ ତାଙ୍କର କଳ୍ପିତ କଥାବସ୍ତୁକୁ ସେଠାରେ ଖଞ୍ଜି ଦେବାର ସୁଯୋଗ ପାଇଛନ୍ତି ।

ନନ୍ଦିକେଶ୍ୱରୀ କାବ୍ୟରେ କବିବର ରାଧାନାଥ ବିଦେଶୀ କଥାବସ୍ତୁ ଓ ଓଡ଼ିଶାର ଇତିହାସରୁ କେତେକ ଉପାଦାନକୁ ମିଶାଇ ଦେଇ ଯେପରି ମନୋଜ୍ଞ କାବ୍ୟ ସୃଷ୍ଟି କରିଛନ୍ତି ତହିଁରେ ତାଙ୍କର କବି ପ୍ରତିଭାର ଯଥାର୍ଥ ପରିଚୟ ମିଳିଅଛି । ମାତ୍ର ଏହି କଥାବସ୍ତୁର ପରିକଳ୍ପନାରେ ଭୂଦେବ ମୁଖୋପାଧ୍ୟାୟଙ୍କର ମଧ୍ୟ କେତେକ ପ୍ରେରଣା ରହିଅଛି । ଦର୍ପଣ ରାଜ୍ୟର ଅରଣ୍ୟରେ ବିଚରଣ କରିବା ସମୟରେ କବିବର ରାଧାନାଥଙ୍କୁ ଭୂଦେବ ମୁଖୋପାଧ୍ୟାୟ ଗୋଟିଏ ପୁଷ୍କରିଣୀ ଦେଖାଇ ଦେଇ ତାହା ବିଷୟରେ ଏକ କାଳ୍ପନିକ କାହାଣୀ ରାଧାନାଥଙ୍କୁ ଶୁଣାଇଥିଲେ । ସେହି କାହାଣୀରେ ଥିବା କେତେକ ଉପାଦାନ ନନ୍ଦିକେଶ୍ୱରୀ କାବ୍ୟର କଥାବସ୍ତୁକୁ କେତେକାଂଶରେ ପ୍ରଭାବିତ କରିଅଛି ବୋଲି କୁହାଯାଇ ପାରେ । (୧)

---

(୧) ଦ୍ରଷ୍ଟବ୍ୟ—ରାଧାନାଥ ଜୀବନୀ, ପୃ ୯୭-୧୦୩

ନନ୍ଦକେଶ୍ୱରୀ କାବ୍ୟର କଥାବସ୍ତୁ ଏ ଦେଶର ବହୁ ଲେଖକଙ୍କୁ ପ୍ରଭାବିତ କରିଅଛି । ନନ୍ଦକେଶ୍ୱରୀ କାବ୍ୟର କଥାବସ୍ତୁର ଅବଲମ୍ବନରେ ନାଟକ ଓ କବିତାଦି ରଚିତ ହୋଇଅଛି । ଅଶ୍ୱିନୀ କୁମାର ଘୋଷଙ୍କର "କେଶରୀଗଙ୍ଗ" ନାଟକ ଓ କବି ସଚ୍ଚିଦାନନ୍ଦ ରାଉତରାୟଙ୍କର "ଅସମାପିକା" କବିତା ଏହାର ପ୍ରକୃଷ୍ଟ ଉଦାହରଣ । ରାଧାନାଥଙ୍କର କବି ପ୍ରତିଭା କପରି ଭାବରେ ଏହି କାବ୍ୟକୁ ଏକ ଅନବଦ୍ୟ ସୃଷ୍ଟିରେ ପରିଣତ କରିଅଛି ତାହା ନିମ୍ନୋକ୍ତ ଉଦ୍ଧୃତିରୁ ପ୍ରତିପାଦିତ ହୋଇଥାଏ । "ବିଦେଶୀବସ୍ତୁ ଆହରଣ କରିପିବା ସ୍ଥାନର ବ୍ୟାପକତା, ଇତିହାସର କଠୋର ସତ୍ୟତା ଓ ଅନୁମୋଦନ ଏହାର ସହଯୋଗରେ ଏ କାବ୍ୟର ସମୀକରଣ ହୋଇଛି ଅତୀବ ବାସ୍ତବ ଓ ବିଚିତ୍ର । ଓଡ଼ିଶା ପ୍ରକୃତିର ଜୀବନ୍ତ ବର୍ଣ୍ଣନା, ବିଭିନ୍ନ ନଦନଦୀ, ପର୍ବତ ଓ ପ୍ରାନ୍ତରର ସମାବେଶ ହେତୁ ଦେଶୀ ବିଦେଶୀ ବିଷୟର ସମୀକରଣ ହୋଇ-ପଡ଼ିଛି ଆହୁରି ବିଶ୍ୱାସ୍ୟ ଓ ସୁସଂଗତ । ସମ୍ପୂର୍ଣ୍ଣ ମିଥ୍ୟାକୁ ଇତିହାସର ଅଖଣ୍ଡ ସତ୍ୟବର୍ଣ୍ଣରେ ଯେଉଁ ପ୍ରତିଭା କରେ ସମୁଜ୍ଜ୍ୱଳ, ସେ ପ୍ରତିଭାର ଧାତ୍ରି କେତେ ମହାପ୍ରାଣ, ସେ ସମୀକରଣ କେତେ ସାର୍ଥକ ! ଫଳରେ ନନ୍ଦକେଶ୍ୱରୀ ଏକ ଐତିହାସିକ କାବ୍ୟ—ଏପରି ଘୋର ମିଥ୍ୟା ଆଜି ସମ୍ପୂର୍ଣ୍ଣ ସତ୍ୟବୋଲି ଲୋକରେ ଗୃହୀତ ।" (୧)

———

(୧) ଓଡ଼ିଆ ସାହିତ୍ୟର ଇତିହାସ-ନଟବର ସାମନ୍ତରାୟ- ପୃ. ୨୭୯

# ଉଷା

୧୮୮୮ ସାଲରେ କଟକ ଭିକ୍ଟୋରିଆ ପ୍ରେସ୍‌ରୁ ରାଧାନାଥଙ୍କର ଉଷାକାବ୍ୟ ପ୍ରକାଶ ପାଇଥିଲା । ଉଷାକାବ୍ୟର କଥାବସ୍ତୁକୁ ଉପସ୍ଥାପନ କରିବା ନିମନ୍ତେ କବିବର ରାଧାନାଥ ବାଲେଶ୍ୱରକୁ ଉପଯୁକ୍ତ ସ୍ଥାନ ଭାବରେ ଗ୍ରହଣ କରିଛନ୍ତି । କଥାବସ୍ତୁର ଆରୋପ ପାଇଁ ପୂର୍ବବର୍ତ୍ତୀ କାବ୍ୟମାନଙ୍କରେ ଗ୍ରହଣ କରିଥିବା କୌଶଳକୁ ସେ କବି ଏଠାରେ ଗ୍ରହଣ କରିଅଛନ୍ତି । ନୂପୁର, ପ୍ରଥମାପଦା ମାଣିକ୍ୟଖମ୍ବ ପ୍ରଭୃତି ନାମଗୁଡ଼ିକୁ କବି ଉଚିତ ଅର୍ଥରେ ଗ୍ରହଣ କରି ସେଗୁଡ଼ିକର ଯାଥାର୍ଥ୍ୟ ପ୍ରଦର୍ଶନ କରିଅଛନ୍ତି । ଉଷାକାବ୍ୟର କଥାବସ୍ତୁର ଉତ୍ସ ଗ୍ରୀକ୍ ପୁରାଣରେ ଥିଲେହେଁ କବି ଓଭିଡ୍‌ଙ୍କ କାବ୍ୟର କଥାବସ୍ତୁ ଅନୁସାରେ ନିଜ କାବ୍ୟର କଥାବସ୍ତୁକୁ ରୂପଦାନ କରିଅଛନ୍ତି । ଗ୍ରୀକ୍ ପୁରାଣର ଏହି ଉପାଖ୍ୟାନକୁ ଅବଲମ୍ବନ କରି ବହୁ କବି ସେମାନଙ୍କର କାବ୍ୟ ରଚନା କରିଥିବାର ଜଣାଯାଇଅଛି । ଏହି ଉପାଖ୍ୟାନର ଅବଲମ୍ବନରେ ଯେଉଁମାନେ ପରବର୍ତ୍ତୀ କାଳରେ କାବ୍ୟର ପୂର୍ଣ୍ଣରୂପ ପ୍ରଦାନ କରିଥିଲେ ସେମାନଙ୍କ ମଧ୍ୟରେ ପ୍ରସିଦ୍ଧ ରୋମୀୟ କବି ଓଭିଡ୍ ଓ ଆରେମାରେଲ୍ଲରେଡ଼ା-ରାସ୍ ମୁଖ୍ୟସ୍ଥାନ ଗ୍ରହଣ କରିଅଛନ୍ତି । ଊନବିଂଶ ଶତାବ୍ଦୀର ବିଖ୍ୟାତ ଇଂରେଜ କବି ଉଇଲିୟମ ମରିସ୍ ଏହି ଉପାଖ୍ୟାନକୁ ଅବଲମ୍ବନ କରି ଆଟ୍‌ଲାଣ୍ଟା ରେସ୍ ନାମକ ଏକ କାବ୍ୟ ରଚନା କରିଅଛନ୍ତି । କବିବର ରାଧାନାଥ ରୋମୀୟ କବି ଓଭିଡ୍‌ଙ୍କଠାରୁ ଉଷାକାବ୍ୟ ପାଇଁ କଥାବସ୍ତୁ ଗ୍ରହଣ କରିଥିଲେହେଁ ଉଇଲିୟମ ମରିସ୍‌ଙ୍କର ପ୍ରଭାବ ତାଙ୍କ ଉପରେ ପଡ଼ିଥିବା କଥା ବହୁ ଆଲୋଚକ ପ୍ରକାଶ କରିଅଛନ୍ତି ।

୨

କବିବର ରାଧାନାଥ ଉଷାକାବ୍ୟକୁ ଯେଉଁ ଭାବରେ ଉପସ୍ଥାପନ କରିଅଛନ୍ତି ତାହା ଏଠାରେ ଉଦ୍ଧାର କରାଯାଇପାରେ । ମୟୂରଭଞ୍ଜ ଅନ୍ତର୍ଗତ ଶାଲ୍ମଳୀ ଶୈଳ ବା ଶିମ୍ଳିପାହାଡ଼ରୁ ତିନିସ୍ଥାନରେ ତିନିଗୋଟି ନଦୀ ବାହାରି ପଥ ମଧ୍ୟରେ ବହୁଗ୍ରାମ ଓ ବନପ୍ରଦେଶ ଅତିକ୍ରମ କରି ଶେଷରେ ବଙ୍ଗୋପସାଗରରେ ପତିତ ହୋଇଛନ୍ତି

ବଳାଙ୍ଗୀ, ଗୋଦାବରୀ ଓ ଶୋଣ ନାମକ ଏହି ତିନିଗୋଟି ନଦୀମଧ୍ୟରୁ ଗଙ୍ଗାଦ୍ୱାର ଓ ଶୋଣ ବଳାଙ୍ଗୀ ସହିତ ଯେଉଁସ୍ଥାନରେ ମିଶିଅଛନ୍ତି ସେ ସ୍ଥାନକୁ ବର୍ତ୍ତମାନ ମଧ୍ୟ ତ୍ରିମୁହାଣୀ ବୋଲି କୁହାଯାଏ । ଏହି ଦୁଇଗୋଟି ନଦୀର ଜଳକୁ ନିଜ ବକ୍ଷରେ ଧାରଣ କରି ବଳାଙ୍ଗୀ ନଦୀ କିଛିଦୂର ଅଗ୍ରସର ହୋଇ ସମୁଦ୍ରରେ ପତିତ ହୋଇଅଛି । ଏହି ନଦୀତଟରେ ନୁରୁରଜା ଏକ କାଳୀମନ୍ଦିର ସ୍ଥାପନ କରି ନଦୀଗର୍ଭରୁ ପାଇଥିବା କାଳୀପ୍ରତିମାକୁ ସ୍ଥାପନ କରି ପୂଜା କରୁଥିଲେ । ମାଣିକ୍ୟଖମ୍ବ ନାମକ ବାଲେଶ୍ୱରର ଏକ ସ୍ଥାନରେ ଯେଉଁ କାଳୀମନ୍ଦିର ଅଛି, ସେହି କାଳୀମନ୍ଦିର କବିବର ରାଧାନାଥଙ୍କର କାବ୍ୟବର୍ଣ୍ଣିତ ମନ୍ଦିର । ଏହି ମନ୍ଦିରରେ ଦେବୀଙ୍କ ପୂଜାରେ ନରବଳି ଦିଆଯାଉଥିଲା ବୋଲି ପ୍ରବାଦ ଅଛି । ରାଜା ଦେବୀଙ୍କର କୃପା ଲାଭ କରି ନିଜକୁ ଜଣେ ଶକ୍ତିଶାଳୀ ନରପତି ଭାବରେ ପ୍ରତିଷ୍ଠିତ କରିପାରିଥିଲେ । ସେ ମୃଗୟାରେ ଅତ୍ୟନ୍ତ ଦକ୍ଷଥିଲେ । ଅରଣ୍ୟରେ ପ୍ରବେଶ କରି ସେ ପ୍ରଚଣ୍ଡ ମୃଗୟାରେ ରତ ହେଉଥିଲେ । ରାଜାଙ୍କର ସମସ୍ତ ବିଭବ ସତ୍ତ୍ୱେ ସନ୍ତାନର ଅଭାବ ତାଙ୍କ ପକ୍ଷରେ ଅତ୍ୟନ୍ତ ଦୁଃଖଦାୟକ ଥିଲା । ଦିନେ ରଜନି ସମୟରେ ରାଣୀ ସ୍ୱପ୍ନ ଦେଖିଲେ ଯେ, ଆକାଶରେ ଉଲ୍‌କା ଆକାରରେ ବହୁତ ଜ୍ୟୋତି ଉଡ଼ି ଆସିଲା । ସେଗୁଡ଼ିକ ମଧ୍ୟରେ ଦୁଇଗୋଟି ଜ୍ୟୋତି ଅତ୍ୟନ୍ତ ଉଜ୍ଜ୍ୱଳ ଥିଲା । ସେହି ଦୁଇଗୋଟି ଜ୍ୟୋତିମଧ୍ୟରୁ ଗୋଟିଏ ବାୟବ୍ୟ ଦିଗକୁ ଅଗ୍ରସର ହେଲା ଓ ଅପରଟି ରାଣୀଙ୍କର ଗର୍ଭରେ ପ୍ରବେଶ କଲା । ଏହି ଜ୍ୟୋତି ମଧ୍ୟରେ ରାଣୀ ଏକ ଖଡ୍ଗାକାର ଦିବ୍ୟ ନାରୀରୂପ ଦେଖିପାରିଲେ । ସ୍ୱପ୍ନ ଦେଖିବା ପରେ ରାଣୀଙ୍କର ନିଦ ଭାଙ୍ଗିଗଲା ଓ ସେ ରାଜାଙ୍କ ସମ୍ମୁଖରେ ସ୍ୱପ୍ନର ବୃତ୍ତାନ୍ତ ବର୍ଣ୍ଣନା କଲେ । ରାଜା ଗଣକମାନଙ୍କୁ ଡକାଇ ସ୍ୱପ୍ନବୃତ୍ତାନ୍ତ ଗଣନା କରାଇ ଅବଗତ ହେଲେ ଯେ, ଏହା ଏକ ଦିବ୍ୟକୁମାରୀ ଜନ୍ମର ସୂଚନା ।

ଦଶମାସ ପରେ ରାଣୀଙ୍କ ଗର୍ଭରୁ ଏକ ଦିବ୍ୟ ଦୁହିତା ଜନ୍ମ ଗ୍ରହଣ କଲା । କନ୍ୟାଟି ଉଷାକାଳରେ ଜନ୍ମ ଲାଭ କରିଥିବାରୁ ରାଜା ନୁରୁ କନ୍ୟାଟିର ନାମ ରଖିଲେ ଉଷା । ଉଷା ବାଲ୍ୟ କାଳରୁ

ଅତ୍ୟନ୍ତ ସୁନ୍ଦରୀ ଥିଲେ । ସେ ପିତାମାତାଙ୍କର ଅତ୍ୟନ୍ତ ସ୍ନେହଭାଜନ ହେଲେ । ରାଜା କ୍ଷଣେ କନ୍ୟାଙ୍କୁ ନୟନହେଲେ ପାଖରୁ ଅନ୍ତର କରନ୍ତି ନାହିଁ । ଏପରିକି, ସେ ଯେତେବେଳେ ଶିକାର ଉଦ୍ଦେଶ୍ୟରେ ଅରଣ୍ୟକୁ ଯାଆନ୍ତି, ସେତେବେଳେ କନ୍ୟାଙ୍କୁ ସଙ୍ଗରେ ନେଇ ଯାଆନ୍ତି । ଏହିପରି ଭାବରେ ଉଷା ତାଙ୍କର ବାଲ୍ୟକାଳରୁ ମୃଗୟା ପ୍ରତି ଅତ୍ୟନ୍ତ ଆସକ୍ତ ହୋଇ ପଡ଼ିଲେ । ଉଷା ଯେତେବେଳେ ଯୌବନରେ ପଦାର୍ପଣ କଲେ, ସେତେବେଳେ ତାଙ୍କର ସୌନ୍ଦର୍ଯ୍ୟ ଅତୁଳନୀୟ ହେଲା । ଯୌବନାବସ୍ଥାରେ ଉଷା ତାଙ୍କର ସଖୀମାନଙ୍କ ମେଳରେ ଅରଣ୍ୟକୁ ଯାଇ ଶିକାର କରିବାରେ ଆଗ୍ରହୀ ହେଲେ । ପ୍ରଭାତ ସମୟରେ ସେ ସହଚରୀମାନଙ୍କ ସହିତ ନୌକା ଆରୋହଣ କରି ବଳାଙ୍ଗୀ ନଦୀରେ କୁମ୍ଭୀର ଶିକାର କରୁଥିଲେ ।

ଉଷାଙ୍କର ବିବାହଯୋଗ୍ୟ ବୟସ ଉପଗତ ହେଲା । ସେ ତାଙ୍କର ବିବାହ ନିମିତ୍ତ ଗୋଟିଏ ବିଷମ ପଣ ଉପସ୍ଥାପିତ କଲେ । ଏହି ପଣରେ ସର୍ତ୍ତ ଥିଲା ଯେ, ଯେଉଁ ଯୁବକ ଗତିବେଗରେ ତାଙ୍କୁ ପରାଜିତ କରିବ, ସେହି ଯୁବକକୁ ସେ ପତିରୂପରେ ବରଣ କରିବେ । ଯେଉଁ ଯୁବକ ପ୍ରତିଯୋଗିତାରେ ଯୋଗଦେଇ ପରାଜିତ ହେବ ତାର ମୃତ୍ୟୁଦଣ୍ଡ ଅନିବାର୍ଯ୍ୟ । ଗତି ପରୀକ୍ଷା ନିମନ୍ତେ ଗୋଟିଏ ବର୍ତ୍ମ ପ୍ରସ୍ତୁତ ହେଲା । ପ୍ରଥମାପଦା ନାମକ ସ୍ଥାନ ଏହି ବର୍ତ୍ମର ପ୍ରଥମ ସ୍ଥାନ ଏବଂ ମାଣିକ୍ୟଖମ୍ଭ ଶେଷସ୍ଥାନ । ଯେଉଁ ଯୁବକ ଦୌଡ଼ରେ ପ୍ରତିଯୋଗିତା କରି ପ୍ରଥମରେ ମାଣିକ୍ୟଖମ୍ଭକୁ ଛୁଇଁବ ସେ ଉଷାଙ୍କର ପାଣିଗ୍ରହଣ କରିବ । ଉଷାଙ୍କର ପାଣିଗ୍ରହଣ କରିବା ଉଦ୍ଦେଶ୍ୟରେ ବହୁ ଦେଶରୁ ରାଜକୁମାରମାନେ ଆସି ପ୍ରତିଯୋଗିତାରେ ଅଂଶଗ୍ରହଣ କରି ନିଜ ନିଜର ପ୍ରାଣ ବିସର୍ଜନ କଲେ । ଏହି ପ୍ରସଙ୍ଗରେ କବି ଓଡ଼ିଶାର ବିଭିନ୍ନ ସ୍ଥାନର ବିବରଣ ଦେବାକୁ ଯାଇ ସେହି ସ୍ଥାନମାନଙ୍କର ପ୍ରକୃତିବର୍ଣ୍ଣନା ଓ ବୈଶିଷ୍ଟ୍ୟ ପ୍ରକାଶ କରିଅଛନ୍ତି । ଯେଉଁ ସ୍ଥାନରେ ପରାଜିତ ରାଜକୁମାରମାନେ ପ୍ରାଣବଳି ଦେଇଥିଲେ ସେହିସ୍ଥାନ ରାଜକୁମାରମାନଙ୍କର ଶୋଣିତରେ ପଙ୍କିଳ ହୋଇଥିବାରୁ ଶୋଣିତପୁର ନାମରେ ପରିଚିତ ।

ଦିନେ ଊଷା ଅରଣ୍ୟ ମଧ୍ୟରେ ଏକ ଜଳାଶୟ ନିକଟରେ ଶିକାର ଉଦ୍ଦେଶ୍ୟରେ ଅପେକ୍ଷା କରିଥିଲେ । ସେହି ଜଳାଶୟରେ ଜଳପାନ କରିବାକୁ ଦୁଇଗୋଟି ବନ୍ୟଶୂକର ଆସିଥିଲେ । ଊଷା ସେ ଦୁହିଙ୍କୁ ବଧ କରିବା ଉଦ୍ଦେଶ୍ୟରେ ଶୂଳ ନିକ୍ଷେପ କଲେ । ତହିଁରୁ ଗୋଟିଏ ଶୂକର ଊଷାଙ୍କର ଶୂଳଦ୍ୱାରା ନିହତ ହେଲା ଓ ଅନ୍ୟଟି ଅନ୍ୟ ଗୋଟିଏ ଶରଦ୍ୱାରା ନିହତ ହେଲା । କେଉଁଦିଗରୁ ଜଣେ ଅଜଣା ଲୋକର ଶର ଆସିଲା ତାହା ଊଷା ବା ତାଙ୍କର ସହଚରୀମାନେ କେହି ଜାଣିପାରିଲେ ନାହିଁ । ଶର ଫଳକରେ "ଜୟନ୍ତ" ବୋଲି ଲେଖାଥିଲା ।

ଜୟନ୍ତ ଥିଲେ ହେମପୁରର ରାଜକୁମାର । ତାଙ୍କର ପିତାଙ୍କ ନାମ ବାହନପତି । ଜୟନ୍ତ ଶିକାର ଉଦ୍ଦେଶ୍ୟରେ ବନକୁ ଆସି ପର୍ଣ୍ଣକୁଟୀର ରଚନା କରି ଥିଲେ । ମହେନ୍ଦ୍ର ପର୍ବତରେ ଭାର୍ଗବ ଋଷିଙ୍କୁ ଭେଟିବା ଉଦ୍ଦେଶ୍ୟରେ କୁମାର କାର୍ତ୍ତିକେୟ ଦିନେ ଯାଉଥିଲେ । ବନ ମଧ୍ୟରେ କାର୍ତ୍ତିକେୟ ତାଙ୍କର ଶିଖିବାହନରୁ ଅବତରଣ କରିଥିଲେ । କାର୍ତ୍ତିକେୟଙ୍କର ମୟୂର ବନ ମଧ୍ୟରେ ବିଚରଣ କରିବା ସମୟରେ ବ୍ୟାଧ ତାକୁ ମାରିବା ପାଇଁ ଉଦ୍ୟତ ହେବାରୁ ଜୟନ୍ତ ବ୍ୟାଧକୁ ତହିଁରୁ ନିବୃତ୍ତ କରିଥିଲେ । ଫଳରେ କାର୍ତ୍ତିକେୟ ତାଙ୍କୁ ବର ଦେଇଥିଲେ ଯେ, ସଙ୍କଟ ସମୟରେ ସେ ତାଙ୍କୁ ସାହାଯ୍ୟ କରିବେ । କାର୍ତ୍ତିକେୟଙ୍କର ମୟୂର ପୁଚ୍ଛରୁ ଗୋଟିଏ ପର ଖସିପଡ଼ିଥିଲା । ସେହି ପରଟିକୁ ନେଇ ଜୟନ୍ତ ତାଙ୍କର ପିତା ବାହନପତିଙ୍କୁ ଦେଲେ । ବାହନପତି ସେହି ପରଟିକୁ ନିଜର ମୁକୁଟରେ ଖୋସିଲେ । ସେହିଦିନଠାରୁ ସେ ନିଜକୁ ମୟୂରଧ୍ୱଜ ରୂପରେ ପରିଚିତ କରାଇଲେ ଓ ତାଙ୍କ ରାଜ୍ୟରେ ମୟୂରବଧ ନିଷିଦ୍ଧ ହେଲା ।

ଊଷାଙ୍କର ସ୍ୱୟମ୍ବର ବିଷୟ ଅବଗତ ହୋଇ ଜୟନ୍ତ ଅତ୍ୟନ୍ତ ଆନନ୍ଦିତ ହେଲେ । ସେ ସ୍ୱୟମ୍ବରର ଦୌଡ଼ ପ୍ରତିଯୋଗିତାରେ ଯୋଗ ଦେବାପାଇଁ ଇଚ୍ଛା ପ୍ରକାଶ କଲେ । ବାହନପତି ଏଥିପାଇଁ ସମ୍ମତ ହେଲେ ନାହିଁ । ପରେ ପରେ ଜୟନ୍ତ ପୁଣି ଶିକାର କରିବା

ସମୟରେ ସଂଜ୍ଞାଶୂନ୍ୟ ଉଷାଙ୍କୁ ଦେଖିଲେ । ଉଷାଙ୍କର ରୂପଲାବଣ୍ୟରେ ଜୟନ୍ତ ଅଭିଭୂତ ହୋଇ ପଡ଼ିଲେ । ତାପରେ ଜୟନ୍ତ କୁରୁରାଜାଙ୍କ ସମ୍ମୁଖରେ ଉପସ୍ଥିତ ହୋଇ ଦୌଡ଼ ପ୍ରତିଯୋଗିତାରେ ଯୋଗଦେବା ନିମନ୍ତେ ନିଜର ପ୍ରବଳ ଇଚ୍ଛା ପ୍ରକାଶ କଲେ । କୁରୁରାଜା ତାଙ୍କୁ ଏଥିପାଇଁ ଯେତେ ବାରଣ କଲେ ହେଁ ସେ ସେଥିପ୍ରତି ଆଦୌ ଭ୍ରୂକ୍ଷେପ କଲେ ନାହିଁ । ଉଷାଙ୍କୁ ପାଇବା ପାଇଁ ଜୟନ୍ତଙ୍କର ଯୌବନୋଚିତ ହୃଦୟ ଅତି ମାତ୍ରାରେ ପ୍ରଲୁବ୍ଧ ହୋଇ ପଡ଼ିଲା ।

ତାର ପରଦିନ ପ୍ରତ୍ୟୁଷରେ ଦୌଡ଼ ପ୍ରତିଯୋଗିତା ଅନୁଷ୍ଠିତ ହେଲା । ଦୌଡ଼ ପ୍ରତିଯୋଗିତା ପୂର୍ବରୁ ଉଷା ଜୟନ୍ତଙ୍କୁ ଦେଖି ତାଙ୍କ ପ୍ରତି ଅତ୍ୟନ୍ତ ଆସକ୍ତା ହୋଇ ପଡ଼ିଲେ । ଦୌଡ଼ ପ୍ରତିଯୋଗିତା ସମୟରେ ଜୟନ୍ତ କାର୍ତ୍ତିକେୟଙ୍କୁ ସ୍ମରଣ କଲେ । କାର୍ତ୍ତିକେୟ ଜୟନ୍ତଙ୍କୁ ତିନୋଟି ସୁନାର ପଦ୍ମ ଦେଲେ ଏବଂ ଦୌଡ଼ ସମୟରେ ତାହାକୁ ପଥ-ପାର୍ଶ୍ୱରେ ନିକ୍ଷେପ କରିବା ପାଇଁ ଆଦେଶ ଦେଲେ । ଜୟନ୍ତ ଦୌଡ଼ିବା ସମୟରେ ଗୋଟି ଗୋଟି କରି ତିନୋଟି ସୁନାର ପଦ୍ମକୁ ପଥ ମଧ୍ୟରେ ନିକ୍ଷେପ କଲେ । ଉଷା ଦୌଡ଼ିବା ସମୟରେ ସୁନାର ପଦ୍ମ ପ୍ରତି ଆକୃଷ୍ଟ ହୋଇ ତାକୁ ଗୋଟାଇ ନେବା ସମୟରେ ଜୟନ୍ତ ଆଗକୁ ଦୌଡ଼ିଯାଇ ମାଣିକ୍ୟଖମ୍ବକୁ ଛୁଇଁ ପ୍ରତିଯୋଗିତାରେ ବିଜୟୀ ହେଲେ । ସମବେତ ଜନତା ମଧ୍ୟରେ ଆନନ୍ଦର ଉଲ୍ଲାସ ଖେଳିଗଲା ।

ପ୍ରଦୋଷ ସମୟରେ ଉଷା ଓ ଜୟନ୍ତଙ୍କର ଶୁଭପରିଣୟ ସମ୍ପନ୍ନ ହେଲା । ବିବାହ ବେଦୀରେ ଯେତେବେଳେ ଉଷା ଓ ଜୟନ୍ତଙ୍କର ହସ୍ତଗ୍ରନ୍ଥି ପଡ଼ିଲା ସେତେବେଳେ ଦୁହିଙ୍କ ପିଣ୍ଡରୁ ପ୍ରାଣବାୟୁ ଉଡ଼ିଗଲା । ଏତେବଡ଼ ଆନନ୍ଦର କଳକୋଳ ମଧ୍ୟରେ ଏପରି ଏକ ଆକସ୍ମିକ ବିପାକ କୁରୁପୁରକୁ ଶୋକସାଗରରେ ବୁଡ଼ାଇ ଦେଲା । ରାଜା କୁରୁ ମୂର୍ଚ୍ଛିତ ଅବସ୍ଥାରେ ସ୍ୱପ୍ନ ଦେଖିଲେ ଯେ, କାଳୀ ଆସି ତାଙ୍କ ସମ୍ମୁଖରେ ଆବିର୍ଭୂତା ହୋଇଅଛନ୍ତି । କାଳୀ ରାଜାଙ୍କ ଆଗରେ ଉଷା ଓ ଜୟନ୍ତଙ୍କ ବିଷୟରେ ସମସ୍ତ ବୃତ୍ତାନ୍ତ ବର୍ଣ୍ଣନା କଲେ ।

ଦେଶକାଙ୍କ ଶୈଳରେ ଏକଦା ଚନ୍ଦ୍ରଶେଖର ବର୍ଷିରେ ଗନ୍ଧର୍ବମାନେ ନଟରାଜଙ୍କର ନୃତ୍ୟ ଅଭିନୟ କରୁଥିଲେ । ଗନ୍ଧର୍ବ ଚିତ୍ରରଥ ହର ଓ ତିଳୋତ୍ତମା ପାର୍ବତୀ ଭୂମିକାରେ ନୃତ୍ୟ ପରିବେଷଣ କରୁଥିଲେ । ସେମାନେ ପରସ୍ପରର ହାତଧରି ନୃତ୍ୟ କରୁଥିଲେ । ନୃତ୍ୟ ଦେଖିବା ପାଇଁ ଦେବଦେବୀମାନେ ସେଠାରେ ଉପସ୍ଥିତ ଥିଲେ । ଶେଷରେ ଯେତେବେଳେ କାଳୀ ସେଠାରେ ଉପସ୍ଥିତ ହେଲେ ତାଙ୍କର ରୂପକୁ ଦେଖି ଗନ୍ଧର୍ବମାନେ ଆଖି ଠାରଠାରି ହୋଇ ତାଙ୍କୁ ଉପହାସ କଲେ । ସେମାନଙ୍କର ଏପରି ଉପହାସକୁ ବାଧା ନଦେଇ ଚିତ୍ରରଥ ଓ ତିଳୋତ୍ତମା ସେମାନଙ୍କ ସହିତ ହାସ୍ୟରେ ଯୋଗ ଦେଲେ । ଫଳରେ କାଳୀ କ୍ରୋଧାନ୍ୱିତା ହୋଇ ଅଭିଶାପ ଦେଲେ ଯେ, ସେମାନେ ରୂପଗର୍ବରେ ଗର୍ବିତ ହୋଇ ସ୍ୱର୍ଗର ମର୍ଯ୍ୟାଦା ନଷ୍ଟ କରିଅଛନ୍ତି । ତେଣୁ ସେମାନେ ମର୍ତ୍ତ୍ୟପୁରରେ ମାନବ ଜନ୍ମ ଗ୍ରହଣ କରିବେ । ଏହି ଅଭିଶାପରେ ସେମାନେ ଅତ୍ୟନ୍ତ ବ୍ୟଥିତ ହୋଇ ପଡ଼ିଲେ ଓ ଶାପରୁ ମୁକ୍ତିଲାଭ କରିବା ପାଇଁ କାଳୀଙ୍କ ନିକଟରେ ପ୍ରାର୍ଥନା କଲେ । ତିଳୋତ୍ତମାଙ୍କର କାକୁତିରେ କାଳୀ ଦୟାଭାବ ପୋଷଣ କରି କହିଲେ ଯେ, ଅଳ୍ପଦିନ ପାଇଁ ତାଙ୍କୁ ମର୍ତ୍ତ୍ୟପୁରକୁ ଯିବାକୁ ହେବ । ତାଙ୍କୁ କେନ୍ଦ୍ରକରି ଅନ୍ୟ ଗନ୍ଧର୍ବମାନେ ମଧ୍ୟ ମୁକ୍ତିଲାଭ କରିବେ । ହାତ ଧରାଧରି ହୋଇ ସେମାନେ ଅଭିଶାପ ପାଇଲେ ଓ ମର୍ତ୍ତ୍ୟରେ ଯେତେବେଳେ ପୁଣି ସେମାନଙ୍କର ହାତ ଏକାଠି ହେବ ସେତେବେଳେ ସେମାନେ ଶାପମୁକ୍ତ ହେବେ । କାଳୀଙ୍କଠାରୁ ଏକଥା ଶୁଣିବା ପରେ ଜ୍ୟୋତି ରୂପରେ ତିଳୋତ୍ତମା ଓ ଚିତ୍ରରଥ ମର୍ତ୍ତ୍ୟକୁ ଆସିଲେ ଓ ଯଥାକ୍ରମେ ଉଷା ଏବଂ ଜୟନ୍ତ ରୂପରେ ଜନ୍ମଲାଭ କଲେ । ଉଷାଙ୍କର ସ୍ୱୟଂବରରେ ଦୌଡ଼ ପ୍ରତିଯୋଗିତାରେ ଅଂଶ ଗ୍ରହଣ କରି ଯେଉଁ ରାଜକୁମାରମାନେ ପ୍ରାଣତ୍ୟାଗ କଲେ ସେମାନେ ସ୍ୱର୍ଗଭ୍ରଷ୍ଟ ଅଭିଶପ୍ତ ଗନ୍ଧର୍ବ । ଉଷା ଓ ଜୟନ୍ତ ବର୍ତ୍ତମାନ ଶାପରୁ ମୁକ୍ତିଲାଭ କରି ସ୍ୱର୍ଗକୁ ଯାଇଅଛନ୍ତି ।

ରାଜା ସ୍ୱପ୍ନରେ ଏ ସମସ୍ତ ବୃତ୍ତାନ୍ତ ଶ୍ରବଣ କରିବା ପରେ ମୃତ ଜୟନ୍ତ ଓ ଉଷାଙ୍କର ଶବସଂସ୍କାର କଲେ । ଯେଉଁ ସ୍ଥାନରେ

ଉଷା ଓ ଜୟନ୍ତଙ୍କର ଶତ୍ରସଂହାର କରାଯାଇଥିଲା ସେଠାରେ ରାଜାଙ୍କର ଆଦେଶ ଅନୁସାରେ ଶିଳ୍ପୀମାନେ ଏକ ମଣ୍ଡପ ନିର୍ମାଣ କଲେ । ସେହି ମଣ୍ଡପ ଦୂରରୁ କୈଳାଶ ପର୍ବତ ପରି ପ୍ରତୀତ ହୋଇ ଲୋକମୁଖରେ ଉଷାମଣ୍ଡପ ନାମରେ ପରିଚିତ । ବର୍ତ୍ତମାନ ମଣ୍ଡପଟି ନଷ୍ଟ ହୋଇ ଯାଇଥିଲେ ହେଁ ତାର ନାମ ଲୋକମୁଖରେ ରହିଅଛି ।

ଉଷା କାବ୍ୟର କଥାବସ୍ତୁ ଗ୍ରୀକ୍ ପୁରାଣରୁ ଓଡ଼ିଆଙ୍କ ବାଟଦେଇ କପରି ଆସିଅଛି ତାହା ଏଠାରେ ପରୀକ୍ଷା କରି ଦେଖାଯାଇପାରେ । ଗ୍ରୀକ୍ ପୁରାଣର ଆଖ୍ୟାୟିକାର ସାରକଥା ଏଠାରେ ଉଦ୍ଧାର କରାଯାଇ ପାରେ । ଆର୍କାଡ଼ିଆର ନିଃସନ୍ତାନ ରାଜା ଇଆସସ୍ । ସେ ଗୋଟିଏ ପୁତ୍ର ସନ୍ତାନ କାମନା କରିଥିଲେ ; ମାତ୍ର ତାଙ୍କ ଭାଗ୍ୟକୁ କନ୍ୟାଟିଏ ଜନ୍ମ ହେଲା । ରାଜା ଏଥିରେ ବିରକ୍ତ ହୋଇ କନ୍ୟାଟିକୁ ନେଇ କାଲିଡନର ପାର୍ଥେନିଆନ୍ ପର୍ବତର ପାଦଦେଶରେ ଥିବା ଶ୍ୱାପଦସଂକୁଳ ଅରଣ୍ୟରେ ଛାଡ଼ିଦେଇ ଆସିଲେ । ସେଠାରେ ଗୋଟିଏ ଭାଲୁଣୀ ତାକୁ କ୍ଷୀର ପାନ କରାଇ ପାଳନ କଲା । ପରେ ଦଳେ ଶିକାରୀ ତାକୁ ଅରଣ୍ୟରୁ ଉଦ୍ଧାର କରି ନେଇ ନିଜ ସଙ୍ଗରେ ରଖିଲେ । ସେହି କନ୍ୟାଟି କ୍ରମେ ଶରସନ୍ଧାନ ଓ ଶିକାରରେ ଅତ୍ୟନ୍ତ ନିପୁଣତା ଲାଭ କଲା । ସେହି କନ୍ୟାଟି ହିଁ ଆଟାଲାଣ୍ଟା ।

କାଲିଡନ୍‌ର ରାଜା ଓଏନିଅସ୍ ତାଙ୍କର ଦ୍ରାକ୍ଷାବନକୁ ରକ୍ଷା କରିବା ନିମିତ୍ତ ଗ୍ରୀଷ୍ମକାଳରେ ସବୁ ଦେବଦେବୀଙ୍କୁ ବଳି ଉତ୍ସର୍ଗ କରିବା ସମୟରେ କାମଦେବୀ ଆର୍ଟେମିସ୍‌ଙ୍କ ଉଦ୍ଦେଶ୍ୟରେ ବଳି ଉତ୍ସର୍ଗ କରିବାକୁ ଭୁଲିଗଲେ । ଆର୍ଟେମିସ୍ ଏଥିରେ ଅତ୍ୟନ୍ତ କ୍ରୋଧାନ୍ୱିତା ହେଲେ । ସେ କାଲିଡନ୍ ରାଜ୍ୟକୁ ଗୋଟିଏ ବରାହ ଧ୍ୱଂସ୍ ବରାହ ପଠାଇଲେ । ସେହି ବରାହଟି ରାଜ୍ୟରେ ନାନା ଉପଦ୍ରବ ସୃଷ୍ଟି କଲା । ସେହି ବରାହକୁ ବଧ କରିବା ପାଇଁ ରାଜକୁମାର ମିଲିଏଗର୍ ଚେଷ୍ଟିତ ହେଲେ । ବିଖ୍ୟାତ ଶିକାରୀଦଳମାନଙ୍କୁ କାଲିଡନ୍‌କୁ ନିମନ୍ତ୍ରଣ କରାଗଲା । ଯେଉଁ ଶିକାରୀ ବରାହକୁ ବଧ କରିବେ ସେ ବରାହର ଚର୍ମ ଏବଂ ଦନ୍ତକୁ ଉପହାର ସ୍ୱରୂପ ଲାଭ କରିବେ ବୋଲି ଘୋଷଣା

କରାଗଲା । ଆଟ୍‌ଲାଣ୍ଟା ଯେଉଁ ଶିକାରୀ ଦଳରେ ଥିଲେ ସେହି ଦଳ କାଲିଡନ୍‌ରାଜ୍ୟକୁ ଆସିଲା । ଆଟେଲାଣ୍ଟା ଦ୍ରୁତ ଗତିରେ ଯାଇ ପ୍ରଥମେ ବରାହକୁ ବର୍ଚ୍ଛାବିଦ୍ଧ କଲେ । ବରାହଟି ଅତ୍ୟନ୍ତ କ୍ରୋଧୋନ୍ମତ୍ତ ହୋଇ ପଡ଼ିଲା । ରାଜକୁମାର ମିଲିଏଗ୍ରେ ଯାଇ ବରାହକୁ ଖଡ଼୍‌ଗରେ ଆଘାତ କଲେ । ଜେସନ୍, ନେଷ୍ଟର୍ ପ୍ରଭୃତି ଅନ୍ୟ ଶିକାରୀମାନେ ବରାହକୁ ମାରିଦେଲେ । ବୀରତ୍ୱର ନିଦର୍ଶନ ରୂପରେ ଆଟେଲାଣ୍ଟା ବରାହର ଚମଡ଼ା ଉପହାର ସ୍ୱରୂପ ପାଇଲେ । ସେହି ଦିନଠାରୁ ରାଜକୁମାର ମିଲିଏଗ୍ରେ ଆଟେଲାଣ୍ଟାଙ୍କ ବୀରତ୍ୱରେ ମୁଗ୍‌ଧ ହୋଇ ତାଙ୍କ ପ୍ରତି ଆସକ୍ତ ହୋଇପଡ଼ିଲେ । ରାଜା ଇଆସସ୍ ଆଟେଲାଣ୍ଟାଙ୍କୁ ନିଜର କନ୍ୟା ବୋଲି ଚିହ୍ନି ପାରି ଗ୍ରହଣ କଲେ ।

ରାଜକୁମାର ମିଲିଏଗ୍ରେଙ୍କର ଆକସ୍ମିକ ମୃତ୍ୟୁ ଘଟିଲା । ମିଲିଏଗ୍ରେଙ୍କ ଜନ୍ମର ସପ୍ତମ ଦିବସରେ ତିନିଭାଗ୍ୟ ଭଗିନୀ ଆସି କହିଯାଇଥିଲେ ଯେ, ଜଳୁଥିବା ଇନ୍ଧନଖଣ୍ଡ ରାଜକୁମାରଙ୍କର ଜୀବନ । ମିଲିଏଗର୍‌ଙ୍କର ମାତା ଆଲ୍‌ଥେଆ ଏହା ଶୁଣିବା ମାତ୍ରେ ଇନ୍ଧନଖଣ୍ଡଟି ଲିଭାଇଦେଇ ତାକୁ ସାଇତି ରଖିଲେ ।

ମିଲିଏଗର୍ ଯେତେବେଳେ ପୂର୍ବୋକ୍ତ ବରାହକୁ ମାରି ଫେରୁଥିଲେ ସେତେବେଳେ ଆଟେଲାଣ୍ଟାଙ୍କଠାରୁ ସେହି ବରାହର ଚମଡ଼ାଟିକୁ ମିଲିଏଗର୍‌ଙ୍କର ଦୁଇଜଣ ମାମୁଁ ଛଡ଼ାଇ ନେବାକୁ ବସିଥିଲେ । ଫଳରେ ସେମାନଙ୍କ ସହିତ ମିଲିଏଗ୍ରେଙ୍କର ଯୁଦ୍ଧହେଲା ଓ ଯୁଦ୍ଧରେ ତାଙ୍କର ମାମୁଁ ଦୁହେଁ ପ୍ରାଣ ହରାଇଲେ । ଆଲ୍‌ଥେଆ ଏଥିରେ ଅତିମାତ୍ରାରେ କ୍ରୋଧାନ୍ୱିତା ହୋଇ ପଡ଼ିଲେ ଏବଂ ମିଲିଏଗର୍‌ଙ୍କର ଜୀବନରୂପୀ ଇନ୍ଧନଖଣ୍ଡଟି ବାହାର କରି ଜାଳି ଭସ୍ମସାତ୍ କରିଦେଲେ । ଇନ୍ଧନଖଣ୍ଡଟି ବିନାଶପ୍ରାପ୍ତ ହେବା ସଙ୍ଗେ ସଙ୍ଗେ ମିଲିଏଗର୍ ଆକସ୍ମିକ ଭାବରେ ପ୍ରାଣ ହରାଇଲେ ।

ରାଜା ଇଆସସ୍ ନିଜ କନ୍ୟା ଆଟେଲାଣ୍ଟାଙ୍କୁ ନେଇ ନିଜ ଉଆସରେ ରଖିଲେ ଏବଂ ତାଙ୍କୁ ବିବାହ କରିବାକୁ ଉପଦେଶ ଦେଲେ ।

ଆଟଲାଣ୍ଟା ଭବିଷ୍ୟତ୍‌ବକ୍ତାଙ୍କ ବାଣୀ ପ୍ରତି ଅବହିତ ଥିଲେ । ତେଣୁ ସେ ତାଙ୍କର ବିବାହ ପାଇଁ ଏକ ସର୍ତ୍ତ ରଖିଲେ ଯେ, ଗତିବେଗରେ ତାଙ୍କୁ ଯେଉଁ ଯୁବକ ପରାସ୍ତ କରିବ ସେ ତାଙ୍କୁ ବିବାହ କରିବେ । ପରାଜିତ ହେଲେ ଯୁବକ ମୃତ୍ୟୁଦଣ୍ଡ ପାଇବ । ଇଆସସ୍ ଏହି ସର୍ତ୍ତକୁ ସମ୍ମତି ପ୍ରଦାନ କଲେ । ଆଟଲାଣ୍ଟା ଥିଲେ ବେଗରେ ବିଚକ୍ଷଣା । ତେଣୁ ତାଙ୍କ ସହିତ ଦୌଡ଼ ପ୍ରତିଯୋଗିତାରେ ଯୋଗଦେଇ ବହୁ ରାଜକୁମାର ମୃତ୍ୟୁବରଣ କଲେ । ଆର୍କାଡ଼ିଆ ରାଜା ଆମ୍ଫିଡାମସ୍‌ଙ୍କର ପୁତ୍ର ମିଲାନିୟନ୍ ଆଟଲାଣ୍ଟାଙ୍କୁ ଦୌଡ଼ ପ୍ରତିଯୋଗିତାରେ ପରାସ୍ତ କରିବା ନିମନ୍ତେ ଆଫ୍ରୋଡ଼ାଇଟ୍‌ଙ୍କର ଶରଣାପନ୍ନ ହେଲେ । ସେ ମିଲାନିୟନ୍‌ଙ୍କୁ ତିନିଗୋଟି ସୁନାର ଆତ ଦେଇ କହିଲେ ଯେ, ଦୌଡ଼ ପ୍ରତିଯୋଗିତା ସମୟରେ ପଥ ମଧ୍ୟରେ ଗୋଟି ଗୋଟି କରି ସୁନାର ଆତକୁ ପକାଇ ଆଟଲାଣ୍ଟାଙ୍କର ଗତିକୁ ବିଳମ୍ବିତ କରିବାକୁ ହେବ । ମିଲାନିୟନ୍ ତାହା କଲେ ଏବଂ ଆଟଲାଣ୍ଟା ଗତିପଥରୁ ଗୋଟିକ ପରେ ଗୋଟିଏ ସୁନାର ଆତ ଗୋଟାଇବା ଫଳରେ ମିଲାନିୟନ୍‌ଙ୍କ ପରେ ଯାଇ ବିଜୟ ସ୍ତମ୍ଭକୁ ଛୁଇଁଲେ ।

ଆଟଲାଣ୍ଟାଙ୍କ ସହିତ ମିଲାନିୟନ୍‌ଙ୍କର ବିବାହ ଅନୁଷ୍ଠିତ ହେଲା । ଆଟଲାଣ୍ଟାଙ୍କ ଜୀବନରେ ଭବିଷ୍ୟତ୍‌ବକ୍ତାଙ୍କର ବାଣୀ ସତ୍ୟରେ ପରିଣତ ହେଲା । ଦିନେ ଆଟଲାଣ୍ଟା ଓ ମିଲାନିୟନ୍ ଜିଅସ୍‌ଙ୍କର ମନ୍ଦିର ପାଖ ଦେଇ ଯାଉଥିବା ସମୟରେ ସେହି ପବିତ୍ର ସ୍ଥାନରେ ମିଲାନିୟନ୍ ଆଟଲାଣ୍ଟାଙ୍କ ସହିତ ଶୟନ କରିବାକୁ ତାଙ୍କୁ ପ୍ରବର୍ତ୍ତାଇଲେ । ଜିଅସଙ୍କ ପୁଣ୍ୟ-ସ୍ଥାନକୁ କଳୁଷିତ କରିବା ଅପରାଧରେ ଜିଅସ୍ ତାଙ୍କୁ ଦୁଇଗୋଟି ସିଂହରେ ପରିଣତ କରିଦେଲେ । ଏହାଦ୍ୱାରା ସେମାନେ ବାରମ୍ବାର ପରସ୍ପରକୁ ଉପଭୋଗ କରିବାରୁ ବଞ୍ଚିତ ହେଲେ ।

ଗ୍ରୀକ୍ ପୁରାଣର ଏହି ଉପାଖ୍ୟାନକୁ ଓଭିଡ୍ ଯଥେଷ୍ଟ ଚାତୁର୍ଯ୍ୟତାର ସହିତ ରକ୍ଷା କରି ଆଟଲାଣ୍ଟାଙ୍କର ଦୌଡ଼ ପ୍ରତିଯୋଗିତା ବିଷୟକୁ ଅତ୍ୟନ୍ତ ଜୀବନ୍ତ ଭାବରେ ବର୍ଣ୍ଣନା କରିଅଛନ୍ତି । ବିବାହ ଆଟଲାଣ୍ଟାଙ୍କ ଜୀବନ ଧ୍ୱଂସର କାରଣ ହେବ ବୋଲି ଭବିଷ୍ୟତ୍‌ବକ୍ତାଙ୍କର ବାଣୀ ଶ୍ରବଣ

କରି ଆଟ୍‌ଲାଣ୍ଟା କୁମାରୀ ଭାବରେ ଜୀବନ ଅତିବାହିତ କରିବା ପାଇଁ ମନସ୍ଥ କରିଥିଲେ । ସେ ଭଲଭାବରେ ଜାଣିଥିଲେ ଯେ, ତାଙ୍କୁ ଗତିବେଗରେ କେହି ପରାସ୍ତ କରିପାରିବେ ନାହିଁ । ତେଣୁ ସେ ତାଙ୍କର ପଣ ରଖିଲେ, ଗତିବେଗରେ ଯେଉଁ ଯୁବକ ତାଙ୍କୁ ପରାସ୍ତ କରିବ ସେ ତାଙ୍କର ପତି ହେବ । ଯେଉଁ ଯୁବକ ତାଙ୍କୁ ପରାସ୍ତ ନକରି ନିଜେ ପରାଜିତ ହେବ, ସେ ପ୍ରାଣଦଣ୍ଡ ପାଇବ । ଏପରି ଏକ ବିଷମ ପଣ ଅନୁସାରେ ଆଟ୍‌ଲାଣ୍ଟାଙ୍କର ସୌନ୍ଦର୍ଯ୍ୟରେ ଆକୃଷ୍ଟ ହୋଇ ବହୁ ରାଜକୁମାର ପ୍ରାଣ ହରାଇଥିଲେ । ଥରେ ଦୌଡ଼ ପ୍ରତିଯୋଗିତା ଅନୁଷ୍ଠିତ ହେଉଥିବା ସମୟରେ ହିପୋମିନସ୍ ତାହା ଦେଖି ମନ୍ତବ୍ୟ ପ୍ରକାଶ କରିଥିଲେ ଯେ, ଜଣେ ପତ୍ନୀ ପାଇଁ ଏପରି ବିଷମ ସର୍ତ୍ତ ସମ୍ବଳିତ ପ୍ରତିଯୋଗିତା କଣ ଯଥାର୍ଥ ? ମାତ୍ର ସେ ଯେତେବେଳେ ଆଟ୍‌ଲାଣ୍ଟାଙ୍କୁ ଦେଖିଲେ ସେତେବେଳେ ତାଙ୍କ ସୌନ୍ଦର୍ଯ୍ୟରେ ଏପରି ଭାବରେ ବିମୋହିତ ହୋଇ ପଡ଼ିଲେ ଯେ, ଦୌଡ଼ ପ୍ରତିଯୋଗିତାରେ ନିଜେ ଯୋଗଦେବାକୁ ଇଚ୍ଛା ପ୍ରକାଶ କଲେ । ଆଟ୍‌ଲାଣ୍ଟା ଦୌଡ଼ିବା ସମୟରେ ମଧ୍ୟ ହିପୋମିନସ୍‌ଙ୍କ ଆଖିକୁ ଅତ୍ୟନ୍ତ ସୁନ୍ଦରୀ ଭାବରେ ଦେଖାଯାଉଥିଲେ । ହିପୋମିନସ ଦୌଡ଼ ପ୍ରତି-ଯୋଗିତାରେ ଯୋଗଦେବା ନିମନ୍ତେ ନିଜର ଇଚ୍ଛା ପ୍ରକାଶ କରି ନିଜର ଶକ୍ତି ସାମର୍ଥ୍ୟ ବିଷୟରେ ଆଟ୍‌ଲାଣ୍ଟାଙ୍କୁ ସଚେତନ କରାଇ-ଥିଲେ । ଆଟ୍‌ଲାଣ୍ଟା ହିପୋମିନସ୍‌ଙ୍କ କଥାରେ ଏବଂ ରୂପରେ ମୁଗ୍ଧ ହୋଇଥିଲେ । ହିପୋମିନସ୍ ଆଫ୍ରୋଡାଇଟ୍‌ଙ୍କଠାରୁ ତିନୋଟି ସୁନାର ଆତ ପାଇଲେ ଏବଂ କୌଶଳେ କ୍ରମେ ଗତି ମନ୍ଥରେ ତାହାକୁ ପକାଇ ପ୍ରତିଯୋଗିତାରେ ଜୟଲାଭ କଲେ । ହିପୋମିନସ୍ ଓ ଆଟ୍‌ଲାଣ୍ଟାଙ୍କର ପରିଣୟ ସମ୍ପନ୍ନ ହେଲା । ସେମାନେ ଆଫ୍ରୋଡାଇଟ୍‌ଙ୍କୁ ଧନ୍ୟବାଦଟିଏ ମଧ୍ୟ ଦେଲେ ନାହିଁ । ତେଣୁ ସେ ସେମାନଙ୍କ ପ୍ରତି କ୍ରୋଧାନ୍ୱିତା ହେଲେ । ସେମାନେ ଦିନେ ମନ୍ଦିର ପାର୍ଶ୍ୱ ଦେଇ ଯିବା ସମୟରେ ଗୋଟିଏ ଗୁମ୍ଫା ଭିତରକୁ ପ୍ରବେଶ କରି ସେ ସ୍ଥାନର ପବିତ୍ରତା ନଷ୍ଟକଲେ । ଏଥିରେ ଦେବୀ ରାଗିଯାଇ ସେମାନଙ୍କୁ ଦୁଇଟି ସିଂହରେ ପରିଣତ କରିଦେଲେ ।

ଗ୍ରୀକ୍ ପୁରାଣର ଉପାଖ୍ୟାନକୁ ଉଇଲିୟମ୍ ମରିସ୍ କେତେକାଂଶରେ ପରିବର୍ତ୍ତିତ କରି ତାଙ୍କ କାବ୍ୟ ରଚନା କରି ଅଛନ୍ତି । ମରିସ୍‌ଙ୍କର ଗଳ୍ପାଂଶ ହେଉଛି; ସିରସ୍ ରାଜ୍ୟର ରାଜା ସୋନିୟସ୍‌ଙ୍କର କନ୍ୟାଙ୍କର ନାମ ଆଟ୍‌ଲାଣ୍ଟା । ରାଜା ଆଟ୍‌ଲାଣ୍ଟାଙ୍କୁ ଶିଶୁ ଅବସ୍ଥାରେ ଅରଣ୍ୟରେ ଛାଡ଼ିଦେଇ ଆସିଥିଲେ । ଶିଶୁ ଆଟ୍‌ଲାଣ୍ଟା ଅସହାୟ ଅବସ୍ଥାରେ ପଡ଼ିଥିବା ସମୟରେ ଗୋଟିଏ ଭଲ୍ଲୁକୀ ତାଙ୍କୁ କ୍ଷୀରଦେଇ ବଞ୍ଚାଇଥିଲା । ଜଣେ କାଠକଟାଳୀ ଦିନେ ସେହି ଅରଣ୍ୟରେ ଶିଶୁ ଆଟ୍‌ଲାଣ୍ଟାଙ୍କୁ ଦେଖି ତାଙ୍କୁ ସେଠାରୁ ନେଇଆସିଲା । ସେହି କାଠକଟାଳୀର ଯତ୍ନରେ ଆଟ୍‌ଲାଣ୍ଟା କ୍ରମେ ଶୈଶବ ଅବସ୍ଥା ଅତିକ୍ରମ କରି ଯୌବନରେ ପଦାର୍ପଣ କଲେ । ସେ ଏହି ସମୟରେ ନିଜକୁ ଡ଼ାଏନାଙ୍କ ପୂଜାରେ ନିୟୋଜିତ କରିଥିଲେ । ଆଟ୍‌ଲାଣ୍ଟା ଅରଣ୍ୟରେ ବୁଲି ଶିକାର କରିବାକୁ ଅତ୍ୟନ୍ତ ଭଲ ପାଉଥିଲେ । ସେ ଜୀବନରେ ଅବିବାହିତା ରହିବା ପାଇଁ ପ୍ରତିଜ୍ଞାବଦ୍ଧା ହୋଇଥିଲେ । ଏହିପରି ଭାବରେ ଜୀବନ ଅତିବାହିତ କରିବା ଅବସ୍ଥାରେ ଦିନେ ହଠାତ୍ ରାଜା ସୋନିୟସ୍‌ଙ୍କ ସହିତ ତାଙ୍କର ସାକ୍ଷାତ ହେଲା । ରାଜା ସୋନିୟସ୍ ନିଜ କନ୍ୟା ଆଟ୍‌ଲାଣ୍ଟାଙ୍କୁ ଚିହ୍ନି ପାରିଲେ ଓ ତାଙ୍କୁ ନିଜ ନଗରକୁ ନେଇଗଲେ ।

ଆଟ୍‌ଲାଣ୍ଟା ଅତ୍ୟନ୍ତ ସୁନ୍ଦରୀ ଥିଲେ । ତେଣୁ ତାଙ୍କୁ ବିବାହ କରିବା ପାଇଁ ବହୁ ରାଜପୁତ୍ର ପ୍ରାର୍ଥୀ ହେଲେ । ଆଟ୍‌ଲାଣ୍ଟା ନିଜର ବିବାହ ପାଇଁ ସର୍ତ୍ତ ରଖିଥିଲେ ଯେ, ଯେଉଁ ଯୁବକ ତାଙ୍କୁ ଦୌଡ଼ ପ୍ରତିଯୋଗିତାରେ ପରାସ୍ତ କରିବେ ସେ ତାଙ୍କୁ ପତିରୂପରେ ବରଣ କରିବେ । ମାତ୍ର ଯେଉଁ ଯୁବକ ପ୍ରତିଯୋଗିତାରେ ପରାଜିତ ହେବେ ସେ ମୃତ୍ୟୁଦଣ୍ଡ ପାଇବେ । ଆଟ୍‌ଲାଣ୍ଟାଙ୍କର ସୌନ୍ଦର୍ଯ୍ୟରେ ଆକୃଷ୍ଟ ହୋଇ, ଦୌଡ଼ ପ୍ରତିଯୋଗିତାରେ ଅଂଶ ଗ୍ରହଣ କରି ବହୁ ରାଜପୁତ୍ର ମୃତ୍ୟୁବରଣ କଲେ ।

ଯେତେବେଳେ ବହୁ ରାଜପୁତ୍ର ଆଟ୍‌ଲାଣ୍ଟାଙ୍କ ସହିତ ଦୌଡ଼ ପ୍ରତିଯୋଗିତାରେ ଯୋଗଦେଇ ମୃତ୍ୟୁ ବରଣ କରୁଥିଲେ, ସେତିକିବେଳେ

ଥରେ ଆର୍କେଗାସ୍‌ର ରାଜା ଆମ୍ପିଡାମସ୍‌ଙ୍କର ପୁତ୍ର ମିଲାନିଅନ୍ ଏହି ପ୍ରତିଯୋଗିତା ଦେଖିବାର ସୁଯୋଗ ପାଇଥିଲେ । ସେ ଆଟେଲାଣ୍ଟାଙ୍କର ଏହି ପ୍ରତିଜ୍ଞା ଶୁଣି ଯେ କୌଣସି ଉପାୟରେ ତାଙ୍କୁ ପରାଜିତ କରିବାକୁ ବଦ୍ଧପରିକର ହେଲେ । ତାପରେ ମିଲାନିୟନ୍ ଆଟେଲାଣ୍ଟାଙ୍କର ପିତା ସୋନିୟସ୍‌ଙ୍କ ନିକଟକୁ ଯାଇ ଦୌଡ଼ ପ୍ରତିଯୋଗିତାରେ ଯୋଗ ଦେବାପାଇଁ ନିଜର ଇଚ୍ଛା ପ୍ରକାଶ କଲେ । ରାଜା ସୋନିୟସ୍ ଏପରି ଏକ ବିପଦପୂର୍ଣ୍ଣ ପ୍ରତିଯୋଗିତାରେ ଅଂଶଗ୍ରହଣ ନକରିବାକୁ ମିଲାନିୟନ୍‌ଙ୍କୁ ପ୍ରବର୍ତ୍ତାଇଲେ । ମାତ୍ର ମିଲାନିୟନ୍ ତାଙ୍କର କୌଣସି କଥା ଶୁଣିଲେ ନାହିଁ । ତେଣୁ ମିଲାନିୟନ୍‌ଙ୍କ ସହିତ ଆଟେଲାଣ୍ଟାଙ୍କର ଦୌଡ଼ ପ୍ରତିଯୋଗିତା ଏକମାସ ପରେ ଅନୁଷ୍ଠିତ ହେବାର ଘୋଷଣା କରାଗଲା । ଏହି ଦୌଡ଼ ପ୍ରତିଯୋଗିତାରେ ଜୟଲାଭ କରିବା ନିମିତ୍ତ କୌଣସି ଦେବତାଙ୍କର ଶରଣାପନ୍ନ ହେବା ପାଇଁ ମିଲାନିୟନ୍‌ଙ୍କୁ ଉପଦେଶ ଦିଆଗଲା ।

ଆଟେଲାଣ୍ଟାଙ୍କୁ ଲାଭ କରିବା ଉଦ୍ଦେଶ୍ୟରେ ମିଲାନିୟନ୍ ଗ୍ରୀକ୍ ସମାଜର ପ୍ରଣୟର ଅଧିଷ୍ଠାତ୍ରୀ ଦେବୀ ଭେନସ୍‌ଙ୍କୁ ଆରାଧନା କଲେ । ମିଲାନିୟନ୍‌ଙ୍କର ଆରାଧନାରେ ସନ୍ତୁଷ୍ଟ ହୋଇ ଭେନସ୍ ତାଙ୍କୁ ତିନିଗୋଟି ସୁନାର ଆତ ଦେଲେ । ସେ କହିଲେ ଯେ, ଦୌଡ଼ ପ୍ରତିଯୋଗିତାରେ ଯେତେବେଳେ ଆଟେଲାଣ୍ଟା ଆଗକୁ ବଳିଯିବେ ସେତେବେଳେ ପଥମଧ୍ୟରେ ସୁନାର ଆତ ପକାଇଲେ ମିଲାନିୟନ୍ ଜୟଲାଭ କରିବେ । ଭେନସ୍‌ଙ୍କର ଏପରି ବାକ୍ୟ ଶୁଣି ମିଲାନିୟନ୍‌ଙ୍କ ମନରେ ଆଶା ବଳବତୀ ହେଲା ଓ ସେ ଯେ ଦୌଡ଼ ପ୍ରତିଯୋଗିତାରେ ଜୟଲାଭ କରିବେ, ଏ ବିଷୟରେ ନିଶ୍ଚିତ ହେଲେ । ଘଟଣାର ପ୍ରବାହରେ ଆଟେଲାଣ୍ଟା ନିଜକୁ ପୂର୍ବାପେକ୍ଷା କମ୍ ଶକ୍ତିଶାଳୀନୀ ମନେ କଲେ ।

ପୂର୍ବ ନିର୍ଦ୍ଧାରିତ ଏକମାସ ସମୟ ଅତିବାହିତ ହେବା ପରେ ଆଟେଲାଣ୍ଟା ଓ ମିଲାନିୟନ୍‌ଙ୍କର ଦୌଡ଼ ପ୍ରତିଯୋଗିତା

ଅନୁଷ୍ଠିତ ହେଲା । ଆଟ୍‌ଲାଣ୍ଟା ଓ ମିଲାନିୟନ୍ ଦଉଡ଼ିବା ସମୟରେ ମିଲାନିୟନ୍ ପଥ ମଧ୍ୟରେ ଗୋଟିକ ପରେ ଗୋଟିଏ ସୁନାର ଆତ ପକାଇଲେ । ଦଉଡ଼ିବା ସମୟରେ ପଥ ମଧ୍ୟରେ ସୁନାର ଆତ ପଡ଼ିଥିବାର ଦେଖି ଆଟ୍‌ଲାଣ୍ଟା ସୁନାର ଆତ ପ୍ରତି ଆକୃଷ୍ଟ ହୋଇ ଆତକୁ ଗୋଟାଇବାକୁ ଲାଗିଲେ । ଶେଷ ଆତଟିକୁ ଗୋଟାଇ ନେଇ ଆଟ୍‌ଲାଣ୍ଟା ଦଉଡ଼ିବା ସମୟରେ ମୂର୍ଚ୍ଛିତା ହୋଇ ପଡ଼ି-ଯିବାବେଳେ ମିଲାନିୟନ୍ ତାଙ୍କୁ ରକ୍ଷାକରିଦେଲେ । ଫଳରେ ମିଲାନିୟନ୍ ପ୍ରତିଯୋଗିତାରେ ଜୟଲାଭ କଲେ । ଆଟ୍‌ଲାଣ୍ଟା ଓ ମିଲାନିୟନଙ୍କର ମିଳନ ହେଲା ।

କବିବର ରାଧାନାଥ ଉଷାକାବ୍ୟ ରଚନା କରିବା ସମୟରେ ଗ୍ରୀକ୍ ପୁରାଣର ଉପାଖ୍ୟାନ ଓ ଓଭିଡ୍‌ଙ୍କ କାବ୍ୟର କଥାବସ୍ତୁ ଦ୍ୱାରା ପ୍ରଭାବିତ ହୋଇଥିଲେ ହେଁ ମରିସ୍‌ଙ୍କର କାବ୍ୟ ଯେ ତାଙ୍କୁ ଆଦୌ ପ୍ରଭାବିତ କରିନାହିଁ, ଏକଥା କୁହାଯାଇ ପାରିବ ନାହିଁ । ରାଧାନାଥ ତାଙ୍କ କାବ୍ୟରେ ନିଜର ବୈଶିଷ୍ଟ୍ୟ ପ୍ରତିପାଦନ କରିଅଛନ୍ତି । ରାଧାନାଥ ଓ ମରିସ୍‌ଙ୍କ କାବ୍ୟର କଥାବସ୍ତୁ ମଧ୍ୟରେ ସାମଞ୍ଜସ୍ୟ ଓ ପାର୍ଥକ୍ୟ କପରି ଭାବରେ ପରିଲକ୍ଷିତ ହୋଇଥାଏ, ତାହା ଏଠାରେ ଆଲୋଚନା କରାଯାଇପାରେ ।

ଦେବଭୂମି ଭାରତ ବର୍ଷରେ କାବ୍ୟ ନାୟକ ଓ କାବ୍ୟ ନାୟିକା ମନୁଷ୍ୟଜନ୍ମ ଗ୍ରହଣ କରିଥିଲେ ହେଁ ସେମାନେ ଅନେକ ସମୟରେ ସ୍ୱର୍ଗରୁ ଅଭିଶପ୍ତ ହୋଇ ମର୍ତ୍ତ୍ୟରେ ଅବତୀର୍ଣ୍ଣ ହୋଇ-ଥାଆନ୍ତି । କବିବର ରାଧାନାଥ ତାଙ୍କର ନାୟକ ନାୟିକାଙ୍କୁ ସ୍ୱର୍ଗର ଅଭିଶପ୍ତ ଗନ୍ଧର୍ବ ରାଜ୍ୟରୁ ମର୍ତ୍ତ୍ୟଭୂମିରେ ଅବତୀର୍ଣ୍ଣ କରିଛନ୍ତି । ଉଷା ଏବଂ ଜୟନ୍ତ ରାଜ ପରିବାରରେ ଜନ୍ମ ଗ୍ରହଣ କରି ଲାଳିତପାଳିତ ହୋଇଅଛନ୍ତି ।

ଆଟ୍‌ଲାଣ୍ଟା ରେସ୍‌ରେ ଆଟ୍‌ଲାଣ୍ଟା ଜଣେ ରାଜକନ୍ୟା ଓ ମିଲାନିୟନ୍ ଜଣେ ରାଜକୁମାର । ଘଟଣାଚକ୍ରରେ ଆଟ୍‌ଲାଣ୍ଟାଙ୍କର

ଶୈଶବ ଅବସ୍ଥା ଅରଣ୍ୟରେ ଅତିବାହିତ ହୋଇଅଛି । ରାଜା ତାଙ୍କୁ ଅରଣ୍ୟରେ ଛାଡ଼ିଦେଇ ଆସିବା ପରେ ଗୋଟିଏ ଭାଲୁଣୀ ତାଙ୍କୁ କ୍ଷୀରଦାନ କରି ବଢ଼ାଇଥିଲା । କାଳକ୍ରମେ ଜଣେ କାଠକଟାଳି ତାଙ୍କୁ ଉଦ୍ଧାର କରି ଆଣିଲା ଓ ରାଜା ସୋନପ୍ସୁସ୍ ଆଟ୍‌ଲାଣ୍ଟାଙ୍କୁ ଚିହ୍ନିପାରି ନିଜ ନଗରକୁ ନେଇଥିଲେ । ମାତ୍ର ରାଧାନାଥଙ୍କ କାବ୍ୟରେ ଉଷାଙ୍କର ଜୀବନ ଏପରି ଭାବରେ ଅତିବାହିତ ହୋଇନାହିଁ । ଉଷା ନୃରୁ-ରାଜାଙ୍କର ଉଆସରେ ନିଜର ବାଲ୍ୟାବସ୍ଥା ଅତିକ୍ରମ କରିଥିଲେ । ରାଜା ନୃରୁ ତାଙ୍କର ଏକମାତ୍ର କନ୍ୟା ଉଷାଙ୍କୁ ଏପରି ଭାବରେ ସ୍ନେହ ପାଶରେ ଆବଦ୍ଧ କରିଥିଲେ ଯେ, ଶିକାର କରିବାକୁ ଯିବା ସମୟରେ ସେ ଉଷାଙ୍କୁ ହାତୀ ଉପରେ ଆହ୍ଲାଦରେ ବସାଇ ନେଇଯାଉଥିଲେ । ଉଷା ତାଙ୍କର ବାଲ୍ୟକାଳରୁ ଏହିପରି ଭାବରେ ଶିକାର ଦେଖି ଦେଖି ଶିକାର ପ୍ରତି ଅତ୍ୟନ୍ତ ଆସକ୍ତ ହୋଇ ପଡ଼ିଥିଲେ । ତାଙ୍କର ଏହି ଆସକ୍ତି ଅଭ୍ୟାସରେ ପରିଣତ ହୋଇଥିଲା । ସେ ତାଙ୍କର ଯୌବନାବସ୍ଥାରେ ଜଣେ ସୁଦକ୍ଷ ଶିକାରୀଣୀରେ ପରିଣତ ହୋଇଥିଲେ । ଉଷାଙ୍କର ବାଲ୍ୟଜୀବନ ଓ ପାରିପାର୍ଶ୍ୱିକ ଅବସ୍ଥା ତାଙ୍କୁ ଯୌବନ କାଳରେ ବିବାହ ଲାଗି ଏକ ବିଷମ ପ୍ରତିଜ୍ଞାରେ ଆବଦ୍ଧ ହେବା ଲାଗି ଅନୁକୂଳ ପରିବେଶ ସୃଷ୍ଟି କରିଥିଲା । ବିବାହର ପଣ ମରିସ୍ ଏବଂ ରାଧାନାଥଙ୍କ କାବ୍ୟରେ ସମାନ ।

ଆଟ୍‌ଲାଣ୍ଟାଙ୍କୁ ମିଲାନିୟନ୍ ଦେଖିଥିଲେ ଦୌଡ଼ ପ୍ରତିଯୋଗିତା ସମୟରେ । ମାତ୍ର ଉଷା ଓ ଜୟନ୍ତଙ୍କର ସାକ୍ଷାତର ଘଟଣା ଭିନ୍ନ । ଅରଣ୍ୟରେ ଏକ ଜଳାଶୟ ନିକଟରେ ଉଷା ବନ୍ୟଶୂକର ଶିକାର କରିବା ସମୟରେ ଜୟନ୍ତ ଉଷାଙ୍କୁ ଦେଖିଥିଲେ । ଜୟନ୍ତ ଉଷାଙ୍କ ସୌନ୍ଦର୍ଯ୍ୟରେ ଆକୃଷ୍ଟ ହୋଇ ତାଙ୍କୁ ଲାଭ କରିବା ପାଇଁ ବ୍ୟଗ୍ର ହୋଇ ପଡ଼ିଥିଲେ ।

ଦୌଡ଼ ପ୍ରତିଯୋଗିତାରେ ଯୋଗ ଦେବା ପାଇଁ ମିଲାନିୟନ୍ ସୋନପ୍ସୁସ୍‌ଙ୍କ ନିକଟରେ ଯେପରି ଭାବରେ ନିଜର ମନୋଭାବ ପ୍ରକାଶ କରିଥିଲେ ଜୟନ୍ତ ସେହିପରି ଭାବରେ ରାଜା ନୃରୁଙ୍କ ନିକଟରେ

ନିଜର ମନୋଭାବ ପ୍ରକାଶ କରିଥିଲେ । ମିଲାନିୟନ୍‌ଙ୍କୁ ସୋନିୟସ୍ ଦୌଡ଼ ପ୍ରତିଯୋଗିତାରେ ଯୋଗ ନଦେବାକୁ ପ୍ରବର୍ତ୍ତାଇ ଥିଲେ; ମାତ୍ର ତାଙ୍କର ଇଚ୍ଛା ଶକ୍ତିର ଦୃଢ଼ତା ଯୋଗୁଁ ତାଙ୍କୁ ଏକମାସ ପରେ ଦୌଡ଼ ପ୍ରତିଯୋଗିତାରେ ଯୋଗଦାନ କରିବାକୁ କୁହାଯାଇଥିଲା । ଜୟନ୍ତ ଯେତେବେଳେ ନୃପତିଙ୍କ ନିକଟରେ ନିଜର ଇଚ୍ଛା ପ୍ରକାଶ କଲେ ତାର ପରଦିନ ତାଙ୍କୁ ଦୌଡ଼ ପ୍ରତିଯୋଗିତାରେ ଯୋଗ ଦେବାକୁ ପଡ଼ିଥିଲା ।

ମିଲାନିୟନ୍‌ଙ୍କୁ ଦୌଡ ପ୍ରତିଯୋଗିତାରେ ଯୋଗ ଦେବାଲାଗି ଏକମାସ ସମୟ ଦିଆଯିବା ସଙ୍ଗେ ସଙ୍ଗେ ତାଙ୍କୁ ଉପଦେଶ ଦିଆଗଲା ଯେ ସେ ତାଙ୍କର ଅଭିଳାଷ ପୂରଣ ପାଇଁ କୌଣସି ଦୈବୀଶକ୍ତିର ଶରଣାପନ୍ନ ହେବା ଉଚିତ । ମିଲାନିୟନ୍ ପ୍ରଣୟର ଦେବୀ ଭେନସ୍‌ଙ୍କୁ ଏଥିପାଇଁ ପ୍ରାର୍ଥନା କରି ତିନିଗୋଟି ସୁନାର ଆତ ପାଇଥିଲେ ।

ଜୟନ୍ତ ଘଟଣାକ୍ରମେ କାର୍ତ୍ତିକେୟଙ୍କର ସାକ୍ଷାତ ପାଇଥିଲେ । କାର୍ତ୍ତିକେୟଙ୍କର ମୟୂରକୁ ବ୍ୟାଧ କବଳରୁ ରକ୍ଷା କରି ସେ ତାଙ୍କଠାରୁ ବର ପାଇଥିଲେ ଯେ, ଆବଶ୍ୟକ ସମୟରେ ତାଙ୍କୁ ସ୍ମରଣ କଲେ ସେ ସାହାଯ୍ୟ ପାଇବେ । ଜୟନ୍ତ ଦୌଡ ପ୍ରତିଯୋଗିତାରେ ଯୋଗ ଦେବାକୁ ସ୍ଥିର କରି କାର୍ତ୍ତିକେୟଙ୍କୁ ସ୍ମରଣ କଲେ ଓ ଏଥିପାଇଁ ତାଙ୍କଠାରୁ ତିନିଗୋଟି ସ୍ୱର୍ଣ୍ଣ କମଳ ପାଇଥିଲେ ।

ଶେଷ କମଳଟିକୁ ଉଠାଇ ନେଇ ଉଷା ଦଉଡ଼ିଲେ, ମାତ୍ର ଜୟଲାଭ କରି ପାରିଲେ ନାହିଁ । ଶେଷ ଆତଟିକୁ ଉଠାଇ ନେଇ ଆଟ୍‌ଲାଣ୍ଟା ଆଉ ଦଉଡ଼ି ପାରିଲେ ନାହିଁ । ସେ ମୂର୍ଚ୍ଛିତା ହୋଇ ପଡ଼ିଯିବା ଅବସ୍ଥାରେ ମିଲାନିୟନ୍ ତାଙ୍କୁ ଧରିପକାଇ ରକ୍ଷାକଲେ ।

ମିଲାନିୟନ୍ ଦୌଡ଼ ପ୍ରତିଯୋଗିତାରେ ଜୟଲାଭ କରିବା ପରେ ଆଟ୍‌ଲାଣ୍ଟାଙ୍କ ସହିତ ତାଙ୍କର ପରିଣୟ ସମ୍ପନ୍ନ ହେଲା । ଆଟ୍‌ଲାଣ୍ଟାରେସ୍‌ର କଥାବସ୍ତୁର ମିଳନାତ୍ମକ ପରିସମାପ୍ତି ଏହିପରି ଭାବରେ

ଘଟିଅଛି । ମାତ୍ର ଉଷା କାବ୍ୟର କଥାବସ୍ତୁର ପରିସମାପ୍ତି ଏପରି ଭାବରେ ଘଟିନାହିଁ । କବିବର ରାଧାନାଥ ଉଷା ଓ ଜୟନ୍ତଙ୍କର ମିଳନରେ ଏକ ଦୁଃଖାନ୍ତ ବାତାବରଣ ସୃଷ୍ଟି କରିଛନ୍ତି । ଏହାଛଡ଼ା, ପୌରାଣିକ ପରଂପରାର ଅଭିଶପ୍ତା ବିନୋଦିନୀ ଉପାଖ୍ୟାନକୁ ଧ୍ରୁବାଗ୍ନିରପେ ନବ କାଳୀଙ୍କ ମୁଖରେ ବର୍ଣ୍ଣନା କରିଅଛନ୍ତି । ପାଶ୍ଚାତ୍ୟ କଥାବସ୍ତୁ ସହିତ ପ୍ରାଚ୍ୟ କଥାବସ୍ତୁକୁ ରାଧାନାଥ ଅତ୍ୟନ୍ତ ଦକ୍ଷତାର ସହିତ ମିଶାଇ ଦେଇଅଛନ୍ତି ।

ଉଷାକାବ୍ୟ ରଚନା କରିବା ନିମିତ୍ତ କବିବର ରାଧାନାଥ କେଉଁ ସୂତ୍ରରୁ କପରି ପ୍ରେରଣା ଲଭ କରିଥିଲେ ସେ ବିଷୟରେ ବହୁ ଆଲୋଚକ ପ୍ରାୟ ଏକମତ ପୋଷଣ କରିଅଛନ୍ତି । ଗ୍ରୀକ୍ ପୁରାଣର ଉପାଖ୍ୟାନ ବା ଓଭିଡ୍‌ଙ୍କ କାବ୍ୟର କଥାବସ୍ତୁ ରାଧାନାଥଙ୍କର ପ୍ରେରଣାର ଉତ୍ସ । ଉଇଲିୟମ୍ ମରିସ୍‌ଙ୍କର କାବ୍ୟର ପ୍ରଭାବକୁ କେତେକ ଆଲୋଚକ ସ୍ୱୀକାର କଲେହେଁ ଅଧ୍ୟାପକ ଗୌରକୁମାର ବ୍ରହ୍ମା ତାହା ସ୍ୱୀକାର କରିବାକୁ ଆଦୌ ପ୍ରସ୍ତୁତ ନୁହନ୍ତି । ଉଷାକାବ୍ୟ ରଚନା ମୂଳରେ କବିବର ରାଧାନାଥଙ୍କର ପିତୃବ୍ୟଙ୍କର ପୁତ୍ର ଅବିନାଶ ଚନ୍ଦ୍ର ରାୟଙ୍କର ଆକସ୍ମିକ ମୃତ୍ୟୁ ଘଟଣା ଏକ ପ୍ରେରଣା ଦାୟକ କାରଣ ବୋଲି ରାଧାନାଥ ଜୀବନୀ ଲେଖକ ଦୁର୍ଗାଚରଣ ରାୟ ମତ ପ୍ରକାଶ କରିଅଛନ୍ତି । ଏ ବିଷୟରେ ସେ ଲେଖିଛନ୍ତି, "ଅବିନାଶ ଚନ୍ଦ୍ରଙ୍କର ବିବାହ ଘଟଣା ଉପରୁ ରାଧାନାଥ ପ୍ରଗାଢ଼ ମନକଷ୍ଟରେ ଉଷା କାବ୍ୟ ଲେଖିଥିଲେ । ଅବିନାଶ ଚନ୍ଦ୍ରଙ୍କର ବିବାହ ଘଟଣାହିଁ ଉଷା ଜୟନ୍ତଙ୍କ ପରିଣୟ ସ୍ମାରକ ।" ( ୧ )

"ଉଷାକାବ୍ୟର ଏହି ଆକସ୍ମିକ ମୃତ୍ୟୁ ବିବରଣ ଗୋଟିଏ ସତ୍ୟମୂଳକ ଘଟଣା ଉପରେ ପ୍ରତିଷ୍ଠିତ ବୋଲି ଅନୁସନ୍ଧାନରେ ବୁଝାଯାଇଅଛି । ସନ ୧୮୮୮ ସାଲରେ ରାଧାନାଥଙ୍କ ପିତୃବ୍ୟଙ୍କର ଏକମାତ୍ର ପୁତ୍ର ବିବାହ ରାତିରେ ଠିକ୍ ବିବାହ ପରେ/ ପରେ ହଠାତ୍ ଝାଡ଼ାବେଗରେ ପ୍ରାଣ ହରାଇଥିଲେ । ପରିବାର ମଧ୍ୟରେ ଏହି ମର୍ମନ୍ତୁଦ ଘଟନା କବିଙ୍କ କାବ୍ୟର ପରିକଳ୍ପନାକୁ ପ୍ରଭାବାନ୍ୱିତ କରିଥିବା ବିଷୟ ଅନୁମାନ କରାଯାଇପାରେ ।" ( ୨ )

---

( ୧ ) ରାଧାନାଥ ଜୀବନୀ — ପୃ୯ — ୧୦ ।
( ୨ ) ରାଧାନାଥ ଜୀବନୀ — ପୃ ୭୭୭ ।

ରାଧାନାଥ ଜୀବନୀରେ ଦିଆଯାଇଥିବା ଏହି ଘଟଣାକୁ ଅଧ୍ୟାପକ ଡକ୍ଟର ନଟବର ସାମନ୍ତରାୟ ସମର୍ଥନ କରିନାହାନ୍ତି । ତାଙ୍କ ମତରେ କୌଣସି ଆତ୍ମୀୟ ସ୍ୱଜନଙ୍କ ବିବାହ ରାତିର ମୃତ୍ୟୁ ଉଷା-ଜୟନ୍ତ ମୃତ୍ୟୁ ଘଟଣାର ଜନକ ବୋଲି ଆମକୁ ଯାହା କୁହାଯାଏ ତାହା ରାଧାନାଥଙ୍କ ସୃଷ୍ଟି ପରିକଳ୍ପନାର ଏକ ଅପବ୍ୟାଖ୍ୟା ମାତ୍ର । ଉଷା-ଜୟନ୍ତ ମୃତ୍ୟୁ ଗଳ୍ପ-ଗଠନ-କୌଶଳର ସମ୍ପୂର୍ଣ୍ଣ ଅଙ୍ଗୀଭୂତ ଓ ଏହା ଏକ ସ୍ୱତନ୍ତ୍ର ସୃଷ୍ଟି ପରିକଳ୍ପନା ଦ୍ୱାରା ନିଷ୍ପନ୍ନ ।" (୧)

ଅଧ୍ୟାପକ ଡକ୍ଟର ନଟବର ସାମନ୍ତରାୟଙ୍କର ମତ ଏଠାରେ ଏକାନ୍ତ ପ୍ରଣିଧାନ ଯୋଗ୍ୟ । ରାଧାନାଥ ଜୀବନୀ ଲେଖକ ସ୍ଥୂଳଭାବରେ ଯେଉଁ ମତ ପ୍ରଦାନ କରିଅଛନ୍ତି ତାହା ସୂକ୍ଷ୍ମ ଦୃଷ୍ଟିରେ ଯଥାର୍ଥ ବିବେଚିତ ହୋଇ ନପାରେ ।

କବିବର ରାଧାନାଥ ଉଷା କାବ୍ୟର କଥାବସ୍ତୁ ଲାଗି ବିଦେଶୀ କଥାବସ୍ତୁ ଗ୍ରହଣ କରି ଏ ଦେଶର ପାଠକମାନଙ୍କର ରସବୃତ୍ତିକୁ କିପରି ବିଭ୍ରାନ୍ତ କରିଅଛନ୍ତି ତାହା ସ୍ୱର୍ଗତ ଅଧ୍ୟାପକ ଆର୍ତ୍ତବଲ୍ଲଭ ମହାନ୍ତିଙ୍କ ଆଲୋଚନାରୁ ଜଣାଯାଇଥାଏ । ସେ ଲେଖିଛନ୍ତି, "ପୁରାଣର ଏହି ଉଷା ଉପାଖ୍ୟାନରେ ଗ୍ରୀସ୍‌ଦେଶୀୟ ଏକ କାହାଣୀର କଥାଭାଗ ମିଶାଇ କବି ରାଧାନାଥ ଉଷା ନାମକ ଏକ ଖଣ୍ଡକାବ୍ୟ ପ୍ରଣୟନ କରି ଅଛନ୍ତି । ଏପରି କରିବା ଦ୍ୱାରା ଏକ ପକ୍ଷରେ ସେ ନିଜର କଥା ସଂଗଠନ ଚାତୁରୀ ସୁନ୍ଦର ଭାବରେ ଦେଖାଇ ପାରି ଅଛନ୍ତି ସତ, କିନ୍ତୁ ଅନ୍ୟ ପକ୍ଷରୁ ଦେଖିଲେ ଦେଶର ଅତୀତ ଇତିବୃତ୍ତ ପ୍ରତି ଦାରୁଣ ନିର୍ମମତା ଦେଖାଇଅଛନ୍ତି ବୋଲି ଆମ୍ଭେମାନେ କହିବୁ । ଶିଶୁଶଙ୍କରଙ୍କ ଉଷାଭିଳାଷ ସେ ପାଠ କରିଥିବେ କି ନା — ଏ ବିଷୟରେ ସନ୍ଦେହ ଜାତ ହୋଇପାରେ । କିନ୍ତୁ ଶାରଳାଦାସଙ୍କ ମହାଭାରତ ସେ ନିଶ୍ଚୟ ପାଠ କରିଥିବେ । ପୁରାଣର ସେହି ଶୋଣିତପୁର ବୈତରଣୀ ତୀରରେ ଅବସ୍ଥିତ ବୋଲି ଶୂଦ୍ରମୁନି କହିଅଛନ୍ତି । ଏଥିରୁ ଅନୁମିତ

(୧) ଓଡ଼ିଆ ସାହିତ୍ୟର ଇତିହାସ — ପୃ ୨୮୨ ।

ହୁଏ ଯେ ପ୍ରାଚୀନ ଯୁଗରେ ବର୍ତ୍ତମାନ ବାଲେଶ୍ୱରର ସୁନହଟ ଏକ ବିଶାଳ ଜନପଦ ଥିଲା ଏବଂ ବୈତରଣୀର ଖରଦେଶ ପର୍ଯ୍ୟନ୍ତ ବ୍ୟାପିଥିଲା । ସେଠାରେ ଯେ ଶିବୋପାସକ ବାଣାସୁରର ରାଜଧାନୀ ଥିଲା, ଏଥିରେ କୌଣସି ସନ୍ଦେହ ନାହିଁ । ଅଦ୍ୟାପି ବାଲେଶ୍ୱରରେ ବାଣେଶ୍ୱର ଶିବଙ୍କର ମନ୍ଦିର ବାଣାସୁରର ସେହି ଅତୀତ ସ୍ମୃତି ବକ୍ଷରେ ଧାରଣ କରି ମୂକସାକ୍ଷୀ ରୂପେ ଦଣ୍ଡାୟମାନ । ଏପରି ଐତିହାସିକ ଦୃଢ଼ ଭିତ୍ତି ଥିଲେହେଁ, ପୁରାଣର ସେହି ଶୋଣିତପୁର, ବାଣେଶ୍ୱର ମନ୍ଦିର ଓ ଉଷାମେଢ଼ ରାଧାନାଥଙ୍କ କଳ୍ପନାର କବଳରେ ପଡ଼ି ସକଳ ଐତିହାସିକ ମହତ୍ତ୍ୱ ହରାଇ ଅଛନ୍ତି । ରାଧାନାଥ ନଦୀସ୍ଥ କାବ୍ୟ ଚିଲିକାରେ ଅନେକଗୁଡ଼ିଏ ଉତ୍କଳର ପ୍ରାକୃତିକ ଓ ଐତିହାସିକ ସ୍ଥାନମାନ ଉପସ୍ଥାପିତ କରିଅଛନ୍ତି ସତ; ଉଷା କାବ୍ୟରେ ମଧ୍ୟ ଉଷାମେଢ଼, ନୂରୁପୁର, ପ୍ରଥମାଦେବୀ ଓ ଶୋଣିତପୁରର ନାମୋଲ୍ଲେଖ କରିଅଛନ୍ତି ସତ, କିନ୍ତୁ ଜାତୀୟ ସାହିତ୍ୟରେ ବିଜାତୀୟ କଳ୍ପନାର ପ୍ରତିଷ୍ଠା କରିବାକୁ ଯାଇ ସେ ଏଠାରେ ଦେଶର ଇତିହାସ ଉପରେ ପ୍ରକୃତ ଦୃଷ୍ଟି ଦେବାକୁ ଭୁଲିଯାଇ ଅଛନ୍ତି । ତାଙ୍କର ଶୋଣିତପୁର ତାଙ୍କର ଉଷାମେଢ଼ର ଅନ୍ତରାଳରେ ଉଷାଭିଳାଷ କାବ୍ୟ ସତ୍ତ୍ୱେ ଇତିହାସର ସେପରି କୌଣସି ଗୌରବମୟ ଅତୀତ ନାହିଁ । ଯାହା କିଛି ଅଛି, ତାହା କେବଳ କଳ୍ପନା ଓ କିମ୍ବଦନ୍ତୀରେ ପର୍ଯ୍ୟବସିତ କହିଲେ ଚଳେ ।” (୧)

ସ୍ୱର୍ଗତ ଅଧ୍ୟାପକ ଆର୍ତ୍ତବଲ୍ଲଭ ମହାନ୍ତି କବିବର ରାଧାନାଥଙ୍କର କାବ୍ୟନିର୍ମାଣ କୌଶଳକୁ ବିସ୍ମୃତ ହୋଇ ଯେଉଁ ଭାବରେ ତାଙ୍କ ପ୍ରତି ଆକ୍ଷେପୋକ୍ତି ପ୍ରକାଶ କରିଅଛନ୍ତି ତାହାକୁ ଯଥାର୍ଥରେ ଗ୍ରହଣ କରାଯାଇ ନପାରେ । କବିବର ରାଧାନାଥଙ୍କର କାବ୍ୟ ନିର୍ମାଣ କୌଶଳ ଏପରି ଏକ ନବୀନ ଛାଞ୍ଚରେ ହୋଇଅଛି ଯେ ତାହା କେବଳ କାବ୍ୟ, ସାହିତ୍ୟର ଉପାଦାନ ଇତିହାସକୁ ସେ କାବ୍ୟରେ ଇତିହାସ ଭାବରେ ଗ୍ରହଣ କରିନାହାନ୍ତି । ପାଶ୍ଚାତ୍ୟ କଥାବସ୍ତୁକୁ ପ୍ରାଚ୍ୟର

(୧) ଉଷ ଭିଲାଷ—ମୁଖବନ୍ଧ

ଭୂମିକାଦେଇ ଉପସ୍ଥାପିତ କରିବାଦ୍ୱାରା ସେ ନୂତନସୃଷ୍ଟିର ଆବାହନ କରିଅଛନ୍ତି । ଏ ବିଷୟରେ ଅଧ୍ୟାପକ ଗୌରୀକୁମାର ବ୍ରହ୍ମା ମତପୋଷଣ କରନ୍ତି; "ରାଧାନାଥ ବାଣାସୁର ସମ୍ପର୍କୀୟ କିମ୍ବଦନ୍ତୀଟି ଭଲଭାବରେ ଜାଣିଥିଲେ । ପୁରାଣ ପ୍ରସିଦ୍ଧ ଉଷାର ଭଗ୍ନପ୍ରାସାଦ ହିଁ ଆଜିର ଉଷାମେଡ଼ ବୋଲି ହୁଏତ ତାଙ୍କର ସନ୍ଦେହ ନଥିଲା । କିନ୍ତୁ ତାଙ୍କର ସର୍ଜନଶୀଳ କବି ପ୍ରତିଭା ପାଶ୍ଚାତ୍ୟ କଥାବସ୍ତୁର କିୟଦଂଶ ଆଣି ବାଲେଶ୍ୱର ଅଞ୍ଚଳରେ ତାକୁ ସୁବିନ୍ୟସ୍ତ, ପୂର୍ବାପୂର ଖାପ ଖୁଆଇଲା ଭଳି ସନ୍ନିବେଶିତ କରିବାପାଇଁ ତାଙ୍କୁ ପ୍ରରୋଚିତ କରିବା ଦ୍ୱାରା ଜାତୀୟ ଗୌରବ ସମ୍ବଳିତ ପୌରାଣିକ କିମ୍ବଦନ୍ତୀ ତହିଁରୁ ବାହାରି ବଳେ ନିର୍ବାସିତ ହୋଇଗଲା ।" (୧)

ଉଷାକାବ୍ୟ ରଚନା କରି କବିବର ରାଧାନାଥ କିପରି ଭାବରେ ଏକ ବିଦେଶୀ କଥାବସ୍ତୁକୁ ସ୍ୱଦେଶୀ ପୁରାଣର କଥାବସ୍ତୁ ସହିତ ମିଶାଇ ଦେଇ ପାରିଛନ୍ତି ସେ ବିଷୟ ଅଧ୍ୟାପକ ହିଙ୍ଗୁ ନଟବର ସାମନ୍ତରାୟ ଆଲୋଚନା କରିଅଛନ୍ତି । ତାଙ୍କ ମତରେ "ଦ୍ୱାପର ଯୁଗରେ ଦୁର୍ବାସା ଅଭିଶାପଗ୍ରସ୍ତ ତିଲୋତ୍ତମାର ଗୋଟିଏ ରୂପ ହୋଇଛି ବାଣାସୁର ରାଜନନ୍ଦିନୀ ଉଷା । ଉଷା ଅନିରୁଦ୍ଧ ପ୍ରଣୟ ଆଖ୍ୟାନ ଏହାର ମୂଳପିଣ୍ଡ । ଏହା ପୁରାଣ ସମ୍ମତ । ଏହାର ଅନୁମୋଦନରେ ନିଜ ଗଳ୍ପର ଲୋକ-ବିଶ୍ୱାସ ପାଇଁ ରାଧାନାଥ ତିଆରି କରିଛନ୍ତି ଆଉ ଏକ ଉଷା—କଳି ଅଭିଶପ୍ତା ଲୁଟୁପୁର ରାଜନନ୍ଦିନୀ ଉଷା । ଏ ଉଷା ପୂର୍ଣ୍ଣତଃ ରାଧାନାଥଙ୍କ କବିକଳ୍ପନା ପ୍ରସୂତ । ଲୋକମନର ପୂର୍ବୋକ୍ତ ସନ୍ଦେହ ଏ ଉଷାଜନ୍ମ ବିବରଣୀରେ ଯେ ବହୁ ପରିମାଣରେ ଦୂର ହୋଇଯାଏ ଏଥିରେ ସନ୍ଦେହ ନାହିଁ । ଉଷାଜନ୍ମ-ଇତିହାସର ଏ ନବୀନ-ତଥ୍ୟ ଜୀବିତାବସ୍ଥା ଅପେକ୍ଷା ମୃତ୍ୟୁପରେ ବର୍ଣ୍ଣିତ ହେବା ଏକାନ୍ତ ପ୍ରାକୃତିକ । ଉଷାର ମୃତ୍ୟୁପରେ କାଳୀ ମୁଖରେ ଉଷା-ଜୀବନ ତଥ୍ୟର ସତ୍ୟତା ଉଦ୍‌ଘାଟନ ସେଥିପାଇଁ କରାଯାଇଛି । ତେଣୁ ଉଷା-ଜୟନ୍ତର ମୃତ୍ୟୁ କାବ୍ୟର ଏକ ପ୍ରଧାନ ଆଙ୍ଗିକ - ଏ ଆଙ୍ଗିକ ଦେଶୀ

(୧) ରାଧାନାଥଙ୍କ ଉଷା – ପୃ· ୭୯

ବିଦେଶୀ ଉପାଦାନର ସାର୍ଥକ ସମୀକରଣ ପାଇଁ ଏକ ଅପରିହାର୍ଯ୍ୟ ଆବଶ୍ୟକତା ବ୍ୟତୀତ ଅନ୍ୟ କିଛି ନୁହେଁ । ଏ ସମୀକରଣ-ଫଳରେ ଆମେ ପାଉ ଏକ ନୂତନ ସ୍ୱତନ୍ତ୍ର ସୃଷ୍ଟି, ଯାହା ପୂର୍ବ ଲୋକ-ବିଶ୍ୱାସ ସମ୍ଭୃତ ଅଭିଶପ୍ତା ତିଳୋତ୍ତମାର ଏକ ବିଶିଷ୍ଟ ରୂପ ଉଷାସହିତ କିମ୍ବା ବିଦେଶୀ କାହାଣୀର ଆଡ୍ଲିଣ୍ଡା ସହିତ ପୂର୍ଣ୍ଣତଃ ସମାନ ନୁହେଁ । ଏ ଉଷା ରାଧାନାଥଙ୍କ କବିକଳ୍ପନା ପ୍ରସୂତ କାଳୀ ଅଭିଶପ୍ତା ତିଳୋତ୍ତମାର ଏକ ସ୍ୱତନ୍ତ୍ର ରୂପ ; ତାହା କେବଳ ନୂପୁରର ରାଜନନ୍ଦିନୀର ରୂପ ମାତ୍ର ।" (୧)

ଅଧ୍ୟାପକ ଡ଼କ୍ଟର ନଟବର ସାମନ୍ତରାୟ କବିବର ରାଧାନାଥଙ୍କର କାବ୍ୟନିର୍ମାଣ କୌଶଳ ସମ୍ବନ୍ଧ ଘନିଷ୍ଠ ଭାବରେ ପରିଚିତ । ତେଣୁ ସେ ଉଷାକୁ ଆଡ୍ଲିଣ୍ଡା ବା ତିଳୋତ୍ତମା ରୂପେ ସମ୍ପୂର୍ଣ୍ଣ ଭାବରେ ଗ୍ରହଣ ନକରି "କବି କଳ୍ପନା ପ୍ରସୂତ" ବୋଲି ମତ ପ୍ରକାଶ କରି ଅଛନ୍ତି । ଅଧ୍ୟାପକ ବିନୋଦ ଚନ୍ଦ୍ର ନାୟକ ୧୯୪୯ ସାଲର ଚତୁରଙ୍ଗ ଦ୍ୱିତୀୟ ବର୍ଷ ଶେଷ ସଂଖ୍ୟାରେ ଲେଖିଥିଲେ ଯେ କବିବର ରାଧାନାଥ ଉଷାକାବ୍ୟ ରଚନା କରିବାପାଇଁ ଉଇଲିୟମ୍ ମରିସ୍‌ଙ୍କର ଆଡ୍ଲିଣ୍ଡାରେସ୍‌କୁ ଅନୁସରଣ କରିଅଛନ୍ତି । ତାଙ୍କର ଏହି ମତକୁ ଖଣ୍ଡନ କରିବାକୁ ଯାଇ ଅଧ୍ୟାପକ ଗୌରୀକୁମାର ବ୍ରହ୍ମା ଉଇଲିୟମ୍ ମରିସ୍‌ଙ୍କର ଜୀବନ କାଳ ଓ ରାଧାନାଥଙ୍କର ଜୀବନ କାଳ ବିଷୟରେ ତଥ୍ୟ ପରିବେଷଣ କରି ରାଧାନାଥଙ୍କ ଉପରେ ଉଇଲିୟମ୍ ମରିସ୍‌ଙ୍କର ପ୍ରଭାବ ପଡ଼ିବା ଅସମ୍ଭବ ବୋଲି ମନେ କରିଛନ୍ତି । ସେ ଲେଖିଛନ୍ତି "ମରିସ୍‌ଙ୍କର ଜନ୍ମ ୧୮୩୪ ରେ ଓ ମୃତ୍ୟୁ ୧୮୯୬ ରେ । ତେଣୁ ରାଧାନାଥଙ୍କଠାରୁ ମରିସ୍ ବୟସରେ ୧୪ ବର୍ଷ ମାତ୍ର ବଡ଼ । ରାଧାନାଥଙ୍କୁ ଉଷାକାବ୍ୟ ଲେଖିଲା ବେଳକୁ ବୟସ ହୋଇଥିଲା ୩୮ ଏବଂ ସେତେବେଳକୁ ମରିସ୍‌ଙ୍କ ବୟସ ୫୨ ବର୍ଷ ମାତ୍ର । ପ୍ରାୟ ଏକଶତ ବର୍ଷ ତଳେ କଲିକତାରେ ପ୍ରକାଶିତ ବହି ଓଡ଼ିଶାରେ ପରିଚିତ ହେବାକୁ ମଧ୍ୟ, ( ଆଜିକାଲିର ଉଦ୍ୟମଶୀଳ ବିଜ୍ଞାପନପ୍ରିୟତା ଦୃଷ୍ଟିରୁ ) ବହୁ ସମୟ

(୧) ଓଡ଼ିଆ ସାହିତ୍ୟର ଇତିହାସ – ନଟବର ସାମନ୍ତରାୟ – ପୃ ୨୮୩

ଲଗୁଥିଲା । ସେତେବେଳର ବଳନ୍ତ, ତାଙ୍କୁ ପୁଣି ଜଣେ ପ୍ରାୟ ସମବୟସ୍କ କବିଙ୍କର ଲେଖା ଓଡ଼ିଶାକୁ ଆସି, ଓଡ଼ିଶାର ଜଣେ କବିଙ୍କର କାବ୍ୟକୃତିରେ ବ୍ୟବହୃତ ହୋଇ ପାରିଥିଲା, ଏହା ବିଶ୍ୱାସ କରି ହେଉ ନାହିଁ ।

ଏବେ ପ୍ରକାଶ ପାଇଥିବା ଅନେକ ଉଷା ସମୀକ୍ଷାରେ ମରିସ୍‌ଙ୍କୁ ରାଧାନାଥଙ୍କର ଜଣେ ପ୍ରେରଣା ଦାତା ରୂପେ ଲେଖାଯାଇଥିବାର ଦେଖିଲେ ବାସ୍ତବରେ ବଡ଼ ବିସ୍ମୟ ଲାଗେ । ମନେହୁଏ, ଏ ବିଜ୍ଞାନ ଯୁଗରେ ସମୀକ୍ଷା ମଧ୍ୟ କେତେ କ୍ଷିପ୍ର ଓ ଦ୍ରୁତ ଗତିଶୀଳ ହୋଇପାରିଛି; କିନ୍ତୁ ଇତିହାସ ଏହି କ୍ଷିପ୍ରତାକୁ ଚିର ବିଡ଼ମ୍ବିତ କରିଦେବ ।" (୧)

ଆଲୋଚକ ଅଧ୍ୟାପକ ଗୌରୀକୁମାର ବ୍ରହ୍ମା ପୁଣି ଆଲୋଚନା ପ୍ରସଙ୍ଗରେ ମତପୋଷଣ କରିଛନ୍ତି ଯେ, ମରିସ୍ ଏବଂ ରାଧାନାଥଙ୍କ ରଚନାରେ ସାମ୍ୟ ପରିଲକ୍ଷିତ ହେବା ଅସଙ୍ଗତ ନୁହେଁ; ମାତ୍ର ରାଧାନାଥଙ୍କ ଉପରେ ମରିସ୍‌ଙ୍କର ପ୍ରଭାବ ପଡ଼ିନାହିଁ । ଅଧ୍ୟାପକ ବ୍ରହ୍ମାଙ୍କର ଅନୁଶୀଳନ ଯେ ଯଥାର୍ଥରେ ସୂକ୍ଷ୍ମଦୃଷ୍ଟିକୋଣର ପରିଚାୟକ ଏଥିରେ ସନ୍ଦେହ ନାହିଁ । ମାତ୍ର ତାଙ୍କର ଯୁକ୍ତି ଅନୁସାରେ ରାଧାନାଥଙ୍କ ଉପରେ ମରିସ୍‌ଙ୍କର ପ୍ରଭାବକୁ କେବେହେଲେ ଅସ୍ୱୀକାର କରିଯାଇ ନପାରେ । ସେ ତାଙ୍କର ଯୁକ୍ତିର ବଳିଷ୍ଠତା ପ୍ରତିପାଦନ କରିବାକୁ ଯାଇ ଅଧ୍ୟାପକ ଡକ୍ଟର ନଟବର ସାମନ୍ତରାୟଙ୍କର ଯୁଗପ୍ରବର୍ତ୍ତକ ସ୍ରଷ୍ଟା ରାଧାନାଥରେ ଚନ୍ଦ୍ରଭାଗା ସମ୍ପର୍କୀୟ ଆଲୋଚନାରେ ଆଲୋଚକଙ୍କର ମତ ଉଦ୍ଧାର କରିଛନ୍ତି । ସେହି ଆଲୋଚନାରେ ଅଧ୍ୟାପକ ସାମନ୍ତରାୟ ମତ ପ୍ରଦାନ କରିଅଛନ୍ତି ଯେ, ଚନ୍ଦ୍ରଭାଗା କାବ୍ୟ ରଚନା ପାଇଁ ରାଧାନାଥ ଓଭିଡ୍‌ଙ୍କର କାବ୍ୟର କଥାବସ୍ତୁକୁ ଗ୍ରହଣ କରି ଅଛନ୍ତି । ଜଣେ ଲେଖକ ବା କବି ତାଙ୍କର ଗୋଟିଏ କାବ୍ୟପାଇଁ ଗୋଟିଏ ସ୍ଥାନରୁ ପ୍ରେରଣା ପାଇଲେ ବୋଲି ତାଙ୍କର ସମସ୍ତ କାବ୍ୟ ପାଇଁ ସେହି ଗୋଟିଏ ସ୍ଥାନରୁ ପ୍ରେରଣା ପାଇବେ ଏପରି ଯୁକ୍ତି କରିଯାଇ ନପାରେ । ତେଣୁ ରାଧାନାଥ

(୧) ରାଧାନାଥଙ୍କ ଉଷା— ପୃ ୨୧୦

ଚନ୍ଦ୍ରଭାଗା କାବ୍ୟ ପାଇଁ ଓଭିଡ୍‌ଙ୍କ ଦ୍ୱାରା ପ୍ରଭାବିତ ହୋଇଥିଲେ ବୋଲି ଉଷା କାବ୍ୟ ପାଇଁ ମରସ୍‌ଙ୍କ ଦ୍ୱାରା ପ୍ରଭାବିତ ନହେବାର କାରଣ ନାହିଁ । କବିବର ରାଧାନାଥ ଯେ ଓଭିଡ୍‌ଙ୍କ ଠାରୁ ଉଷା କାବ୍ୟ ରଚନା ପାଇଁ ପ୍ରେରଣା ପାଇନାହାନ୍ତି ସେ କଥା ଏଠାରେ କୁହାଯାଉ ନାହିଁ । ଅଧ୍ୟାପକ ନଟବର ସାମନ୍ତରାୟ ଉଷାକାବ୍ୟ ସମ୍ପର୍କରେ ମତ ଦେଇଛନ୍ତି "ଉଇଲିୟମ୍ ମରିସ୍‌ଙ୍କ ମିଲାନିୟନ୍ (ଜମ୍ବୁନ୍ତ) ଶିକାରୀ ବେଶରେ ଅରଣ୍ୟ ମଧ୍ୟରେ ଭ୍ରମଣ କରୁଁ କରୁଁ ଆଟ୍‌ଲାଣ୍ଟାର ପିତାଙ୍କ ରାଜ୍ୟରେ ଆସି ପହଞ୍ଚିଛନ୍ତି । ଅରଣ୍ୟାଞ୍ଚଳରୁ ସମତଳକୁ ଆସିବାର ଘଟଣାଟି ବାଲେଶ୍ୱର ନିକଟବର୍ତ୍ତୀ ମୟୂରଭଞ୍ଜ ଅରଣ୍ୟ ଅଞ୍ଚଳ ଉପରେ ଆରୋପ କରିବା ଅତି ସହଜ । ପୁନଶ୍ଚ, ବାଣାସୁର ରାଜାଙ୍କ ନାମରୁ ବାଲେଶ୍ୱର ନାମର ଉତ୍ପତ୍ତି ଓ ପୁରାଣ ବର୍ଣ୍ଣିତ ଉଷା-ଅନିରୁଦ୍ଧ ଆଖ୍ୟାୟିକା ବାଲେଶ୍ୱରରେ ସଂଘଟିତ, ଏପରି ଏକ ବିଶ୍ୱାସ ମଧ୍ୟ ଲୋକରେ ପ୍ରଚଳିତ । ତେଣୁ-ଲୋକ-ବିଶ୍ୱାସ ମୂଳକ ଏହି ପୁରାଣଗତ ପ୍ରେମୋପାଖ୍ୟାନକୁ ନୂତନଭାବେ ଗଢ଼ିବା ପାଇଁ ରାଧାନାଥ ଏହା ସହିତ 'ଆଟ୍‌ଲାଣ୍ଟାରେସ୍'କୁ ଯୋଗ କରି ଦେଇଛନ୍ତି ।" (୧)

ଅଧ୍ୟାପକ ଉକ୍ତର ନଟବର ସାମନ୍ତରାୟ ଏଠାରେ ଆଟ୍‌ଲାଣ୍ଟାରେସର ପ୍ରଭାବ ରାଧାନାଥଙ୍କ ଉପରେ ପଡ଼ିଥିବା କଥା ପ୍ରକାରାନ୍ତରେ ସ୍ୱୀକାର କରିଅଛନ୍ତି । ଅଧ୍ୟାପକ ଶ୍ରୀଯୁକ୍ତ ବ୍ରହ୍ମା ଉଦାହରଣ ଦେଇ ବିଲାତର କାବ୍ୟ ରାଧାନାଥଙ୍କ ହାତରେ ଏତେ କମ୍ ସମୟ ମଧ୍ୟରେ ପଡ଼ିବା ବିଷୟରେ ଯେଉଁ ସନ୍ଦେହ କରିଛନ୍ତି ତାହାକୁ ମଧ୍ୟ ଏକ ବଳିଷ୍ଠ ଯୁକ୍ତି ଭାବରେ ଗ୍ରହଣ କରିହେବ ନାହିଁ । ଇଂରେଜ ରାଜତ୍ୱ ସମୟରେ କବିବର ରାଧାନାଥଙ୍କ ଭଳି ପଣ୍ଡିତ ତଥା ଉଚ୍ଚପଦସ୍ଥ ସରକାରୀ କର୍ମଚାରୀଙ୍କ ପକ୍ଷରେ ଇଂରେଜୀ କାବ୍ୟ ଖଣ୍ଡିଏ ପାଇବାରେ କୌଣସି ଅସ୍ୱାଭାବିକତା ନଥାଇ ପାରେ । ସେତେବେଳେ ଭାରତରେ ବହୁସଂଖ୍ୟାରେ ସାହେବ ଥିଲେ । ସେମାନଙ୍କ ସହଯୋଗ ନିଶ୍ଚିତ ରାଧାନାଥ ପାଇଥିବେ । ରାଧାନାଥଙ୍କ ଉପରେ ଉଇଲିୟମ୍

(୧) ଓଡ଼ିଆ ସାହିତ୍ୟର ଇତିହାସ—ପୃ ୨୮୧

ମରିସ୍‌ଙ୍କର ପ୍ରଭାବ ପଡ଼ିଅଛି କହିଲେ ରାଧାନାଥଙ୍କର କବି ପ୍ରତିଭା ମଉଳିଯିବ ନାହିଁ । କବିବର ରାଧାନାଥ ମରିସ୍‌ଙ୍କ ପ୍ରଭାବ ସତ୍ତ୍ୱେ ନିଜର କବିତ୍ୱ ଶକ୍ତିର ଯେଉଁ ଅପୂର୍ବ ଉଦାହରଣ ଦେଖାଇଛନ୍ତି ତହିଁରୁ ତାଙ୍କର ପାଣ୍ଡିତ୍ୟ ତଥା ପ୍ରତିଭାର ସମୁଜ୍ଜ୍ୱଳ ଦିଗଟି ଉନ୍ମୋଚିତ ହୋଇଅଛି । ଅଧ୍ୟାପକ ବିନୋଦ ଚନ୍ଦ୍ର ନାୟକ ଯାହା ଲେଖିଛନ୍ତି "ରାଧାନାଥ ମରିସ୍‌ଙ୍କୁ ପଦେ ପଦେ ଅନୁସରଣ କରିଅଛନ୍ତି" ତାହା ଯଥାର୍ଥ ନୁହେଁ । ଏହାଦ୍ୱାରା କବିବର ରାଧାନାଥଙ୍କର କବି ପ୍ରତିଭାର ଅବମାନନା ହେବା ସଙ୍ଗେ ସଙ୍ଗେ ସତ୍ୟର ଅପଳାପ ହେବ । ଗ୍ରୀକ୍ ପୁରାଣରୁ ବା ଓଭିଡ୍‌ଙ୍କ କାବ୍ୟରୁ କଥାବସ୍ତୁ ଗ୍ରହଣ କରି ମରିସ୍ ତାଙ୍କ କାବ୍ୟ ରଚନାରେ ଅସଫଳତା ଅର୍ଜନ କରିଛନ୍ତି ମାତ୍ର କବିବର ରାଧାନାଥ ସମସ୍ତ ସ୍ଥଳରୁ ଆହରଣ କରି ମଧ୍ୟ ନିଜର କବି ପ୍ରତିଭାର ଯଥାର୍ଥ ପରିଚୟ ଦେଇପାରିଛନ୍ତି । ଉଇଲିୟମ୍ ମରିସ୍‌ଙ୍କ କାବ୍ୟ ରଚନାର ଅସଫଳତା ବିଷୟରେ ଜଣେ ଇଂରେଜ ସମାଲୋଚକ ଲେଖିଛନ୍ତି "As a story-teller Morris has one serious defect: he is too placid. Even when he describes an exciting incident like Atalanta's race, he remains unexcited. It seems that he is incapable of rousing himself from a slumbrous lethargy, which may have been caused by a deep seated melancholy in him. If Browning had written Atalanta's race he would have made a very different thing of it. He would have changed the tempo of the verse at least ten times, and the Race would have been a real race. We would have shared the eagerness of the spectators, heard their innumerable jokes and bets and even felt the rush of wind fanning the cheeks of the competitors as they sped along the course. The thrill of the narrative would

have been irresistible. Morris's story is completely undramatic. It is static, immobile. It is a poem coiled in sleep"

ଉଷା କାବ୍ୟ ରଚନା କରିବା ସମୟରେ ରାଧାନାଥ ଯଦି ନିଜର ମୌଳିକତା ବଜାୟ ନରଖି ଉଇଲିୟମ ମରିସ୍‌ଙ୍କୁ ପଦେ ପଦେ ଅନୁସରଣ କରିଥାଆନ୍ତେ ତେବେ ତାଙ୍କୁ ଏହିପ୍ରକାର ସମାଲୋଚନାର ଶରବ୍ୟ ହେବାକୁ ପଡ଼ିଥାଆନ୍ତା । ପ୍ରଭାବ ଆଉ 'ପଦେ ପଦେ ଅନୁସରଣ' ଏକ କଥା ନୁହେଁ ।

ଆଲୋଚକ ପ୍ରିୟରଞ୍ଜନ ସେନ୍ ଉଷାକାବ୍ୟର କଥାବସ୍ତୁ ବିଷୟରେ ମତ ପ୍ରକାଶ କରିବାକୁ ଯାଇ ଲେଖିଛନ୍ତି, "The story of Usha is not by itself a direct imitation or a grafting of any western story or legend on a liberal scale, but it seems to have been taken largely from one of the annals of Rajasthan compiled by Tod. In a country where primitiv conditions exist, where hunting is a chief pastime, it is nothing surprising that a prince like Jayanta should come across a girl like Usha equally proficient in hunting and marksmanship. Only this Usha must not be a princess but an ordinary village maiden though when her parentage will be examined, her noble birth will be evident to all. This is the way in which Tod has taken his story from local sources. The race item of the story has been taken from Greek legends; we may compare 'Atalanta's Race, where the same artifice was used to get rid of a superior rival. Neither the hunt nor the race can, with any shadow of

reality, be associated with a princess of Orissa. The very idea is preposterous. But Radhanath in his usual way has created a new legend altogether, giving it a local colouring and associating it with local names and traditions so that it seems to be a thoroughly traditional poem, for this, again, the constructive genius of Radhanath is responsible. In a poem of 838 lines, he has wedded romance to traditional form, and eventually Usha and Jayanta turn out to be Tilottama and Chitraratha of the Gandharvas, degraded to earth through Kali's curse " (୧)

ଓଡ଼ିଆ ସାହିତ୍ୟର ବର୍ଗୀୟ ସମାଲୋଚକ ପ୍ରିୟରଞ୍ଜନ ସେନ୍‌ଙ୍କର ସମାଲୋଚନା ଯେ ପାଣ୍ଡିତ୍ୟପୂର୍ଣ୍ଣ, ଏଥିରେ ମତଦ୍ୱୈଧର ଆଶଙ୍କା ନ ଥାଇପାରେ । ମାତ୍ର ସେ ଯେପରି ଭାବରେ ଉଷାକାବ୍ୟର କଥାବସ୍ତୁକୁ ଆଲୋଚନା କରିଅଛନ୍ତି ସେପରି ଭାବରେ ଆଲୋଚନାର କୌଣସି ଯାଥାର୍ଥ୍ୟ ଉପଲବ୍ଧ ହୁଏ ନାହିଁ । ଲେଫ୍‌ଟେନାଣ୍ଟ କର୍ଣ୍ଣେଲ ଜେମ୍‌ସ ଟଡ୍‌ଙ୍କ ଲିଖିତ Annals and Antiquities of Rajasthanରେ ନାରୀମାନଙ୍କର ସାହସିକତାର ବହୁ ଉଦାହରଣ ରହିଅଛି । ତାହାକୁ ଲକ୍ଷ୍ୟ କରି ଆଲୋଚକ ସେନ୍ ଏପ୍ରକାର ଅନୁମାନ କରିଅଛନ୍ତି । ମାତ୍ର ଏହା ଏକ ଅନୁମାନ; ଯୁକ୍ତିସିଦ୍ଧ ମତ ନୁହେଁ । ଟଡ୍ ସାହେବ ଯେଉଁ ବିବରଣୀଗୁଡ଼ିକ ଦେଇଅଛନ୍ତି ସେଥିରୁ ଗୋଟିଏ ଏଠାରେ ଉଦ୍ଧାର କରାଯାଇପାରେ ।

"I will append an anecdote related by the celebrated Zalim Sing, characteristic of the presence of mind, prowess and physical strength of the Rajput women. To attend and aid in the minutix

(୧) Modern Oriya Literature -P.79

of husbandry is by no means uncommon with them, as to dress and carry the meals of their husbands to the fields is a general practice. In the jungle which skirts the knolls of Puchpahar, a huge bear assaulted a Rajputni as she was carrying her husband's dinner. As he approached with an air of galantry upon his hind - legs, doubting whether the food or herself were the intended prey, she re-treated behind a large tree, round the trunk of which Bruin, still in his erect attitude, tried all his powers of circumvention to seize her. At length, half exhausted she boldly grasped his paws, and with so vigorous a hold that he roared with pain, while in vain, with his short neck, did he endeavour to reach the powerful hand which fixed him. While she was in this dilemma, a purdesi (a foreign soldier of the state) happened to be passing to the garrison of Gagroun, and she called out to him in a voice of such unconcern to come and release her for a time, that he complied without hesitation. She had not retired, however, above a dozen yards ere he called loudly for her return, being scarcely able to hold his new friend; but laughingly recommending perseverance, she hastened on, and soon returned with her husband, who laid the monster prostrate with his matchlock, and rescued the purdesi from his unpleasing predicament."

ଟଡ୍‌ଙ୍କ ବିବରଣୀରେ ଏହି ପ୍ରକାର ବହୁ ବର୍ଣ୍ଣନା ଦେଖାଯାଉଥାଏ । ମାତ୍ର ଏହିପ୍ରକାର ବିବରଣୀରେ ଏପରି କୌଣସି

କାହିଁକି ସୂଚନା ନାହିଁ, ଯହିଁରୁ କି ଉଷାଙ୍କର ଶିକାର-ଦକ୍ଷତା ବିଷୟରେ କୌଣସି ଧାରଣା କରାଯାଇ ପାରିବ । ଦୌଡ଼ ପ୍ରତିଯୋଗିତା ବିଷୟରେ ରାଧାନାଥ ଆଟ୍‌ଲାଣ୍ଟାରେସ୍‌ର କଥାବସ୍ତୁକୁ ଆଂଶିକ ଭାବରେ ଗ୍ରହଣ କରିଅଛନ୍ତି ବୋଲି ଅନେକେ ସେନ୍ ମତପ୍ରକାଶ କରିଅଛନ୍ତି । ତେଣୁ ଉଷାଙ୍କର ଶିକାର-ଦକ୍ଷତା ପଛରେ ରାଧାନାଥ ସେହିଁ ଲେଖ ଦ୍ୱାରା ପ୍ରଭାବିତ ନହୋଇ ଟଡ଼ଙ୍କର ବିବରଣୀ ଦ୍ୱାରା ପ୍ରଭାବିତ ହୋଇଅଛନ୍ତି ବୋଲି କହିବାରେ କୌଣସି ମୌଳିକତା ନାହିଁ ।

ଉଷାକାବ୍ୟ ଆଲୋଚନା ପ୍ରସଙ୍ଗରେ ପଣ୍ଡିତ ବିନାୟକ ମିଶ୍ର ଲେଖିଛନ୍ତି, "ଆଦିବାସୀ ଯୁବକ ଯୁବତୀ ମୃଗୟା ପାଇଁ ପ୍ରାଚୀନ କାନନରେ ବନକୁ ଯାଉଥିଲେ । ସେଠାରେ ଆପଣା ଆପଣା ପତ୍ନୀ ବା ପତି ମନୋମତ ବାଛି ନେଉଥିଲେ । ଏକଥା ଟୋଡ଼ (Tod) ଲେଖିଛନ୍ତି ବୋଲି ପୂର୍ବେ କୁହାଯାଇ ଅଛି । + + + + + + + + ଦଉଡ଼ିବା ପ୍ରତିଯୋଗିତା Atlanta Race ରୁ କବି ଗ୍ରହଣ କରିଅଛନ୍ତି । ଏଥିରୁ ଅନୁମାନ କରାଯାଏ, ଆଦିବାସୀ ଯୁଗ ଚିତ୍ରିବା କବିଙ୍କ ଲକ୍ଷ୍ୟ ଥିଲା, କାରଣ ଏପରି ସ୍ୱୟମ୍ବର ଆର୍ଯ୍ୟ ତରୁଣୀଙ୍କ ମଧ୍ୟରେ ପ୍ରଚଳିତ ଥିବାର ପୁରାଣମାନଙ୍କରେ ଉଲ୍ଲେଖ ନାହିଁ ।"(୧)

ପଣ୍ଡିତ ବିନାୟକ ମିଶ୍ର ଟଡ଼୍ ସାହେବଙ୍କ ବିଷୟ ଉଲ୍ଲେଖ କରି କବିଙ୍କର ଲକ୍ଷ୍ୟ ଯାହାଥିଲା ବୋଲି ମତପ୍ରକାଶ କରିଅଛନ୍ତି, ତାହା ତାଙ୍କର ବ୍ୟକ୍ତିଗତ ମତ ହୋଇପାରେ । ମାତ୍ର ଏପ୍ରକାର ମତ ଆଲୋଚନା ଦୃଷ୍ଟିରୁ ଯଥାର୍ଥ ମନେହୁଏ ନାହିଁ ।

ରାଧାନାଥଙ୍କ ଉଷାକାବ୍ୟ ପ୍ରସଙ୍ଗରେ ଆଲୋଚନା କରିବାକୁ ଯାଇ ଅଧ୍ୟାପକ ବେଣୁଧର ରାଉତ ଲେଖିଛନ୍ତି, "ଆଟ୍‌ଲାଣ୍ଟା ସମ୍ପର୍କୀୟ ପ୍ରସିଦ୍ଧ ଗ୍ରୀସୀୟ ଗଳ୍ପଟିକୁ Aelien, Euripidus, Callim-

(୧) ଆଧୁନିକ ଓଡ଼ିଆ ସାହିତ୍ୟର ଇତିହାସ-ପୃ ୭୭—୭୯

achus, Apollodorus ଏବଂ Ovid ପ୍ରଭୃତି ଗ୍ରୀସୀୟ ଏବଂ ରୋମୀୟ କବିବୃନ୍ଦ ନିଜ ନିଜର କାବ୍ୟକଥା ଭାବରେ ଗ୍ରହଣ କରିଥିଲେହେଁ ସବୁଠାରେ ରୁଚିଗତ, ସୃଷ୍ଟିଗତ ପାର୍ଥକ୍ୟ ରହିଛି । ସେହିଭଳି ଇଂରେଜ କବି William Morris ଙ୍କର Atalanta's Race; ଏବଂ ରାଧାନାଥଙ୍କ ଉଷା ତାହାରି ଭିତ୍ତିରେ ଲିଖିତ । ତଥାପି ମୋରିସ୍ ଏବଂ ରାଧାନାଥଙ୍କ କାବ୍ୟ ଦୁଇଟିରେ ପଦ ବା ପଙ୍କ୍ତିର ଅନେକସ୍ଥ ମେଳ ରହିଛି । ରାଧାନାଥ ମୋରିସ୍‌ଙ୍କ କାବ୍ୟାନୁସରଣ କରିଥିଲେହେଁ ମୌଳିକ ଗଳ୍ପର ଆଶ୍ରୟ ଗ୍ରହଣ ନାହାନ୍ତି । + + + + ତେବେ, ଏସମସ୍ତର ସଂଶ୍ଳେଷଣ ଓ ରୁଚିଗତ ଗଠନ ଭିତରେ ମୋରିସ୍‌ଙ୍କ କାବ୍ୟ ଅପେକ୍ଷା ବହୁ ଭାବରେ ରାଧାନାଥଙ୍କ ଉଷା ବରଂ ଶ୍ରେଷ୍ଠତର ।" (୧)

କବିବର ରାଧାନାଥଙ୍କ ଉଷା କାବ୍ୟ ବିଷୟରେ ଆଲୋଚନା କରି ଅଧ୍ୟାପକ ବେଣୁଧର ରାଉତ ଜଣେ ସମାଲୋଚକର ଯଥାର୍ଥ ମତ ପ୍ରକାଶ କରିଅଛନ୍ତି । ରାଧାନାଥ ଯେ କେତେକାଂଶରେ ମରିସ୍‌ଙ୍କ କାବ୍ୟକୁ ଅନୁସରଣ କରିଛନ୍ତି, ଏ ବିଷୟ ଆଲୋଚକ ପ୍ରକାଶ କରିଅଛନ୍ତି । ଅନୁସରଣ ସତ୍ତ୍ୱେ ରାଧାନାଥଙ୍କର ବୈଶିଷ୍ଟ୍ୟ ପ୍ରତି ଆଲୋଚକ ତଥା ପାଠକ ଅବହିତ ହେବାର କଥା ।

ଅଧ୍ୟାପକ ନରେନ୍ଦ୍ର ନାଥ ମିଶ୍ର ଉଷା କାବ୍ୟ ଆଲୋଚନା ପ୍ରସଙ୍ଗରେ ଲେଖିଛନ୍ତି, "ଗ୍ରୀକ୍ ପୁରାଣର ଆଟଲାଣ୍ଟା କାହାଣୀ ଉଷା କାବ୍ୟର ଉପଜୀବ୍ୟ । ମାତ୍ର ଦୁଇ ଦୁଇକାବ୍ୟ ତୁଳନାରେ ଏଥିରେ କବିଙ୍କ ସ୍ୱାତନ୍ତ୍ର୍ୟ ଅଧିକ ପରିସ୍ଫୁଟ ହୋଇଅଛି । ମୂଳ କାହାଣୀର ଘଟଣା ଓ ଚରିତ୍ରମାନ ସଂଶ୍ଳେଷଣ ଓ ବିଶ୍ଳେଷଣରେ ନବୀଭୂତ ରୂପରେ ପରିବେଷଣ କରାଯାଇଛି ।" (୨) ଆଲୋଚକ ଅଧ୍ୟାପକ ମିଶ୍ର ଉଷା କାବ୍ୟର କଥାବସ୍ତୁ ଗ୍ରୀକ୍‌ପୁରାଣରୁ ନିଆଯାଇଛି ବୋଲି ମତପ୍ରକାଶ

(୧) ଉତ୍କଳ—ରାଧାନାଥ ବିଶେଷାଙ୍କ-ପୃ.୧୫ ।
(୨) ଆଧୁନିକ ଓଡ଼ିଆ କାବ୍ୟଧାରା-ପୃ.୧୫୨ ।

କରି ଇଂରେଜୀ କାବ୍ୟ Atalanta Race ବିଷୟକୁ ଆଲୋଚନା ପରିସର ଭୁକ୍ତ କରିନାହାନ୍ତି । ତେଣୁ ଉଷାର କଥାବସ୍ତୁ ବିଷୟକ ତାଙ୍କର ଏହି ଆଲୋଚନାକୁ ପୂର୍ଣ୍ଣାଙ୍ଗ ଭାବରେ ଗ୍ରହଣ କରାଯାଇ ପାରିବ ନାହିଁ ।

✓ଉଷାକାବ୍ୟର କଥାବସ୍ତୁ ବିଷୟ ବିଭିନ୍ନ ଆଲୋଚକଙ୍କର ଆଲୋଚନାରୁ ସ୍ପଷ୍ଟ ପ୍ରତୀୟମାନ ହୁଏ ଯେ, ଗ୍ରୀକ୍ ପୁରାଣ, ଓଭିଡ୍‌ଙ୍କ କାବ୍ୟ ଓ ମରିସ୍‌ଙ୍କ କାବ୍ୟର କଥାବସ୍ତୁର ମିଶ୍ରିତ ପ୍ରଭାବ ରାଧାନାଥଙ୍କ ଉପରେ ପଡ଼ିଅଛି । ଉଷା କାବ୍ୟର କଥାବସ୍ତୁରେ ପ୍ରାଚ୍ୟକାବ୍ୟ-ସାହିତ୍ୟର ପ୍ରଭାବ ଅନେକ ସ୍ଥଳରେ ପଡ଼ିଥିବା ବିଷୟ ଅଧ୍ୟାପକ ଗୌରୀ-କୁମାର ବ୍ରହ୍ମା ଦର୍ଶାଇ ଅଛନ୍ତି । ଅଧ୍ୟାପକ ବ୍ରହ୍ମାଙ୍କର ଏହି ମତ ତାଙ୍କର ବହୁଶାସ୍ତ୍ରଦର୍ଶିତା ତଥା ପାଣ୍ଡିତ୍ୟର ସାର୍ଥକ ଉଦାହରଣ । (୧)

ଉଷାକାବ୍ୟର ଆରମ୍ଭରେ କବି ତାଙ୍କର ସ୍ୱଭାବସୁଲଭ ରୀତିରେ ପ୍ରକୃତିବର୍ଣ୍ଣନା ଦେଇଅଛନ୍ତି । ଲୁରୁପୁରର ଅବସ୍ଥିତି ଓ ତାର ବିବରଣ ଦେବାକୁ ଯାଇ କବି ପ୍ରକୃତିର ମନୋରମ ଚିତ୍ର ଅଙ୍କନ କରିଅଛନ୍ତି ।

"ଶାଳ୍ମଳୀ ଶଇଳୁଁ ହିମସ୍ଥାନେ ଜନ୍ମ ତଟିନୀ ଝରେ,
ଲଙ୍ଘି ନାନା ବନ ଜନପଦ ମିଶେ ବଙ୍ଗସାଗରେ,
ଉତ୍ତରେ ବଳାଙ୍ଗୀ ମଧ୍ୟେ ଗଙ୍ଗାହାର ଶୋଣ ଦକ୍ଷିଣେ
ଜଳବେଣୀ-ବର୍ଣ୍ଣେ କୁରଙ୍ଗୀ-ନୟନ-ମାଳିମା ଜିଣେ;
ରଜ, ତମ, ସତ୍ତ୍ୱ ମିଶିଲି ପରାୟେ ବଳାଙ୍ଗୀ-ପଦେ
ଶୋଣ, ଗଙ୍ଗାହାର ମିଶନ୍ତି ଯେ ଯାହା ମାର ସମ୍ପଦେ;
ତେମୁହାଣୀ ନାମେ ଏହିସ୍ଥାନ ଏବେ ବିଦିତ ଲୋକେ,
ତଣ୍ଡିକୁରଞ୍ଜା ଜାୟାସଙ୍ଗେ ରଙ୍ଗେ ଯହିଁ କ୍ରୀଡ଼ନ୍ତି କୋକେ,
ନିର୍ଭୟେ ନିରତେ ମାର-ଆସ୍ତରଣେ କରନ୍ତି ରଙ୍ଗ,
ବାରବାର ହୋଇ ଯହିଁ ଭଞ୍ଜଭୂମି-ବନ-ବିହଙ୍ଗ,

(୧) ଦ୍ରଷ୍ଟବ୍ୟ—ରାଧାନାଥଙ୍କ ଉଷା—ପୃ. ୨୨୨—୨୬୩ ।

ଭିନ-ନଦୀ-ଜଳ ନିଜ ପୁଣ୍ୟ-ବକ୍ଷେ ବଳାଙ୍ଗୀ ବହି
ଯୋଜନାନ୍ତେ ଯାଇ ନଜେ ମହାସିନ୍ଧୁ-ବକ୍ଷେ ମିଶଇ ।"

ଉଷାଙ୍କ ବିବାହ ନିମିତ୍ତ ଦୌଡ଼ ପ୍ରତିଯୋଗିତାରେ ଅଂଶ ଗ୍ରହଣ କରିଥିବା ରାଜକୁମାରମାନଙ୍କ ପ୍ରସଙ୍ଗରେ ବର୍ଣ୍ଣନା କରିବାକୁ ଯାଇ କବି କେତେଗୋଟି ରାଜ୍ୟର ବର୍ଣ୍ଣନା ଦେଇଛନ୍ତି । ନନ୍ଦକେଶରୀ କାବ୍ୟରେ, ଉତ୍କଳ ନରେଶଙ୍କ ପକ୍ଷରେ ଯୁଦ୍ଧରେ ଯୋଗଦେବାକୁ ଉତ୍କଳର ବିଭିନ୍ନ ସ୍ଥାନରୁ ଆସିଥିବା ବୀରମାନଙ୍କର ବିଷୟ ପ୍ରକାଶ କରିବାକୁ ଯାଇ କବି ଯେପରି ବିଭିନ୍ନ ସ୍ଥାନର ସୌନ୍ଦର୍ଯ୍ୟ ବର୍ଣ୍ଣନା କରିଅଛନ୍ତି, ଉଷାକାବ୍ୟରେ ସେହିପରି ପ୍ରତିଯୋଗୀ ରାଜକୁମାର-ମାନଙ୍କ ବିଷୟ ପ୍ରକାଶ କରିବାକୁ ଯାଇ ସେମାନଙ୍କ ରାଜ୍ୟର ବର୍ଣ୍ଣନା ପ୍ରସଙ୍ଗରେ ଉତ୍କଳ ପ୍ରକୃତିକୁ ଜୀବନ୍ତ ରୂପ ପ୍ରଦାନ କରିଅଛନ୍ତି । ତନ୍ମଧ୍ୟରୁ କେତେଗୋଟି ଏଠାରେ ଉଦ୍ଧାର କରାଯାଇପାରେ ।

"ବୀରକୁଳ ନାମେ ବୀର ପରିପୂର୍ଣ୍ଣ-ସ୍ଥଳୀ କଥିତ
ପୂଗ-ଷଣ୍ଡ ଯହିଁ ନାଗବଲ୍ଲୀ ଦଳେ ଗାଢେ ଜଡ଼ିତ,
ହେମଫଳେ ନମ୍ର ଯହିଁ ଲଙ୍କା ଅମ୍ର ପାଦପ ପନ୍ତି
ତୃଷାର୍ତ୍ତ ପଥିକେ ଶାଖା ସଞ୍ଚାଳନ-ଛଳେ ଡ଼ାକନ୍ତି,
କୁମାରଦ ଆଦି ସ୍ଥଳୀ ଶାରଦ୍ରୁମ ନିକୁଞ୍ଜେ ମାଳ
ସୁବର୍ଣ୍ଣ ରଟିମା-ପଟୁ ସ୍ତରେ ଯାର ତନୁ ପଙ୍କିଳ,
ଭୋଗରାଇ ଯାର ଦିଗନ୍ତ ବିସ୍ତାର-ସିକତା ରାଶି—
ଶିରେ ଖେଳୁଥିଲା ରଙ୍ଗେ ଦିନେ ସିନ୍ଧୁ-ତରଙ୍ଗ ଆସି,
ଏବେ ପାଦେ ଯାର ଚକ୍ରବାଳବ୍ୟାପୀ ଶାଳି କେଦାର
ଶରତେ ଧରଇ ବାରା ହରିତ-ସିନ୍ଧୁ-ତରଙ୍ଗାକାର
ସେ ଶାଳି-କେଦାର ଦୂରୁଁ ଦିଶେ ଯାର ସିକତା କୁଦ,
ପାରିବାରେ ଯେହ୍ନେ ଜଳ ଦେବତାଙ୍କ ଶଙ୍ଖଅଉଧ ।"

ଏହି ପ୍ରକୃତି ବର୍ଣ୍ଣନା କବିବର ରାଧାନାଥଙ୍କର ଓଡ଼ିଶାର ଭୌଗୋଳିକ ଜ୍ଞାନର ପରିଚୟ ଦେଇଥାଏ । ଉଷା ଯେଉଁ ଅରଣ୍ୟକୁ

ଶିକାର କରିବାକୁ ଯାଇଥିଲେ ସେହି ଅରଣ୍ୟର ପ୍ରାକୃତିକ ବର୍ଣ୍ଣନା ମଧ୍ୟ କବିଙ୍କ ଲେଖନୀରେ ଜୀବନ୍ତ ରୂପ ଗ୍ରହଣ କରିଅଛି ।

"ଗ୍ରୀଷ୍ମଶରଙ୍କିତ ଲଳିତ ମୂରତି ଯହିଁ ମୃଗୀରି
ଏବେଛନ୍ତି ସପ୍ତ-ସ୍ରୋତାଖରେ ଗୋପନେ ପଥ୍ୟଧାରୀ,
ଝିଲ୍ଲି-ଝଙ୍କାରିତ-ମହାରଣ୍ୟ ଚହିଁ ଥିଲା ସେ କାଳେ,
ସଦାସୁର୍ଣ୍ଣୀତଳ ନାନା ବନସ୍ପତି-ବ୍ରତତିମାଳେ,
ମହାଘୋରବନ, ପଶିବାକୁ ଯହିଁ ଡରନ୍ତି କାକ,
ପୁଞ୍ଜିତ ହୋଇଛି ଯେସନେ କୃଷ୍ଣପକ୍ଷ ଅନ୍ଧାରପାକ;
ଅଶନ, ଶିଂଶପା, କକୁଭ ତିନ୍ଦୁକ କୁଟଜ ଶାଳ
ହରିତକ, ନୀପ, ଧାତ୍ରୀ, ବିଭିତକୀ, ଧବ, ପିଆଳ,
ଏ ଆଦି ଗହନ ପାଦପେ ଗହଳ ଥିଲା ସେ ସ୍ଥଳୀ
ସରୋଜାଳଙ୍କୃତ ଠାବେ ଠାବେ ଥିଲା ସଜଳ-ଜଳୀ
ଅଦୂରେ ତାହାର ନଳବନାକୀର୍ଣ୍ଣ ବିସ୍ତୀର୍ଣ୍ଣ ସର,
ନୀର-ଆସ୍ତରଣ ନଳମାରେ ଜଣେ କଳା ଭ୍ରମର,
କାହିଁ ନୀର ପାଣ୍ଡୁବର୍ଣ୍ଣ ପଡ଼ି ପଦ୍ମ—କେଶର ଧୂଳ
ତାରକତ କାହିଁ କରିଛି ପ୍ରସୂନେ ପା ଶିଉଳୀ
× × ×
ବନପଶୁଙ୍କର ସଞ୍ଚରଣ-ଯୋଗ୍ୟ ସର ସେ ଜାଣି
ଜଗନ୍ତି ମୃଗୟା-ଜୀବୀ ଖର-ବନେ କୋଦଣ୍ଡପାଣି ।"

କବିଙ୍କର ପ୍ରକୃତି ପ୍ରେମପ୍ରବଣତା ଉଷାକାବ୍ୟରେ ଯେପରି ଭାବରେ ପ୍ରକାଶ ଲାଭ କରିଅଛି; ତାଙ୍କର ଅନ୍ୟାନ୍ୟ କାବ୍ୟମାନଙ୍କରେ ମଧ୍ୟ ସେହିପରି ଭାବରେ ପ୍ରକାଶ ଲାଭ କରିଅଛି ।

ନୃପତି ସନ୍ତାନ କାମନା କରିଥିଲେ, ପାଇଲେ ଉଷାଙ୍କୁ । ଉଷାଙ୍କୁ ପାଇ ସେ ଗ୍ରୀକ ପୁରାଣର କଥାବସ୍ତୁରେ ଥିବା ଜାସସ୍ ବା ଓଭିଡ୍‌ଙ୍କ କାବ୍ୟରେ ଥିବା ଇଆସସ୍‌ଙ୍କ ପରି ଆଚରଣ ପ୍ରଦର୍ଶନ କରିନାହାନ୍ତି । ଆଟେଲାଣ୍ଟାଙ୍କ ଜନ୍ମ ଓ ଉଷାଙ୍କ ଜନ୍ମ ତାଙ୍କର ପିତାଙ୍କ ନିକଟରେ ସମ୍ପୂର୍ଣ୍ଣ ବିପରୀତ । ପୁତ୍ରକାମନା କରି ଜାସସ୍ ବା ଇଆସସ୍

କନ୍ୟା ପାଇବାରୁ କନ୍ୟା ପ୍ରତି ଅତ୍ୟନ୍ତ ନର୍ମମ ଆଚରଣ ପ୍ରଦର୍ଶନ କରିଥିଲେ । ଆଶ୍ରିଳ୍ଷାଙ୍କୁ ସେମାନେ ବନମଧ୍ୟରେ ଛାଡ଼ିଦେଇ ଆସିଲେ । ଗୋଟିଏ ଭଲ୍ଲୁକୀ ତାଙ୍କୁ ପାଳିଥିଲା । ମାତ୍ର ଊଷା ରାଜା ନୂତନଙ୍କର ଅତି ଆଦରର କନ୍ୟା ହୋଇଥିଲେ ।

"ଦଶମାସ ଅନ୍ତେ ପ୍ରସବିଲେ ରାଣୀ ଦିବ୍ୟ ଦୁହିତା।
ଊଷା କାଳେ ଜାତ ବୋଲି ଊଷାନାମ ରଖିଲେ ପିତା ।
ଫଳେ ଦମ୍ପତିର ଦୁଃଖ-ତମିସ୍ର ହେଲା ସେ ଊଷା
ଜନନେତ୍ରେ ହେଲା ଲାବଣ୍ୟ ମଞ୍ଜୁଳା ରୂପ ମଞ୍ଜୁଷା ।"

ପିତାଙ୍କ ସହିତ ଊଷା ଅରଣ୍ୟରେ ଶିକାର କୌଶଳ ଦେଖି ଦେଖି ନିଜେ ଜଣେ ବିଖ୍ୟାତ ଶିକାରିଣୀ ହେଲେ । ସଖୀମାନଙ୍କ ଗହଣରେ ସେ ଯେତେବେଳେ ବନଭୂମିରେ ବିଚରଣ କରୁଥିଲେ ସେତେବେଳେ ତାଙ୍କର ସୌନ୍ଦର୍ଯ୍ୟ ଅପରିମିତ ଥିଲା । କବିଙ୍କ ଭାଷାରେ,

"ରଙ୍ଗ କୋଦଣ୍ଡାର ପାଟଳ ବସନେ ଶୋଭଇ ଧନୀ
ଚଙ୍ଗ ଘନେ ଯେହ୍ନେ ଶୋଭେ ତାର ପ୍ରଭାମୟୀ ମିତଣୀ,
କେବେ ଅଶ୍ୱପୃଷ୍ଠେ ଭ୍ରମୁଥାଇ ବାଳା ବନଶାଦ୍ୱଳ,
ଦ୍ରୁତ ଗତି ହେତୁ ଗଣ୍ଡେ ଦୋଳୁଥାଇ ସ୍ୱର୍ଣ୍ଣ-କୁଣ୍ଡଳ,
କେବେ ଧନୁଶର ଶୋଭୁଥାଇ କରେ, ପୃଷ୍ଠେ ନିଷଙ୍ଗ
କେବେ ସବ୍ୟକରେ ଫଳା, ସବ୍ୟେତରେ ଅସି ଉଲଙ୍ଗ,
କେବେ ଶୂଳହସ୍ତେ ସଖୀଦଳେ ଭ୍ରମୁଥାଇ ଛଇଳା,
ଯଦ୍ୱିନା-ବାହିନୀ ସଙ୍ଗେ ମହାବନେ ଯେହ୍ନେ ପ୍ରମୀଳା
କନକ—ବଲ୍ଲରୀ ମଧ୍ୟେ କି ବିହରେ ଶ୍ରୀ ଗିରି-ହ୍ଲାଦିନୀ,
ତାରାବଲ୍ଲୀ ଷଡ଼େ କି ଅବା ରୋହିଣୀ ଇନ୍ଦୁମୋହିନୀ ।"

ଏହିପରି ଭାବରେ ବସ୍ତୃତ ବର୍ଣ୍ଣନା ମଧ୍ୟରେ ଊଷାଙ୍କର ସୌନ୍ଦର୍ଯ୍ୟ ପ୍ରକାଶ ପାଇଅଛି । ଊଷାଙ୍କର ବିବାହ ଯୋଗ୍ୟ ବୟସ

ହୋଇଯିବାରୁ ତାଙ୍କ ବିବାହ ପାଇଁ ଆୟୋଜନ କରାଗଲା । ଉଷା ତାଙ୍କର ବିବାହ ପାଇଁ ଗୋଟିଏ ପଣ ରଖିଲେ ଯେ, ଗତିବେଗରେ ତାଙ୍କୁ ଯିଏ ଜିଣିବ ସେ ତାଙ୍କର ପତି ହେବ । ମାତ୍ର ଗତି ବେଗରେ ଜିଣି ନପାରିଲେ ପ୍ରତିଯୋଗୀ ମୃତ୍ୟୁଦଣ୍ଡ ପାଇବ । ଉଷା ଏପରି ଏକ ସର୍ତ୍ତ ରଖିବା ସାଧାରଣ ଦୃଷ୍ଟିରୁ ସ୍ୱାଭାବିକ ହୋଇପାରେ, ମାତ୍ର ଓଭିଡ୍‌ଙ୍କ କାବ୍ୟରେ ଏହାର ଏକ କାରଣ ନିର୍ଦ୍ଦେଶିତ ହୋଇଅଛି ।

"Having consulted the oracle whether she shall marry, she is answered that a husband will certainly prove her destruction. On this, to avoid marrying she makes it a rule to offer to run with her suitors promising that she herself will be the price of the victor but only on condition that immediate death shall be the fate of those who are vanquished by her"

ଭବିଷ୍ୟତ୍ ବକ୍ତାଙ୍କଠାରୁ ଆଟେଲାଣ୍ଟା ଯେତେବେଳେ ଜାଣିପାରିଲେ ଯେ ବିବାହ କଲେ ତାଙ୍କର ଅନିଷ୍ଟ ଅବଶ୍ୟମ୍ଭାବୀ ସେତେବେଳେ ବିବାହକୁ ଏଡ଼ େଦବା ପାଇଁ ଆଟେଲାଣ୍ଟା ଏପରି ଏକ ସର୍ତ୍ତ ରଖିଥିଲେ; କାରଣ ତାଙ୍କର ବିଶ୍ୱାସ ଥିଲା ଯେ ଗତିବେଗରେ କେହି ତାଙ୍କୁ ପରାଜିତ କରିପାରିବ ନାହିଁ । କବିବର ରାଧାନାଥ ଏଠାରେ ସର୍ତ୍ତର କାରଣକୁ ଗ୍ରହଣ ନକରି ସର୍ତ୍ତଟିକୁ ଅବିକଳ ଗ୍ରହଣ କରିଅଛନ୍ତି । ଉଇଲିଅମ୍ ମରିସ୍‌ଙ୍କ ଆଟେଲାଣ୍ଟା ରେସ୍‌ରେ ସର୍ତ୍ତଟି ସେହିପରି ଦିଆଯାଇଅଛି ।

> "The maid has vowed e'en such a man to wed
> As in the course her swift feet can outrun,
> But whose fails herein, his days are done."

ଏହି ସର୍ତ୍ତ ଅନୁସାରେ ବହୁ ରାଜକୁମାର ଉଷାଙ୍କର ସ୍ୱୟମ୍ବରରେ ଯୋଗଦାନ କରି ମୃତ୍ୟୁ ବରଣ କରିଛନ୍ତି । ଶେଷରେ

ଆସିଛନ୍ତି ଜୟନ୍ତ । ଜୟନ୍ତ ଉଷାଙ୍କୁ ପାଇବାପାଇଁ ବ୍ୟାକୁଳ ହୋଇ ପଡ଼ିଥିଲେ । ତେଣୁ ଦୌଡ଼ ପ୍ରତିଯୋଗିତାରେ ଯୋଗ ନ ଦେବା ପାଇଁ ତାଙ୍କୁ କୁହାଗଲେ ମଧ୍ୟ ସେ ନିଜର ଦୃଢ଼ମତ ପୋଷଣ କରିଅଛନ୍ତି । ଜୟନ୍ତ ଏହି ପ୍ରତିଯୋଗିତାରେ ଜୟଲାଭ କରିବା ପାଇଁ କାର୍ତ୍ତିକେୟଙ୍କ ଆଶ୍ରୟ ଭିକ୍ଷା କରିଛନ୍ତି । ମାତ୍ର ଗ୍ରୀକ୍ ପୁରାଣର କଥାବସ୍ତୁ ଅନୁସାରେ ନାୟକ ପ୍ରଣୟର ଅଧିଷ୍ଠାତ୍ରୀ ଦେବୀ ଭେନସ୍‌ଙ୍କର ଶରଣାପନ୍ନ ହୋଇଛନ୍ତି । ଜୟନ୍ତ କାର୍ତ୍ତିକେୟଙ୍କଠାରୁ ଲାଭ କରିଛନ୍ତି ତିନିଗୋଟି ସ୍ୱର୍ଣ୍ଣକମଳ, ଠିକ୍ ଯେପରି ମିଲାନିୟନ୍ ବା ହିପୋମିନସ୍ ଭେନସ୍‌ଙ୍କଠାରୁ ଲାଭ କରିଛନ୍ତି ତିନିଗୋଟି ସ୍ୱର୍ଣ୍ଣଆତ । ସ୍ୱର୍ଣ୍ଣଆତ ପରିବର୍ତ୍ତେ ସ୍ୱର୍ଣ୍ଣକମଳକୁ ଗ୍ରହଣ କରି କବି ନିଜର ବିଶ୍ଳେଷଣବୁଦ୍ଧି ତଥା ପ୍ରାସଙ୍ଗିକତା ରକ୍ଷା କରିଅଛନ୍ତି । ଦୌଡ଼ ପ୍ରତିଯୋଗିତାରେ ସ୍ୱର୍ଣ୍ଣକମଳ ଏବଂ ସ୍ୱର୍ଣ୍ଣଆତର ପ୍ରୟୋଗ କୌଶଳ ସମସ୍ତରେ । ଦୌଡ଼ ପ୍ରତିଯୋଗିତାର ଚିତ୍ର କବିବର ରାଧାନାଥଙ୍କ ଲେଖନୀରେ ଅତ୍ୟନ୍ତ ହୃଦ୍ୟ ହୋଇଅଛି ।

"ଅତିଦ୍ରୁତେ ଧାଇଁ ଜୟନ୍ତର ବହେ ଖର ନିଶ୍ୱାସ,
ମନେ ମଣୁଅଛି ବାମାକୁ ଜିଣିବା ବୃଥା ପ୍ରୟାସ,
ଲୁଟୁଅଛି ଦମେ ବୀରମନୁ ବୀର୍ଯ୍ୟ-ସୁଲଭ ଦମ୍ଭ
ଲୁଟୁଅଛି ଆଶା ଆଗେ ଛୁଇଁବାର ମାଣିକ୍ୟ-ସ୍ତମ୍ଭ
ଦଉଡ଼ ଦଉଡ଼ ଅବସନ୍ନ ହୋଇ ଦାରୁଣ-ଶ୍ରମେ
ସୁବର୍ଣ୍ଣ-କଞ୍ଜ ଫିଙ୍ଗିଲା ଗୋଟିଏ ସର୍ବ-ପ୍ରଥମେ
ଶୁଭ୍ରରଜେ ଗଡ଼ ଗଡ଼ଣ ଯାଉଛି ପଦ୍ମ ସଘନେ,
ଲୁଚକାଳି କିବା ଖେଳଇ ତାରକା ଶାରଦ-ଘନେ ?
ମୁକୁତା-କେଶର, ମରକତ-ନାଳ, ହେମ-କମଳ
ଦେଖି ଭୂଷପ୍ରିୟ ଉଷାମନ ହେଲା ଲୁଧା—ତରଳ,
ତୋଳିନେଲା ଗଡ଼ି ଯାଉଥିବା ଫୁଲ ଫୁଲ-ବରଣା
ଅଳଙ୍କାର-ସ୍ପୃହା ଛାଡ଼ି ପାରନ୍ତି କି କେବେ ଅଙ୍ଗନା ?
ଏହି ଅବସରେ ଅଗ୍ରସର ହେଲା ନୃପ ତନୟ,

ହର୍ଷେ ତାଳିଦେଲେ ମହା କୋଳାହଳେ ଦର୍ଶକଚୟ,
ପଦ୍ମନେତ୍ରା ନେତ୍ର ପଲକେ, କଲ୍ଲ ସେ ଷଡ଼ପୂରଣ
ଯେତେ ପଛେ ଥିଲ୍ଲ ସେତକ ଆଗକୁ ଟେଲ୍ଲ ବଦନ,
ପୁଣି ସେହି ରୂପେ କୁମାର ଫିଙ୍ଗିଲ୍ଲ ଅନ୍ୟ କମଳ,
ସେହିରୂପେ ତାକୁ ଟୋଳିନେଲ୍ଲ ବାଳା ନଇଁ ତ୍ୱରିତ
ଅଳ୍ପଦୂର ଅଗ୍ରସର ନହେଣୁ ଯୁବାମଣ୍ଡଳୀ
ସ୍ୱକୂଳ-ଗଣ୍ଡରେ ପଣ ଧରିନେଲ୍ଲ ମର୍ତ୍ତ୍ୟବଳ୍ଲୀ,
ଲକ୍ଷ୍ୟ ଛୁଇଁବାକୁ ଏବେ ଆଉ ନାହିଁ ବହୁ ବିଳମ୍ବ
ଜକଜକ ହୋଇ ଅଗ୍ରେ ଝଟକଇ ମାଣିକ୍ୟ-ଖମ୍ବ,
'ବିହି କି ଲିହିଛି ଏ କଷଣ ମୋହୋ ଲଲାଟ-ପଥେ,
ଦେବ ଡକ୍ରୁଚର, ସାହା ହୁଅ ଏହି ଘୋର ସଙ୍କଟେ,
ଇଷ୍ଟଦେବ ସ୍ତବ ଏହି ରୂପେ ଯୁବା ଚିନ୍ତା-ଜ୍ୱଳନେ
ଭୃଙ୍ଗପୂ-କମଳ ମାର୍ଗୁ ବହୁଦୂରେ ଫିଙ୍ଗିଲ୍ଲ ବଳେ,
ଦୂରୁଁ ଆଣିବ କି ନଆଣିବ ଫୁଲ ଭାଳି ତରୁଣୀ
ପ୍ରଲୋଭନେ ପଡ଼ି ଦଉଡ଼ି ଦଉଡ଼ି ନେଲ୍ଲ ତା ପୁଣି,
କୁହୁକ ଲଗାଇ ଦେଲେ ତହିଁ ଶୂର କୁଞ୍ଜିକା ସୁତ,
ଟୋଳିନେବା ବେଳେ କୁମାରୀ ହେଲ୍ଲ ସେ ଭ୍ରଷ୍ଟ ବହୁତ,
ସ୍ତୋକମାତ୍ର ଗତି ମନ୍ଦହେଲ୍ଲ ତାର ସେ ଫୁଲ ବହି,
ସ୍ତମ୍ଭ-ଗାତ୍ର ଆଗେ ପରଶି ଜୟନ୍ତ ହେଲ୍ଲ ବିଜୟୀ ।"

ଭଇଲପୂମ୍ ମହାସ୍‌ଙ୍କ ଆଟ୍‌ଲାଣ୍ଟା ରେସ୍‌ରେ ଦୌଡ଼ ପ୍ରତିଯୋଗିତା ଏହିପରି ଭାବରେ ବର୍ଣ୍ଣିତ ହେବାର ଦେଖାଯାଏ :—

"But with no sound he raised aloft his hand,
And thence what seemed a ray of light there flew
And past the maid rolled on along the sand
Then trembling she her feet together drew
And in her heart a strong desire there grew
To have the toy; some god the thought had given
That gift to her, to make of earth a heaven.

Then from the course with eager steps she ran,
And in her odorous bosom laid the gold
But when she turned again, the great-limbed man,
Now well-ahead she failed not to behold,
And mindful of her glory waxing cold
Sprang up and followed him in hot pursuit,
Though with one hand she touched the golden fruit

Note too, the bow that she was wont to bear
She laid aside to grasp the glittering prize,
And o'er her shoulder from the quiver fair
Three arrows fell and lay before her eyes
Unnoticed, as amidst the peoples cries
She sprang to head the strong Milanian,
Who now the turning-post had well-nigh won.
But as he set his mighty hand on it
White fingers underneath his own were laid,
And white limbs from his dazzled eyes did flit,
Then he the second fruit cast by the maid,
She ran awhile and then as one affraid
Wavered and stopped, and turned and made no stay,
Until the globe with its bright fellow lay
Then, as a troubled glance she cast around
Now far ahead the Argive could she see,
And in her garment's hem one hand she wound
To keep the double prize and strenuously
Sped o'er the course, and little doubt had she
To win the day, though now but scanty space
Was left betwixt him and the winning place.
Short was the way unto such winged feet,

Quickly she gained up on him till at last
He turned about her eager eyes to meet
And from his hand the third fair apple cast.
She wavered not, but turned and ran so fast
After the prize that should her bliss fulfil,
That in her hand it lay ere it was still.
Now did she rest, but turned about to win
One more, an unblest woeful victory—
And yet—and yet—why does her breath begin
To fail her, and her feet drag heavily ?
Why fails she now to see if far or nigh
The goal is ? why do her grey eyes grow dim ?
Why do these tremors run through every limb ?"

ଓଭିଡ଼ଙ୍କ କାବ୍ୟରେ କଥାବସ୍ତୁର ଉତ୍କଣ୍ଠା ଏହିପରିଭାବରେ ରହିଅଛି: "The goal is still a great way off. Then at length, the descendent of Neptune (Hippomenes) throws one of the three products of the three. The virgin is amazed and from a desire for the shining fruit, she turns from her course and picks up the rolling gold. Hippomenes passes her. The theatres ring with applause. She makes amends for the delay and the time that she has lost, with a swift pace and again she leaves the youth behind. And retarded by the throwing of the second apple, again she overtakes the youngman and passes by him. The last part of the race now remained. 'And now' said he, 'O goddess, giver of this present, aid me' and then with youthful might, he threw the shining gold, in an oblique direction, on one side of the plain. in

order that she might return the more slowly. The maiden seemed to be in doubt whether she should fetch it. I forced her to take it up and added weight to the apple x x. The virgin was outrun and the conquerer obtained the prize."

ଏହି ତିନିଗୋଟି ବର୍ଣ୍ଣନାରେ ଦୌଡ଼-ପ୍ରତିଯୋଗିତା ଯେପରି ଭାବରେ ରୂପଲାଭ କରିଅଛି, ତହିଁରେ କେତେକାଂଶରେ ସାମ୍ୟ ପରିଲକ୍ଷିତ ହୋଇଥାଏ । କବିବର ରାଧାନାଥ ନାୟିମାନଙ୍କୁ "ଭୂଷଣ ରଙ୍କୁଣୀ" ଭାବରେ ଚିତ୍ରିତ କରି ସ୍ୱର୍ଣ୍ଣକମଳ ପ୍ରତି ଉଷାଙ୍କର ଆସକ୍ତିର ଆଧିକ୍ୟ ପ୍ରତିପାଦନ କରିଅଛନ୍ତି ।

ହିପୋମିନସ୍ ଓ ଆଟ୍‌ଲାଣ୍ଟାଙ୍କର ମିଳନ ପରେ ଦେବୀ ଅଭିଶାପରୁ ସେମାନେ ସିଂହ ଓ ସିଂହୀରେ ପରିଣତ ହେଲେ ଏବଂ ସେମାନଙ୍କୁ ରଥ ଟାଣିବାକୁ ପଡ଼ିଲା । ମାତ୍ର ଉଷା ଓ ଜୟନ୍ତଙ୍କ ମିଳନ ସମୟରେ ଯେଉଁ ଦାରୁଣ ଦୁର୍ବିପାକ ଘଟିଲା ତାହାର କାରଣ କାଳୀଙ୍କ ମୁଖରେ ପ୍ରକାଶ ପାଇବାରେ ସ୍ୱାଭାବିକତା ରକ୍ଷିତ ହୋଇଅଛି । ଆଂଶିକ ଭାବରେ ଏକ ପୌରାଣିକ ଭିତ୍ତିକୁ ଆଣି କବି ଏଠାରେ ଯେପରି ଭାବରେ ଖଞ୍ଜି ଦେଇଛନ୍ତି ତାହା ଉଷାକାବ୍ୟକୁ ଅଧିକ ଆକର୍ଷଣୀୟ କରିଅଛି । ଗ୍ରୀକ୍ ପୁରାଣର ଉପାଖ୍ୟାନର ଶେଷାଂଶ, ଓଭିଡ୍‌ଙ୍କ କାବ୍ୟର ଶେଷାଂଶ ଓ ରାଧାନାଥଙ୍କ କାବ୍ୟର ଶେଷାଂଶକୁ ତୁଳନାମୂଳକ ଭାବରେ ଆଲୋଚନା କଲେ ରାଧାନାଥଙ୍କ କବିପ୍ରତିଭାର ସମୁଜ୍ଜ୍ୱଳ ଦିଗଟି ଉନ୍ମୋଚିତ ହୋଇଥାଏ । କବିବର ରାଧାନାଥଙ୍କ ଚିନ୍ତାଧାରା ଯେ ସମ୍ପୂର୍ଣ୍ଣ ପୃଥକ୍ ଏବଂ ସ୍ୱଦେଶୀୟ ପରଂପରାର ଅନୁଗାମୀ, ଏକଥା ସହଜରେ ପ୍ରତିପନ୍ନ ହୋଇଥାଏ । ଗ୍ରୀକ୍ ପୁରାଣର ଉପାଖ୍ୟାନର ଶେଷାଂଶର ଇଂରେଜୀ ଅନୁବାଦ ହେଉଛି ;

"The marriage took place, but the oracle's warning was justified because, one day, as they passed by a precinct of Zeus, Melanion persuaded

Atalanta to come inside and lie with him there. Vexed that his precinct had been defiled, Zeus changed them both into lions for lions do not mate with lions, but only with leopards, and they were thus prevented from ever again enjoying each other. This was Aphrodite's punishment first for Atalanta's obstinacy in remaining a virgin, and then for her lack of gratitude in the matter of the golden apples. ”

ଓଭିଡ଼ଙ୍କ କାବ୍ୟର ସେଷାଂଶର ଇଂରେଜୀ ଅନୁବାଦ ଦେଉଛି;

“And was I not, Adonis, deserving that he should return thanks to me, and the tribute of frankincense ? × . × × × ×
They were passing by a temple concealed within a shady wood, which the famous Echion had formerly built for the mother of the Gods, according to his vow , and the length of their journey moved them to take rest there. There an unseasonable desire of caressing his wife seized Hippomenes, excited by my agency. × × × × This he entered and he defiled the sanctnary by a forbidden crime. × × × × Wherefore yellow mares cover their necks so lately smooth, their fingers are bent into claws, of their shoulders are made fore-legs; their whole weight passes into their breasts. The surface of the sand is swept by their tails. Their look has anger in it instead of words they utter growls, in stead of chambers they haunt the woods,

and dreadful to others, as lions, they champ the bits of Cybele with subdued jaws ."

ଉଷା ଏବଂ ଜୟନ୍ତଙ୍କର ମିଳନର ପରିଣାମ ହେର୍ମା ଦୁହିଙ୍କର ମୃତ୍ୟୁ । କାଳୀ ରାଜାଙ୍କ ସମ୍ମୁଖରେ ଏହି ପରିଣାମ ବିଷୟରେ ସୂଚନା ଦେଇଛନ୍ତି;

"ତିଳୋତ୍ତମା ଆସି ପ୍ରବେଶିଲା ଭୂମ ରାଣୀ-ଜଠରେ,
ଚିତ୍ରରଥ ନେଲେ ନରରୂପ ହେମପୁର ନଗରେ,
ସେହି ତିଳୋତ୍ତମା ଉଷା ସେହି ଚିତ୍ରରଥ ଜୟନ୍ତ,
ଦୁହିଙ୍କ ଉପାଧିରୁ ହୋଇଥିଲେ ଏତେ ସୌଭାଗ୍ୟବନ୍ତ,
ପରୀକ୍ଷାରେ ହାରି ପ୍ରାଣ ଦେଲେ ସେତେ ନୃପ ନନ୍ଦନ,
ସେ ସିନା ଅଟନ୍ତି ଶାପେ ସ୍ୱର୍ଗଭ୍ରଷ୍ଟ ଗନ୍ଧର୍ବଗଣ,
ଦିବ୍ୟ ଲୋକ ଏବେ ଭଜିଲେ ଏ ବେନି ତ୍ୟଜି ସଂସାର,
ଶୋକ ପରିହରି କର ବେନଙ୍କର ଯୋଗ୍ୟ ସତ୍କାର ।"

ଦେବୀଙ୍କର ଅଭିଶାପ ଗ୍ରୀକ୍ ପୁରାଣ, ଓଭିଡ୍‌ଙ୍କ କାବ୍ୟ ଓ ରାଧାନାଥଙ୍କ କାବ୍ୟର କଥାବସ୍ତୁକୁ ନିୟନ୍ତ୍ରିତ କରିଅଛି । ଗ୍ରୀକ୍ ପୁରାଣର କଥାବସ୍ତୁର ପରିଣତିରେ ଦେବୀଙ୍କର ଅଭିଶାପର ଯାଥାର୍ଥ୍ୟକୁ ଆହୁରି ବଳିଷ୍ଠ କରିବାକୁ ଓଭିଡ୍ କେବଳ ଦେବୀଙ୍କ ମନ୍ଦିରକୁ ଅପବିତ୍ର କରିବାର ଅପରାଧକୁ ଯଥେଷ୍ଟ ଭାବରେ ଗ୍ରହଣ କରିନାହାନ୍ତି । ହିପୋମିନସ୍ ଓ ଆଟେଲାଣ୍ଟାଙ୍କର କୃତଘ୍ନତାକୁ ସେଥିପାଇଁ ମିଶାଇ ଦେଇଛନ୍ତି । ମିଳନ ଯୋଗୁଁ ହିପୋମିନସ୍ ଓ ଆଟେଲାଣ୍ଟା ଦେବୀଙ୍କୁ ଧନ୍ୟବାଦଟିଏ ଜଣାଇଲେ ନାହିଁ । ଦେବୀ ସେଥିପାଇଁ ସେମାନଙ୍କୁ ଶାସ୍ତି ଦେବାକୁ ସୁଯୋଗ ଖୋଜୁଥିଲେ । ସେମାନେ ଯେତେବେଳେ ମନ୍ଦିରର ପବିତ୍ରତା ନଷ୍ଟ କଲେ ସେତେବେଳେ ଦେବୀ ସେମାନଙ୍କୁ ସିଂହରେ ପରିଣତ କରିଦେଲେ । ଏହା ଫଳରେ ଆଉ କେହି ଭବିଷ୍ୟତରେ ଦେବୀଙ୍କର ଅବମାନନା କରିବାକୁ ସାହସ କରିବେ ନାହିଁ ବୋଲି ଦେବୀ ଧରିନେଲେ । ହିପୋମିନସ୍ ଏବଂ ଆଟେଲାଣ୍ଟାଙ୍କର ମିଳନର ଏହି ପରିଣତି ଅତ୍ୟନ୍ତ ଦୁଃଖଦାୟକ ।

କଥାବସ୍ତୁର ପରିଣତିରେ ହିପୋମିନସ୍ ଏବଂ ଆଟ୍‌ଲାଣ୍ଟା ଅଭିଶାପ ଗ୍ରସ୍ତ ହୋଇଛନ୍ତି । ମାତ୍ର କବିବର ରାଧାନାଥଙ୍କର ଚନ୍ଦ୍ରାଧାର ଏପ୍ରକାର କାବ୍ୟିକ ପରିଣତିକୁ ସମର୍ଥନ କରି ପାରିନାହାନ୍ତି ।

ଉଷା କାବ୍ୟର ପରିଣତିରେ ଅଭିଶାପର ମୁକ୍ତି ସୂଚିତ ହୋଇଅଛି । ଉଷା ଏବଂ ଜୟନ୍ତଙ୍କର ଆକସ୍ମିକ ମୃତ୍ୟୁ ମରଜଗତର ମନୁଷ୍ୟର ଦୃଷ୍ଟିରେ ଆକସ୍ମିକ ହୋଇପାରେ । ମାତ୍ର ପ୍ରକୃତରେ ଏହା କାଳୀଙ୍କ ସୂଚନା ଅନୁସାରେ ପୂର୍ବ ନିର୍ଦ୍ଧାରିତ । ସେମାନଙ୍କର ମୃତ୍ୟୁହିଁ ଶାପମୁକ୍ତି । ଗ୍ରୀକ୍ ପୁରାଣର କଥାବସ୍ତୁ ବା ଓଭିଡ୍‌ଙ୍କ କାବ୍ୟର କଥାବସ୍ତୁ ଦେବୀ ବା ଦୈବୀଶକ୍ତିର ଆଳରେ ଏକ ଦୁଃଖାନ୍ତ ପରିଣତି ସୃଷ୍ଟି କରିଅଛି। ମାତ୍ର ପରିଣତିର ଦୁଃଖାନ୍ତ ବାୟୁମଣ୍ଡଳ ଭିତରେ କବିବର ରାଧାନାଥ ସ୍ଥାପନ କରିଅଛନ୍ତି ପ୍ରାଚ୍ୟ ପରଂପରାର ଉଜ୍ଜ୍ୱଳ ଆଦର୍ଶ । ପ୍ରାଚ୍ୟ ପରଂପରାର ବାଣୀ ଧ୍ୱଂସାତ୍ମକ ନୁହେଁ । ପ୍ରାଚ୍ୟ ପରଂପରା ବିଶ୍ୱାସ କରେ, ଯେଉଁଠାରେ ଦୋଷ ଅଛି ସେଠାରେ କ୍ଷମା ଅଛି, ଯେଉଁଠାରେ ଅନ୍ଧକାର ଅଛି ସେଠାରେ ଯେ ସବୁବେଳେ ଅନ୍ଧକାରର ରାଜତ୍ୱ ରହିବ, ତାହା ନୁହେଁ । ଅନ୍ଧକାର ପରେ ପୁଣି ସେଠାରେ ଖେଳିବ ଆଲୋକର ପ୍ଲାବନ । ସେଥିପାଇଁ ଚନ୍ଦ୍ରରଥ ଓ ତିଳୋତ୍ତମା କାଳୀଙ୍କ ଠାରୁ ଅଭିଶାପ ପାଇବା ପରେ ପୁଣି ଶାପମୁକ୍ତିର ସଙ୍କେତ ମଧ୍ୟ ପାଇଛନ୍ତି । ପ୍ରାଚ୍ୟ ଜଗତର ଆଦର୍ଶ, ମନୁଷ୍ୟକୁ ଦେବତାରେ ପରିଣତ କରିବା; ମନୁଷ୍ୟକୁ ପଶୁରେ ପରିଣତ କରିବା ନୁହେଁ । ପଶୁତ୍ୱକୁ ପରିତ୍ୟାଗ କରି ମନୁଷ୍ୟ ଯଥାର୍ଥ ମନୁଷ୍ୟରେ ପରିଣତ ହୁଏ; ପୁଣି ସେ ତାର କର୍ମଫଳରେ ଦେବତାରେ ପରିଣତ ହୁଏ । କବିବର ରାଧାନାଥ ପ୍ରାଚ୍ୟ ପରଂପରାର ସେହି ଆଦର୍ଶର ପ୍ରଚାରକ । ସେ ଉଷା ଏବଂ ଜୟନ୍ତଙ୍କୁ ପଶୁରେ ପରିଣତ କରାଇଦେବାର କଳ୍ପନାକୁ ମନରେ ସ୍ଥାନ ନଦେଇ ସେମାନଙ୍କୁ ଦିବ୍ୟଲୋକ ଯାତ୍ରୀ କରାଇଅଛନ୍ତି । ଉଷା ଓ ଜୟନ୍ତଙ୍କର ଏହି ପରିଣତି ପାଇଁ କବିବର ରାଧାନାଥ ଭାରତୀୟ ପୌରାଣିକ ଆଦର୍ଶକୁ ଗ୍ରହଣ କରି ନିଜର ବକ୍ତବ୍ୟ ଚନ୍ଦ୍ରାଧାରର ଯେଉଁ ଆଦର୍ଶ ଦେଖାଇ ଅଛନ୍ତି ତାହା ତାଙ୍କର କବି ପ୍ରତିଭାର ଏକ ସାର୍ଥକ ଅଭିବ୍ୟକ୍ତି ।

ଔଚିତ୍ୟ, କାବ୍ୟବର୍ଣ୍ଣିତ ସମ୍ଭୋଗସର୍ବସ୍ୱ ଶକ୍ତ ରାଧାନାଥ ଏଠାରେ ପରିବେଷଣ କରିନାହାନ୍ତି । ଉଷା ଏବଂ ଜୟନ୍ତଙ୍କ ଜୀବନରେ କବି ଗ୍ରୀକ୍ ପୁରାଣରେ ଅବଲମ୍ବନରେ ସେପରି ଶକ୍ତ ଦେଇପାରି ଥାଆନ୍ତେ । ଗ୍ରୀକ୍ ପୁରାଣର କଥା ଅନୁସାରେ ଜଣାଯାଏ ଯେ ଆଟ୍ଲାଣ୍ଟା ହିପୋମିନସ୍ଙ୍କୁ ବିବାହ କରିବା ପୂର୍ବରୁ ମିଲାଏଗରଙ୍କ ସହିତ ପ୍ରେମପାଶରେ ଆବଦ୍ଧ ଥିଲେ ଏବଂ ମିଲାଏଗରଙ୍କ ଔରସରେ ଆଟ୍ଲାଣ୍ଟାଙ୍କ ଗର୍ଭରୁ ଏକ ପୁତ୍ରସନ୍ତାନ ଜନ୍ମ ହୋଇଥିଲା । ଆଟ୍ଲାଣ୍ଟା ସେହି ପୁତ୍ର ସନ୍ତାନକୁ ନେଇ ଯେଉଁ ପର୍ବତ ପାଖରେ ତାଙ୍କ ପିତା ତାଙ୍କୁ ଶିଶୁ ଅବସ୍ଥାରେ ଛାଡ଼ି ଦେଇ ଆସିଥିଲେ, ସେହି ପର୍ବତ ପାଖରେ ପକାଇ ଦେଇ ଆସିଥିଲେ । ଗ୍ରୀକ୍ ପୁରାଣରେ ଏପ୍ରକାର ବର୍ଣ୍ଣନା ଥିଲେହେଁ ରାଧାନାଥ ତାହାକୁ ଗ୍ରହଣ କରି ନାହାନ୍ତି । ଉଷା ଏବଂ ଜୟନ୍ତଙ୍କର ପ୍ରେମରେ ପବିତ୍ରତା ନିର୍ଦ୍ଦେଶ କରିବା ପ୍ରତି ସେ ସଚେତନ । ସେମାନଙ୍କର ପ୍ରେମର ପବିତ୍ରତାକୁ ପ୍ରକାଶ କରିବାକୁ ମଧ୍ୟ କବି ସୂଚନା ଦେଇଛନ୍ତି । ଯେଉଁଠାରେ ଉଷା ଏବଂ ଜୟନ୍ତଙ୍କର ଅନ୍ତ୍ୟେଷ୍ଟିକ୍ରିୟା ସମ୍ପାଦିତ ହୋଇଥିଲା ସେଠାରେ ଶିଳ୍ପୀମାନେ ଏକ ମଣ୍ଡପ ନିର୍ମାଣ କରିଥିଲେ । ସେହି ମଣ୍ଡପଟି ଦୂରରୁ "ହର—ଶୈଳ—କଳପ" ପ୍ରତିଭାତ ହେଉଥିଲା । କବିବର ରାଧାନାଥଙ୍କର ଚିନ୍ତାଧାରା ଓ କାବ୍ୟ ନିର୍ମାଣ କୌଶଳ ଏହି ଦୃଷ୍ଟିରୁ ଅତ୍ୟନ୍ତ ଉନ୍ନତ ଥିଲା । ଏହି ଉନ୍ନତ ଚିନ୍ତାଧାରାର ଅନୁଭୂତି ଲାଭ କରି ନ ପାରିଲେ କବିବର ରାଧାନାଥଙ୍କର କାବ୍ୟାଦର୍ଶର ଯଥାର୍ଥ ମୂଲ୍ୟ ନିରୂପିତ ହୋଇପାରିବ ନାହିଁ ।

---

୨

# ପାର୍ବତୀ

୧୮୯୦ ସାଲରେ ସମ୍ବଲପୁର ହିତୈଷିଣୀରେ ପାର୍ବତୀ କାବ୍ୟ ପ୍ରକାଶ ପାଇଥିଲା । ୧୩-୮-୧୮୯୦ ଠାରୁ ଆରମ୍ଭ କରି ୧୯-୧୨-୧୮୯୦ ତାରିଖ ପର୍ଯ୍ୟନ୍ତ ପ୍ରତ୍ୟେକ ସପ୍ତାହରେ ସାତ ସପ୍ତାହ ଧରି ଏହା ପ୍ରକାଶିତ ହୋଇଥିଲା । ୧୮୯୧ ସାଲରେ ଜଗନ୍ନାଥ ବଲ୍ଲଭ ପ୍ରେସରୁ ଏହା ପୁସ୍ତକାକାରରେ ପ୍ରକାଶିତ ହୋଇଥିଲା । ଏହି କାବ୍ୟକୁ କେନ୍ଦ୍ରକରି କବିବର ରାଧାନାଥଙ୍କର କାବ୍ୟକୃତି ଉପରେ ବହୁ କଟୁତିକ୍ତ ଆଲୋଚନା ହୋଇଥିବାର ଦେଖାଯାଏ । ସେସମୟର ବହୁ ଆଲୋଚକ ରାଧାନାଥଙ୍କ କାବ୍ୟକୃତିର ଯଥାର୍ଥ ମୂଲ୍ୟ ନିରୂପଣ ନକରି ରାଧାନାଥଙ୍କ ପ୍ରତି ଆକ୍ଷେପୋକ୍ତି ପ୍ରକାଶ କରିଥିଲେ । ପାର୍ବତୀ କାବ୍ୟର କଥାବସ୍ତୁ ପାଇଁ କବିବର ରାଧାନାଥଙ୍କ ଉପରେ ବହୁ ସୂତ୍ରରୁ ପ୍ରଭାବ ପଡ଼ିଥିବା ଜଣାଯାଏ । ଗ୍ରୀକ୍ କବି ହୋମର୍‌ଙ୍କର ଇଲିଅଡ୍ ମହାକାବ୍ୟ, ଆସ୍କାଇଲସ୍‌ଙ୍କର ଆଗାମେମ୍‌ନନ୍ ନାଟକ, ସେକ୍ସପିଅର୍‌ଙ୍କର ହାମ୍‌ଲେଟ୍ ନାଟକ, ମାଦଳା ପାଞ୍ଜିରେ ଥିବା ଗଙ୍ଗେଶ୍ୱର ଦେବଙ୍କ ପ୍ରତାପ ଓ ରାଜ୍ୟଜୟ ବୃତ୍ତାନ୍ତ ପ୍ରଭୃତିରୁ କବିବର ରାଧାନାଥ ପାର୍ବତୀ କାବ୍ୟଲାଗି ବିଷୟ ନିର୍ବାଚନ କରିଅଛନ୍ତି ।

କାବ୍ୟର ଆରମ୍ଭରେ କବି ନୀଳାଚଳ କ୍ଷେତ୍ରରେ ଦୋଳ ମହୋତ୍ସବର ବର୍ଣ୍ଣନା କରିଅଛନ୍ତି । ଏହି ବର୍ଣ୍ଣନାରେ କବିଙ୍କର ପ୍ରକୃତିଚିତ୍ରଣର ଦକ୍ଷତା ପ୍ରମାଣିତ ହୋଇଅଛି । ଦୋଳ ମହୋତ୍ସବର ବର୍ଣ୍ଣନା କବିଙ୍କ ଲେଖନୀରେ ବାସନ୍ତୀ ପ୍ରକୃତିର ବର୍ଣ୍ଣନା ଭାବରେ ପ୍ରକାଶ ପାଇଅଛି । ନୀଳାଚଳ ପୁରବାସୀ ଦୋଳଉତ୍ସବ ପାଳନରେ ମତ୍ତ ଥିବା ସମୟରେ ଚତୁର୍ଦ୍ଦିଗରେ ଆନନ୍ଦର କଳରୋଳ ଖେଳିଯାଇଅଛି । ରାଜପୁରରେ ଦୋଳ ଉତ୍ସବର ଆଡ଼ମ୍ବର ଲାଗି ରହିଛି; ମାତ୍ର ରାଜା ଗଙ୍ଗେଶ୍ୱର ରାଜଧାନୀଠାରୁ ବହୁ ଦୂରରେ

ଅଛନ୍ତି । ରାଜା ଗଙ୍ଗେଶ୍ୱରଙ୍କର ରାଜପ୍ରଶସ୍ତି ଗାନ କରିବା ଉଦ୍ଦେଶ୍ୟରେ କବି ପୁଣି ଉତ୍କଳ ପ୍ରକୃତିର ସୁନ୍ଦର ଅଙ୍କନ କରି ଅଛନ୍ତି । ସମଗ୍ର ଉତ୍କଳରେ ନିଜର କର୍ତ୍ତୃତ୍ୱ ବିସ୍ତାର କରିବା ପରେ ରାଜା ଗଙ୍ଗେଶ୍ୱର ରତ୍ନପୁର ଦୁର୍ଗ ଅବରୋଧ କରିବା ପାଇଁ ଯୁଦ୍ଧରତ ହୋଇଅଛନ୍ତି । ପାଞ୍ଚବର୍ଷଧରି ଯୁଦ୍ଧ ଲାଗି ରହିଥିଲେ ହେଁ ରତ୍ନପୁର ଦୁର୍ଗର ପତନ ସମ୍ଭବ ହୋଇନାହିଁ । ରାଜା ଗଙ୍ଗେଶ୍ୱର ଯେତେବେଳେ ଯୁଦ୍ଧ ପାଇଁ ରତ୍ନପୁର ଯାଇ ସେଠାରେ ଶିବିର ସ୍ଥାପନ କରି ରହିଥିଲେ ସେତେବେଳେ ତାଙ୍କ ସହିତ ସେଠାରେ ରାଜଜେମା କୌଶଲ୍ୟା ଅବସ୍ଥାନ କରୁଥିଲେ । ରାଜଜେମା କୌଶଲ୍ୟା ରୂପରେ ଏବଂ ଗୁଣରେ ଅତୁଳନୀୟା ଥିଲେ । ସେ ଥିଲେ ଯଥାର୍ଥରେ ଜଗତ—ମନ—ମୋହିନୀ । ରାଜଜେମା କୌଶଲ୍ୟାଙ୍କ ବିଷୟ ଚିନ୍ତାକରି ରାଣୀ ଅତ୍ୟନ୍ତ ବିଷଣ୍ଣଚିତ୍ତ ହୋଇ ପଡ଼ିଛନ୍ତି ।

ରାଣୀଙ୍କ ମନରେ ଏପରି ବିଷାଦଭାବ ଜାତ ହେବାର କାରଣ ହେଉଛି ଯେ ସେ କୌଶଲ୍ୟାଙ୍କ ବିଷୟରେ ନିତାନ୍ତ ଦୁଃସମ୍ବାଦ ଶ୍ରବଣ କରିଛନ୍ତି । କୌଶଲ୍ୟା ରତ୍ନପୁରରେ ଥିବା ସମୟରେ ଗୁପ୍ତ ପ୍ରେମରେ ପଡି ଅନ୍ତଃସତ୍ତ୍ୱା ହେଲେ । ଏହି ସମ୍ବାଦ ଲୁଚିଆଡ଼େ ଅଛି ଭୂତଳରେ ବ୍ୟାପିଗଲା । ରାଜା ଜେମାଙ୍କର ମୁଖ ଦେଖିବେ ନାହିଁ ବୋଲି ଇଚ୍ଛା କଲେ । ଫଳରେ ଜେମା କାରାଗାରରେ ନିକ୍ଷିପ୍ତ ହେଲେ । କାରାଗାରରେ ଥିବା ସମୟରେ ଜେମା କେଉଁ-ଆଡ଼େ ପଳାଇ ଯାଇ ନିରୁଦ୍ଦିଷ୍ଟ ହେଲେ । ଜେମାଙ୍କୁ ଖୋଜି ତାଙ୍କ ବିଷୟରେ କୌଣସି ସମ୍ବାଦ ନପାଇ ରାଜା ଶେଷରେ ଜେମାଙ୍କ ବିଷୟ ମନରୁ ଦୂର କରିଦେଇଛନ୍ତି । ରାଣୀ ଯେଉଁଦିନ ଏହି ସମ୍ବାଦ ପାଇଲେ ସେହିଦିନଠାରୁ ତାଙ୍କ ମନ ମଧ୍ୟରେ ତୁମୁଳ ଆନ୍ଦୋଳନ ସୃଷ୍ଟି ହୋଇଅଛି ଏବଂ ସେ ବିପୁଳ ଐଶ୍ୱର୍ଯ୍ୟ ମଧ୍ୟରେ ଥାଇ ନିଜ ଜୀବନକୁ ତୁଚ୍ଛ ଜ୍ଞାନ କରୁଅଛନ୍ତି । ସେବକାମାନଙ୍କର ଆଶ୍ୱାସନା ଓ ସେବା ଫଳରେ ରାଣୀ ବାହାରକୁ ଯେପରି ଦିଶନ୍ତୁ ନା କାହିଁକି, ତାଙ୍କର ଅନ୍ତର ମଧ୍ୟରେ ଦାରୁଣ ଦୁଃଖର ଅଗ୍ନି

ଚୁମ୍ବିତ ହେଉଅଛି । କୌଶଲ୍ୟାଙ୍କ ବିଷୟ ଜାଣିବା ପାଇଁ ରାଣୀ ଅତ୍ୟନ୍ତ ଭାବରେ ବିଚଳିତ ହୋଇପଡ଼ି ଗନ୍ଧର୍ବଙ୍କ ନିକଟରେ ଅଧା ପଡ଼ିଲେ । ରାଣୀ ନିଦ୍ରାବସ୍ଥାରେ ଶୂନ୍ୟବାଣୀ ଶୁଣିଲେ ଯେ, କୌଶଲ୍ୟା ନିଜେ ଆସି ତାଙ୍କର କଥା ରାଣୀଙ୍କ ଆଗରେ ପ୍ରକାଶ କରିବେ । ଏକଥା ଶୁଣିବା ପରେ ରାଣୀ ଦେଉଳରୁ ଆସି ରାଜନବରରେ ପ୍ରବେଶ କଲେ । କୌଶଲ୍ୟାଙ୍କୁ ଦେଖିବାର ଆଶା ତାଙ୍କ ମନ ମଧ୍ୟରେ ପ୍ରବଳ ହୋଇ ଉଠିଲା । ଦୋଳ ମହୋତ୍ସବର ଆନନ୍ଦ ଉନ୍ମାଦନା ରାଣୀଙ୍କୁ ମୁଗ୍ଧ କରିପାରିଲା ନାହିଁ । ସେ କେବଳ ବିଧିରକ୍ଷା କରିବା ପାଇଁ ଦୋଳମହୋତ୍ସବ ପାଳନ କଲେ । ଦୁଇ ବର୍ଷ ହେବ ବୃଦ୍ଧ କଞ୍ଚୁକୀ ଯୁଦ୍ଧଭୂମିରୁ ଫେରିଆସିଅଛି । ସେ ରାଜପ୍ରାସାଦ ଚୂଳରେ ରହି ରାଜାଙ୍କ ଆଦେଶମତେ ପର୍ବତରୁ ପର୍ବତ ମଧ୍ୟଦେଇ ଅଗ୍ନିଶିଖା ଦ୍ୱାରା ପ୍ରେରିତ ବିଜୟବାର୍ତ୍ତାର ସଙ୍କେତ ପାଇବା ପାଇଁ ଅପେକ୍ଷା କରି ରହିଅଛି । ଏପର୍ଯ୍ୟନ୍ତ ଦୂର ସ୍ଥାନରୁ କୌଣସି ସଙ୍କେତ ଆସିଲା ନାହିଁ ।

ସନ୍ଧ୍ୟା ଆଗମନର ମଞ୍ଜୁଳ ବର୍ଣ୍ଣନା ଦେଇ କବି କଞ୍ଚୁକୀର ପ୍ରାସାଦ ଚୂଳକୁ ଉଠିବା ବିଷୟ ବର୍ଣ୍ଣନା କରିଛନ୍ତି । କଞ୍ଚୁକୀ ପ୍ରାସାଦ ଚୂଳରେ ବସି ସନ୍ଧ୍ୟା ଆଗମନରେ ଧରଣୀର ସୁନ୍ଦର ଛବି ସନ୍ଦର୍ଶନ କରିଅଛି । ଏହି ପ୍ରସଙ୍ଗରେ ମଧ୍ୟ କବି ଉତ୍କଳ ପ୍ରକୃତିର ସୁରୁ ଆଲେଖ୍ୟ ଅଙ୍କନ କରିଅଛନ୍ତି । ରାତ୍ରି କ୍ରମେ ବଢ଼ିଗଲା । ପୁରବାସୀଜନ ଗାଢ଼ ନିଦ୍ରାରେ ଅଭିଭୂତ ହେଲେ । ବୃଦ୍ଧ କଞ୍ଚୁକୀ ପ୍ରାସାଦ ଚୂଳରେ ବସି ମନେ ମନେ ଚିନ୍ତା କରିବାରେ ଲାଗିଲା ଯେ ସେ ଏହିପରି ଆଉ କେତେକାଳ ବିଜୟ ସଙ୍କେତକୁ ଅପେକ୍ଷା କରି ବସିବ । ଦୁଇବର୍ଷକାଳ ଏହିପରି ପ୍ରତୀକ୍ଷାରେ ବସି ବସି ସେ ଅବସନ୍ନ ହୋଇ ପଡ଼ିଲାଣି । ତଥାପି ଏପର୍ଯ୍ୟନ୍ତ ଗଙ୍ଗେଶ୍ୱର ଯୁଦ୍ଧରେ ଜୟଲାଭ କରିପାରିଲେ ନାହିଁ । ରାଜା ଗଙ୍ଗେଶ୍ୱର ଅଧର୍ମରେ ମନ ବଳାଇଛନ୍ତି । ଏତେ ବଡ଼ ରାଜ୍ୟର ରାଜା ହୋଇ ମଧ୍ୟ ଅନ୍ୟରାଜ୍ୟକୁ କରଗତ କରିବାର ଦୁର୍ବାର ବାସନାକୁ ସେ ତ୍ୟାଗ କରି ପାରିଲେ ନାହିଁ ।

ପୁଣ୍ୟଶ୍ଳୋକ ଗଙ୍ଗେଶ୍ୱରଙ୍କର ପୁତ୍ର ହୋଇ ମଧ୍ୟ ସେ ଏପରି ନିଷ୍ଠୁର କପଟୀ ହେଲେ । ଏ ଜଗତରେ କେହି କେବେହେଲେ ଚିରକାଳ ପାଇଁ ରହି ପାରିବ ନାହିଁ । ଜଗତରେ ଜନ୍ମଗ୍ରହଣ କରି ନିଜ ନିଜର କାର୍ଯ୍ୟ ଶେଷ କରି ସମସ୍ତେ ଦିନେ କାଳର କବଳିତ ହେବେ । ରାଜା ଗଙ୍ଗେଶ୍ୱର ସତେ ଯେପରି ମନେ କରିଛନ୍ତି ଯେ, ସେ ଏ ଜଗତରେ ଚିରସ୍ଥାୟୀ ହୋଇ ରହିବେ । ସେ କେବେହେଲେ ଧର୍ମ ବିଷୟରେ ଚିନ୍ତା ନ କରି ପରପୀଡ଼ନରେ ଲାଗି ପଡ଼ିଛନ୍ତି । ଗଙ୍ଗେଶ୍ୱରଙ୍କ ଉପରେ ସମଗ୍ର ଉତ୍କଳ ଥରହର । ଧର୍ମ ଆଉ କେତେକାଳ ଏପରି ଅନୀତିକୁ ସହ୍ୟ କରିବ । ସମୟ ଅନୁସାରେ ନିଶ୍ଚୟ ଗଙ୍ଗେଶ୍ୱର ପ୍ରତିଫଳ ପାଇବେ । ରାଜ୍ୟରେ ଦେଖାଦେଉଥିବା ଅଶୁଭ ଶକୁନ ବିଷୟରେ କଞ୍ଚୁକୀ ଚିନ୍ତିତ ହୋଇ ପଡ଼ୁଅଛି । ଆସ୍ଥାନ ମଣ୍ଡପରେ ଶାଗୁଣା ଆସି ବାରମ୍ବାର ବସୁଛି, ଉଲ୍କାପାତ ଦେଖା ଦେଉଛି, ଚନ୍ଦ୍ରଶାଳା ଘରର ଚୂଳରେ ବସି ପେଚା ରାବୁଛି, ବିଶେଷ ବେଳକୁ ନଗର ମଧ୍ୟରେ ଏକ ନାରୀର କ୍ରନ୍ଦନ ସ୍ୱର ଶୁଭୁଛି । ଏହି କ୍ରନ୍ଦନ ସ୍ୱର କେଉଁଠାରୁ ଆସୁଅଛି ତାହା ଆଦୌ ଜଣାଯାଉ ନାହିଁ । କଞ୍ଚୁକୀ ଏହିପରି ଭାବରେ ଚିନ୍ତା କରିବା ସମୟରେ ହଠାତ୍ ଉତ୍ତର ଦିଗରେ ଧୂମକେତୁର ଆଲୋକର ଶିଖା ଦେଖି ପାରିଲା । କଞ୍ଚୁକୀ ଯେତେବେଳେ ସେହି ଆଲୋକକୁ ବିଜୟର ସଙ୍କେତ ବୋଲି ଭଲଭାବରେ ଜାଣିପାରିଲା ସେତେବେଳେ ସେ ଅତ୍ୟନ୍ତ ଆନନ୍ଦିତ ହୋଇପଡ଼ିଲା । ଅଗ୍ନିଶିଖାର ମାର୍ଗ କଞ୍ଚୁକୀ ମନରେ କଳ୍ପିତ ହୋଇଅଛି । ଏହି ପ୍ରସଙ୍ଗରେ ମଧ୍ୟ କବି ଉତ୍କଳ ପ୍ରକୃତିର ମନୋରମ ଚିତ୍ର ଅଙ୍କନ କରିଛନ୍ତି । ଆନନ୍ଦିତ ଚିତ୍ତରେ କଞ୍ଚୁକୀ ମହାରାଣୀଙ୍କ ନିକଟରେ ବିଜୟବାର୍ତ୍ତା ପ୍ରକାଶ କରିବାକୁ ଆସିବା ସମୟରେ ରାଜପୁରର ଉଦ୍ୟାନ ମଧ୍ୟରେ ଏକ ଅଶରୀରୀ ନାରୀମୂର୍ତ୍ତି ଦେଖି ଭୟଭୀତ ହୋଇ ପଡିଲା । ଦେଖୁଁ ଦେଖୁଁ ମୂର୍ତ୍ତିଟି ଅନ୍ଧକାରରେ ମିଶିଗଲା । କଞ୍ଚୁକୀ ପ୍ରାସାଦ ଚୂଳରୁ ଅବତରଣ କରି ମହାରାଣୀଙ୍କ ନିକଟରେ ରାଜାଙ୍କର ବିଜୟବାର୍ତ୍ତା ଓ ପୁରଉଦ୍ୟାନରେ ଦେଖିଥିବା ଅଶରୀରୀ ନାରୀମୂର୍ତ୍ତି କଥା ପ୍ରକାଶ କଲା । ସେ କହିଲା ଯେ, ନାରୀମୂର୍ତ୍ତିଟି ଠିକ୍ ଦେବୀଙ୍କ ପରି, ମାତ୍ର ତା ମୁଣ୍ଡରେ ବିଷାଦ

ଭାବ । କଞ୍ଚୁକୀଠାରୁ ଏକଥା ଶୁଣି ରାଣୀ ଚିନ୍ତିରେ ନିଜେ ସେ ରହସ୍ୟକୁ ଭେଦ କରିବେ ବୋଲି ଇଚ୍ଛା କରି ସେ ବିଷୟକୁ ଅପ୍ରକାଶ୍ୟ ରଖିବାକୁ କଞ୍ଚୁକୀକୁ ନିର୍ଦ୍ଦେଶ ଦେଲେ । ରାଣୀଙ୍କ ଆଦେଶରେ ନଗରରେ ବିଜୟ ବାର୍ତ୍ତା ପ୍ରଚାରିତ ହୋଇ ନଗରବାସୀଙ୍କ ମନରେ ହର୍ଷ ଭରିଦେଲା । ଗଙ୍ଗେଶ୍ୱରଙ୍କର ଜୟଗାନରେ ଫଗୁଉତ୍ସବ ମୁଖରିତ ହୋଇ ଉଠିଲା । ଯୁଦ୍ଧ କ୍ଷେତ୍ରରୁ ବିଜୟବାର୍ତ୍ତା ବହନ କରି ଯେଉଁ ଦୂତ ଆସିଥିଲା ସେ ମଧ୍ୟ ମହାରାଣୀଙ୍କ ସମ୍ମୁଖରେ ବିଜୟ ବାର୍ତ୍ତା ପ୍ରକାଶ କଲା । ରତ୍ନପୁରକୁ କରଗତ କରି ରତ୍ନପୁରର ରାଜଜେମା ଅନ୍ନପୂର୍ଣ୍ଣାଙ୍କୁ ସଙ୍ଗରେ ନେଇ ରାଜା ପୂର୍ଣ୍ଣମୀଦିନ ନଗରରେ ଉପସ୍ଥିତ ହେବେ ।

ରାଜା ଆସି ପୂର୍ଣ୍ଣମୀଦିନ ପହଞ୍ଚିବେ । ତେଣୁ ରାଜାଙ୍କର ସମ୍ବର୍ଦ୍ଧନାର ଆୟୋଜନ କରିବା ଲାଗି ମହାରାଣୀ ନିର୍ଦ୍ଦେଶ ଦେଲେ । ଏତେ ଆନନ୍ଦ ମଧ୍ୟରେ ମହାରାଣୀ ରାଜଜେମା କୌଶଲ୍ୟାଙ୍କ କଥା ଭାବି ଅତ୍ୟନ୍ତ ଦୁଃଖିତା ହେଲେ । ଗଙ୍ଗେଶ୍ୱରଙ୍କ ଭଳି ରାଜାଙ୍କର କନ୍ୟାହୋଇ ତାଙ୍କ ମୁଖରେ କୌଶଲ୍ୟା କାଳି ବୋଳିଦେଲେ । ଜେମାଙ୍କର ରୂପଗୁଣ ବିଷୟ ମନେପକାଇ ମହାରାଣୀ ଦୁଃଖରେ ଅଧୀରା ହୋଇ ପଡ଼ିଲେ । ପୁରି ଉଦ୍ୟାନରେ ଦେଖାଦେଇଥିବା ଅଶରୀରୀ ନାରୀମୂର୍ତ୍ତି ଜେମାଙ୍କ ପରି ବୋଲି ପ୍ରହରୀଠାରୁ ଶୁଣିବା ପରେ ତାଙ୍କ ମନ ଅଥୟ ହୋଇ ପଡ଼ିଛି । ରାତିରେ ସେ ନିଜେ ସେହି ନାରୀମୂର୍ତ୍ତିକୁ ଦେଖିବେ ବୋଲି ଠିକ୍ କଲେ । କ୍ରମେ ଦିନ ଶେଷ ହୋଇ ସନ୍ଧ୍ୟା ଆସିଲା । ରାତି ଅର୍ଦ୍ଧ ପର୍ଯ୍ୟନ୍ତ ରାଜାଙ୍କର ସମ୍ବର୍ଦ୍ଧନା ଲାଗି ଆୟୋଜନ ଲାଗି ରହିଲା । ରାତିର ନିସ୍ତବ୍ଧ କୋଳରେ ପୁରବାସୀ ନିଦ୍ରିତ ହେଲେ । ରାଣୀଙ୍କର ମନ ଅତ୍ୟନ୍ତ ଉଦ୍‌ବେଗ ଥିବାରୁ ତାଙ୍କ ଚକ୍ଷୁକୁ ନିଦ୍ରା ଆସିଲା ନାହିଁ । ପରିଚାରିକାମାନେ ଶୋଇପଡ଼ିବା ପରେ ରାଣୀ ନିବର ମଧ୍ୟରୁ ବାହାରି ଏକାକିନୀ ଉଦ୍ୟାନ ମଧ୍ୟରେ ବସି ରହିଲେ । କିଛି ସମୟ ବସିବାପରେ ରାଣୀ ସେହି କ୍ରନ୍ଦନସ୍ୱର ଶୁଣିବାକୁ ପାଇଲେ । ସେ କ୍ରନ୍ଦନସ୍ୱର କାହାର ରାଣୀ ଜାଣି ପାରିଲେ ନାହିଁ । କିଛି କ୍ଷଣପରେ ସେ ଦେଖିବାକୁ ପାଇଲେ ଯେ ମାଧବୀ

ମଣ୍ଡପ ଉପରେ ଅପ୍ରିଷ୍ଟ ନାରୀମୂର୍ତ୍ତି ଢ଼ଗ୍ଧ ହୋଇଅଛି । ସେହି ମୂର୍ତ୍ତିଟି ଅବିକଳ ହେମାଙ୍କ ପରି ଦିଶୁଅଛି ଏବଂ ତାର ମୁଖରେ ବିଷାଦର ଭାବ ସ୍ପଷ୍ଟ ଭାବରେ ପ୍ରକାଶ ପାଉଅଛି । ସେହି ମୂର୍ତ୍ତିକୁ ଦେଖି ରାଣୀ ସ୍ତମ୍ଭୀଭୂତ ହୋଇଗଲେ । ତାପରେ ରାଣୀ ସାହସ ସଞ୍ଚୟ କରି ସେହି ମୂର୍ତ୍ତି ଆଡ଼କୁ ଅଗ୍ରସର ହେଲେ ଏବଂ ତାର ପରିଚୟ ଜିଜ୍ଞାସା କଲେ ।

ସେହି ନାରୀମୂର୍ତ୍ତିଟି ନିଜକୁ କୌଶଲ୍ୟା ବୋଲି ପରିଚୟ ଦେଇ ନିଜର ଦୁର୍ଦ୍ଦଶା ବର୍ଣ୍ଣନା କରିବାକୁ ଲାଗିଲା । କୌଶଲ୍ୟା ରାଜକୁଳରେ ଜନ୍ମଗ୍ରହଣ କରି ରାଜକୁଳକୁ ଧିକ୍କାର କଲେ । ପିତାଙ୍କ ଆଦେଶ ଅନୁସାରେ ସେ ଯୁଦ୍ଧସ୍ଥଳକୁ ଯାଇଥିଲେ । ସେଠାରେ ସେ ପିତାଙ୍କର ସେବାକରି ଆନନ୍ଦରେ ସମୟ ଅତିବାହିତ କରୁଥିଲେ । ରାଜାଙ୍କ ଲାଗି ସେ ଫୁଲହାର ଗୁନ୍ଥି ଦେଉଥିଲେ ଏବଂ ବୀଣା ବାଦନ କରି ତାଙ୍କୁ ସଙ୍ଗୀତ ଶୁଣାଉଥିଲେ । ସନ୍ଧ୍ୟା ସମୟରେ ବୀର ଯୋଦ୍ଧାମାନଙ୍କ ସହିତ ରାଜା ଯେତେବେଳେ ସଭାରେ ଉପସ୍ଥିତ ହୋଇ ଯୁଦ୍ଧ ବିଷୟରେ ଆଲୋଚନା କରନ୍ତି ସେତେବେଳେ କୌଶଲ୍ୟା ସଭାରେ ଥାଇ ସବୁ ଶୁଣନ୍ତି । ଦିନେ ରାଜା କୌଶଲ୍ୟାଙ୍କୁ ସଭାରେ ଉପସ୍ଥାପିତ କରି କହିଲେ ଯେ, ରତ୍ନପୁର ଦୁର୍ଗକୁ ଦଖଲ କରି ଯେଉଁ ବୀର ତା ଉପରେ ବିଜୟ ପତାକା ଉଡ଼ାଇବ ତାର ହାତରେ ସେ କୌଶଲ୍ୟାଙ୍କୁ ସମର୍ପଣ କରିଦେବେ । କୌଶଲ୍ୟା ସେତେବେଳେ ଜାଣିପାରିଲେ ଯେ ତାଙ୍କ ପିତା କାହିଁକି ତାଙ୍କୁ ଯୁଦ୍ଧ କ୍ଷେତ୍ରକୁ ନେଇଥିଲେ । ରାଜା ତାଙ୍କୁ ଅତି ଆଦରର ସହିତ ସେଠାରେ ରଖିଥିଲେ । କୌଶଲ୍ୟାଙ୍କ ପାଇଁ ସେ ମହାର୍ଘ ବସନ ଭୂଷଣ ଆଣି ଦେଉଥିଲେ । ଦିନେ ରାଜା ଚତୁରତା ସହକାରେ ହେମାଙ୍କୁ ପ୍ରଶ୍ନ କଲେ "କହିବୁଟି ହେମାମଣି, ଲାବଣ୍ୟ ପ୍ରତିମା ଗ୍ରହଣ କରିବା ଅନ୍ୟପକ୍ଷେ ତା କ ମଣି ?" ହେମା ରାଜାଙ୍କ କଥାର ଉଦ୍ଦେଶ୍ୟ ବୁଝିନପାରି ସାଧାରଣ ଭାବରେ ଉତ୍ତର ଦେଇଥିଲେ, "ତହିଁ କେଉଁ ଦୋଷ ?"

ରାଜା ଜେମାଙ୍କର ଉତ୍ତରରୁ ନିଜ ଉଦ୍ଦେଶ୍ୟର ଅନୁକୂଳ ଉତ୍ତର ପାଇଲେ ବୋଲି ଭାବି ଅତ୍ୟନ୍ତ ଆନନ୍ଦିତ ହେଲେ । ସେଦିନ ରାତିରେ ରାଜା ନିଜ କନ୍ୟା ପ୍ରତି ପାଶବିକ ଅତ୍ୟାଚାର କଲେ । ଜେମା ସେହି ସମୟଠାରୁ ବିଷାଦରେ ଏକାବେଳକେ ଭାଙ୍ଗି ପଡ଼ିଲେ । କାନ୍ଦି କାନ୍ଦି ଦିନ ତାଙ୍କର ସରିଲା ନାହିଁ । ତାପରେ ରାଜା ବାରମ୍ବାର ପ୍ରତ୍ୟହ ଜେମାଙ୍କ ନିକଟକୁ ଆସି ତାଙ୍କର ହୀନ ଉଦ୍ଦେଶ୍ୟକୁ ଚରିତାର୍ଥ କରିବା ନିମନ୍ତେ ଜେମାଙ୍କୁ ଅନୁନୟ ସ୍ୱରରେ କଥା କହିଲେ । ଶେଷରେ ଜେମାଙ୍କ ଉପରେ ରାଗି ତାଙ୍କର ଭ୍ରଷ୍ଟାଚାରିତାର ଦୋଷାରୋପ କରି-ତାଙ୍କୁ ବନ୍ଦିନୀ କରି କାରାଗାରରେ ନିକ୍ଷେପ କଲେ । ଘୃଣାରେ କେହି ଜେମାଙ୍କ ନିକଟକୁ ଆସନ୍ତି ନାହିଁ । ମାତ୍ର ରାଜା ପ୍ରତିଦିନ ଜେମାଙ୍କ ନିକଟକୁ ଆସନ୍ତି । ଏହି ପାପର ପରିଣାମରେ ଜନ୍ମ ନେଲା ଏକ ପୁତ୍ରସନ୍ତାନ । ପୁତ୍ରଟିର ଶରୀରରେ ରାଜାଙ୍କ ଶରୀରର ପ୍ରତିଛବି । ନିଜର ଦୁଷ୍କୃତିକୁ ଗୋପନ ରଖିବା ଉଦ୍ଦେଶ୍ୟରେ ରାଜା ଦିନେ ସେହି ପୁତ୍ରସନ୍ତାନ ସହିତ କୌଶଲ୍ୟାଙ୍କୁ ଧଉଳୀ ପର୍ବତକୁ ପଠାଇଦେଲେ । ରାଜାଙ୍କର କେତେଜଣ ବିଶ୍ୱସ୍ତ ସୈନିକ କୌଶଲ୍ୟାଙ୍କୁ ନେଇ ଘୋର ଦୁର୍ଗମ ଅରଣ୍ୟ ମଧ୍ୟରେ ଏକ ସଚ୍ଛିଦ୍ର ଜଳପୂର୍ଣ୍ଣ ସ୍ୱର୍ଣ୍ଣକଳସ ତାଙ୍କ କକ୍ଷରେ ରଖି ତାଙ୍କୁ ରାତିସାରା ଅରଣ୍ୟରେ ବୁଲାଇଲେ । ଯେତେ ଦୂର ପର୍ଯ୍ୟନ୍ତ ସେହି କଳସରୁ ଜଳ ପଡ଼ିଥିବ ସେହି ସମଗ୍ର ଅଞ୍ଚଳରେ ପୁଷ୍କରିଣୀ ଖୋଳାଯିବ ବୋଲି ପ୍ରାୟଶ୍ଚିତ୍ତ ବିଧି ସ୍ଥିରୀକୃତ ହୋଇଥିଲା । ରାତିସାରା ଅରଣ୍ୟରେ ବୁଲି ବୁଲି ଯେଉଁଠାରେ କଳସୀରୁ ଜଳ ଶେଷ ହୋଇଗଲା ସେହି ସ୍ଥାନରେ ସୈନିକମାନେ ସଙ୍କେତ ରଖି କୌଶଲ୍ୟା ଏବଂ ତାଙ୍କ ପୁତ୍ରକୁ ପର୍ବତର ଉପରକୁ ନେଇଗଲେ । ସେଠାରେ ଥିବା ଏକ ଶୁଷ୍କ ଗଭୀର କୂପ ମଧ୍ୟରେ କୌଶଲ୍ୟା ଏବଂ ତାଙ୍କର ପୁତ୍ରକୁ ପକାଇ କୂପଟିକୁ ଉପରୁ ପଥର ଦେଇ ବନ୍ଦ କରିଦେଲେ । ଶିଶୁପାଇଁ ଯେତେ ବିକଳ ହୋଇ କାନ୍ଦିଲେ ମଧ୍ୟ କେହି ତାଙ୍କର ଅନୁନୟ ବିନୟ ଶୁଣିଲେ ନାହିଁ । କୂପ ମଧ୍ୟକୁ ଉପରୁ ଗୋଟିଏ ଛିଦ୍ରବାଟେ ଦେଇ ସୂର୍ଯ୍ୟକିରଣ ଆସୁଥିଲା । ଶିଶୁକୁ କେତେକାଳ ସ୍ତନ୍ୟ ଦାନ କରି ସେ ବଞ୍ଚାଇଲେ । ମାତ୍ର କେତେକାଳ

ଦେଲେ ଶିଶୁଟି ସେହି କୂପ ମଧ୍ୟରେ ପ୍ରାଣତ୍ୟାଗ କଲା । ଏ ଦୁଃଖରେ କାନ୍ଦିବାକୁ ଆଉ କୌଶଲ୍ୟାଙ୍କ ଚକ୍ଷୁରେ ଅଶ୍ରୁ ନଥିଲା । ସେ ହୃଦୟକୁ ଅତ୍ୟନ୍ତ କଠିନ କଲେ ।

କ୍ଷୁଧା ତୃଷାରେ ଆତୁର ହୋଇ କୌଶଲ୍ୟା ସେହି କୂପ ମଧ୍ୟରେ ତାଙ୍କର ମୃତଶିଶୁର ଦଗ୍ଧ ଶବକୁ ଆହାର କଲେ । ଶେଷରେ ସେହି କୂପମଧ୍ୟରେ ତାଙ୍କର ପ୍ରାଣବାୟୁ ଉଡ଼ିଗଲା । ସେ ଯେପରି ଭବରେ ତାଙ୍କ ଜୀବନରେ ନିଷ୍ପେଷିତା ହେଲେ ସେ କଥା ମାତାଙ୍କ ଆଗରେ ପ୍ରକାଶ କରିବା ନିମନ୍ତେ ଛାୟାମୂର୍ତ୍ତି ଧରି ବାରମ୍ବାର ରାଜପୁରର ଉଦ୍ୟାନକୁ ଆସୁଥିଲେ । ରାତ୍ରି ଶେଷ ହୋଇ ଆସିବାର ଦେଖି କୌଶଲ୍ୟାଙ୍କର ପ୍ରେତମୂର୍ତ୍ତି ରାଣୀଙ୍କ ଠାରୁ ବିଦାୟ ମାଗିଲା । ପ୍ରେତମୂର୍ତ୍ତିଟି ହଠାତ ଅନ୍ଧକାର ମଧ୍ୟରେ ବିଲୀନ ହୋଇଗଲା । ରାଣୀ ଏପରି ଏକ ଅଶ୍ରୁତପୂର୍ବ ଘଟଣା ଶୁଣି ଜଡ଼ ଯାଲଟି ଗଲେ ।

ପ୍ରଭାତର ସଙ୍କେତ ପାଇ ରାଣୀ ପ୍ରକୃତିସ୍ଥା ହେଲେ । ଜେମାଙ୍କର ପ୍ରେତମୂର୍ତ୍ତିଠାରୁ ଶୁଣିଥିବା ସମସ୍ତ ଘଟଣାକୁ ମନେ ପକାଇ ନିଜର ଭାଗ୍ୟକୁ ନିନ୍ଦା କଲେ । ରାଜାଙ୍କର ଏପରି ପାପାଚରଣକୁ ବାରମ୍ବାର ସହିତ ନିନ୍ଦା କରି ରାଣୀ ରଜନବରକୁ ଫେରିଗଲେ ।

ପ୍ରଭାତ ବର୍ଣ୍ଣନା କବିଙ୍କ ଲେଖାମାରେ ଅତ୍ୟନ୍ତ ଜୀବନ୍ତ ହୋଇ ଅଛି । ବହୁ ଦିନ ପରେ ରାଜା ନୀଳାଚଳ କ୍ଷେତ୍ରକୁ ଫେରୁଛନ୍ତି ବୋଲି ତାଙ୍କ ଦର୍ଶନ ପାଇଁ ପ୍ରଭାତରୁ ନୀଳାଚଳ କ୍ଷେତ୍ରରେ ଜନସମାଗମ ଆରମ୍ଭ ହେଲା । ନଗରରେ ଆନନ୍ଦ ଉଲ୍ଲାସର ବାତ୍ୟା ଖେଳି ଯାଇଅଛି । ରତ୍ନପୁର ରାଜଜେମାଙ୍କୁ ନେଇ ଆସିଥିବା ଶିବିକା ରାଜ ପ୍ରାସାଦରେ ପହଞ୍ଚିଲା । ରାଜପ୍ରାସାଦରେ ଶିବିକାରୁ ଅବତରଣ କଲେ ରତ୍ନପୁର ରାଜଜେମା । ତାଙ୍କର ସୌନ୍ଦର୍ଯ୍ୟବର୍ଣ୍ଣନା କବିଙ୍କ କଳ୍ପନା ବିଳାସ ତଥା ସୌନ୍ଦର୍ଯ୍ୟବୋଧ ଦୃଷ୍ଟିକୋଣର ଯଥାର୍ଥ ପରିଚୟ ଦେଉଛି

ଅଛି । ରତ୍ନପୁର ଜେମା ଶିବିକାରୁ ଅବତରଣ କରି ରାଣୀଙ୍କର ପାଦ ପାଖରେ ପଡ଼ି ନିଜର ଦୁର୍ଦ୍ଦଶା ବର୍ଣ୍ଣନା କଲେ ଓ ତାଙ୍କୁ ମାତା ବୋଲି ସମ୍ବୋଧନ କରି ତାଙ୍କର ଶରଣ ଭିକ୍ଷା କଲେ । ଅନ୍ନପୂର୍ଣ୍ଣାଙ୍କର ସୌନ୍ଦର୍ଯ୍ୟ ଦେଖି ଏବଂ ତାଙ୍କ କଥା ଶୁଣି ରାଣୀଙ୍କର ନୟନ ଲୋତକପୂର୍ଣ୍ଣ ହୋଇ ଉଠିଲା । ରାଣୀ ଅନ୍ନପୂର୍ଣ୍ଣାଙ୍କର ହାତଧରି ନିଜ ଅନ୍ତଃପୁରକୁ ନେଇଗଲେ । ରାଣୀ ଅନ୍ନପୂର୍ଣ୍ଣାଙ୍କୁ ପାଖରେ ବସାଇ ଯୁଦ୍ଧ ବୃତ୍ତାନ୍ତ ଶୁଣିଲେ ।

ଅନ୍ନପୂର୍ଣ୍ଣା ରତ୍ନପୁରର ପତନ ପାଇଁ ନିଜର ରୂପକୁ ଦାୟୀ କଲେ । ତାଙ୍କର ଲାଗି ରତ୍ନପୁରର ଅସଂଖ୍ୟ ଲୋକ ଓ ରାଜା ମୃତ୍ୟୁବରଣ କଲେ । ଅନ୍ନପୂର୍ଣ୍ଣା ଜନ୍ମ ହେବା ପରେ ମାତୃହୀନା ହୋଇଥିଲେ । ପିତା ତାଙ୍କୁ ଅତ୍ୟନ୍ତ ସ୍ନେହରେ ଲାଳନ ପାଳନ କରିଥିଲେ । ତାଙ୍କର ଶୈଶବ ଅତିକ୍ରାନ୍ତ ହେଲା ଓ ସେ ଯୌବନ ରାଜ୍ୟରେ ପଦାର୍ପଣ କଲେ । ରାଜା ତାଙ୍କର ବିବାହ ଲାଗି ସ୍ୱୟମ୍ବର ଆୟୋଜନ କଲେ । ସ୍ୱୟମ୍ବର ଲାଗି ରାଜା ବିଭିନ୍ନ ଦେଶର ରାଜକୁମାରମାନଙ୍କୁ ନିମନ୍ତ୍ରଣ କଲେ । ଦାସପୁର ଦୁର୍ଗ ଅବରୋଧ କରିବା ପାଇଁ ରାଜା ଗଙ୍ଗେଶ୍ୱର ଯେତେବେଳେ ଦାସପୁର ଠାରେ ଅବସ୍ଥାନ କରିଥିଲେ ସେତେବେଳେ ତାଙ୍କର ପୁତ୍ର ଏକଜାତଙ୍କୁ ସ୍ୱୟମ୍ବର ସଭାକୁ ନିମନ୍ତ୍ରଣ କରିବା ପାଇଁ ଦୂତ ଯାଇଥିଲା । ପରେ ସମ୍ବାଦ ମିଳିଲା ଯେ ରାଜା ଗଙ୍ଗେଶ୍ୱର ନିଜେ ଅନ୍ନପୂର୍ଣ୍ଣାଙ୍କୁ ପତ୍ନୀ ରୂପରେ ପାଇବା ପାଇଁ ଇଚ୍ଛା କରିଛନ୍ତି । ଏହି ସମ୍ବାଦ ଶ୍ରବଣରେ ରତ୍ନପୁରର ରାଜା ଅତ୍ୟନ୍ତ କ୍ରୋଧାନ୍ୱିତ ହୋଇ ପଡ଼ିଲେ । ଗଙ୍ଗେଶ୍ୱରଙ୍କ ନିକଟକୁ ନିଜର ଅସମ୍ମତି ପ୍ରକାଶ କରି ରତ୍ନପୁର ରାଜା ବାର୍ତ୍ତା ପ୍ରେରଣ କଲେ । ଫଳରେ ଗଙ୍ଗେଶ୍ୱର ରତ୍ନପୁର ଆକ୍ରମଣ କଲେ । ରତ୍ନପୁର ଦୁର୍ଗକୁ ଅଧିକାର କରିବାପାଇଁ ଯେଉଁ ଯୁଦ୍ଧ ହେଲା ତାହା ଅତିବ ଭୟଙ୍କର । ରତ୍ନପୁରର ସୈନ୍ୟମାନେ ଏପରି ଭାବରେ ଆକ୍ରମଣର ପ୍ରତିରୋଧ କଲେ ଯେ ଗଡ଼ର ପତନ

ସହଜରେ ସମ୍ଭବ ହେଲନାହିଁ । ଗୋଟି ଗୋଟି ହୋଇ ବହୁ ଉଜପୁଣ ଚଢ଼ି ଆକ୍ରମଣ କରି ନିହତ ହେଲେ । ଯୁଦ୍ଧଭୂମି ରକ୍ତରଂଜିତ ହୋଇ ଉଠିଲା ।

ଏହିଠାରେହିଁ ପାର୍ବତୀ କାବ୍ୟର ରଚନା ଅସମାପ୍ତ ରହିଯାଇଛି । କବିବର ରାଧାନାଥ ପାର୍ବତୀ କାବ୍ୟର ଉପସଂହାରି ନାମରେ ନିଜର ଟିପାଖାତାରେ ଯାହା ବିଷୟବସ୍ତୁ ଲେଖି ରଖିଥିଲେ ତାହା ପରବର୍ତ୍ତୀ କାଳରେ ରାଧାନାଥ ଗ୍ରନ୍ଥାବଳୀର ଅଙ୍ଗ ମଣ୍ଡନ କରିଅଛି । ସେହି ଟିପାଖାତାର ବିବରଣୀ, ଯାହା ଗ୍ରନ୍ଥା-ବଳୀରେ ପ୍ରକାଶ ପାଇଅଛି ; ତାହା ଏଠାରେ ଉଦ୍ଧାର ଯୋଗ୍ୟ ।

ପାର୍ବତୀଙ୍କ ସମ୍ମୁଖରେ ଅନ୍ନପୂର୍ଣ୍ଣା ତାଙ୍କ ଜୀବନର କାହାଣୀ ବର୍ଣ୍ଣନା କଲେ । ଯୁବରାଜ ଏକଜାତ ଯେଉଁଦିନ ଯୁଦ୍ଧ କ୍ଷେତ୍ରରେ ଅବତୀର୍ଣ୍ଣ ହୋଇ ସେନାନାୟକତ୍ୱ ଗ୍ରହଣ କଲେ, ସେହିଦିନଠାରୁ ଯୁଦ୍ଧ ଅତ୍ୟନ୍ତ ଭୟଙ୍କର ହୋଇ ଉଠିଲା । ରତ୍ନପୁର ରାଜ-ପ୍ରାସାଦର ପଛ ପଟରେ ଥିବା ଗୋଟିଏ ଉପବନରେ ଦିନେ ସଖୀମାନଙ୍କ ମେଳରେ ଅନ୍ନପୂର୍ଣ୍ଣା ବନଭୋଜି କରୁଥିଲେ । ହଠାତ୍ ଗୋଟିଏ କପୋତ ଶରବିଦ୍ଧ ହୋଇ ସେ ସ୍ଥାନରେ ଆସି ପଡ଼ିଗଲା । ଅନ୍ନପୂର୍ଣ୍ଣା ପକ୍ଷୀଟିକୁ କୋଳକୁ ନେଇ ତାକୁ ଶୁଶ୍ରୂଷା କଲେ । ସେତିକିବେଳେ ସେଠାରେ ଉତ୍କଳର ରାଜକୁମାର ଏକଜାତ ପ୍ରବେଶ କଲେ । ଏକଜାତଙ୍କୁ ଦେଖି ଅନ୍ନପୂର୍ଣ୍ଣାଙ୍କର ମନ ତାଙ୍କ ପ୍ରତି ଆକୃଷ୍ଟ ହେଲା । ଅନ୍ନପୂର୍ଣ୍ଣାଙ୍କ ଆଦେଶ ଅନୁସାରେ ଏକଜାତ ଶୀଘ୍ର ସେ ସ୍ଥାନ ତ୍ୟାଗ କରି ଚାଲିଗଲେ । ଯିବାବେଳେ ଏକଜାତ ମଧ୍ୟ ଅନ୍ନପୂର୍ଣ୍ଣାଙ୍କ ପ୍ରତି ତାଙ୍କର ଆସକ୍ତି ଥିବା କଥା ପ୍ରକାଶ କରିଥିଲେ ।

ଅନ୍ନପୂର୍ଣ୍ଣା ସେହିଦିନ ଠାରୁ ଏକଜାତଙ୍କୁ ଚିନ୍ତା କରି କରି ଅତ୍ୟନ୍ତ ଦୁର୍ବଳ ହୋଇପଡ଼ିଲେ ଓ ବ୍ୟାଧିଗ୍ରସ୍ତା ହେଲେ । ଅନ୍ନପୂର୍ଣ୍ଣାଙ୍କର ପିତା ତାଙ୍କର ବ୍ୟାଧି ବିଷୟ ଜାଣିପାରି ଚଗେଶ୍ୱରଙ୍କ

ନିକଟକୁ ସନ୍ଧି ପ୍ରସ୍ତାବ ପ୍ରେରଣ କଲେ । ମାତ୍ର ଗଙ୍ଗେଶ୍ୱର ତାଙ୍କର ସେ ପ୍ରସ୍ତାବ ଗ୍ରହଣ କଲେ ନାହିଁ । ଫଳରେ ଯୁଦ୍ଧ ଦୀର୍ଘସମୟ ଚାଲିଲା । ଗଡ଼ ମଧ୍ୟରେ କ୍ରମେ ଖାଦ୍ୟର ଅଭାବ ପଡ଼ିଲା । ଗଡ଼ ମଧ୍ୟରେ ଥିବା ନାରୀ ଓ ପୁରୁଷମାନେ ନିଜନିଜର ଖାଦ୍ୟକୁ ସୈନ୍ୟମାନଙ୍କ ପାଇଁ ପଠାଇଲେ । ତାପରେ ଦିନେ ଗଡ଼ର ପତନ ହେଲା । ଅନ୍ନପୂର୍ଣ୍ଣାଙ୍କର ପିତା ବନ୍ଦୀ ହେଲେ ଓ ତାଙ୍କର ଶିରଚ୍ଛେଦ ହେଲା । ଅନ୍ନପୂର୍ଣ୍ଣା ବନ୍ଦିନୀ ହେଲେ । ଅନ୍ନପୂର୍ଣ୍ଣାଙ୍କ ଠାରୁ ତାଙ୍କର ଦୁଃଖର କାହାଣୀ ଶୁଣି ରାଣୀ ଅତ୍ୟନ୍ତ ମର୍ମାହତା ହେଲେ । ଗଙ୍ଗେଶ୍ୱରଙ୍କ କବଳରୁ ଅନ୍ନପୂର୍ଣ୍ଣାଙ୍କୁ ରକ୍ଷା କରିବା ଲାଗି ସେ ମନେ ମନେ ସଂକଳ୍ପ କଲେ । ସେ ଗୋଟିଏ କଟାରକୁ ନିଜ ପାଖରେ ରଖିଲେ । ବଡ଼ ଦେଉଳ ଆଡ଼ୁ ଏକ ଆଗ୍ନେୟଚକ୍ର ଆକାଶମାର୍ଗରେ ଆସି ସେହି କଟାରରେ ମିଶିଯିବାର ରାଣୀ ଦେଖିଲେ ।

ସନ୍ଧ୍ୟା ସମୟରେ ନୀଳାଚଳ କ୍ଷେତ୍ର ଗଙ୍ଗେଶ୍ୱରଙ୍କ ସମ୍ବର୍ଦ୍ଧନା ଲାଗି ଚଞ୍ଚଳ ହୋଇ ଉଠିଲା । ଗଙ୍ଗେଶ୍ୱରଙ୍କୁ ଦେଖିବା ପାଇଁ ବଡ଼ଦାଣ୍ଡ ଅସଂଖ୍ୟ ଜନସମାଗମରେ ପୂର୍ଣ୍ଣ ହୋଇଗଲା । ବୃଦ୍ଧ କଞ୍ଚୁକୀ ରାଣୀଙ୍କ ନିର୍ଦ୍ଦିଷ୍ଟ ପ୍ରାସାଦର ଉଚ୍ଚ ବାତାୟନ ନିକଟରେ ଠିଆ ହେଲା । କଞ୍ଚୁକୀ ରାଣୀଙ୍କ ନିକଟରେ ଠିଆ ହୋଇ ନଗର ମଧ୍ୟକୁ ଶୋଭାଯାତ୍ରାରେ ପ୍ରବେଶ କରୁଥିବା ଭିନ୍ନ ଭିନ୍ନ ରାଜା ଓ ସେମାନଙ୍କର ସୈନ୍ୟଦଳକୁ ଚିହ୍ନାଇ ଦେଲା । ଏହି ପ୍ରସଙ୍ଗରେ କବି ଉତ୍କଳର କେତେକ ପ୍ରଧାନ ସ୍ଥାନର ପ୍ରାକୃତିକ ସୌନ୍ଦର୍ଯ୍ୟର ବୈଶିଷ୍ଟ୍ୟ ସୂଚିତ କରିଅଛନ୍ତି ।

ପୂର୍ଣ୍ଣଚନ୍ଦ୍ରର ଉଦୟ ଏହି ଶୋଭାକୁ ବହୁଗୁଣରେ ବଢ଼ାଇ ଦେଲା । ଗଙ୍ଗେଶ୍ୱରଙ୍କର ବିପୁଳ ଐଶ୍ୱର୍ଯ୍ୟ ଦେଖି ମଧ୍ୟ ରାଣୀ ସୁଖ ଅନୁଭବ କରି ପାରିଲେ ନାହିଁ । ସେ ନିଜକୁ ଯେକୌଣସି ଜଣେ ସାଧାରଣ କୃଷକର ପତ୍ନୀଠାରୁ ଆହୁରି ହୀନ ବୋଲି ମନେକଲେ । ରାଜା ନଗରକୁ ଆସିଲେ । ଅନ୍ୟ ନାରୀମାନଙ୍କ ଗହଣରେ ରାଣୀ ରାଜାଙ୍କୁ ବନ୍ଦାପନା

କଲେ । ରାଜା ରାଣୀଙ୍କୁ ଦେଖି ନିଜର ଅନୁରାଗଜନିତ ବାକ୍ୟ ପ୍ରକାଶ କଲେ ଓ ମକରନ୍ଦୋଦ୍ୟାନରେ ଫଗୁଖେଳ ପାଇଁ ବ୍ୟବସ୍ଥା କରିବାକୁ ଆଦେଶ ଦେଲେ । ଏ ବ୍ୟବସ୍ଥା ପୂର୍ବରୁ ହୋଇସାରିଥିବା କଥା ରାଣୀ ପ୍ରକାଶ କଲେ । ତାପରେ ରାଜା ସିଂହାରୀମାନଙ୍କୁ ଆଦେଶ ଦେଲେ ଯେ ଅନନ୍ତବର୍ଣ୍ଣାଙ୍କୁ ବେଶଭୂଷାରେ ମଣ୍ଡିତ କରି ମକରନ୍ଦୋଦ୍ୟାନ ନିକଟସ୍ଥ ପ୍ରମୋଦ ଭବନକୁ ଫଗୁଉତ୍ସବ ପୂର୍ବରୁ ନିଆଯିବ ।

ଗଙ୍ଗେଶ୍ୱର ଅନ୍ୟରାଜାମାନଙ୍କ ସହିତ ଯାଇ ଜଗନ୍ନାଥ ମନ୍ଦିରରେ ଦର୍ଶନ କରୁଥିଲେ । ଗଙ୍ଗେଶ୍ୱର ଯେତେବେଳେ ପ୍ରଭୁଙ୍କ ଆଗରେ ସାଷ୍ଟାଙ୍ଗ ପ୍ରଣାମ କଲେ ସେତେବେଳେ ଦେଖାଗଲା ଯେ ଜଗନ୍ନାଥଙ୍କ ସୁଦର୍ଶନ ଚକ୍ରରୁ ଜ୍ୟୋତି ନିର୍ଗତ ହେଉଅଛି । ରାଜା ମନ୍ଦିରରୁ ଫେରି ନଗର ମଧ୍ୟରେ ପ୍ରବେଶ କଲେ । ସେତେବେଳକୁ ମକରନ୍ଦୋଦ୍ୟାନରେ ଫଗୁ ଉତ୍ସବର ଆୟୋଜନ ସରିଥାଏ । ରାଜା ବେଶବଦଳାଇ ଆହାରାଦି ଶେଷ କରି ମକରନ୍ଦୋଦ୍ୟାନରେ ପ୍ରବେଶ କଲେ ଓ ପିଚକାରୀ କ୍ରୀଡ଼ାରେ ରତ ହେଲେ । ରାଣୀ ଗଙ୍ଗେଶ୍ୱରଙ୍କୁ ନିକଟସ୍ଥ ଏକ ଦୋଳରେ ନେଇ ବସାଇଲେ । ରାଣୀ ଛଳନା କରି ଗଙ୍ଗେଶ୍ୱରଙ୍କ ହସ୍ତ ପଦାଦି ଫୁଲମାଳରେ ବାନ୍ଧିଦେଲେ । ତାପରେ ହଠାତ୍ ଗଙ୍ଗେଶ୍ୱରଙ୍କ କଣ୍ଠରୁ ଶୁଣାଗଲା "ମଲି, ମଲି" । ଏହି ଚିତ୍କାର ଶୁଣି ଅନ୍ୟମାନେ ଯାଇ ଦେଖନ୍ତି ତ ପାର୍ବତୀ ଅତ୍ୟନ୍ତ ଉଗ୍ରଭାବରେ କଟାରି ଧରିଛନ୍ତି ଏବଂ ଗଙ୍ଗେଶ୍ୱରଙ୍କର ଶରୀର ଲୋଟିପଡ଼ିଛି । ଗଙ୍ଗେଶ୍ୱରଙ୍କ ରକ୍ତ ଓ ଫଗୁ ଖେଳର ରଙ୍ଗପାଣି ମିଶି ସେସ୍ଥାନ ଅତି ଭୟଙ୍କର ଭାବରେ ରଞ୍ଜିତ ହୋଇଅଛି । ରାଣୀଙ୍କର ଏପ୍ରକାର ଉଗ୍ରମୂର୍ତ୍ତି ଦେଖି କେହି ତାଙ୍କ ନିକଟକୁ ଯିବାକୁ ସାହସ କଲେ ନାହିଁ । ତାପରେ ଦେଖାଗଲା ଯେ ରାଣୀଙ୍କ ହାତରେ ଥିବା କଟାରିରୁ ଆଗ୍ନେୟଚକ୍ର ନିର୍ଗତ ହୋଇ ବଡ଼ଦେଉଳ ଆଡ଼କୁ ଗତିକରି ନିଶ୍ଚିହ୍ନ ହୋଇଗଲା । ସେଠାରେ ସମବେତ ହୋଇଥିବା ସମସ୍ତଙ୍କ ଆଗରେ ରାଣୀ ଗଙ୍ଗେଶ୍ୱରଙ୍କର ଚରିତ୍ର ଓ ଅପକର୍ମ ବିଷୟ ପ୍ରକାଶ କଲେ । ଏହି ସମୟରେ

ହଂସପୁରରୁ ଆର୍ତ୍ତନାଦ ଶୁଭିଲା । ଏକଜାତ ଓ ଅନ୍ୟମାନେ ଯାଇ ସେଠାରେ ଦେଖିଲେ ଯେ ଅନ୍ନପୂର୍ଣ୍ଣା ବିଷପାନ କରି କଲବଲ ହେଉଛନ୍ତି । ଅନ୍ନପୂର୍ଣ୍ଣା ଏକଜାତଙ୍କୁ ଦେଖି ତାଙ୍କର ମନର କଥା ପ୍ରକାଶ କଲେ ଓ ତାଙ୍କର ପ୍ରାଣବାୟୁ ଉଡିଗଲା । ଏହି ଦୃଶ୍ୟଦେଖି ଏକଜାତ ମୂର୍ଚ୍ଛିତ ହୋଇଗଲେ ଏବଂ ପରେ ସଂଜ୍ଞା ଲାଭ କରି ଉଭୟଙ୍କର ଶବସତ୍କାର କଲେ । ରାଣୀ ପାଟଣାଙ୍କର କୌଣସି ସନ୍ଧାନ ଆଉ ମିଳିଲା ନାହିଁ । ବହୁକାଳ ପରେ, ଅନଙ୍ଗଭୀମଦେବଙ୍କ ସମୟରେ ଯେତେବେଳେ ରାଜନଗର ପୁନର୍ଗଠିତ ହେଲା ସେତେବେଳେ ରାଜୋଦ୍ୟାନର ଏକ ଜୀର୍ଣ୍ଣକୂପରୁ ପାଟଣାଙ୍କର ଅସ୍ଥି କଙ୍କାଳ ମିଳିଲା ।

କବିବର ରାଧାନାଥ ପାର୍ବତୀ କାବ୍ୟ ରଚନା କରିବା ସମୟରେ କାବ୍ୟର କଥାବସ୍ତୁ ଲାଗି ବିଭିନ୍ନ ସୂତ୍ରରୁ ଉପାଦାନ ଗ୍ରହଣ କରିଥିଲେହେଁ ନିଜର ସ୍ୱାତନ୍ତ୍ର୍ୟ ଯେପରି ଭାବରେ ପ୍ରଦର୍ଶନ କରିଅଛନ୍ତି ତାହା ଅନନ୍ୟସାଧାରଣ । ଯେଉଁସବୁ ସୂତ୍ରରୁ ସେ ଉପାଦାନ ଗ୍ରହଣ କରିଅଛନ୍ତି ସେସବୁ ସୂତ୍ରରେ ଥିବା ଘଟଣାଗୁଡ଼ିକୁ ଅବିକଳ ଭାବରେ ଗ୍ରହଣ ନକରି ନିଜର ବିଚାର ବୁଦ୍ଧିରେ ସେସବୁକୁ ମାର୍ଜିତକରି ଗ୍ରହଣ କରିଅଛନ୍ତି । କାବ୍ୟର କଥାବସ୍ତୁରୁ ତାଙ୍କର ଔଚିତ୍ୟବୋଧର ଯଥାର୍ଥ ପରିଚୟ ମିଳିଥାଏ ।

ଗ୍ରୀକ୍ ମହାକବି ହୋମର 'ଇଲିଅଡ୍' ରେ ରାଜା ଆଗାମେମ୍‌ନନ୍‌ଙ୍କର ଟ୍ରୟ ଯୁଦ୍ଧ ବିଷୟ ବର୍ଣ୍ଣନା କରିଛନ୍ତି । ରାଜା ଆଗାମେମ୍‌ନନ୍ ଯେତେବେଳେ ଯୁଦ୍ଧରେ ବ୍ୟାପୃତ ଥିଲେ ସେତେବେଳେ ତାଙ୍କର ରାଣୀ କ୍ଲାଇଟେମେନ୍‌ଷ୍ଟ୍ରା ଏଜିସ୍ଥାସ୍ ନାମକ ଅନ୍ୟଜଣେ ବ୍ୟକ୍ତିଙ୍କୁ ଉପପତି ଭାବରେ ଗ୍ରହଣ କରି ଜୀବନକୁ ଉପଭୋଗ କରୁଥିଲେ । ଯୁଦ୍ଧ ଶେଷରେ ଆଗାମେମ୍‌ନନ୍ ଯେତେବେଳେ ସ୍ୱଦେଶକୁ ଫେରି ଆସିଲେ, ସେତେବେଳେ ଏଜିସ୍ଥାସ୍‌ଙ୍କଦ୍ୱାରା ନିହତ ହେଲେ । କ୍ଲାଇଟେମେନ୍‌ଷ୍ଟ୍ରା ଏଜିସ୍ଥାସ୍‌ଙ୍କ ସହିତ କିଛି କାଳ ସୁଖରେ ଅତିବାହିତ କରିବା ପରେ ଆଗାମେମ୍‌ନନ୍‌ଙ୍କ ଔରସରୁ କ୍ଲାଇଟେମେନ୍‌ଷ୍ଟ୍ରାଙ୍କ ଗର୍ଭଜାତ ପୁତ୍ର ଓରେଷ୍ଟିସ୍‌ଙ୍କଦ୍ୱାରା ଏଜିସ୍ଥାସ୍ ନିହତ ହେଲେ ଓ

ଓରେଷ୍ଟିସ୍ ରାଜସିଂହାସନ ଆରୋହଣ କଲେ । ମହାକବି ହୋମରଙ୍କ କାବ୍ୟର ଏହି କଥାବସ୍ତୁକୁ ଅନୁସରଣ କରି ନାଟ୍ୟକାର ଆସ୍କାଇଲସ୍ ଆଗାମେମ୍ନନ୍ ନାଟକ ରଚନା କରିଥିଲେ । ଆସ୍କାଇଲସ୍ ହୋମରଙ୍କ କାବ୍ୟର କଥାବସ୍ତୁକୁ ଅବିକଳ ଗ୍ରହଣ ନକରି ନାଟକକୁ ଅଧିକ କରୁଣରସାତ୍ମକ କରିବା ପାଇଁ ତାଙ୍କର କଳ୍ପନା ଅନୁସାରେ କଥାବସ୍ତୁକୁ ନିୟନ୍ତ୍ରଣ କରିଥିଲେ ।

ଆସ୍କାଇଲସ୍ଙ୍କ ନାଟକର କଥାବସ୍ତୁରୁ ଜଣାଯାଏ ଯେ, ଗ୍ରୀକ୍ ସୈନ୍ୟମାନେ ଯେତେବେଳେ ଟ୍ରୟ ଅଭିମୁଖରେ ସମୁଦ୍ର ଯାତ୍ରା କରୁଥିଲେ ସେତେବେଳେ ସେମାନଙ୍କୁ ବହୁ ବିପଦର ସମ୍ମୁଖୀନ ହେବାକୁ ପଡ଼ିଥିଲା । ଡାଏନାଙ୍କ ଅସନ୍ତୋଷ ହେତୁ ଏପରି ବିପଦ ପଡ଼ୁଅଛି ବୋଲି ଯେତେବେଳେ ଜଣାପଡ଼ିଲା, ସେତେବେଳେ ଭବିଷ୍ୟତ୍ ବକ୍ତା ଓ ଦେବାଦେଶକ କେଲ୍କାସ୍ କହିଲେ ଯେ, ଯେବେ ଜ୍ୟେଷ୍ଠା ଯୁବତୀ କନ୍ୟାକୁ ବଳିଦେଲେ ଦେବୀ ଡାଏନା ସନ୍ତୁଷ୍ଟ ହେବେ । ଦେବୀଙ୍କୁ ଯଦି ଏପ୍ରକାର ବଳି ଦିଆନଯାଏ, ତେବେ ସମସ୍ତେ ନିମଗ୍ନ ସାଗରବକ୍ଷରେ ପ୍ରାଣ ହରାଇବେ । ରାଜା ଆଗାମେମ୍ନନ୍ଙ୍କ ଦୁହିତା ତାଙ୍କର କନ୍ୟା ଇଫିଜେନିଆ ଥିଲେ । ରାଜା ଯେତେବେଳେ ଜାଣି ପାରିଲେ ଯେ ଇଫିଜେନିଆକୁ ବଳିଦେବାକୁ ପଡ଼ିବ, ସେତେବେଳେ ସେ ଅତ୍ୟନ୍ତ ବିଚଳିତ ହୋଇ ପଡ଼ିଲେ ଓ ଦୁଃଖରେ ମ୍ରିୟମାଣ ହୋଇ ପଡ଼ିଲେ । ମାତ୍ର ପରିଶେଷରେ ଇଫିଜେନିଆକୁ ବଳି ଦେଇଥିଲେ । ଇଫିଜେନିଆ ଏପରି ଭାବରେ ପ୍ରାଣ ହରାଇବାର ସମ୍ବାଦ ଶ୍ରବଣ କରି ରାଣୀ କ୍ଲାଇଟେମେନ୍ଷ୍ଟ୍ରା ଆଗାମେମ୍ନନ୍ଙ୍କ ଉପରେ ଅତ୍ୟନ୍ତ କ୍ରୁଦ୍ଧା ହେଲେ ଓ କନ୍ୟାର ମୃତ୍ୟୁ ତାଙ୍କ ପ୍ରାଣକୁ ଏପରି ବ୍ୟଥିତ କରିଦେଲା ଯେ ସେ ଆଗପଛ କିଛି ଭାବି ପାରିଲେ ନାହିଁ । ସେ ଏଥିପାଇଁ ରାଜା ଆଗାମେମ୍ନନ୍ଙ୍କୁ ଦାୟୀ କଲେ । ଆଗାମେମ୍ନନ୍ଙ୍କୁ ଏଥିପାଇଁ ଦଣ୍ଡ ଦେବାକୁ ସେ ସଙ୍କଳ୍ପ କଲେ । ଆଗାମେମ୍ନନ୍ଙ୍କ ଅନୁପସ୍ଥିତିର ସୁଯୋଗ ନେଇ ସେ ଏଜିସ୍ଥସ୍ ନାମକ ପରପୁରୁଷର ପ୍ରେମରେ ଜୀବନକୁ ଉପଭୋଗ କରିଥିଲେ । ରାଣୀ କ୍ଲାଇଟେମେନ୍ଷ୍ଟ୍ରା ଯେତେବେଳେ ଟ୍ରୟଯୁଦ୍ଧରେ ଆଗାମେମ୍ନନ୍ ବିଜୟୀ ହୋଇଛନ୍ତି ବୋଲି ସମ୍ବାଦ

ପାଇଲେ, ସେତେବେଳେ ସ୍ୱାମୀଙ୍କଠାରୁ ପ୍ରତିଶୋଧ ନେବାପାଇଁ ସେ ଉଦଗ୍ରୀବ ହୋଇ ପଡ଼ିଲେ । ରାଜା ଆଗାମେମ୍‌ନନ୍ ରାଜପ୍ରାସାଦରେ ପହଞ୍ଚିବା ପରେ ରାଣୀ କ୍ଲାଇଟେମେନ୍‌ଷ୍ଟ୍ରା ତାଙ୍କୁ ହତ୍ୟା କଲେ ଏବଂ କିଛିକାଳ ପରେ ଓରେଷ୍ଟିସ୍ ନିଜ ମାତା କ୍ଲାଇଟେମେନ୍‌ଷ୍ଟ୍ରାଙ୍କୁ ହତ୍ୟା କଲେ ।

ମହାକବି ହୋମରଙ୍କ ଆଖ୍ୟାୟିକାକୁ ଅବଲମ୍ବନ କରି ସେକ୍‌ସ୍‌ପିଅର ହାମ୍‌ଲେଟ୍ ନାଟକ ଲାଗି କଥାବସ୍ତୁର ପରିକଳ୍ପନା କରିଥିଲେ । ତଥାପି ସେକ୍‌ସ୍‌ପିଅରଙ୍କର କଳ୍ପନାରେ ଯଥେଷ୍ଟ ମୌଳିକତା ପରିଲକ୍ଷିତ ହୋଇଥାଏ । ଡେନ୍‌ମାର୍କ ରାଜ୍ୟର ରାଣୀ ଗାର୍ଟ୍ରୁଡ୍ ନିଜର ଦେବରଙ୍କୁ ଉପପତି ଭାବରେ ଗ୍ରହଣ କରି ନିଜର ପତିଙ୍କୁ ହତ୍ୟା କରିଥିଲେ । ହୋମରଙ୍କ କାବ୍ୟରେ ଯେପରି ଏଜିଷ୍ଟାସ୍‌ଙ୍କ ଦ୍ୱାରା ଆଗାମେମ୍‌ନନ୍ ନିହତ ହୋଇଥିଲେ, ହାମ୍‌ଲେଟ୍ ନାଟକରେ ସେହିପରି କ୍ଲାଡ଼ିଅସ୍‌ଙ୍କ ଦ୍ୱାରା ଡେନ୍‌ମାର୍କର ରାଜା ନିହତ ହୋଇଥିଲେ । ସେକ୍‌ସ୍‌ପିଅର୍ ନାଟକରେ ପ୍ରେତର ଆବିର୍ଭାବ କରି ତା ମୁଖରେ ଘଟଣା ବର୍ଣ୍ଣନା କରିବାର କାରଣ ହେଉଛି, ଡେନ୍‌ମାର୍କର ରାଜାଙ୍କର ହତ୍ୟା ଲୋକ ସମକ୍ଷରେ ଘଟି ନ ଥିଲା । ଏହା ଗୁପ୍ତରେ ଘଟିଥିବାରୁ ଏହାର ସତ୍ୟ ପ୍ରକାଶ ନିମିତ୍ତ ପ୍ରେତର ଆବିର୍ଭାବ ଘଟିଛି । ହୋମର୍ ବା ଆସ୍‌କାଇ-ଲସ୍‌ଙ୍କ କଥାବସ୍ତୁରେ ଆଗାମେମ୍‌ନନ୍‌ଙ୍କ ପୁତ୍ର ଓରେଷ୍ଟିସ୍ ଶେଷ ପର୍ଯ୍ୟନ୍ତ ବଞ୍ଚି ରହି ରାଜ୍ୟଭୋଗ କରୁଥିବା ସ୍ଥଳେ ସେକ୍‌ସ୍‌ପିଅର ରାଜକୁମାର ହାମ୍‌ଲେଟ୍‌ଙ୍କୁ ସେ ସୁଯୋଗ ଦେଇନାହାନ୍ତି । ଆସ୍‌କାଇଲ୍‌ସ୍‌ଙ୍କ ନାଟକରେ କ୍ଲାଇଟେମେନ୍‌ଷ୍ଟ୍ରା ନିଜ ପୁତ୍ର ଓରେଷ୍ଟିସ୍‌ଙ୍କ ହାତରେ ନିହତ ହୋଇଛନ୍ତି, ମାତ୍ର ସେକ୍‌ସ୍‌ପିଅରଙ୍କ ନାଟକରେ ରାଣୀ ଗାର୍ଟ୍ରୁଡ୍ ନିଜର ପାପଲାଗି ସ୍ୱହସ୍ତରେ ବିଷପାନ କରି ମୃତ୍ୟୁବରଣ କରିଛନ୍ତି । ହୋମର୍ ବା ଆସ୍‌କାଇଲସ୍‌ଙ୍କ କଥାବସ୍ତୁରେ ରୂପ ପାଇଥିବା ବନ୍ଦିନୀ ଯୁବତୀ କାସାଣ୍ଡ୍ରାଙ୍କ ପରି ହାମ୍‌ଲେଟ୍ ନାଟକରେ ରୂପ ପାଇଛନ୍ତି ଅଫେଲିଆ ଏବଂ ଅଫେଲିଆଙ୍କ ସହିତ ଯୁବରାଜ ହାମ୍‌ଲେଟ୍‌ଙ୍କର ପ୍ରେମ ବିଷୟ ନାଟକରେ ସ୍ଥାନ ପାଇଅଛି ।

କବିବର ରାଧାନାଥ ପାର୍ବତୀ କାବ୍ୟର କଥାବସ୍ତୁ ଲାଗି ଅ.ଷ୍ଟାର୍ଲିଙ୍ଗଙ୍କ ନାଟକକୁ ମୁଖ୍ୟ ଭାବରେ ଗ୍ରହଣ କରିଅଛନ୍ତି । ଏଥିପାଇଁ କୌଣସି ଲୋକଙ୍କ ବିଷୟରେ ପ୍ରଚଳିତ ଥିବା କିମ୍ବଦନ୍ତୀ ଓ ମାଦଳା ପାଞ୍ଜିର ବିବରଣୀ ତାଙ୍କୁ ଯଥେଷ୍ଟ ଉପାଦାନ ଯୋଗାଇଅଛି । ବିଦେଶୀ କଥାବସ୍ତୁର ଆହରଣ ଓ ସ୍ୱଦେଶୀ ସ୍ଥାନ ଓ କିମ୍ବଦନ୍ତୀ ଉପରେ ତାହାର ଆରୋପଣ କବିବର ରାଧାନାଥଙ୍କର ବୈଶିଷ୍ଟ୍ୟ । କବିଙ୍କର ଏହି ବୈଶିଷ୍ଟ୍ୟ ପାର୍ବତୀ କାବ୍ୟରେ ରକ୍ଷିତ ହୋଇଅଛି ।

ମାଦଳା ପାଞ୍ଜିରେ ଅଛି, "ଏ ଗଙ୍ଗେଶ୍ୱର ଦେବ ଗୋଦାବରୀ ଠାରୁ ଗଙ୍ଗା ପର୍ଯ୍ୟନ୍ତ ଏକଛତ୍ର କଲେ । ଏ ରାଜା ବ୍ରାହ୍ମଣମାନଙ୍କୁ ପଚାରିଲେ ଯଉଁ ଫଳ ଉପୁଜାଇ ସେ ଫଳ ଖାଇ କି ନଖାଇ । ତହିଁକି ବ୍ରାହ୍ମଣେ ବୋଇଲେ ଯେ ଫଳ ଉପୁଜାଇ ସେ ଫଳ ଖାଇ । ସେଠାରୁ ରାଜା ଝିଅଙ୍କ ସଙ୍ଗେ ଅଙ୍ଗସଙ୍ଗ ହେଲେ । ସେ ଝିଅ ଗର୍ଭବତୀ ହେଲେ ତହିଁ ସକାସୁ ଏ କଥା ପ୍ରକଟ ହେଲା । ସେଠାରୁ ରାଜା ବ୍ରାହ୍ମଣଙ୍କୁ ପଚାରିଲେ । ତହିଁକି ବ୍ରାହ୍ମଣମାନେ କହିଲେ, ତୁମ୍ଭେ ଝିଅଙ୍କ ସଙ୍ଗ ଅଙ୍ଗସଙ୍ଗ କଲ । ଏ କଥା ଗର୍ହିତ ହେଲା । ଏ କଥା ଉଚିତ ନୁହଇ । ତହିଁକି ରାଜା ପଚାରିଲେ ଏଥି କି ପ୍ରାୟଶ୍ଚିତ୍ତ । ତହିଁକି ବ୍ରାହ୍ମଣ କହିଲେ— ଦୁଇମାଠିଆ ପାଣି ଦେଇ ଗୃହ୍ଣିବ । ତାହା ଗୋଡରୁ ଯେଉଁଠାରୁ ରୁଧିର ଜାତ ହେବ ସେଇଠାରେ ଗୃହବାହ ଆପୂରଣରେ ପୋଖରୀ ଖୋଳାଯିବ । ମଧ୍ୟରେ ପ୍ରାୟଶ୍ଚିତ୍ତ ହେବ । ତହିଁ ଭିତରେ ସେ ଝିଅ ରହିବ । କାହାର ମୁଖ ନ ଚାହିଁବ । ଏମନ୍ତ ଯେ ଏହାଙ୍କ ବିହାକ ରହିବେ । ତୁମ୍ଭ ଉପସ୍ଥ କଣ୍ଟକହାନ ଦୂର ହୋଇବ । ତେବେ ସେ ତହିଁରେ ଦୋଷ ଯିବ । ସେଠାରୁ ସେ ରାଜା ଏହା ଶୁଣି ଝିଅଙ୍କ ହାତରେ କାନ୍ଧରେ ପାଣି ଦୁଇମାଠିଆ ଦେଇ ଚଳାଇଲେ । ଏ ଝିଅଙ୍କୁ ଏମନ୍ତ ଚଳାଇଲା ବେଳକୁ ରାଜ୍ୟ ଲୋକେ ପୁଣି ବହୁତ ଉପହାସ କଲେ । ରାଜା ବଡ ସଙ୍କୋଚ ପାଇଲେ । ଏ ଝିଅଙ୍କୁ ନଅରକୁ ନେଲେ । ଏ ଉତ୍ତରୁ ଝିଅଙ୍କୁ ଯେଉଁଠାଏ ବୁଲାଇ ରକତ ଗୋଡ଼ରୁ ବହି ନଥିଲା ସୀମାନ୍ତ ଦେଇ ପୋଖରୀ ପ୍ରାୟଶ୍ଚିତ୍ତ କଲେ । ପ୍ରାୟଶ୍ଚିତ୍ତ

ସେ ଝିଅକୁ ଆଣି ଭୁଇଁରେ ରଖିଲେ । ରାଣୀମାନେ ରାଜାଙ୍କ ମୁଣ୍ଡଛେଚି ହୋଇଲେ । ସେଇଦିନୁ ମୋକ୍ଷଶ୍ର କୌଶଲ୍ୟାଗଙ୍ଗ ହୋଇଲା ।”

କୌଶଲ୍ୟାଙ୍କ ବିଷୟକ ଟବରଣୀ ବା ଲୋକମୁଖରେ ପ୍ରଚଳିତ କିମ୍ବଦନ୍ତୀକୁ ନେଇ ତାଙ୍କ କାବ୍ୟରେ ଯଥାସମ୍ଭବ ବର୍ଣ୍ଣିତ କରିଅଛନ୍ତି । ଏହି କିମ୍ବଦନ୍ତୀକୁ ୧୮୨୫ ସାଲରେ ଷ୍ଟର୍ଲିଂ ସାହେବ ଇଂରେଜୀରେ ଲେଖିଥିଲେ ଓ ୧୮୩୦ ସାଲରେ କିଟୋ ସାହେବ ଏହାକୁ ଲେଖି ଏସିଆଟିକ ସୋସାଇଟିର ପତ୍ରିକାରେ ପ୍ରକାଶ କରିଥିଲେ ।

କବିବର ରାଧାନାଥ ଆସ୍କାଇଲସ୍‌ଙ୍କ ନାଟକର କଥାବସ୍ତୁକୁ ମୁଖ୍ୟଭାବରେ ଗ୍ରହଣ କରିଥିଲେହେଁ ଏଥିରେ ସେ ନିଜର ସ୍ୱାତନ୍ତ୍ର୍ୟ ପ୍ରଦର୍ଶନ କରିଅଛନ୍ତି । ଆସ୍କାଇଲସ୍‌ଙ୍କ ନାଟକର ଇଫିଜେନିଆର ମୃତ୍ୟୁ ଯେପରି ଭାବରେ କ୍ଲାଇଟେମେନ୍‌ଷ୍ଟ୍ରାଙ୍କ ଚିତ୍ତକୁ ବିକ୍ଷିପ୍ତ କରିଦେଇଛି, ପାର୍ବତୀ କାବ୍ୟରେ କୌଶଲ୍ୟାଙ୍କ ମୃତ୍ୟୁ ସେହିପରି ଭାବରେ ପାର୍ବତୀଙ୍କ ଚିତ୍ତବୃତ୍ତିକୁ ବିକ୍ଷିପ୍ତ କରିଦେଇ ଥିଲେହେଁ ପାର୍ବତୀ କାବ୍ୟରେ ମୃତ୍ୟୁର କାରଣ ଭିନ୍ନ । ପିତା ଓ କନ୍ୟାର ଅବରୋଧ ପ୍ରଣୟ ଓ ତଜ୍ଜନିତ କନ୍ୟାର ମୃତ୍ୟୁ ପାର୍ବତୀଙ୍କ ମନକୁ ବିକ୍ଷୁବ୍ଧ କରିଦେଇଛି । ତା ପରେ ଯେତେବେଳେ ପାର୍ବତୀ ଅନ୍ନପୂର୍ଣ୍ଣାଙ୍କ ଠାରୁ ତାଙ୍କ କଥା ଶୁଣିଲେ ସେତେବେଳେ ତାଙ୍କର କ୍ରୋଧ ଶତଗୁଣରେ ବଢ଼ିଯାଇଛି । ଅନ୍ନପୂର୍ଣ୍ଣା ଏକାନ୍ତଙ୍କୁ ପତିରୂପରେ ପାଇବାକୁ ଇଚ୍ଛା କରିଥିବାରୁ ସେ ପାର୍ବତୀଙ୍କର ପୁତ୍ରବଧୂ । ପୁତ୍ରବଧୂ କନ୍ୟା ସହିତ ସମାନ । ତେଣୁ ପାର୍ବତୀ କୌଶଲ୍ୟାଙ୍କୁ ଗଙ୍ଗେଶ୍ୱରଙ୍କ ହାନକବଳରୁ ରକ୍ଷା କରି ପାରି ନଥିଲେହେଁ ଅନ୍ନପୂର୍ଣ୍ଣାଙ୍କୁ ରକ୍ଷାକରିବାର ସଂକଳ୍ପ ଗ୍ରହଣ କରିଛନ୍ତି । ଅସ୍କାଇଲସ୍‌ଙ୍କ ନାଟକରେ କ୍ଲାଇଟେମେନ୍‌ଷ୍ଟ୍ରା ଉପପତି ଗ୍ରହଣ କରିଛନ୍ତି, ମାତ୍ର ପାର୍ବତୀଙ୍କ କ୍ଷେତ୍ରରେ ଏପ୍ରକାର କଳ୍ପନା ସ୍ଥାନ ପାଇନାହିଁ । ଅଗ୍ନିଶିଖା ସାହାଯ୍ୟରେ ବିଜୟବାର୍ତ୍ତା ପ୍ରେରଣ ଉଭୟ କ୍ଷେତ୍ରରେ ବର୍ଣ୍ଣିତ । ମାତ୍ର ପାର୍ବତୀ କାବ୍ୟରେ ଏହାର ବାସ୍ତବତା ଅଧିକ । ଟ୍ରୟ ଯୁଦ୍ଧରେ ଜୟଲାଭର ବାର୍ତ୍ତା ଅଗ୍ନିଶିଖାଦ୍ୱାରା ଉତ୍ତରରୁ ଦକ୍ଷିଣ ଦିଗକୁ ଗୋଟିଏ ରାତ୍ରି ମଧ୍ୟରେ ପ୍ରେରିତ ହୋଇଅଛି । ଗ୍ରୀକ୍

ସୈନ୍ୟମାନେ ଚ୍ରେସ୍‌ଠାରୁ ଆର୍ଗସ୍ ପର୍ଯ୍ୟନ୍ତ ଦୀର୍ଘ ଜଳପଥକୁ ଗୋଟିଏ ମାତ୍ର ଦିନରେ ଅତିକ୍ରମ କରିଥିଲେ । ମାତ୍ର କବିବର ରାଧାନାଥ ତାଙ୍କ କାବ୍ୟରେ ଏପ୍ରକାର ଅବାସ୍ତବ ପରିକଳ୍ପନା କରିନାହାନ୍ତି । ରତ୍ନପୁରରୁ ପୁରୀ ପର୍ଯ୍ୟନ୍ତ ପଥକୁ ଅତିକ୍ରମ କରିବାକୁ ଉତ୍କଳର ସୈନ୍ୟମାନଙ୍କୁ ତିନିଦିନ ସମୟ ଲାଗିଅଛି । କବିବର ରାଧାନାଥଙ୍କର ଏହି ସମସ୍ତ ଜ୍ଞାନ ତାଙ୍କ ପରିକଳ୍ପନାର ଔଚିତ୍ୟ ପ୍ରଦର୍ଶନ କରିଥାଏ ।

ଦୋଳଉତ୍ସବର ଆୟୋଜନ ଓ ପାଳନ ମଧ୍ୟରେ କାବ୍ୟର କଥାବସ୍ତୁ ପରିଣତିରେ ପହଞ୍ଚିଅଛି । ଦୋଳଉତ୍ସବର ଆୟୋଜନ ରାଣୀଙ୍କ ମନକୁ ଉଲ୍ଲସିତ ନ କରି ଦୁଃଖରେ ଭରିଦେଇଛି । ରାଣୀ କୌଶଲ୍ୟାଙ୍କ ବିଷୟରେ ପାଇଥିବା ଦୁଃସମ୍ବାଦ ଯୋଗୁଁ ଅତ୍ୟନ୍ତ ବ୍ୟଥିତା । କୌଶଲ୍ୟାଙ୍କ ଚରିତର ସ୍ଖଳନ ତାଙ୍କ ପକ୍ଷରେ ଅତ୍ୟନ୍ତ ଦୁର୍ବିସହ ହୋଇ ପଡ଼ିଅଛି । କୌଶଲ୍ୟାଙ୍କର ସ୍ଖଳନ ପାଇଁ କିଏ ଦାୟୀ ସେ କଥା ସେ ଜାଣିପାରି ନାହାନ୍ତି । ଯେଥିପାଇଁ ରାଣୀ ଗରୁଡ଼ସ୍ତମ୍ଭ ନିକଟରେ ଅଧା ପଡ଼ିଥିଲେ ଓ ସ୍ୱପ୍ନାଦେଶ ପାଇଲେ ଯେ କୌଶଲ୍ୟା ନିଜେ ଆସି ତାର ବୃତ୍ତାନ୍ତ ରାଣୀଙ୍କ ଆଗରେ ବର୍ଣ୍ଣନା କରିବେ । ସେହିଦିନଠାରୁ ରାଣୀଙ୍କ ମନରେ କୌଶଲ୍ୟାଙ୍କୁ ଦେଖିବା ନିମିତ୍ତ ଆଶା ବଳବତ୍ତର ହେଲା । କାବ୍ୟର କଥାବସ୍ତୁ ଗଠନ ଶୃଙ୍ଖଳା ଅତ୍ୟନ୍ତ ମନୋରମ ହୋଇଅଛି । କଞ୍ଚୁକୀ ଦୁଇବର୍ଷ ଧରି ଗଡ଼ଚଳରେ ଅଗ୍ନିଶିଖାର ସଙ୍କେତକୁ ଅପେକ୍ଷା କରି ରହିଛି । କଞ୍ଚୁକୀ ଅତ୍ୟନ୍ତ ଉଦ୍‌ବିଗ୍ନ ମନରେ ଅଗ୍ନିଶିଖାର ସଙ୍କେତକୁ ଅପେକ୍ଷା କରି ବସିବା ସମୟରେ ଗଙ୍ଗେଶ୍ୱରଙ୍କ ପ୍ରକୃତିକୁ ପ୍ରସଙ୍ଗକ୍ରମେ ସମର୍ଥନ କରିନାହିଁ । ତାର ହୃଦୟର ଆନ୍ଦୋଳନ ତାକୁ କୌଣସି ସିଦ୍ଧାନ୍ତରେ ଉପନୀତ କରାଇ ନାହିଁ । ଏହିପରି ଚିନ୍ତିତ ଅବସ୍ଥାରେ ଥିବା ସମୟରେ ସେ ଅଗ୍ନିଶିଖାର ସଙ୍କେତ ହଠାତ୍ ଦେଖିପାରିଛି ।

"ଏହି ରୂପେ ଭକ୍ତି ଜଳରାଶୀମୂଳେ
ପୃଥ୍ୱୀ ଧ୍ରୁବତାର ତଳେ
ସହସା କଞ୍ଚୁକୀ ଜ୍ୟୋତିପୁଞ୍ଜ ଦେଖି
ନିରେଖିଲା କୁତୂହଳେ,

ଜମେ ଜମେ ଶିଖା ବଢ଼ନ୍ତେ ଜାଣିଲ୍ଲ
ଆମଙ୍କୁ ଜୁଟେ ସେ ଆନ,
ଆନନ୍ଦେ ଗଦ୍‌ଗଦ ହୋଇ ବୃଦ୍ଧ କହେ
ଧନ୍ୟ ଧନ୍ୟ ଭଗବାନ !"

ଗଙ୍ଗେଶ୍ୱରଙ୍କ ବଡ଼ପୁଅ ଚନ୍ଦ୍ରା ନଦୀର ସମୟରେ କଞ୍ଚୁକୀ ଦେଖିଛି ଧ୍ରୁବତାରା ତଳେ ଅଗ୍ନିଶିଖାର ସଙ୍କେତ । କବିବର ରାଧାନାଥ "ପୁଣ୍ୟ ଧ୍ରୁବତାରା ତଳେ" ଅଗ୍ନିଶିଖାର ସଙ୍କେତ ଦେଇ କାବ୍ୟର ବର୍ଣ୍ଣନାଭଙ୍ଗୀରେ ବୈଶିଷ୍ଟ୍ୟ ପ୍ରକାଶ କରିଛନ୍ତି । ଗଙ୍ଗେଶ୍ୱର ଯୁଦ୍ଧ କ୍ଷେତ୍ରରେ ଜୟଲାଭ କରିବାର ସଙ୍କେତ ଅଗ୍ନିଶିଖା, ଠିକ୍ ସେହିପରି ଇତିମଧ୍ୟରେ ଘଟି ଯାଇଥିବା ସମସ୍ତ ଘଟଣାର ସତ୍ୟତା ପ୍ରକାଶ ନିମିତ୍ତ ସୂଚନା ଦେବା ପାଇଁ କବି "ପୁଣ୍ୟ ଧ୍ରୁବତାରା" ର ଉଲ୍ଲେଖ କରି ଅଛନ୍ତି । କଞ୍ଚୁକୀ ପ୍ରଥମେ ଅଗ୍ନିଶିଖା ଦେଖି ରାଣୀଙ୍କୁ ସମ୍ବାଦ ଦେବାକୁ ଯିବା ସମୟରେ ଦେଖିଛି କୌଶଲ୍ୟାଙ୍କର ଛାୟାମୂର୍ତ୍ତି । କଞ୍ଚୁକୀ ଅଗ୍ନିଶିଖର ସଙ୍କେତ ପାଇବା ପରେ ଅଗ୍ନିଶିଖାର ମାର୍ଗତା ଚକ୍ଷୁରେ ନାଚି ଉଠିଛି । ଏହି ପ୍ରସଙ୍ଗରେ କବି ଉଜ୍ଜଳ ପ୍ରକୃତିର ଚିତ୍ର ଅଙ୍କନ କରିବାର ସୁଯୋଗ ପାଇଛନ୍ତି ।

ଦୁଇବର୍ଷ ତଳେ କଞ୍ଚୁକୀ ଯୁଦ୍ଧ କ୍ଷେତ୍ରରୁ ଫେରି ପ୍ରାସାଦ ଚୂଳରେ ବସି ଅଗ୍ନିଶିଖାର ସଙ୍କେତକୁ ଅପେକ୍ଷା କରିଅଛି । ପୂର୍ବରୁ ବିଜୟ ବାର୍ତ୍ତା ଅଗ୍ନିଶିଖା ଦ୍ୱାରା ଆସିବା କଥା କଞ୍ଚୁକୀ ଜାଣିଥିଲା । ଅଗ୍ନିଶିଖା ଦ୍ୱାରା ବିଜୟବାର୍ତ୍ତା ପ୍ରେରଣକୁ କବି ଆସ୍‌କାଇଲସ୍‌ଙ୍କ ଠାରୁ ଗ୍ରହଣ କରିଥିଲେହେଁ ସେଥିରେ ମୌଳିକତା ପ୍ରଦର୍ଶନ କରିଅଛନ୍ତି । ଗ୍ରୀକ୍ ପୁରାଣରେ ଅଗ୍ନିଶିଖା ଦ୍ୱାରା ସମ୍ବାଦ ପ୍ରେରଣର ଉଦ୍ଦେଶ୍ୟ ଭିନ୍ନ ଭାବରେ ରହିଛି । ସେଠାରେ କ୍ଲାଇଟେମେନ୍‌ଷ୍ଟ୍ରା ଏଜିସ୍ଥାସ୍‌ଙ୍କ ସହିତ ଷଡ଼ଯନ୍ତ୍ର କରିଛନ୍ତି ଯେ ଆଗାମେମ୍‌ନନ୍ ଓ କାସାଣ୍ଡ୍ରା ଆସି ପହଞ୍ଚିବା ସଙ୍ଗେ ସଙ୍ଗେ ସେମାନଙ୍କୁ ହତ୍ୟାକରିଦେବ । ସେମାନେ କେତେବେଳେ ଆସି ପହଞ୍ଚିବେ ଠିକ୍ ନାହିଁ । ତେଣୁ ସେମାନଙ୍କ ଆସିବା ଖବର ପାଇବାପାଇଁ ଅଗ୍ନିଶିଖା ସଙ୍କେତ ଉଦ୍ଦିଷ୍ଟ । ଗ୍ରୀକ୍ ପୁରାଣର ବର୍ଣ୍ଣନା ଅନୁସାରେ, "Clytaemnestra therefore conspired with Aegisthus to kill both Agamemnon and Casandra

Fearing. however, that they might arrive unexpectedly, she wrote Agamemnon a letter asking him to light a beacon on mount Ida when Troy fell, and herself arranged for a Chain of fires to relay his signal to Argolis by way of Cape Hermaeum on Lemnos, and the mountains of Athos, Macistus, Messapius, Cithaeron; Aegiplanctus and Arachne. A watchman was also stationed on the roof of the place at Mycenae. a faithful servant of Agamemnon's, who spent one whole year, crouched on his elbows like a dog, gazing towards Mount Arachne and filled with gloomy forebodings. At last one dark night, he saw the distant beacon blaze and ran to wake Clytaemnestra. She celebrated the news with sacrifices of thanksgiving, though, indeed, she would now have liked the siege of Troy to last for ever Aegisthus thereupon posted one of his own men in a watch-tower near the sea, promising him two gold talents for the first news of Agamemnon's landing,"

ଆଗାମେମ୍‌ନନ୍‌ଙ୍କ ଫେରୁଥିବା ଖବର କ୍ଲାଇଟେମେନ୍‌ଷ୍ଟ୍ରା ଓ ଏଜିସ୍ଥାସ୍‌ଙ୍କ ପକ୍ଷରେ ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ । ଅଗ୍ନିଶିଖା ସାହାଯ୍ୟରେ ଟ୍ରୟ୍‌ର ପତନ ସମ୍ବାଦ ଆସିବା କ୍ଲାଇଟେମେନ୍‌ଷ୍ଟ୍ରାଙ୍କ ଛଳ ଦ୍ୱାରା ଆୟୋଜିତ ହୋଇଅଛି । ତେଣୁ ଗ୍ରୀକ୍ ପୂର୍ବରେ ଏହି ସମ୍ବାଦ ପ୍ରେରଣ ମୂଳରେ ଉଦ୍ଦେଶ୍ୟ ନିହିତ । ଏପରିକି, କେଉଁ ପଥଦେଇ ଅଗ୍ନିଶିଖାର ସଙ୍କେତ ଆସିବ ସେକଥା ମଧ୍ୟ କ୍ଲାଇଟେମେନ୍‌ଷ୍ଟ୍ରା ସୂଚିତ କରିଛନ୍ତି ।

ଆଗାମେମ୍‌ନନ୍ ନାଟକରେ ଅଗ୍ନିଶିଖା କେଉଁ ପଥଦେଇ ଆସିଲା ଆସ୍‌କାଇଲସ୍ ସେକଥା କ୍ଲାଇଟେମେନ୍‌ଷ୍ଟ୍ରାଙ୍କ ମୁଖରେ ପ୍ରକାଶ କରିଛନ୍ତି ।

"Hephaestus. He from Ida shot the spark,
And flaming straightway leapt the courier fire
From height to height to the Hermaean rock
Of Lemnos, first from Ida; from the isle
The Athoan steep of mighty Jove received
The beaming beacon; thence the forward strength
Of the far-travelling lamp strode gallantly
Athwart the broad sea's back the flaming pine
Rayed out a golden glory like the sun,
And wringed the messege to Macistu's watch tower
There the wise watch man, guiltless of delay,
Lent the sleepless courier further speed;
And the Messapian station hailed the torch
Far-beamuing o'er the floods of the Euripus.
There the grey heath lit the responsive fire,
Speeding the portioned message; waxing strong,
And nothing dulled across Asopu's plain
The flame swift darted like the twinkling moon,
And on Cithaerou's rocky heights awaked
A new receiver of the wandering light.
The far-sent ray by the faithful watch not spurned,
With bright addition journeying, bounded o'er
Gorgopup's lake and Aegiplanctu's mount,
Weaving the chain unbroken, Hence it spread
Not scant in strength, a mighty, beard of flame
Flaring across the headlands that look down
On the Saronic gulf. Speeding its march,
It reached the neighbour—station of our city,
Arachne's rocky steep, and thence the halls
Of the Atridae recognised the signal,
Light not unfathered by Idaean fire.
Such the bright train of my torch-bearing heralds,

Each from the other fired with happy news,
And last and first was victor in the race.
Such the fair tidings that my lord hath sent,
A sign that Troy hath fallen. "

ଆଗାମେମ୍ନନ୍ ନାଟକରେ କ୍ଲାଇଟେମେନ୍ଷ୍ଟ୍ରାଙ୍କ ମୁଖରେ ଅଗ୍ନିଶିଖାର ପଥ ଯେପରି ଭାବରେ ପ୍ରକାଶ ପାଇଅଛି ପାବଂଶ କାବ୍ୟରେ କଞ୍ଚୁକୀ ମୁଖରେ ସେହିପରି ପ୍ରକାଶ ପାଇଅଛି । ମାତ୍ର କବିବର ରାଧାନାଥ ଚନ୍ଦ୍ରପୁରଠାରୁ ନୀଳାଚଳ ପର୍ଯ୍ୟନ୍ତ ମାର୍ଗର ବର୍ଣ୍ଣନାକୁ ପ୍ରକୃତି ବର୍ଣ୍ଣନାର ଦକ୍ଷତା ହେତୁ ଅତ୍ୟନ୍ତ ଆକର୍ଷଣୀୟ କରିଅଛନ୍ତି । କଞ୍ଚୁକୀ ଯେତେବେଳେ ପ୍ରାସାଦ ଉପରେ ଥାଇ ଅଗ୍ନିଶିଖାର ସଙ୍କେତ ଦେଖିପାରିଛି ସେତେବେଳେ ତା ମନରେ ହଠାତ୍ ଆନନ୍ଦ ଭାବ ଜାତ ହେବା ସ୍ୱାଭାବିକ । ମାତ୍ର ସେ ଆଲୋକଶିଖା ଦେଖିବା କ୍ଷଣି ଯାଇ ରାଣୀଙ୍କ ସମ୍ମୁଖରେ ବିଜୟବାର୍ତ୍ତା ପ୍ରକାଶ ନକରି ଆଲୋକଶିଖାର ଗତିପଥର ବର୍ଣ୍ଣନା କରିବାରେ କାବ୍ୟରେ ପରିସ୍ଥିତିଗତ ସ୍ୱାଭାବିକତା ରକ୍ଷିତ ହୋଇ ପାରି ନାହିଁ ବୋଲି କୁହା ଯାଇ ପାରେ ।

ଉତ୍ତର ତଟରେ ଧ୍ରୁବତାରା ତଳେ କଞ୍ଚୁକୀ ଆଲୋକଶିଖା ଦେଖିବା ପରେ ତାର ଦୀର୍ଘକାଳ ପ୍ରତୀକ୍ଷାର ଶେଷ ଓ ବିଜୟବାର୍ତ୍ତା ଲାଗି ଆନନ୍ଦିତ ହେବା ଯେତିକି ସ୍ୱାଭାବିକ, ହଠାତ୍ କୌଶଲ୍ୟାଙ୍କର ସ୍ୱପ୍ନମୂର୍ତ୍ତି ଦେଖି ଖିନ୍ନ ହେବା ତା ପକ୍ଷରେ ସେତିକି ସ୍ୱାଭାବିକ । କୌଶଲ୍ୟାଙ୍କର ସ୍ୱପ୍ନମୂର୍ତ୍ତି ଦେଖିବାପରେ କଞ୍ଚୁକୀର ମନୋରାଜ୍ୟରୁ ଆନନ୍ଦର ଉଦ୍ଦୀପନା ସତେ ଯେପରି ଉଭେଇ ଯାଇଅଛି । ତେଣୁ ସେ ରାଣୀଙ୍କ ସମ୍ମୁଖରେ ବିଜୟବାର୍ତ୍ତାକୁ ସଂକ୍ଷେପରେ ପ୍ରକାଶ କରି ସ୍ୱପ୍ନମୂର୍ତ୍ତି ଦର୍ଶନ କଥା ପ୍ରକାଶ କରିବାକୁ ଅନୁମତି ଭିକ୍ଷା କରିଅଛି । ରାଣୀ ଯେତେବେଳେ ଦୁଇଟିଯାକ କଥା କଞ୍ଚୁକୀ ମୁହଁରୁ ଶୁଣିଛନ୍ତି ସେତେବେଳେ ତାଙ୍କ ମନ ମଧ୍ୟରେ ହର୍ଷ ଅପେକ୍ଷା ବିଷାଦ ଅଧିକ ସ୍ଥାନ ଅଧିକାର କରିଅଛି । ରାଣୀ ମନକଥା ମନରେ ରଖି ରାତିରେ ସ୍ୱପ୍ନମୂର୍ତ୍ତିକୁ ଭେଟିବାଲାଗି ବ୍ୟସ୍ତ ହୋଇ ପଡ଼ିଛନ୍ତି ।

ରାତିରେ ରାଣୀ କୌଶଲ୍ୟାଙ୍କର ସ୍ୱପ୍ନମୂର୍ତ୍ତିକୁ ଦେଖିଛନ୍ତି ଏବଂ କୌଶଲ୍ୟାଙ୍କର ସମସ୍ତ ବୃତ୍ତାନ୍ତ ଶୁଣିଛନ୍ତି । ରାଣୀଙ୍କ ମନର ଅବସ୍ଥା

ଚିଠିବେଳେ ନଥିଲେ ନଅରେ । ସେତିକିବେଳେ ରାଣୀଙ୍କ ମୁହଁରୁ ବାହାରିଛି :

"ଆହା, ମନମୋର ଡାକୁଥିଲା ଯାହା
ସେହି ତା ଘଟିଲା ଫଳେ,
ଅବଶେ ଏ ଶଶୀ- 'ଜଳା' ମଣ୍ଡଳରୁ
କଷଣ-ରାହୁ-କବଳେ ।"

କବିବର ରାଧାନାଥ ଏଠାରେ ରାଣୀଙ୍କ ମୁଖରେ ତାଙ୍କର ବହୁଦିନର ସନ୍ଦେହକୁ ପ୍ରକାଶ କରିଛନ୍ତି । କଞ୍ଚୁକୀ ଯେତେବେଳେ ଯୁଦ୍ଧକ୍ଷେତ୍ରରୁ ଫେରିଆସିଲା ସେତେବେଳେ ରାଣୀ ତାର ମୁଖରୁ କୌଶଲ୍ୟାଙ୍କ ବିଷୟ ଶୁଣିଥିବାର ଅନୁମାନ କରାଯାଇପାରେ । ରାଣୀ ସବୁ ଶୁଣିଲେ, ମାତ୍ର କୌଶଲ୍ୟାଙ୍କର ଏହି ଦଶା ପାଇଁ କିଏ ଦାୟୀ ସେକଥା ଜାଣିପାରିଲେ ନାହିଁ । ଗଙ୍ଗେଶ୍ୱର ଯେତେବେଳେ ଯୁଦ୍ଧକ୍ଷେତ୍ରକୁ ଯାଇଛନ୍ତି ସେତେବେଳେ ତାଙ୍କର ଶିବିରରେ ସୈନ୍ୟସାମନ୍ତ ଅଛନ୍ତି; ତେଣୁ କୌଣସି ବାହାର ଲୋକ ଏପରି କାର୍ଯ୍ୟ କରିବା ସମ୍ଭବ ନୁହେଁ । ରାଜାଙ୍କ ସହିତ କୌଣସି ସୈନ୍ୟ ବା ଅନ୍ୟ ଲୋକ ଏପରି ଆଚରଣ କରି ନପାରନ୍ତି । ଗଙ୍ଗେଶ୍ୱରଙ୍କର ଚରିତ୍ର ବିଷୟରେ ରାଣୀଙ୍କର କେବେହେଲେ ଭୁଲ୍‌ଧାରଣା ନଥାଇ ପାରେ । ତେଣୁ ସେ ମନମଧ୍ୟରେ ଏଥିପାଇଁ ଗଙ୍ଗେଶ୍ୱରଙ୍କୁ ଦାୟୀ କରିଛନ୍ତି । ଏପରି ଦାୟୀ କରିବାର ମଧ୍ୟ ସ୍ୱାଭାବିକତା ଅଛି । ଏକଜାତଙ୍କ ସହିତ ଅନ୍ନପୂର୍ଣ୍ଣାଙ୍କର ପରିଣୟ ପ୍ରସ୍ତାବ ଯେତେବେଳେ ଆଗତ ହୋଇଛି ସେତେବେଳେ ଗଙ୍ଗେଶ୍ୱର ନିଜେ ଅନ୍ନପୂର୍ଣ୍ଣାଙ୍କୁ ବିବାହ କରିବାଲାଗି ଇଚ୍ଛା ପ୍ରକାଶ କରିଛନ୍ତି । ଗଙ୍ଗେଶ୍ୱରଙ୍କ ଚରିତ୍ରକୁ ଏହି ଦୃଷ୍ଟିରୁ ବିଚାର କରାଯାଇ ପାରେ । ତେଣୁ କୌଶଲ୍ୟାଙ୍କର ଦୁର୍ଦ୍ଦଶାର କାହାଣୀ ଶୁଣିବା ପରେ ରାଣୀ ଯାହା କହିଅଛନ୍ତି ତାହା ହେଉଛି ଗଙ୍ଗେଶ୍ୱରଙ୍କ ପ୍ରତି ତାଙ୍କର ସନ୍ଦେହ । ସେହି ସନ୍ଦେହ ସତ୍ୟ ବୋଲି ଜଣାପଡ଼ିଅଛି । ପତ୍ନୀ ଭାବରେ ପାର୍ବତୀଙ୍କ ଚରିତ୍ରର ଯାହା ବୈଶିଷ୍ଟ୍ୟ ତାହା ଏହି ସମୟଠାରୁ ଉଦ୍ଭେଦ ଯାଇଛି । ମାତା ଭାବରେ ତାଙ୍କ ଚରିତ୍ରର ମହାନୀୟତା ଏହିଠାରୁ ଆତ୍ମ ପ୍ରକାଶ କରିଅଛି । ନାରୀ ଭାବରେ ଅନ୍ନପୂର୍ଣ୍ଣା ନିଜର ଅନ୍ତରର କଥା ପ୍ରକାଶ କରିଛନ୍ତି—

"ରଜ ରାଣୀ ବୋଲି ଭାଗ୍ୟବନ୍ତୀ ମୋତେ
ବୋଲନ୍ତି ଜଗତେ ପୁଣ,
ମୋହୋଭାଗ୍ୟେ ଈର୍ଷା ବଢ଼ ଦହୁଛି ମୋ
ହେବେ କେଉଁ ଚଣ୍ଡାଳୁଣୀ ?"

ସର୍ବଶେଷ ପଦରେ କବି ଜଣେ ପ୍ରଥମ ନାରୀର ମର୍ମ ବେଦନାକୁ ହିଁ ପ୍ରକାଶ କରିଅଛନ୍ତି । ଧନସମ୍ପଦ, ଐଶ୍ୱର୍ଯ୍ୟ ଯାହା ଥାଉ ନା କାହିଁକି ନାରୀ ହୃଦୟରେ ନା, ... ସେହି ଠାବ କରେ । ଗଙ୍ଗେଶ୍ୱରଙ୍କ ଚରିତ୍ର ସ୍ଖଳନ, ତାହା ପୁଣି ନିଜ କନ୍ୟାକୁ ନେଇ — ଏପରି ପରିସ୍ଥିତିରେ ପାର୍ବତୀଙ୍କର ଭାଗ୍ୟକୁ ଧିକ୍କାର କରାଯାଇଛନ୍ତି । ଆଉ କଣ ବା ଉପାୟ ଥିଲା ? ଗଙ୍ଗେଶ୍ୱର ସେତେବେଳେ ନଗର ମଧ୍ୟକୁ ପ୍ରବେଶ କଲେ ସେତେବେଳେ କଞ୍ଚୁକୀ ରାଣୀଙ୍କ ନିକଟରେ ଥାଇ ନଗର ରାସ୍ତାରେ ଆସୁଥିବା ରଜା ଓ ସେମାନଙ୍କ ... ପରିଚୟ ରାଣୀଙ୍କୁ ପରିଚିତ କରାଇଦେଉଅଛି । କୌଣସି ଏକ ସ୍ୱୟମ୍ବର ସଭାରେ ସଖୀ ସେମାନଙ୍କୁ ନେଇ ସଭାରେ ଉପସ୍ଥିତ ଥିବା ରାଜାମାନଙ୍କୁ ପରିଚୟ କରାଇବା ସମୟରେ ଯେପରି ବର୍ଣ୍ଣନା କରେ, ଏହି ବର୍ଣ୍ଣନା ତାହାର ଅନୁରୂପ ହୋଇଅଛି ବୋଲି କୁହାଯାଇପାରେ । କଞ୍ଚୁକୀ ସମସ୍ତ ରାଜାଙ୍କର ପରିଚୟ ପ୍ରଦାନ କରିବା ପରେ ରାଣୀ ଗଙ୍ଗେଶ୍ୱରଙ୍କ ଐଶ୍ୱର୍ଯ୍ୟରେ ମୁଗ୍ଧ ହୋଇ ନିଜକୁ ଭାଗ୍ୟବତୀ ମନେକଲେ । କବିବର ରାଧାନାଥ ଲେଖିଛନ୍ତି, "ରାଣୀ ସ୍ୱାମୀଙ୍କର ବିଭବ ଦେଖିଲେ କିନ୍ତୁ ସେହି ସଙ୍ଗେ ସଙ୍ଗେ ସାମାନ୍ୟ କୃଷକ ସ୍ତ୍ରୀମାନଙ୍କୁ ମଧ୍ୟ ଆପଣା ଅପେକ୍ଷା ଭାଗ୍ୟବତୀ ମନେଲେ ।" ପାର୍ବତୀଙ୍କର ନାରୀ ହୃଦୟ ଏଠାରେ ହାହାକାର କରି ଉଠିଛି ।

ଅନ୍ନପୂର୍ଣ୍ଣାଙ୍କଠାରୁ ରାଣୀ ସବୁକଥା ଶୁଣିବାପରେ ତାଙ୍କ ମନ ଅତ୍ୟନ୍ତ ବିକ୍ଷୁବ୍ଧ ହୋଇ ପଡ଼ିଛି । ରାଣୀ କୌଶଲ୍ୟାଙ୍କ ଦୁର୍ଦ୍ଦଶା ଶୁଣିବା ପରେ କେତେକ ପରିମାଣରେ ସହାନୁଭୂତି ଦେଇଥିଲେ, ଅନ୍ନପୂର୍ଣ୍ଣାଙ୍କ ଦୁର୍ଦ୍ଦଶା ଶୁଣିବା ପରେ ତାହା ବହୁଗୁଣରେ ବୃଦ୍ଧି ପାଇଲା । ରାଣୀ ଯେତେବେଳେ କଥାଗୁଡ଼ିକୁ ଆଣି ରଖିଲେ, ସେତେବେଳେ ସେ ପ୍ରତିହିଂସା ଲାଗି ବଦ୍ଧ-ପରିକର ହେଲେ । କୌଶଲ୍ୟାଙ୍କ ପ୍ରତି ହୋଇଥିବା ଅତ୍ୟାଚାରର ପ୍ରତିଶୋଧ କେବଳ ସେ ନେବେ ନାହିଁ, ଏହାଦ୍ୱାରା ସେ ଅନ୍ନପୂର୍ଣ୍ଣାଙ୍କର ସତୀତ୍ୱ ରକ୍ଷା କରିପାରିବେ । ପାର୍ବତୀଙ୍କ ଭଳି ନାରୀ ଏହାଠାରୁ ଅଧିକ କ'ଣ ସିଦ୍ଧାନ୍ତ ବା

"Clytaemnestra greeted her travel—worn husband with every appearance of delight, unrolled a purple carpet for him, and led him to the bath-house, where slave-girls had prepared a warm bath; but Casandra remained outside the palace, caught in a Prophetic trance, refusing to enter and crying that she smelt blood, and that the curse of Thyestes was heavy upon the dining hall, When Agamemnon had washed himself and set one foot out of the bath,eager to partake of the rich banquet now already set on the tables, Clytaemnestra came forward, as if to wrap a towel about him, but instead threw over his head a garment of net, woven by herself, without either neck or sleve—holes. Entangled in this, like a fish, Agamemnon perished at the hands of Aegisthus, who struck him twice with a two—aged sword. He fell back, into the silver—sided bath, where Clytaemnestra avenged her wrongs by beheading him with an axe. She then ran out to kill Casandra with the same weapon, not troubling first to close her husband's eyelids or mouth; but wiped off on his hair the blood which had splashed her, to signify that he had braught about his owu death."

ଆଗାମେମ୍‌ନନ୍‌ଙ୍କର ମୃତ୍ୟୁ ଯେପରି ଭାବରେ ଘଟିଅଛି, ଗଙ୍ଗେଶ୍ୱରଙ୍କ ମୃତ୍ୟୁ ସେପରି ଭାବରେ ଘଟିନାହିଁ । ପାଷଣ୍ଡ ନିଜେ ଗଙ୍ଗେଶ୍ୱରଙ୍କୁ ହତ୍ୟାକରିଛନ୍ତି, ଏବଂ ତାହା ବଧି ନିର୍ଦ୍ଦିଷ୍ଟ ବୋଲି କଳ୍ପ ରଚନା ଦେଇଛନ୍ତି । ଆଗାମେମନନ୍ ଗୋଟିଏ ନୀଳବର୍ଣ୍ଣର ଗାଳିଚା ଉପରେ ବୁଲିଛନ୍ତି । ନୀଳବର୍ଣ୍ଣର ଗାଳିଚାଟି ସେଠାରେ ରକ୍ତର ସୂଚକ । କେବଳ ସେତିକ ନୁହେଁ, କାସାଣ୍ଡ୍ରା ଙ୍କର

ଆହ୍ୱାଣ ପାଇଁ ଚୀତ୍କାର କରି ଉଠିଛି । କ୍ଲାଇଟେମେନ୍ ଷ୍ଟ୍ରା ଆଗାମେମ୍-ନନ୍‌ଙ୍କୁ ଗୋଟିଏ ଜାଲଆକୃତିରେ ବୁଣାଯାଇଥିବା ପୋଷାକରେ ବାନ୍ଧି ପକାଇଛନ୍ତି, ସ୍ନାନ ମାର୍ବଲ ଦୋଳଭଉତ୍ସବର ଆଡ଼ମ୍ବର ମଧ୍ୟରେ କୌତୁକରେ ଗଙ୍ଗେଶ୍ୱରଙ୍କର ହସ୍ତପଦାଦି ଫୁଲମାଳରେ ବାନ୍ଧି ଦେଇଛନ୍ତି । ଏହା ଅତ୍ୟନ୍ତ ସ୍ୱାଭାବିକ ହୋଇଅଛି । କବିବର ରାଧାନାଥ ଗଙ୍ଗେଶ୍ୱରଙ୍କ ମୃତ୍ୟୁ ପୂର୍ଣ୍ଣିମା ରାତିରେ ଘଟିଥିବାର ବର୍ଣ୍ଣନା ଦେଇଛନ୍ତି । ଏଥିପାଇଁ କବି ଗ୍ରୀକ୍ ପୁରାଣର ଉପାଖ୍ୟାନରୁ ସୂଚନା ଗ୍ରହଣ କରି ଅଛନ୍ତି । ଗ୍ରୀକ୍ ପୁରାଣର କଥାବସ୍ତୁ ଅନୁସାରେ ମାସର ତ୍ରୟୋଦଶ ଦିନ ଆଗାମେମ୍‌ନନ୍‌ଙ୍କର ହତ୍ୟାକାଣ୍ଡ ଘଟିଥିଲା ! ପୁଣି ଅନ୍ୟଏକ ସୂତ୍ରରୁ ଜଣାଯାଏ ଯେ ତାହା ମାସର ପୂର୍ଣ୍ଣିମାଦିନ ଘଟିଥିଲା । କବିବର ରାଧାନାଥ ତାଙ୍କ କାବ୍ୟର କଥାବସ୍ତୁକୁ ଦୋଳ ଦଶମୀଦିନ ଆରମ୍ଭ କରି ପୂର୍ଣ୍ଣିମାରେ ପରିସମାପ୍ତିରେ ପହଞ୍ଚାଇ ଅଛନ୍ତି । ଏହାଦ୍ୱାରା ତାଙ୍କର କାବ୍ୟବର୍ଣ୍ଣିତ ସମୟୁକ୍ରମ ରକ୍ଷିତ ହୋଇପାରି ଅଛି ।

କବି ପାଶ୍ଚାତ୍ୟ ସାହିତ୍ୟରୁ କଥାବସ୍ତୁ ଗ୍ରହଣ କରି ସ୍ୱଦେଶୀୟ ପରିପ୍ରେକ୍ଷୀରେ ଅତ୍ୟନ୍ତ ସତର୍କତାର ସହିତ ଉପସ୍ଥାପିତ କରିଅଛନ୍ତି । କ୍ଲାଇଟେମେନ୍ ଷ୍ଟ୍ରା ଏବଂ ପାର୍ବତୀଙ୍କ ଚରିତ୍ରରେ କବି ଆକାଶ ପାତାଳ ପ୍ରଭେଦ ସୃଷ୍ଟି କରି ଅଛନ୍ତି । କ୍ଲାଇଟେମେନ୍ ଷ୍ଟ୍ରାଙ୍କର ପତିହତ୍ୟା ଚକ୍ରାନ୍ତ ତାଙ୍କର ସମ୍ଭୋଗସର୍ବସ୍ୱ ଜୀବନ ପାଇଁ ଉଦ୍ଦିଷ୍ଟ । ପାର୍ବତୀଙ୍କର ପତିହତ୍ୟା ସମ୍ଭୋଗସର୍ବସ୍ୱ ଜୀବନର ନାଶ ନିମିତ୍ତ ଉଦ୍ଦିଷ୍ଟ । ପାର୍ବତୀ କୌଶଲ୍ୟା ଓ ଅନ୍ନପୂର୍ଣ୍ଣା -- ଏହି ତିନିଜଣ ନାୟିକାଚରିତ୍ର କବିଙ୍କ ଲେଖନୀରେ ଅତି ଅଦ୍ଭୁତ ଭାବରେ ଚିତ୍ରିତ । ପାର୍ବତୀ ସତୀ ସାଧ୍ୱୀ । ସେ ଅନ୍ୟାୟକୁ କେବେହେଲେ ପ୍ରଶ୍ରୟ ଦେଇ ନପାରନ୍ତି । ପତ୍ନୀ ଭାବରେ ସେ ଗଙ୍ଗେଶ୍ୱରଙ୍କର ଯଥେଚ୍ଛାଚାରିତାକୁ ସହି ନେବା ପାଇଁ ଉଚିତ ମନେ କରି ନାହାନ୍ତି । ଧରାବକ୍ଷରୁ ଏତେ ବଡ଼ ଅନ୍ୟାୟକୁ ଲୋପ କରିବା ପାଇଁ ସେ ପତିହତ୍ୟାର ଶପଥ ଗ୍ରହଣ କରି ତାହାକୁ କାର୍ଯ୍ୟରେ ପରିଣତ କରିଛନ୍ତି । କୌଶଲ୍ୟା ଏବଂ ଅନ୍ନପୂର୍ଣ୍ଣାଙ୍କର ଦୁର୍ଦ୍ଦଶା ଶୁଣି ନାରୀତ୍ୱ ପ୍ରତି ଗଙ୍ଗେଶ୍ୱରଙ୍କର ହୀନ ଲାଞ୍ଛନାକୁ ସେ ଦୃଢ଼ ହସ୍ତରେ ଦମନ କରିବାପାଇଁ କାର୍ଯ୍ୟପନ୍ଥା ଗ୍ରହଣ କରିଛନ୍ତି ।

ତାଙ୍କ କାର୍ଯ୍ୟକୁ କେତେକ ଆଲୋଚକ ଯଥାର୍ଥ ନୁହେ ବୋଲି ମତ ପ୍ରଦାନ କରନ୍ତି । ମାତ୍ର କବିବର ରାଧାନାଥ ଗଙ୍ଗେଶ୍ୱରଙ୍କର କାର୍ଯ୍ୟ କଳାପକୁ ଏପରି ଭାବରେ ବର୍ଣ୍ଣନା କରିଛନ୍ତି ଯେ, ପାର୍ବତୀ କାବ୍ୟର ପାଠକ କାବ୍ୟ ଓ ତାହାର ଉତ୍ତରାର୍ଦ୍ଧ ପାଠ କରିସାରିବା ବେଳକୁ ଗଙ୍ଗେଶ୍ୱରଙ୍କ ଚରିତ୍ର ଯୋଗୁଁ ଅଧୀର ହୋଇ ପଡ଼େ । ପାର୍ବତୀ ଜନ୍ମ-ନାରୀ । ପିତୃହତ୍ୟା ତାଙ୍କର ମହାପାପ । ଯେଉଁ ଦେଶରେ ନାରୀ ପିତାର ଅମଙ୍ଗଳ ଚିନ୍ତା କରିପାରେ ନାହିଁ, ସବୁବେଳେ ଦେବଦେବୀଙ୍କୁ ଆରାଧନା କରେ ତାର ହାତରେ ଖଣ୍ଡା ଆଉ ମଥାରେ ସିନ୍ଦୁର ଯାବଜ୍ଜୀବନ ଶୋଭାପାଇବା ପାଇଁ ସେଦେଶର ନାରୀ ଭାବରେ ପାର୍ବତୀ ପିତୃହତ୍ୟା କଲେ କିପରି ? କବିବର ରାଧାନାଥ ଏଠାରେ ଗଙ୍ଗେଶ୍ୱରଙ୍କ ହତ୍ୟାପାଇଁ ପାର୍ବତୀଙ୍କୁ ନିମିତ୍ତମାତ୍ର ଭାବରେ ଉପସ୍ଥାପିତ କରିଛନ୍ତି । ଜଗତକର୍ତ୍ତା ଜଗନ୍ନାଥ ସତେ ଯେପରି ପାର୍ବତୀଙ୍କ ଦ୍ୱାରା ଏହି କାର୍ଯ୍ୟ ସଂଘଟିତ କରିଅଛନ୍ତି । ଦୋଷ ଅନୁଯାୟୀ ଦଣ୍ଡ ସବୁବେଳେ ନିର୍ଦ୍ଧାରିତ ହୋଇଥାଏ । କନ୍ୟାସହ ଯୌନସମ୍ପର୍କ ସ୍ଥାପନ କରି, କନ୍ୟା ଓ ତାର ଗର୍ଭଜାତ ସନ୍ତାନକୁ କଳବଳ କରି ହତ୍ୟା କରି ଗଙ୍ଗେଶ୍ୱର ପାପ ବା ଦୋଷର ସର୍ବାଧିକ ସୀମାକୁ ଅତିକ୍ରମ କରିଛନ୍ତି । ଏପରି ଦୋଷ ପାଇଁ ସତୀ ସ୍ତ୍ରୀ କର୍ତ୍ତୃକ ହତ୍ୟା ବ୍ୟତୀତ ଅନ୍ୟ କି ପ୍ରକାର ଦଣ୍ଡ କଳ୍ପନା କରାଯାଇ ପାରେ ?

କୌଶଲ୍ୟା ଚରିତ୍ରକୁ କବି ଯେପରି ଭାବରେ ଚିତ୍ରଣ କରିଛନ୍ତି ତାହା ମଧ୍ୟ ଆଲୋଚକମାନଙ୍କର ଦୃଷ୍ଟି ଆକର୍ଷଣ କରିଥାଏ । ରାଜଜେମା କୌଶଲ୍ୟା ଥିଲେ ଅତୁଳନୀୟା ସୁନ୍ଦରୀ । ରାଜା ଗଙ୍ଗେଶ୍ୱର ଯେତେବେଳେ ଯୁଦ୍ଧ କ୍ଷେତ୍ରକୁ ଯାତ୍ରାକଲେ ସେତେବେଳେ ତାଙ୍କୁ ସଙ୍ଗରେ ନେବାର ଯାଥାର୍ଥ୍ୟ କିଛି ନଥାଇପାରେ । ଯୁଦ୍ଧଯାତ୍ରା କରିବା ସମୟରେ ରାଜା ଜେମାଙ୍କୁ ସଙ୍ଗରେ ନେବା ଅପ୍ରାକୃତିକ । ତଥାପି କବିଙ୍କ ଉପରେ ଏଥିପାଇଁ ଆଗାମେମ୍‌ନନ୍ ନାଟକର ପ୍ରଭାବକୁ ସ୍ୱୀକାର କରିବାର କଥା । ରାଜା ଆଗାମେମ୍‌ନନ୍ ଇଫିଜିନିଆଙ୍କୁ ସଙ୍ଗରେ ନେବାଭଳି ରାଜା ଗଙ୍ଗେଶ୍ୱର କୌଶଲ୍ୟାଙ୍କୁ ସଙ୍ଗରେ ନେଇଛନ୍ତି । ପରିସ୍ଥିତିର ଚାପରେ ପଡ଼ି ଆଗାମେମ୍‌ନନ୍ ଇଫିଜିନିଆଙ୍କୁ ବଳି ଦେଇଥିଲେ । ମାତ୍ର ଗଙ୍ଗେଶ୍ୱରଙ୍କ ଉପରେ ସେପରି କୌଣସି ପରିସ୍ଥିତିର ଚାପ ନଥିଲା । ଗଙ୍ଗେଶ୍ୱର

ଏପରି ହୀନ ମନୋବୃତ୍ତି ପୋଷଣ କରିଥିଲେ ଯେ, ସେ ପ୍ରଥମେ ଘୋଷଣା କରିଥିଲେ, ଯେଉଁ ବୀର ଦାସପୁର ଦୁର୍ଗକୁ ଜୟକରି ତା ଉପରେ ବିଜୟ ପତାକା ଉଡ଼ାଇ ପାରିବ ତାହା ହାତରେ ସେ କୌଶଲ୍ୟାଙ୍କୁ ସମର୍ପଣ କରିବେ । ନିଜର ସୈନ୍ୟବାହିନୀରେ ଥିବା ସେନାପତିଙ୍କୁ ଏପରି ପ୍ରଲୋଭନ ଦେଖାଇବା କେବେବି ରାଜୋଚିତ ଆଦର୍ଶ ହୋଇ ନପାରେ । ରାଜାଙ୍କର ଏହି ଘୋଷଣା ଶୁଣି କୌଶଲ୍ୟା ବୁଝିପାରିଥିଲେ ଯେ ରାଜା କେଉଁ ଉଦ୍ଦେଶ୍ୟରେ ତାଙ୍କୁ ସଙ୍ଗରେ ଯୁଦ୍ଧକ୍ଷେତ୍ରକୁ ଆଣିଛନ୍ତି । କୌଶଲ୍ୟା ସିନା ଏତିକି ବୁଝିଲେ, ମାତ୍ର ଗଙ୍ଗେଶ୍ୱରଙ୍କ ହୀନ ମନୋବୃତ୍ତି ଏତିକିରେ ସୀମିତ ନରହି ନିଜ କନ୍ୟାକୁ ଉପଭୋଗ କରିବା ପର୍ଯ୍ୟନ୍ତ ଗତି କରିଛି । ତାପରେ କୌଶଲ୍ୟା ବନ୍ଦିନୀ ଅବସ୍ଥାରେ କାଳାତିପାତ କରିଛନ୍ତି ଓ ପୁତ୍ର-ସନ୍ତାନର ଜନନୀ ହୋଇଛନ୍ତି । ରାଜା ଯେତେବେଳେ କୌଶଲ୍ୟାଙ୍କୁ ତାଙ୍କ ପୁତ୍ର ସହିତ ଧଉଳ ପାହାଡ଼କୁ ପଠାଇଲେ ସେତେବେଳେ ଅହଲ୍ୟା ସେଠାକୁ ଯାଇଛନ୍ତି । କୂପ ମଧ୍ୟରେ ପଡ଼ି ନିଜ ଶିଶୁ ପୁତ୍ରର ଶବ ଭକ୍ଷଣ କରିଛନ୍ତି ଓ ଶେଷରେ ମୃତ୍ୟୁ ମୁଖରେ ପଡ଼ିଛନ୍ତି । କୌଶଲ୍ୟାଙ୍କର ଆଚରଣ ପଢ଼ିଲେ ମନେହୁଏ, ଜୀବନ ପ୍ରତି ତାଙ୍କର ମମତା ଥିଲା ଅତୁଳ । ନିଜର ସତୀତ୍ୱ ନଷ୍ଟ ହେଲା, ସେ ଅବୈଧ ସନ୍ତାନର ଜନନୀ ହେଲେ, ତଥାପି ସେ ଆତ୍ମହତ୍ୟା କରିପାରିଲେ ନାହିଁ । କୌଶଲ୍ୟା ଯେବେ ନିଜେ ଆତ୍ମହତ୍ୟା କରିଥାଆନ୍ତେ ତେବେ ତାଙ୍କୁ ନେଇ ଧଉଳ ପାହାଡ଼ର ଏକ କୂପମଧ୍ୟରେ ପକାଇବାର କାର୍ଯ୍ୟକ୍ରମ ଗଙ୍ଗେଶ୍ୱର ଗ୍ରହଣ କରି ନଥାନ୍ତେ । ଜୀବନ ପ୍ରତି କୌଶଲ୍ୟାଙ୍କର ମମତା ତାଙ୍କ ଚରିତ୍ରର ତ୍ରୁଟି ବୋଲି କୁହାଯାଇ ପାରେ ।

ସତୀତ୍ୱ ନଷ୍ଟହେବା ପରେ, ଅବୈଧ ସନ୍ତାନର ଜନନୀ ହେବା ପରେ ମଧ୍ୟ କୌଶଲ୍ୟା ଚାହୁଁଥିଲେ ବଞ୍ଚିବାକୁ, କିନ୍ତୁ ଅନ୍ନପୂର୍ଣ୍ଣାଙ୍କର ଚରିତ୍ର ଥିଲା ସଂପୂର୍ଣ୍ଣ ପୃଥକ । ଅନ୍ନପୂର୍ଣ୍ଣା ରାଜକୁମାର ଏକଜାତଙ୍କୁ ମନେମନେ ପତିରୂପରେ ବରଣ କରିବା ପରେ ଅନ୍ୟ ପୁରୁଷର ଚିନ୍ତା କରିନାହାନ୍ତି । ଗଙ୍ଗେଶ୍ୱର ତାଙ୍କୁ ବନ୍ଦିନୀ କରି ନୀଳାଚଳ ଧାମକୁ ଆଣିଲେ । ତାଙ୍କୁ ବେଶଭୂଷାରେ ସଜ୍ଜିତକରି ମନ୍ଦିର ଉଦ୍ୟାନର ବିଳାସ କକ୍ଷରେ ରଖିବାକୁ ଆଦେଶ ଦେଇ ଗଙ୍ଗେଶ୍ୱର ଦୋଳଉତ୍ସବ ପାଳନ କରିବାକୁ ଗଲେ । ଅନ୍ନପୂର୍ଣ୍ଣା ଜାଣିପାରିଲେ ଯେ ଗଙ୍ଗେଶ୍ୱର ଦୋଳଉତ୍ସବରୁ ଫେରିବାପରେ ତାଙ୍କର

ଦଶା କଣ ହେବ । ତେଣୁ ସେ ଗଙ୍ଗେଶ୍ୱରଙ୍କର ଅଙ୍କଶାୟିନୀ ହେବା ପୂର୍ବରୁ ବିଷପାନ କରି ଆତ୍ମହତ୍ୟା କରିଛନ୍ତି । ସତୀତ୍ୱ ରକ୍ଷା କରିବାକୁ ଯାଇ ଅନ୍ନପୂର୍ଣ୍ଣା ଜୀବନର ମମତାକୁ ପାଦରେ ଆଡ଼େଇ ଦେଇଛନ୍ତି । ଏଠାହିଁ ଅନ୍ନପୂର୍ଣ୍ଣାଙ୍କର ଚରିତ୍ରର ମହତ୍ତ୍ୱ।

ପାର୍ବତୀଙ୍କର ପତିହତ୍ୟା କୌଣସି ଏକ ଆକସ୍ମିକ ସିଦ୍ଧାନ୍ତର ଫଳ ନୁହେଁ । କାବ୍ୟର କଥାବସ୍ତୁରେ ଏହାର କ୍ରମପରିଣତି ପ୍ରକାଶ ପାଇଅଛି । ପାର୍ବତୀ ଯେତେବେଳେ କୌଶଲ୍ୟାଙ୍କର ଚରିତ୍ରସ୍ଖଳନ କଥା ଶୁଣିଲେ ସେତେବେଳେ ସେ ଦୁଃଖିତା ହେଲେ ଏବଂ କୌଶଲ୍ୟାଙ୍କର ଏହି ଦୁର୍ଦ୍ଦଶା ପାଇଁ କିଏ ଦାୟୀ ତାହା ଜାଣିପାରିଲେ ନାହିଁ । ସେଥିପାଇଁ ବ୍ୟଥିତ ମନରେ ସେ ଗରୁଡ଼ସ୍ତମ୍ଭ ନିକଟରେ ଅଧାପଡ଼ିଲେ । କୌଶଲ୍ୟା ନିଜେ ଆସି ତାଙ୍କ କଥା କହିବେ ବୋଲି ପାର୍ବତୀ ସ୍ୱପ୍ନାଦେଶ ପାଇଲେ । ତାଙ୍କ ମନମଧ୍ୟରେ ସନ୍ଦେହ କ୍ରମେ ଘନୀଭୂତ ହେଉଥାଏ । ସେ ଏଥିପାଇଁ ଗଙ୍ଗେଶ୍ୱରଙ୍କୁ ହିଁ ପ୍ରଥମରୁ ସନ୍ଦେହ କରିଥିଲେ । ତାପରେ କୌଶଲ୍ୟାଙ୍କର ଛାୟାମୂର୍ତ୍ତିଠାରୁ ସବୁକଥା ଶୁଣିଲେ ପାର୍ବତୀ । ମନ ତାଙ୍କର ଦୁଃଖ ସାଗରରେ ବୁଡ଼ିଗଲା । ତଥାପି ସେ ପର୍ଯ୍ୟନ୍ତ ସେ କଣ କରିବେ ସ୍ଥିର କରିପାରି ନାହାନ୍ତି । ଯେତେବେଳେ ଅନ୍ନପୂର୍ଣ୍ଣା ଆସି ତାଙ୍କର ଦୁଃଖ ବର୍ଣ୍ଣନା କରିଛନ୍ତି ସେତେବେଳେ ପାର୍ବତୀ ପତିହତ୍ୟା ସିଦ୍ଧାନ୍ତ ଗ୍ରହଣ କରିଛନ୍ତି । ତାଙ୍କ ମତରେ ପତିହତ୍ୟା ଏଠାରେ ପାପ ନୁହେଁ । ତାହାଦ୍ୱାରା ସେ ଜଣେ ଅତ୍ୟାଚାରୀର ବିନାଶ ସାଧନ କରିବେ । ତେଣୁ ସେ ଏଥିପାଇଁ ପାଷଣ୍ଡ ମର୍ଦ୍ଦନ ଦେବ ସୁଦର୍ଶନଙ୍କୁ ସ୍ମରଣ କରିଛନ୍ତି । କବିବର ରାଧାନାଥ ପାର୍ବତୀଙ୍କ ମନରେ ପତିହତ୍ୟା ଲାଗି ସିଦ୍ଧାନ୍ତର ଯେଉଁ କ୍ରମ ପରିଣାମ ଦେଖାଇଛନ୍ତି ତାହା ଅନନ୍ୟ ସାଧାରଣ । ଗ୍ରୀକ୍ ପୁରାଣ ବା ଆଗାମେମ୍ନନ୍ ନାଟକରେ ଏପ୍ରକାର ପରିଣତିର କୌଣସି ସୂଚନା ନାହିଁ । ପାର୍ବତୀଙ୍କ ଚରିତ୍ର ବିଷୟରେ ଆଲୋଚନା କରି ଅଧ୍ୟାପକ ଡକ୍ଟର ନଟବର ସାମନ୍ତରାୟ ମତ ପ୍ରଦାନ କରିଅଛନ୍ତି, "କୌଶଲ୍ୟା-ଜନନୀ ପାର୍ବତୀ ଏ କାବ୍ୟର ଏକ ଅପୂର୍ବ ଓ ଅନନ୍ୟ ସାଧାରଣ ସୃଷ୍ଟି । କନ୍ୟାହତ୍ୟା ଓ ତାର ପରିଣତି ପତିହତ୍ୟା ପରି ଅତି ଗର୍ହିତ, ଅତି କୁତ୍ସିତ ବ୍ୟାପାର ପ୍ରାକୃତିକ ମାନବର କଳ୍ପନାତୀତ । ଏଇ ହତ୍ୟାବ୍ୟାପାର ସଂପାଦନ ପାଇଁ ଆନୁସଙ୍ଗିକ ବିଷୟର ସାର୍ଥକ ସନ୍ନିକରଣ, ଅବଚେତନ ମନରେ ଅବ୍ୟକ୍ତ ଆଶଙ୍କାର ପ୍ରଥମ

ଆବର୍ତ୍ତିବ, ବକ୍ଷମୃଗଗ୍ରନ୍ଥୀ ଉନ୍ମୋଚନରେ ସେହି ଆଶଙ୍କାର ସତ୍ୟରୂପ ପ୍ରକାଶ। ସେହି ସତ୍ୟର ପ୍ରାବୃଷ୍ଟିତ ପାଇଁ ପରିବେଷଣର ଶକ୍ତିଗତ ଦୃଢ଼ତା ସମ୍ପାଦନ, ଅର୍ଥାତ୍ ଚରିତରେ ଅନ୍ତଃସୌନ୍ଦର୍ଯ୍ୟ ପ୍ରତିଷ୍ଠା ପାଇଁ ସ୍ରଷ୍ଟା ମନର ଅବିରତ ପ୍ରୟାସ—ଏ ସମସ୍ତଙ୍କ ସହଯୋଗରେ ହେଉଁ ସୃଷ୍ଟି-ସୌନ୍ଦର୍ଯ୍ୟ ପ୍ରତିଷ୍ଠିତ, ତାହାହିଁ ହେଉଛି ଏ କାବ୍ୟର ପ୍ରକୃଷ୍ଟ କଳା-ବିଭବ। କୌଶଲ୍ୟା ଜନନୀ ତ। ସେ ହିଁ ହେଉଛନ୍ତି ଏହି କଳା-ବିଭବର ସାର୍ଥକ ଅଭିବ୍ୟକ୍ତି ମାତ୍ର। ତେଣୁ କାବ୍ୟର 'ପାର୍ବତୀ' ନାମକରଣ ସର୍ବାଦୌ ସୁସଙ୍ଗତ।" (୧)

ପାର୍ବତୀ କାବ୍ୟକୁ କେନ୍ଦ୍ର କରି ଓଡ଼ିଆ ସାହିତ୍ୟର ବହୁ ଆଲୋଚକ କବିବର ରାଧାନାଥଙ୍କ କୃତିର ନାନାବାଦ କରିଅଛନ୍ତି। କବିବର ରାଧାନାଥ ବିଦେଶୀ କଥାବସ୍ତୁକୁ ଗ୍ରହଣ କରି ସ୍ୱଦେଶୀୟ କିମ୍ବଦନ୍ତୀକୁ ତାହା ସହିତ ମିଶାଇ ସେପରି କାବ୍ୟଗଠନ କୌଶଳରେ ନିଜର ବୈଶିଷ୍ଟ୍ୟ ପ୍ରଦର୍ଶନ କରିଅଛନ୍ତି। ମାତ୍ର ଆଲୋଚକମାନେ ପିତା ଓ କନ୍ୟାର ପ୍ରେମ କାହାଣୀ କବିଙ୍କ ଲେଖନୀରେ ପ୍ରକାଶ ପାଇଥିବାରୁ କବିଙ୍କୁ ଆକ୍ଷେପ କରିଅଛନ୍ତି। ଓଡ଼ିଆ ସାହିତ୍ୟର କେତେକ ଗୁଣଗ୍ରାହୀ ସମାଲୋଚକ କବିଙ୍କର ସ୍ୱାତନ୍ତ୍ର୍ୟକୁ ଉପଲବ୍ଧି କରିବା ସଙ୍ଗେ ସଙ୍ଗେ ତାଙ୍କୁ ଉଚ୍ଛ୍ୱସିତ ପ୍ରଶଂସା ମଧ୍ୟ କରିଛନ୍ତି। ଗଙ୍ଗେଶ୍ୱର, କୌଶଲ୍ୟା, ପାର୍ବତୀ ପ୍ରଭୃତିଙ୍କୁ ଓଡ଼ିଶା ଇତିହାସର ଚରିତ୍ର ଭାବରେ ଗ୍ରହଣ କରିବା ଆଲୋଚକମାନଙ୍କର ଦିଗ୍‌ଭ୍ରମ ବ୍ୟତୀତ ଅନ୍ୟ କିଛି ନୁହେଁ। କୌଶଲ୍ୟାଗଙ୍ଗ ପୁଷ୍କରିଣୀକୁ କେନ୍ଦ୍ର କରି ଓଡ଼ିଶାରେ ଏକାଧିକ କିମ୍ବଦନ୍ତୀ ପ୍ରଚଳିତ ଥିବାର ଜଣାଯାଏ। ଗୋଟିଏ କିମ୍ବଦନ୍ତୀ ଅନୁସାରେ ଜଣାଯାଏ ଯେ, କୌଶଲ୍ୟା ଥିଲେ ଗଙ୍ଗେଶ୍ୱରଙ୍କର ଅତି ଆଦରର କନ୍ୟା। କନ୍ୟାର ଆକସ୍ମିକ ମୃତ୍ୟୁରେ ବ୍ୟଥିତ ରାଜା ଏହି ପୁଷ୍କରିଣୀ ଖୋଳାଇ କନ୍ୟାର ସ୍ମୃତି ରକ୍ଷା କରିଥିଲେ। ପୁଣି ଆଉ ଗୋଟିଏ କିମ୍ବଦନ୍ତୀ ହେଉଛି, କୌଶଲ୍ୟା ଥିଲେ ଗଙ୍ଗେଶ୍ୱରଙ୍କର ରାଣୀ। ରାଣୀଙ୍କ ମୃତ୍ୟୁରେ ବ୍ୟଥିତ ରାଜା ସ୍ମୃତିରକ୍ଷା ନିମିତ୍ତ ଏହି ପୁଷ୍କରିଣୀ ଖୋଳାଇ ନିଜନାମ ଓ କୌଶଲ୍ୟାଙ୍କ ନାମକୁ ଯୋଗ କରି ଏହାର ନାମକରଣ କରିଥିଲେ।

(୧) ଓଡ଼ିଆ ସାହିତ୍ୟର ଇତିହାସ—ପୃ ୨୯୧

ମାଦଳାପାଞ୍ଜିର ବିବରଣୀ ହେଉଛି ସେହି କମ୍ବଦନ୍ତୀ, ଯାହାକୁ ଆଂଶିକ ଭାବରେ ଏଠାରେ ରଘୁନାଥ ଗ୍ରହଣ କରିଅଛନ୍ତି ।

କମ୍ବଦନ୍ତୀ ଇତିହାସ ନୁହେଁ । ତେଣୁ କମ୍ବଦନ୍ତୀକୁ ଅନୁସରଣ କରି କବିର କାବ୍ୟ ରଚିତ ହେଲେ ତାହାକୁ ଐତିହାସିକ ଘଟଣା ଭାବରେ ଗ୍ରହଣ କରିବାରେ ଆଦୌ ଯାଥାର୍ଥ୍ୟ ନାହିଁ । ପିତା ଏବଂ କନ୍ୟାର ପ୍ରଣୟ କାହାଣୀ ସାହିତ୍ୟରେ ବା କମ୍ବଦନ୍ତୀରେ ଅଭାବ ନାହିଁ । ପୁରାଣ ସାହିତ୍ୟରେ ବ୍ରହ୍ମାଙ୍କର କନ୍ୟା ଶତରୂପାଙ୍କ ସହିତ ଅବୈଧ ସମ୍ବନ୍ଧ ସୂଚିତ ହୋଇଅଛି । ସେଥିପାଇଁ ପୁରାଣର ପବିତ୍ରତା ନଷ୍ଟ ହେବାର କାରଣ ନାହିଁ । ମାତ୍ର କବିବର ରଘୁନାଥଙ୍କ କାବ୍ୟରେ ତାହା ସ୍ଥାନ ପାଇଲା ବୋଲି ସାହିତ୍ୟର ମର୍ଯ୍ୟାଦା କ୍ଷୁଣ୍ଣ ହେବ କାହିଁକି ? ଜନମେଜୟାଚାର୍ଯ୍ୟ କୃତ ହରିବଂଶ ପୁରାଣରେ ରାଜା ଦକ୍ଷଙ୍କର କନ୍ୟା ମନୋହାରୀ ସହିତ ପ୍ରଣୟ ବର୍ଣ୍ଣିତ ହୋଇଅଛି । ରାଜା ଦକ୍ଷ ନିଜ କନ୍ୟାକୁ ପତ୍ନୀରୂପେ ଗ୍ରହଣ କରିଥିଲେ । ଏହାପରେ କୌଣସି କମ୍ବଦନ୍ତୀ ଯେ କୌଶଲ୍ୟାଙ୍କ ପୁଷ୍କରିଣୀକୁ କେନ୍ଦ୍ର କରି ବାହାରି ନାହିଁ, ଏ କଥା କୁହାଯାଇ ପାରିବ ନାହିଁ । କମ୍ବଦନ୍ତୀକୁ ଆମଦେଶର ଲୋକମାନେ ସତ୍ୟ ବୋଲି ବିଶ୍ୱାସ କରିଥାଆନ୍ତି । ବହୁ ଅଲୌକିକ ଘଟଣା କମ୍ବଦନ୍ତୀରେ ମଧ୍ୟ ସତ୍ୟ ବୋଲି ଗୃହୀତ ହୋଇଥାଏ । କୌଶଲ୍ୟାଙ୍କ ବିଷୟରେ କମ୍ବଦନ୍ତୀକୁ ଲୋକମାନେ କିପରି ବିଶ୍ୱାସ କରନ୍ତି ସେ ବିଷୟରେ ଆଲୋଚକ ପଣ୍ଡିତ କୁଳମଣି ଦାଶ ଲେଖିଛନ୍ତି, "ଦେଉଳ ବା ଯଜ୍ଞସ୍ଥାନ ଏ ପୋଖରୀର ପୂର୍ବପାଖରୁ ୫ ମାଇଲ ଦୂରବର୍ତ୍ତୀ; ଏହି ପୋଖରୀର ଗୁରିଦିଗରେ ବିଭିନ୍ନ ବେଦାଧ୍ୟାୟୀ ଗୃହିକାଶ୍ରୀୟ ବ୍ରାହ୍ମଣଙ୍କର ଶାସନ ଅଛି । ଉତ୍ତରଦିଗରେ ସାମବେଦୀୟ 'ତ୍ରିପାଠୀ' ସଂଜ୍ଞାଧାରୀ ବ୍ରାହ୍ମଣମାନଙ୍କର ବାସସ୍ଥାନ—ଉତ୍ତର ଶାସନ (ଏହି ଉତ୍ତରଶାସନରେ ମୁଁ କେତେବର୍ଷ ରହିଥିଲି) । ପୂର୍ବଦିଗରେ ଯଜୁର୍ବେଦୀୟ ମହାପାତ୍ର ପ୍ରଭୃତି ସଂଜ୍ଞାଧାରୀ ବ୍ରାହ୍ମଣମାନଙ୍କର ବାସସ୍ଥାନ -ପୂର୍ବାଶାସନ । ଦକ୍ଷିଣ ଦିଗରେ ଅଥର୍ବ ବେଦୀୟ 'ଉପାଧ୍ୟାୟ' ସଂଜ୍ଞାଧାରୀ ବ୍ରାହ୍ମଣଙ୍କ ଶାସନ- ଏକଗୁଲିଆ । ପଶ୍ଚିମ ଦିଗରେ ଧୋଳପାହାଡ଼ ନିକଟରେ ଋକ୍‌ବେଦୀୟ ବ୍ରାହ୍ମଣଙ୍କର ଶାସନ ଥିଲା, ମାତ୍ର ବର୍ତ୍ତମାନ ସେଠାରେ ଆଉ ଗ୍ରାମ ନାହିଁ । କିନ୍ତୁ ଉକ୍ତ ଶାସନର ବାସଭୂମି, ଦାଣ୍ଡ,

ପ୍ରାଚୀନ ପୋଖରୀ ପ୍ରଭୃତିର ଧ୍ୱଂସାବଶେଷ ରହିଅଛି । ବୋଧହୁଏ ଉତ୍କବେଦୀୟ ବ୍ରାହ୍ମଣମାନେ ସେଠାରୁ ଅନ୍ୟତ୍ର ଚାଲିଯାଇ ଅଛନ୍ତି ବା ସେମାନଙ୍କର ବଂଶ ଲୋପ ହୋଇଅଛି । ପାର୍ଶ୍ୱବର୍ତ୍ତୀ କୌଶମି ଗ୍ରାମର ଲୋକେ ସ୍ନାନପାନାଦି କାର୍ଯ୍ୟରେ ଏ ପୋଖରୀର ଜଳ ବ୍ୟବହାର କରନ୍ତି ନାହିଁ । ସେମାନେ ପୁରୁଷାନୁକ୍ରମେ ବିଶ୍ୱାସ କରନ୍ତି ଯେ, ଏପୋଖରୀ ମହାପାପର ପ୍ରାୟଶ୍ଚିତ୍ତ ରୂପେ ଖୋଳା ହୋଇଥିଲା ଏବଂ ଏହାର 'ପ୍ରତିଷ୍ଠା' ହୋଇନାହିଁ, ତେଣୁ ଏହାର ଜଳ ଅପବିତ୍ର ଏବଂ ଏହାର ମାଛ ମଧ୍ୟ ହିନ୍ଦୁଙ୍କର ଅଖାଦ୍ୟ । ଆଜକୁ ପ୍ରାୟ ୪୦ ବର୍ଷ ତଳେ ମାଛଜାତୀୟ ଲୋକଙ୍କ ଛଡ଼ା କୌଶଲ୍ୟାଗଙ୍ଗର ମାଛ ଉଚ୍ଚଜାତୀୟ ହିନ୍ଦୁମାନେ ସ୍ପର୍ଶକରୁ ନଥିଲେ । ଏ ପର୍ଯ୍ୟନ୍ତ ମଧ୍ୟ ସେ ଅଞ୍ଚଳର କେତେକ ଲୋକଙ୍କର ଧାରଣା ଅଛି ଯେ, କୌଶଲ୍ୟାଗଙ୍ଗର ମାଛଙ୍କ ମୁଣ୍ଡରେ ଏକ ଜାତୀୟ ପୋକ ଥାଆନ୍ତି, ତେଣୁ ସେସବୁ ଅଖାଦ୍ୟ ।" (୧)

ଯେଉଁ ଦେଶର ଲୋକେ ଜଗନ୍ନାଥ ଓ ବଳଭଦ୍ର ଧଳାଘୋଡ଼ା ଓ କଳାଘୋଡ଼ା ଚଢି କାଞ୍ଚିଯୁଦ୍ଧକୁ ଯାତ୍ରା କରିଥିବାର ବିଶ୍ୱାସ କରି ଶ୍ରୀପଞ୍ଚମୀ ଦିନ ଜଗନ୍ନାଥଙ୍କର କାଞ୍ଚିକାବେରୀ ବେଶ ଦର୍ଶନ କରି ନିଜକୁ କୃତାର୍ଥ ମନେକରନ୍ତି, ସେ ଦେଶରେ କୌଶଲ୍ୟାଗଙ୍ଗ ପୁଷ୍କରିଣୀ ବିଷୟରେ ଏପ୍ରକାର ବିଶ୍ୱାସ ପୋଷଣ କରିବାରେ ଅସ୍ୱାଭାବିକତା ନାହିଁ । ସ୍ୱର୍ଗତ ଜଗବନ୍ଧୁ ସିଂହ-କୌଶଲ୍ୟାଗଙ୍ଗ ବିଷୟରେ ତାଙ୍କ ରଚିତ ପ୍ରାଚୀନ ଉତ୍କଳ ଗ୍ରନ୍ଥରେ ଯାହା ଲେଖିଛନ୍ତି ତାହା କିମ୍ବଦନ୍ତୀ ଉପରେ ଆଧାରିତ ।

ଆଲୋଚକ ପ୍ରିୟରଂଜନ ସେନ୍ ପାର୍ବତୀ କାବ୍ୟ ବିଷୟରେ ଆଲୋଚନା କରିଅଛନ୍ତି । ସେ ଉତ୍କଳ ସାହିତ୍ୟରେ ପ୍ରକାଶିତ ପରମାନନ୍ଦ ଆଚାର୍ଯ୍ୟଙ୍କର ପ୍ରବନ୍ଧ ଉପରେ ନିର୍ଭର କରିଅଛନ୍ତି ବୋଲିବୁଝାଯାଇପାରେ । ମାତ୍ର ଆଚାର୍ଯ୍ୟ ମହାଶୟଙ୍କ ଆଲୋଚନାର ଗୁରୁତ୍ୱ ସେନ୍‌ଙ୍କ ଆଲୋଚନାରେ ନାହିଁ । ପିତା ଏବଂ କନ୍ୟାର ଅବୈଧ ସମ୍ବନ୍ଧ ସ୍ଥାପନକୁ କବି ସେଲିଙ୍କର ସେନସି୍ ନାଟକରୁ ଗ୍ରହଣ କରିଛନ୍ତି ବୋଲି ସେ ମତପ୍ରଦାନ କରିଛନ୍ତି । (୨)

---

(୧) ରାଧାନାଥ ଜୀବନୀ—ପୃ ୬୯୮

(୨) ଦ୍ରଷ୍ଟବ୍ୟ— Modern Oriya Literature - P. 77.

ଆଲୋଚକ ପ୍ରିୟରଞ୍ଜନ ସେନ୍‌ଙ୍କର ଏହି ମତକୁ ଅଧ୍ୟାପକ ନଟବର ନାଥ ମିଶ୍ର ମଧ୍ୟ ସମର୍ଥନ କରିଛନ୍ତି । (୧)

ପାର୍ବତୀ କାବ୍ୟରେ କବିବର ରାଧାନାଥଙ୍କର ପ୍ରକୃତି ବର୍ଣ୍ଣନର ଦକ୍ଷତା ସ୍ପଷ୍ଟ ଭାବରେ ପ୍ରମାଣିତ ହୋଇଅଛି । ସନ୍ଧ୍ୟା ବର୍ଣ୍ଣନା, ଗିରି ବର୍ଣ୍ଣନା, ଅଗ୍ନିଶିଖାର ପଥବର୍ଣ୍ଣନାରେ କବିଙ୍କର ସୌନ୍ଦର୍ଯ୍ୟବୋଧ ମନର ଯଥାର୍ଥ ପରିଚୟ ମିଳିଅଛି । ସମଗ୍ର ଦିବସର ରଜତ ଆଭରଣ ପୃଷ୍ଠପଟରେ ଦୂର ଦିଗ୍‌ବଳୟର ରେଖାଙ୍କିତ ତରୁଶ୍ରେଣୀ, ତାରକା ଶୋଭିତ ଆକାଶ, ତରଳ ଜ୍ୟୋତ୍ସ୍ନାର ପ୍ଲାବନ ମଧ୍ୟରେ ଝିଙ୍କାରିର କଳସଙ୍ଗୀତ, ସାଗର ବକ୍ଷରୁ ଧସିଆସୁଥିବା ମୃଦୁ ସମୀରଣରେ ଶ୍ରୀକ୍ଷେତ୍ରରେ ବାସ କରୁଥିବା ଲଳନାର ଚୂର୍ଣ୍ଣକୁନ୍ତଳର ଅପୂର୍ବ ଦୋଳନ କବିଙ୍କ ଲେଖନୀରେ ଅତ୍ୟନ୍ତ ମନୋମୁଗ୍ଧକର ହୋଇଅଛି ।

ପାର୍ବତୀ କାବ୍ୟ ଅସମାପ୍ତ ହେବାର କାରଣ ସ୍ୱରୂପ ଜଣାଯାଇଅଛି ଯେ, କବିବର ରାଧାନାଥ ସେସମୟରେ ନାନା କାରଣରୁ ମାନସିକ ଦୁଶ୍ଚିନ୍ତା-ଗ୍ରସ୍ତ ହୋଇପଡ଼ିଥିଲେ ଏବଂ ତାଙ୍କର ପୁତ୍ର ଶଶିଭୂଷଣଙ୍କର ଶାରୀରିକ ଅସୁସ୍ଥତା ଯୋଗୁଁ ସେ କାବ୍ୟଟିକୁ ସମ୍ପୂର୍ଣ୍ଣ କରିପାରିଲେ ନାହିଁ । ଶଶିଭୂଷଣଙ୍କ ଅସୁସ୍ଥତା ସତ୍ତ୍ୱେ କବି ଚିଲିକା କାବ୍ୟ ରଚନା କରିପାରିଲେ, ଅଥଚ ପାର୍ବତୀକୁ ପୂର୍ଣ୍ଣ ରୂପ ଦାନ କରିପାରିଲେ ନାହିଁ । ଏହାର କାରଣ ହେଉଛି ପାର୍ବତୀ କାବ୍ୟର ପୂର୍ବାର୍ଦ୍ଧ ରଚନା କରିବା ପରେ କବି ପାଠକମାନଙ୍କର ଆଲୋଚନାରେ ଏପରି ମର୍ମାହତ ହୋଇଥିଲେ ଯେ, ଆଉ ତାହାକୁ ପୂର୍ଣ୍ଣରୂପ ଦେବାପାଇଁ ଆଗ୍ରହ ପ୍ରକାଶ କଲେ ନାହିଁ । ୧୮୮୦ ସାଲରୁ ରାଧାନାଥଙ୍କୁ କେନ୍ଦ୍ରକରି ଓଡ଼ିଶାରେ ଯେଉଁ ପାଠ୍ୟପୁସ୍ତକ ଆନ୍ଦୋଳନ ଦେଖାଦେଇଥିଲା ତାହା ଏହି ସମୟରେ ରାଧାନାଥ ସାହିତ୍ୟର ତୀବ୍ର ସମାଲୋଚନାରେ ପରିଣତ ହୋଇଥିଲା । କେତେକ ବ୍ୟକ୍ତିଙ୍କର ଅଭିଯୋଗ ଫଳରେ ସେ ସମୟରେ ରାଧାନାଥଙ୍କୁ ଦୁଇଥର ପାଇଁ ଉଚ୍ଚ କର୍ତ୍ତୃପକ୍ଷଙ୍କର ତଦନ୍ତର ସମ୍ମୁଖୀନ ହେବାକୁ ପଡ଼ିଥିଲା । ଏହି ତଦନ୍ତର ପରିଣାମରେ ରାଧାନାଥଙ୍କର କୌଣସି କ୍ଷତି ହୋଇ ନଥିଲା ସତ୍ୟ, ମାତ୍ର ଏହାଫଳରେ ସେ ମାନସିକ ଅଶାନ୍ତି ଭୋଗ କରିଥିଲେ । ଓଡ଼ିଆ ସାହିତ୍ୟର ପାଠକ

(୧) ଆଧୁନିକ ଓଡ଼ିଆ କାବ୍ୟଧାରା—ପୃ ୧୬୪-୧୬୫ ।

ତଥା ଆଲୋଚକଗଣ ତାଙ୍କୁ ବଙ୍ଗାଳୀପ୍ରିୟ ଆଖ୍ୟା ଦେଇ ସେ ପାର୍ବତୀ କାବ୍ୟ ରଚନା ଦ୍ୱାରା ଓଡ଼ିଆମାନଙ୍କର ସାମାଜିକ ଜୀବନର କଳଙ୍କ ରଟନା କରି ଅଛନ୍ତି ବୋଲି ମତ ପ୍ରକାଶ କରିଥିଲେ । ଏହା ଫଳରେ ରାଧାନାଥ କ୍ଷୁବ୍ଧମନା ହୋଇ ପାର୍ବତୀ କାବ୍ୟକୁ ଅସମ୍ପୂର୍ଣ୍ଣ ରଖି ଚିଲିକା କାବ୍ୟ ରଚନା କରିଥିଲେ । ସେ ସେତେବେଳେ ଓଡ଼ିଶାର ଜନସାଧାରଣଙ୍କୁ ଜଣାଇ ଦେବାକୁ ଚାହିଁଥିଲେ ଯେ, ସେ କେବେହେଲେ ମନ ମଧ୍ୟରେ ବଙ୍ଗାଳୀପ୍ରିୟ ଭାବ ପୋଷଣ କରି ନାହାନ୍ତି । ଏହାର ପ୍ରମାଣ ହେଉଛି, ଚିଲିକା କାବ୍ୟରେ ପ୍ରକାଶ ପାଇଥିବା କବିଙ୍କର ଜାତିପ୍ରୀତି ।

---

# ଚିଲିକା

୧୮୯୨ ସାଲରେ ରାଧାନାଥଙ୍କର ଚିଲିକା କାବ୍ୟ 'ଉତ୍କଳ ପ୍ରଭା'ରେ ପ୍ରକାଶ ପାଇଥିଲା । ଚିଲିକା କାବ୍ୟ ରଚନାରେ କବି ତାଙ୍କର ସୃଷ୍ଟି କୌଶଳର ଅଭିମୁଖ୍ୟକୁ ପରିବର୍ତ୍ତନ କରିଥିବାର ଦେଖାଯାଏ । ବିଦେଶୀ ସାହିତ୍ୟରୁ କାବ୍ୟ ଲାଗି କଥାବସ୍ତୁ ଗ୍ରହଣ କରି ସ୍ୱଦେଶୀ ପରଂପରା ଅନୁସାରେ ତାହାକୁ ସ୍ଥାପନ କରି କବିବର ରାଧାନାଥ ତାଙ୍କର କାବ୍ୟ ନିର୍ମାଣରେ ଯେଉଁ ଅପୂର୍ବ କୌଶଳ ପ୍ରଦର୍ଶନ କରିଥିଲେ, ତାହାକୁ ପରିହାର କରି ସମ୍ପୂର୍ଣ୍ଣ ଏକ ନୂତନ ଢଙ୍ଗରେ ଚିଲିକା କାବ୍ୟ ରଚନା କଲେ । ଚିଲିକା କାବ୍ୟ ପ୍ରକୃତି ଉପରେହିଁ ଆଧାରିତ । ପ୍ରକୃତିର ସୌନ୍ଦର୍ଯ୍ୟ ବର୍ଣ୍ଣନା କବିଙ୍କର ମୁଖ୍ୟ ଲକ୍ଷ୍ୟ ହେଲେହେଁ ପ୍ରକାରାନ୍ତରେ ଏଥିରେ ଉତ୍କଳର କେତେକ ପ୍ରାଚୀନ କିମ୍ବଦନ୍ତୀ, ଉତ୍କଳ ସାହିତ୍ୟର ଦୁରବସ୍ଥା ଏବଂ କବିଙ୍କ ନିଜ ଜୀବନ କଥା ପ୍ରକାଶ ପାଇଅଛି । ଚିଲିକା କାବ୍ୟକୁ କବିଙ୍କର ବର୍ଣ୍ଣନା ଅନୁସାରେ ଆଠଗୋଟି ଖଣ୍ଡ ବା ଅଂଶରେ ବିଭକ୍ତ କରଯାଇପାରେ । କବିଙ୍କର ବର୍ଣ୍ଣନାଶୈଳୀ ଏପରି ସୋପାନରେ ଉପନୀତ ହୋଇଅଛି ଯେ, ଚିଲିକା କାବ୍ୟର ଏହି ଆଠଗୋଟି ଖଣ୍ଡିତାଂଶ ଭିନ୍ନଭାବରେ ପ୍ରତୀତ ନହୋଇ କାବ୍ୟର ଅଖଣ୍ଡତା ପ୍ରତିପାଦିତ କରିଥାଏ ।

କାବ୍ୟର ଆରମ୍ଭରେ କବି ଚିଲିକା ହ୍ରଦର ସୌନ୍ଦର୍ଯ୍ୟ ଓ ଅବସ୍ଥିତି ବର୍ଣ୍ଣନା କରିଅଛନ୍ତି । ଏହା କାବ୍ୟର ଆରମ୍ଭରୁ ୫୦ ଧାଡ଼ି ପର୍ଯ୍ୟନ୍ତ ଅଂଶରେ ବର୍ଣ୍ଣିତ ହୋଇଅଛି । କାବ୍ୟର ଏହି ଅଂଶକୁ କବି ଭାବନାର ପ୍ରଥମ ଅଂଶ ଭାବରେ ଗ୍ରହଣ କରିବାକୁ ପଡ଼ିବ ।

ମରାଳ ମାଳିନୀ ନୀଳାମ୍ବୁ ଚିଲିକା ଉତ୍କଳ ଲକ୍ଷ୍ମୀଙ୍କର ବିଳାସ ସରୋବର । ଚିଲିକାକୁ ସମ୍ବୋଧନ କରି କବି କହିଅଛନ୍ତି ଯେ,

ସେ ଉତ୍କଳର ସୁନ୍ଦର ଅଳଙ୍କାର ଏବଂ ଉତ୍କଳ ଭୂବନରେ ଶୋଭାର ଭଣ୍ଡାର୍ । ଚିଲିକାର ଦିଗନ୍ତ ବିସ୍ତାରି ନୀଳ ଜଳରାଶି ଦର୍ଶକମାନଙ୍କର ମନକୁ ଉଲ୍ଲସିତ କରିଥାଏ । ଚିଲିକାର ସ୍ୱଚ୍ଛ ନୀଳ ଜଳରାଶିକୁ କବି ଦିଗଙ୍ଗନାମାନଙ୍କର ଦର୍ପଣ ସ୍ୱରୂପ ବର୍ଣ୍ଣନା କରିଅଛନ୍ତି । ଦିଗଙ୍ଗନାମାନେ ଏଥିରେ ସେମାନଙ୍କର ମୁଖର ସୌନ୍ଦର୍ଯ୍ୟ ଅବଲୋକନ କରିଥାଆନ୍ତି ।

ଚିଲିକାର ନୀଳଅଙ୍ଗର ଶୋଭା ଅତୁଳନୀୟ । ଜଳମଧ୍ୟକୁ ପ୍ରବେଶ କରିଥିବା ପର୍ବତର ପ୍ରାନ୍ତଭାଗ ବଂଶବନ, ପାହାଡ଼, ପର୍ବତ ଓ ଦ୍ୱୀପଦ୍ୱାରା ଚିଲିକାର ନୀଳଅଙ୍ଗ ଏକ ଚିତ୍ରପଟର ଅନ୍ତରାଳରେ ଶୋଭା ପାଇବା ପରି ପ୍ରତୀତ ହୋଇଥାଏ । ଚିଲିକାର ଦକ୍ଷିଣ ଭାଗରେ ରମ୍ଭାନାସି ଜଳମଧ୍ୟକୁ ପ୍ରବେଶ କରିଅଛି । ରମ୍ଭାନାସି ସୂର୍ଯ୍ୟ କିରଣରେ ଉଦ୍‌ଭାସିତ ହୁଏ । ଏହାର ନୀଳବର୍ଣ୍ଣର ଶୋଭା ଜନମନ ହରଣ କରେ । ଚିଲିକା ବକ୍ଷରେ ବହୁ ଦ୍ୱୀପଶୈଳ ପରିଦୃଷ୍ଟ ହୋଇଥାଏ । ଏହି ସବୁ ଦ୍ୱୀପଶୈଳ ଚିଲିକାର ନୀଳବକ୍ଷରେ ନୀଳକାନ୍ତମଣିର ବର୍ଣ୍ଣ ଧାରଣ କରି ବିମାନ ଆକାରରେ ଭାସୁଥିବାର ବର୍ଣ୍ଣନା କବି କରିଅଛନ୍ତି ।

ଚିଲିକା ବକ୍ଷରେ ଲୁକ୍‌କାୟିତ ବା ଅର୍ଦ୍ଧଲୁକ୍‌କାୟିତ ଅବସ୍ଥାରେ ଥିବା କେତେକ ପାହାଡ଼କୁ କବି ଏକ ପୌରାଣିକ ଆଖ୍ୟାନ ସହିତ ଜଡ଼ିତ କରିଅଛନ୍ତି । ଇନ୍ଦ୍ର ବଜ୍ରମାରି ପାହାଡ଼-ମାନଙ୍କର ପକ୍ଷ ଛେଦନ କରି ସେମାନଙ୍କୁ ଅଚଳରେ ପରିଣତ କରିବା ଆଖ୍ୟାନଟିକୁ କବି ଗ୍ରହଣ କରି ବର୍ଣ୍ଣନା କରିଅଛନ୍ତି ଯେ, ସତେ ଯେପରି ଏହି ପାହାଡ଼ଗୁଡ଼ିକ ଇନ୍ଦ୍ରଙ୍କର ବଜ୍ରାଘାତ ଭୟରେ ଚିଲିକାର ଜଳ ମଧ୍ୟରେ ଆତ୍ମଗୋପନ କରିଅଛନ୍ତି । ସେମାନେ ଭଗବନ୍ତଙ୍କର ଆଶ୍ରୟ ଗ୍ରହଣ କରି ନିଜ ନିଜର ମସ୍ତକକୁ ଶୁନ୍ନ୍ୟାକାର୍ଣ୍ଣ କରିଅଛନ୍ତି ।

ଚିଲିକା ହ୍ରଦ ମଧ୍ୟରେ ଥିବା କାଳିଜାଈ ପର୍ବତ ଓ ଠାକୁରାଣୀଙ୍କ ମନ୍ଦିରକୁ ଲକ୍ଷ୍ୟକରି କବି ବର୍ଣ୍ଣନା କରିଅଛନ୍ତି ଯେ, ମନ୍ଦିରକୁ ମଥାରେ ମୁକୁଟ ସଦୃଶ ଧାରଣ କରି ମର୍କତମଣି ନିର୍ମିତ ସେତୁବନ୍ଧ ସଦୃଶ କାଳିଜାଈ ପର୍ବତ ଶୋଭା ପାଉଅଛି । ଚଢ଼େଇ

ଗୁହା ପର୍ବତର ଧବଳରୂପ ଦେଖି କବି ତର୍କଣା କରିଛନ୍ତି ସତେ ଯେପରି ଐରାବତ ହସ୍ତୀ ଚିଲିକାର ନୀଳ ଜଳରାଶି ଭେଦ କରି ଉପରକୁ ଉଠିଆସୁଅଛି । ଚିଲିକାର ନୀଳତରଙ୍ଗ ବେଷ୍ଟିତ କାଙ୍କଣ ଶିଖରରେ ବର୍ଷ ଋତୁରେ ବହୁ ପରିମାଣରେ କାଙ୍କଣ ଫଳେ ଓ ବର୍ଷର ପ୍ରଥମ ଫଳକୁ ହ୍ରଦ-ବନ୍ଦୀ ଧୀବରମାନେ ନେଇ ଆଦରର ସହିତ ଜଗନ୍ନାଥ ମନ୍ଦିରର ବେଷଶାଳାକୁ ପ୍ରେରଣ କରନ୍ତି ।

ଚିଲିକା ବକ୍ଷରେ କେତେକ ସ୍ଥଳରେ ଜଳପଟଳ ଭେଦକରି ଶୁଭ୍ର ବାଲୁକାରାଶି ଦୃଷ୍ଟିଗୋଚର ହୋଇଥାଏ । କବି ଏହି ଦୃଶ୍ୟକୁ ଶରତ୍କାଳୀନ ନିର୍ମଳ ନୀଳ ଆକାଶରେ ଦୃଶ୍ୟମାନ ଛାୟାପଥ ସହିତ ତୁଳନା କରିଅଛନ୍ତି । ବାଲୁକାରାଶିରେ ପଡ଼ିଥିବା ଅସଂଖ୍ୟ ଶାମୁକାକୁ କବି ତାରାମାନଙ୍କ ସହିତ ତୁଳିତ କରିଅଛନ୍ତି ।

ଚିଲିକାର ତୀର ପ୍ରଦେଶ ସୌନ୍ଦର୍ଯ୍ୟର ଗନ୍ତାଘର । ଏଠାରେ ଅସଂଖ୍ୟ ପାହାଡ଼, ଝାଙ୍ଗର ଭୂଇଁ ଓ ବନର ଅବସ୍ଥିତି ମଧୁର ଏବଂ ଭୀଷଣ ଦୃଶ୍ୟ ସୃଷ୍ଟି କରିଅଛନ୍ତି । ଏଠାରେ ବହୁ ଗିରିଖୋଲ, ନାଳି, ପଡ଼ିଆ, ଗୁମ୍ଫା, ଜନମନୋହାରୀ ନଦୀ ରହିଅଛି । ପୁଣି, ଏଠାରେ ବହୁ ବିକଟ ତିନିପଥ ଓ ଉଚ୍ଚ ପର୍ବତ ରହିଅଛି । ଏହି ପର୍ବତଗୁଡ଼ିକ ଏତେ ଉଚ୍ଚ ଯେ, ସୂର୍ଯ୍ୟ ଆକାଶମାର୍ଗରେ ଗତିକରିବା ସମୟରେ ଏଗୁଡ଼ିକର ଶିଖରକୁ ସ୍ପର୍ଶ କରିଥାଆନ୍ତି । ଚିଲିକାର ନୀଳଗର୍ଭ ଅତ୍ୟନ୍ତ ଗମ୍ଭୀର ଓ ଗର୍ଭିତପୂର୍ଣ୍ଣ । ଏହା ସର୍ପ ଫଣାରେ ଥିବା ମଣିର ଆଲୋକରେ ଦୀପ୍ତ । ଚିଲିକା ତୀରରେ ବହୁ ଭଗ୍ନଦୁର୍ଗ ଓ ପ୍ରାସାଦ ଦେଖାଯାଏ । ଏଗୁଡ଼ିକର ଉପରିଭାଗ ଶୈବାଳାଚ୍ଛାଦିତ ଏବଂ ଏଗୁଡ଼ିକ କଣ୍ଟକାକୀର୍ଣ୍ଣ । ଏଗୁଡ଼ିକ ସଂସାରର ଭଙ୍ଗୁରତାର ମୂର୍ତ୍ତିମନ୍ତ ବିଗ୍ରହ । ସତେ ଯେପରି ଏଗୁଡ଼ିକ ଜଗତର ନଶ୍ୱରତାକୁ ପ୍ରତିଧ୍ୱନି ଛଳରେ ପ୍ରକାଶ କରୁଅଛନ୍ତି ।

ଚିଲିକା ତୀର କୁରଙ୍ଗ ଓ କୁରଙ୍ଗୀମାନଙ୍କର ଚିର କ୍ରୀଡ଼ାସ୍ଥଳ । ଏହା ନବଦୂର୍ବାଦଳରେ ଶ୍ୟାମଳ ଶ୍ରୀ ଧାରଣ କରିଥାଏ । ମଞ୍ଜରିକା ଚିଲିକା ତୀରର ଚିରସାଥୀ । ଚିଲିକା ବକ୍ଷରେ ଥିବା ଦ୍ୱୀପପୁଞ୍ଜ ଶସ୍ୟପୂର୍ଣ୍ଣ

ଥିବାରୁ ସବୁଜବର୍ଣ୍ଣ ଧାରଣ କରିଥାଏ । ଏହିସବୁ ଉପାଦାନକୁ ନେଇ ଚିଲିକାର ସୌନ୍ଦର୍ଯ୍ୟ ପ୍ରକାଶିତ । ଏକାଧାରରେ ଏତେ ସୁନ୍ଦର ଦୃଶ୍ୟ ଠୁଳ ହୋଇଥିବାରୁ ସୌନ୍ଦର୍ଯ୍ୟମୟୀ ଉତ୍କଳରେ ଚିଲିକାର ସୌନ୍ଦର୍ଯ୍ୟ ଅତୁଳନୀୟ ।

କାବ୍ୟର ଆରମ୍ଭରୁ ପଚିଶ ଧାଡ଼ି ପର୍ଯ୍ୟନ୍ତ କବି ଚିଲିକାର ବକ୍ଷ-ଦେଶରେ ଓ ତୀରଦେଶରେ ଥିବା ପ୍ରାକୃତିକ ସମ୍ପଦଗୁଡ଼ିକର ଅନୁପମ ସୌନ୍ଦର୍ଯ୍ୟ ବର୍ଣ୍ଣନା କରିଅଛନ୍ତି । ଏହାହିଁ କବିବର୍ଣ୍ଣନାର ପ୍ରଥମ ଅଂଶ ।

ଚିଲିକାର ବକ୍ଷ ଓ ତୀରଦେଶର ସୌନ୍ଦର୍ଯ୍ୟର ସମ୍ୟକ ସୂଚନା ଦେବାପରେ କବି ତାଙ୍କର ଭାରତ ଭ୍ରମଣର ଅଭିଜ୍ଞତା ବର୍ଣ୍ଣନା କରି-ଅଛନ୍ତି । ଏହା ତାଙ୍କର ଭାବପ୍ରକାଶର ବା ବର୍ଣ୍ଣନାର ଦ୍ୱିତୀୟ ଅଂଶ । ଏହା ୫୨ ଧାଡିଠାରୁ ଆରମ୍ଭ କରି ୧୮୩ ଧାଡ଼ି ପର୍ଯ୍ୟନ୍ତ ଗତି କରିଅଛି ।

କବି ଉତ୍ତରଭାରତ ଓ ଦକ୍ଷିଣଭାରତର ବହୁସ୍ଥାନ ଭ୍ରମଣ କରିଥିଲେ । ପ୍ରଥମେ ସେ ହିମାଳୟ ପର୍ବତ ନିକଟକୁ ଯାଇଥିଲେ । ତୁଷାର-ମଣ୍ଡିତ ହିମାଳୟର ପ୍ରାକୃତିକ ଦୃଶ୍ୟ ସେ ଅବଲୋକନ କରିଥିଲେ । ହିମାଳୟର ପାଦଦେଶରେ ବହୁ କ୍ଷୁଦ୍ର କ୍ଷୁଦ୍ର ପାହାଡ଼ ଏବଂ ସର୍ବୋପରି ଗିରିରାଜ ହିମାଳୟର ଶୋଭା ଏକାନ୍ତ ବିମୁଗ୍ଧକର । ଶୃଙ୍ଗ ଉପରେ ଶୃଙ୍ଗଗୁଡ଼ିକର ଅବସ୍ଥିତି ନୀଳ ବ୍ୟୋମପଟରେ ଚିତ୍ରିତ ହେବାପରି ଦିଶୁଥିଲା । ହିମାଳୟର ମସ୍ତକରେ ତୁଷାରମୁକୁଟ ଓ ସ୍କନ୍ଧଦେଶରେ ଶୁଭ୍ର ଉପବୀତ ସଦୃଶ ଗଙ୍ଗାନଦୀ ଚିରଶୋଭିତ । ହିମାଳୟର ସେହି ଅନନ୍ତକାଳର ତୁଷାର ଉପରେ ଶିବ ଉପବେଶନ କରିଥିବାର ଉପଲବ୍ଧି କରି କବି ଚମକି ପଡ଼ିଥିଲେ । ସେଠାରେ କବିଙ୍କର ଚିତ୍ତବୃତ୍ତି ପଥହରା ହେଲା । କବି ସେଠାରେ ନିଜର ପ୍ରଣତି ଜଣାଇ ଭିନ୍ନ ପଥରେ ଅଗ୍ରସର ହେଲେ ।

ତାପରେ କବି ରାଜସ୍ଥାନର ଧୂମ ମରୁଭୂମିରେ ଭ୍ରମଣ କରିଥିଲେ । ସେ ସ୍ଥାନରେ ସେ ଦେଖିଲେ ଗୁଡ଼ିଏ ଟାଙ୍ଗରା ପାହାଡ଼ । ସେ ସ୍ଥାନ ନୀର-ତରୁହୀନ, କଠିନ ଏବଂ କାଳପରି ସର୍ବଗ୍ରାସୀ ଓ ଭୟଙ୍କର । ସେସ୍ଥାନ ସୂର୍ଯ୍ୟ କିରଣରେ ଅତ୍ୟନ୍ତ ଉତ୍ତପ୍ତ ଏବଂ ପାହାଡ଼ ଗୁମ୍ଫାମାନଙ୍କରେ

ଶୋକଥିବା ସାପମାନଙ୍କର ଶ୍ୱାସପ୍ରଶ୍ୱାସ ବାୟୁଦ୍ୱାରା ବିଷାକ୍ତ ବାୟୁପୂର୍ଣ୍ଣ । ଏ ପ୍ରକାର ଉତ୍ତପ୍ତବାୟୁ ପ୍ରବାହିତ ହୋଇ ସେଠାରେ ପଥିକର ପ୍ରାଣ ନେଇଥାଏ । ସେଠାରେ ଛାୟାଦାନ କରିବାକୁ ନାଗଫେଣିଆ କଣ୍ଟାବୁଦା ଏବଂ ଜଳଦାନ କରିବାକୁ ମରୀଚିକା କେବଳ ସମର୍ଥ । ଏପରି ଭୟଙ୍କର, କର୍କଶ ଦୃଶ୍ୟ ଦେଖି କବି ସେଠାରେ ଅଳକା କଥା ମନେ ପକାଉଥିଲେ । ଜଣେ ତୃଷାତୁର ରୋଗୀ ଖାଟ ଉପରେ ବସି ଯେପରି କମଳମଣ୍ଡ ପୂର୍ଣ୍ଣ ହରିତ ସରସୀକୁ ବାରମ୍ବାର ସ୍ମରଣ କରୁଥାଏ, କବି ରାଜସ୍ଥାନର ଧୂମ ମରୁସ୍ଥଳୀରେ ଥାଇ ସେହିପରି ଅଳକାର ଲଳିତ ସୌନ୍ଦର୍ଯ୍ୟକୁ ସ୍ମରଣ କରିଥିଲେ ।

ରାଜସ୍ଥାନ ମରୁଭୂମିରୁ ଆସି କବି ବିନ୍ଧ୍ୟ ପର୍ବତ ନିକଟରେ ପହଞ୍ଚିଲେ । ସେଠାରେ ଧୁଆଁଧାର ପ୍ରପାତ ପର୍ବତ ଉପରୁ ଭୀଷଣ ଶବ୍ଦକରି ଭୂ ପୃଷ୍ଠକୁ ପତିତ ହୋଇ ନର୍ମଦା ନଦୀରେ ପରିଣତ ହୋଇଅଛି । ପର୍ବତ ଉପରୁ ଶୁଭ୍ର ସ୍ୱଚ୍ଛ ଜଳଧାର ବହିପଡ଼ିବାର ଦୃଶ୍ୟକୁ କବି ଶିବଙ୍କ ଜଟାରୁ ଝରି ପଡ଼ୁଥିବା ଗଙ୍ଗାନଦୀ ସହିତ ଉପମା ଦେଇଛନ୍ତି । ଜଳ ପ୍ରପାତର ନିମ୍ନଦେଶରେ ଜଳକଣା ମିଶ୍ରିତବାୟୁରେ ସୃଷ୍ଟି ହୋଇଥିବା ମେଘଖଣ୍ଡରେ ସୂର୍ଯ୍ୟ କିରଣ ପଡ଼ି ଇନ୍ଦ୍ରଧନୁ ସୃଷ୍ଟି କରିବାର କବି ଲକ୍ଷ୍ୟ କରିଛନ୍ତି । କବି ଧୁଆଁଧାର ପ୍ରପାତର ଭୀଷଣ ଶବ୍ଦ ଶୁଣିଲେ ଏବଂ ଜଳର ପତନ ସନ୍ଦର୍ଶନ କଲେ ।

ନର୍ମଦା ନିକଟରୁ ବିଦାୟନେଇ କବି ଦକ୍ଷିଣଭାରତର ଝିଲ୍ଲୀ-ଝଙ୍କାରିତ ଦଣ୍ଡକାରଣ୍ୟକୁ ଯାଇଥିଲେ । ସେଠାରେ ସେ ଦେଖିଲେ ତୀର୍ଥାଶ୍ରମ, ଗିରି,ନଦୀ, କନ୍ଦର ଓ ମହାରଣ୍ୟର ଶୋଭା ।ଦୂଷଣ, ତ୍ରିଶିର ଓ ଖର ନାମକ ରାମାୟଣ ବର୍ଣ୍ଣିତ ତିନିଜଣ ରାକ୍ଷସଙ୍କର ବାସସ୍ଥାନ ଏହିଠାରେ ଥିଲା । ଆକାଶରେ ନବୀନମେଘର ଗର୍ଜନ ଶୁଣିଲେ ଏହି ସ୍ଥାନରେ ଥିବା ସୀତାଙ୍କ ଦ୍ୱାରା ପାଳିତ ମୟୂରମାନଙ୍କର ବଂଶଧରମାନେ ଏବେ ମଧ୍ୟ କଦମ୍ବ ବୃକ୍ଷଶାଖାରେ ନୃତ୍ୟଚଞ୍ଚଳ ହୋଇଉଠିଥାଆନ୍ତି । ଏହି ମୟୂରମାନଙ୍କୁ ଦେଖିଲେ ସେସମୟର ରାମଚନ୍ଦ୍ରଙ୍କର ଆଶ୍ରମର ଅବସ୍ଥିତିର ସୀମା ସୂଚିତ ହୋଇଥାଏ । ଗୋଦାବରୀ ଯେଉଁ ସ୍ଥାନରେ

ଭୀଷଣ ଶବ୍ଦ କରି ପାହାଡ ଉପରୁ ତଳକୁ ଖସିପଡନ୍ତି ସେହି ସ୍ଥାନର କୌଣସି ଏକ ପାହାଡ଼ଗୁମ୍ଫାରେ ବସି କବି ସେହି ସୌନ୍ଦର୍ଯ୍ୟରେ ସନ୍ତୁଷ୍ଟଚିତ୍ତ ନହୋଇ ଚିଲିକାର ସୌନ୍ଦର୍ଯ୍ୟକୁ ବାରମ୍ବାର ମନେ ପକାଇଥିଲେ ।

ତାପରେ କବି ବାତ୍ୟା ଆନ୍ଦୋଳିତ ସାଗରଗର୍ଭରେ ପ୍ରବେଶ କଲେ । ସେଠାରେ ସେ ଦେଖିବାକୁ ପାଇଲେ ସେ ଚକ୍ରବାଳରେ ଲୌହରଜ୍ଜୁ ସଦୃଶ ଗୋଲାକାର ମହାର୍ଣ୍ଣବ ସହିତ ମହାକାଶ ମିଶିଯାଇ-ଅଛି । ଗୋଟିକ ପରେ ଗୋଟିଏ ତରଙ୍ଗ ପୋତକୁ ଗ୍ରାସ କରିବାପାଇଁ ମାଡ଼ିଆସୁଥାଏ । ଭାରତର ଭିନ୍ନ ଭିନ୍ନ ସ୍ଥାନରେ ଭ୍ରମଣକରି କବି ଏହିପ୍ରକାର ବହୁ ଦୃଶ୍ୟ ଅବଲୋକନ କରିଥିଲେ । ଏହି ଦୃଶ୍ୟ-ଗୁଡ଼ିକ କେଉଁଠାରେ ବିକଟ, ପୁଣି କେଉଁଠାରେ ଉଦାର ।" ଏଗୁଡ଼ିକ ଦେଖି କବିଙ୍କ ମନରେ ଅଶେଷ ବିସ୍ମୟ ଜାତ ହୋଇଥିଲା । ସୌନ୍ଦର୍ଯ୍ୟ ଉପଭୋଗ କରିବାକୁ ଆସିଥିବା କବିଚିତ୍ତ ବିଭ୍ରାନ୍ତ ହୋଇଗଲା । କବି ଏହି ଦୃଶ୍ୟଗୁଡ଼ିକ ସନ୍ଦର୍ଶନ କରିବା ସମୟରେ ନିଜର ସତ୍ତା ବିଲୁପ୍ତି ଅନୁଭବ କରିଥିଲେ । ପ୍ରଖର ସୂର୍ଯ୍ୟକିରଣ ଯେପରି ତାରାମାନଙ୍କର ସତ୍ତାକୁ ଲୋପ କରିଦିଏ, ଏହି ଦୃଶ୍ୟଗୁଡ଼ିକ ସେପରି କବିଙ୍କର ଅସ୍ମିତାକୁ ଲୋପ କରିଦେଲା । କବିଙ୍କର ମନରେ ଭାବଜାତ ହେଲା ଯେ, ଏହି ଦୃଶ୍ୟଗୁଡ଼ିକ ଗୁରୁଜନ ସଦୃଶ ତାଙ୍କ ହୃଦୟରେ ଭୀତି ସଞ୍ଚାର କରୁଛି ଏବଂ ଚିଲିକା ସଖୀ ସଦୃଶ ତାଙ୍କ ହୃଦୟରେ ପ୍ରୀତି ସଞ୍ଚାର କରୁଛି । ଏହି ସ୍ଥାନଗୁଡ଼ିକ ଇତର ଲୋକମାନଙ୍କ ପକ୍ଷରେ ଅବସାଦକର ଏବଂ ଯୋଗୀଋଷିମାନଙ୍କ ପକ୍ଷରେ ମନୋହର । ସୂର୍ଯ୍ୟକିରଣ ପାଇ ପଦ୍ମର ଆନନ୍ଦଭାବ ବୃଦ୍ଧି ଲଭ କରିଥାଏ, ମାତ୍ର ଅନ୍ୟ ପୁଷ୍ପମାନେ ତାହାଦ୍ୱାରା ଝାଉଁଳି ପଡ଼ନ୍ତି । ଯେଉଁ ଫୁଲ-ଗୁଡ଼ିକ ସୂର୍ଯ୍ୟକିରଣରେ ଝାଉଁଳି ପଡ଼ନ୍ତି, ସେମାନେ ଚନ୍ଦ୍ରକିରଣରେ ଆନନ୍ଦ ଲଭ କରନ୍ତି । ଚିଲିକାର ଦର୍ଶନରେ ଦର୍ଶକ ସୁମଧୁର ଶାନ୍ତି ଆସ୍ୱାଦନ କରିଥାଏ । ଚିଲିକା ବିରାଟ ନୁହେଁ, ବୃହତ ନୁହେଁ, ତାର ସୌନ୍ଦର୍ଯ୍ୟ ଉପଭୋଗ କରିବା ସମୟରେ ଦର୍ଶକର ମନ ସ୍ତବ୍ଧ ନହୋଇ

ଉନ୍ନତ ହୋଇଥାଏ । ଚିଲିକା ତୀରରେ ବସି ତାର ସୌନ୍ଦର୍ଯ୍ୟ ଉପଲବ୍ଧି କରିବା ସମୟରେ ଦର୍ଶକର ମନ ଅବସାଦ ଅଥବା ଆତ୍ମବିସ୍ମୃତିରେ ବୁଡ଼ିଯାଏ ନାହିଁ । ତାର ସ୍ନିଗ୍ଧରୂପ ଦର୍ଶକର ଚିତ୍ତକୁ ଉଲ୍ଲସିତ କରେ ; ଏହାକୁ ଦର୍ଶନ କରିବା ସମୟରେ ଦର୍ଶକର ଆତ୍ମବିସ୍ମୃତି ନ ଘଟିବାରୁ ଏହା ଦ୍ୱୈତଭାବର ଦ୍ୟୋତକ । ଏଇଠାରେ କବିଭାବନାର ଦ୍ୱିତୀୟ ଅଂଶ ଶେଷ ହୋଇଅଛି ।

କବି ଭାବନାର ତୃତୀୟ ଅଂଶ ୧୩୯ ଧାଡ଼ିଠାରୁ ଆରମ୍ଭ କରି ୨୩୨ ଧାଡ଼ି ମଧ୍ୟରେ ପ୍ରକାଶ ପାଇଅଛି । ଏହି ଅଂଶରେ ଚିଲିକାର ସୌନ୍ଦର୍ଯ୍ୟ, ବିଶେଷତଃ ଶରତ୍ ଋତୁରେ ଚିଲିକା କିପରି ଅପରୂପ ସୌନ୍ଦର୍ଯ୍ୟ ଧାରଣ କରେ ତାହା ବର୍ଣ୍ଣିତ ହୋଇଅଛି ।

ଚିଲିକାର ନୀଳବକ୍ଷ ସବୁବେଳେ ସଙ୍ଗୀତ-ମୁଖର । ସେହି ସଙ୍ଗୀତ ଚିଲିକାର ଚିର ସହଚର । ପକ୍ଷୀମାନେ ଦଳ ଦଳ ହୋଇ ଚିଲିକାର ତରଙ୍ଗରେ ଦୋହଲି ଦୋହଲି ଭାସମାନ ଶ୍ୱେତପ୍ରାସାଦ ସମ ପ୍ରତିଭାତ ହୁଅନ୍ତି । ସେମାନେ ତରଙ୍ଗର ଦୋଳାରେ ଦୋହଲିବା ସମୟରେ କୂଜନ କରି ଚିଲିକାର ବକ୍ଷକୁ ସଙ୍ଗୀତ ମୁଖରିତ କରିଥାଆନ୍ତି । ପୁଣି, ଚିଲିକାର ଊର୍ଦ୍ଧ୍ୱ ଦେଶରେ ପକ୍ଷୀମାନେ ଉଡ଼ୁଥାଆନ୍ତି । ଏମାନଙ୍କର ଛାୟାରେ ଚିଲିକାର ନୀଳ ଜଳରାଶି ନୀଳତର ହୋଇଥାଏ । ଆକାଶରୁ ଲକ୍ଷ୍ୟକରି ଗାଙ୍ଗୋଇ ପାଣିରେ ପହଁରୁଥିବା ମାଛକୁ ଝାମ୍ପ ମାରିଥାଏ । ଚିଲିକାର ତରଙ୍ଗରେ ନୀଳ, କଳା, ପୀତ, ଲୋହିତ ପ୍ରଭୃତି ବିଭିନ୍ନ ରଙ୍ଗର ପକ୍ଷୀମାନେ ସନ୍ତରଣ କରି ଶୋଭା ପାଉଥାଆନ୍ତି । ଶରାଳି ପକ୍ଷୀର ସ୍ୱନ ଜଳଦେବୀଙ୍କର କିଙ୍କିଣୀର ଶବ୍ଦପରି ଶୁଭୁଥାଏ ; ନୀଳବର୍ଣ୍ଣର ଜଳରାଶି ଉପରରୁ ଦଳ ଦଳ ହୋଇ ମତ୍ସ୍ୟ ଡେଇଁ ନିଜର ଶୁଭ୍ର ଶରୀରର କାନ୍ତି ପ୍ରଦର୍ଶନ କରୁଥାଆନ୍ତି । ମୁକ୍ତା ଏବଂ ଶୁକ୍ତିର ଧବଳିମାକୁ ନିନ୍ଦାକରି ଭେକଟା ମାଛ ତାର ଚିକ୍କଣ ଶରୀରକୁ ପ୍ରଦର୍ଶନ କରୁଥାଏ । ବିଷଜର୍ଜରିତ ଅସ୍ଥି ପ୍ରାପ୍ତ ଲାଙ୍ଗୁଳ ଥିବା ସଙ୍କୁଚ ଭୟ ପ୍ରଦର୍ଶନ କରୁଥାଏ । ଚକ୍ଷୁର ପଲକପାତ ମଧ୍ୟରେ ଶିଶୁମାର ତରଙ୍ଗ ଉପରେ ଦେଖାଦେଇ ପୁଣି ବୁଡ଼ିଯାଏ । ମଗର ନିଜର କଳାମୁଣ୍ଡ ଦେଖାଇ ଏଣେ ତେଣେ ବୁଲୁଥାଏ ।

...ସ୍ୱିପର ଭାବରେ ଚିଲିକା ବକ୍ଷରେ ବିଚରଣ କରି କୋଟି କୋଟି ଜୀବ ସେମାନଙ୍କର ଜୀବିକା ନିର୍ବାହ କରନ୍ତି । ଏହାଦ୍ୱାରା ଚିଲିକାର ଅକ୍ଷୟ ଭଣ୍ଡାର କେବେହେଲେ ଶୂନ୍ୟ ହୋଇଯାଏ ନାହିଁ ।

ଚିଲିକାର ନୀଳ ବକ୍ଷକୁ ତାଡ଼ିତ କରି ଅଗଣିତ ହଂସ ବିଭିନ୍ନ କୌଶଳେ କ୍ରୀଡ଼ା କରୁଥାଆନ୍ତି । ଏମାନେ ଅନ୍ୟ ଦେଶରୁ ଆସି ଚିଲିକାର ଶୋଭା ବର୍ଦ୍ଧନ କରୁଥାଆନ୍ତି । ଆବିଳ ଜଳର ଆବିଳତାକୁ ଦୂରକରି, ସରୋବରର କୁମୁଦର ହାସ ପ୍ରକାଶ କରି, ଦକ୍ଷିଣ ଦିଗ୍‌ବଧୂର ମଥାମଣି ମନୋଜ୍ଜ୍ୱଳ କୁମ୍ଭସମ୍ଭବଙ୍କ ଜ୍ୟୋତି ଅର୍ଥାତ୍ ଅଗସ୍ତ୍ୟ ନକ୍ଷତ୍ର ଦେଖାଦେଲେ ଏହି ହଂସମାନେ ଚିଲିକା ବକ୍ଷରେ କଳକଳ ସୃଷ୍ଟି କରନ୍ତି । ଶରତ ଋତୁରେ ହଂସମାନେ ଚିଲିକାକୁ ଆସନ୍ତି ବୋଲି କବି ସେମାନଙ୍କୁ ଶରତର ସହଚର ଭାବରେ ଚିହ୍ନିତ କରିଅଛନ୍ତି । ଉଜ୍ଜ୍ୱଳ ଶରତ ଲକ୍ଷ୍ମୀଙ୍କର ପରିଜନ ଭାବରେ ହଂସମାନେ ସବୁ ସ୍ଥାନରେ ଭ୍ରମଣ କରନ୍ତି । ସ୍ୱଚ୍ଛ ଚନ୍ଦ୍ରିକାପ୍ଲୁତ ରଜନୀ, କାଶତଣ୍ଡି ପୁଷ୍ପମାନ ହାସମୟୀ ସ୍ୱଚ୍ଛ ନଦୀ, ମାଳତୀ ନିକୁଞ୍ଜ, କୁମୁଦପୂର୍ଣ୍ଣ ଧବଳ ସରୋବର ପ୍ରଭୃତି ଶରତର ଅନୁଗ୍ରହ ଚାହିଁଥିବାରୁ ଏହି ସମ୍ପଦର ଦାୟାଦ ସ୍ୱରୂପ ହଂସମାନେ ଦେଖାଦେଇ-ଥାଆନ୍ତି । ଏମାନେ ନିଜେ ଶୁଭ୍ର ଓ ଶୁଭ୍ର ପରିବେଶ ମଧ୍ୟରେ ବିଚରଣ କରନ୍ତି । ଏମାନଙ୍କର ସଂସାର ସବୁବେଳେ ଶୁଭ୍ରମୟ । ଶୁଭ୍ର ଶରତର ଜୟ ପତାକା ପରି ଏମାନେ ଦଳ ଦଳ ହୋଇ ଆକାଶରେ ବିହାର କରନ୍ତି ।

ଚିଲିକାର ନୀଳବକ୍ଷ ଉପରୁ କବିଙ୍କର ଦୃଷ୍ଟି ପୁଣି ଚିଲିକାର ତୀରଦେଶକୁ ଫେରି ଆସିଛି । ଚିଲିକାର ତୀରଦେଶ ଲକ୍ଷ୍ମୀଙ୍କର କ୍ରୀଡ଼ା ଭୂମି । ସବୁବେଳେ ଏହା ଫଳ, ଫୁଲ ଓ ଶସ୍ୟଦ୍ୱାରା ସୁଶୋଭିତ । ନାରିକେଳ, ଗୁଆ, ପଣସ, ଆମ୍ବ, ମୁଚୁକୁନ୍ଦ, ଚମ୍ପା, ପୁନ୍ନାଗ, ତମାଳ, ବସନ୍ତ ବଉଳ ବିକାଶୀ ଅଶୋକ, ମେଘର ଆଡ଼ମ୍ବର ବିଳାସୀ କଦମ୍ବ, ଶିବଙ୍କର ପ୍ରିୟ ବେଲ, ସଦା ଚଳଦଳ ପିପ୍ପଳ, ଚଲି ବସା ବାନ୍ଧିଥିବା ବହୁ କାଳର ବିରାଟକାୟ ଶାଲ୍ମଳୀ ପ୍ରଭୃତି ବହୁ ପ୍ରକାର ବୃକ୍ଷ ଚିଲିକାର ତୀରଭୂମିରେ ଦେଖାଯାଏ । ଚିଲିକା ଉପକୂଳରେ ଥିବା ଗ୍ରାମଦେବତାଙ୍କ

ମଣ୍ଡପରେ ଗୋଡ଼ତାଣ ଫୁଲ ଫୁଟି ମଣ୍ଡପର ଗୃନ୍ଦୁଆ ଭଳି ଶୋଭାପାଏ । ଶିବମନ୍ଦିର ନିକଟରେ ଥିବା କନିଅର ଗଛରେ ଫୁଲଫୁଟି ଶୋଭାପାଏ । ଏହା ମଧ୍ୟରେ ସୁବର୍ଣ୍ଣ ପାନମାନ ଏବଂ ଚଳୀ ବଳାସିନୀର ଅମଳ କପୋଳରେ ଅଳଙ୍କାର । ଚିଲିକା କୂଳରେ ମାଳମାଳ ହୋଇ ଉଚ୍ଚ ତାଳଗଛ ଦେଖାଯାଏ । ତାଳ ଗଛକୁ କବି ବୈଦୁର୍ଯ୍ୟ ମୁକୁଟଧାରୀ ବୋଲି ବର୍ଣ୍ଣନା କରିଅଛନ୍ତି । ତାଳଗଛର ବାହୁଗୁଚ୍ଛକୁ ଆଶ୍ରୟକରି ବାୟା ଓ ବାୟାବଧୂ ନିର୍ଭୟରେ ବାସ କରନ୍ତି । ତାଳଗଛ ମୂଳରେ ଥିବା ଭୀଷଣ ବିଷଧର ସର୍ପ ପ୍ରତି ଭ୍ରୂକ୍ଷେପ ନକରି ଏମାନେ ଆନନ୍ଦରେ ଥାଆନ୍ତି । ତାଳ ଗଛର ବାହୁଙ୍ଗାରେ ଝୁଲୁଥିବା ସ୍ୱର୍ଣ୍ଣବର୍ଣ୍ଣର ଫାଡ଼ରେ ବାୟାଚଢ଼େଇ ତାର ଶାବକମାନଙ୍କୁ ସ୍ନେହରେ ଝୁଲଉଥାଏ । ଅଶ୍ରିତ ଜୀବମାନଙ୍କୁ ଛାୟାପ୍ରଦାନ କରି, ନିଜେ କଷ୍ଟସହି ଅନ୍ୟର ଦୁଃଖକୁ ହରଣ କରୁଥିବା ବଟଦ୍ରୁମ ଚିଲିକାତୀରରେ ଅଛି । ଏହାର ଓହଳଗୁଡ଼ିକ ଭୂପୃଷ୍ଠରେ ଲାଗି ସ୍ତମ୍ଭରେ ପରିଣତ ହୋଇଅଛି । ଓହଳଗୁଡ଼ିକୁ କବି ବୃକ୍ଷର ଯୋଗ୍ୟପୁତ୍ର ରୂପରେ ବର୍ଣ୍ଣନା କରିଅଛନ୍ତି । ବଟଦ୍ରୁମର ମରକତମଣି ସମବର୍ଣ୍ଣ ପତ୍ର, ପଦ୍ମରାଗମଣି ସମବର୍ଣ୍ଣ ଫଳ ଦ୍ୱାରା ଗ୍ରାମର ସୀମାନ୍ତ ଶୋଭା ପାଇଥାଏ । ଏଥିରେ ମଧ୍ୟାହ୍ନ ସମୟରେ ହଳଦିବସନ୍ତ ସହିତ ଟୁଣ୍ଟୁଣିମୂଷାର କଳି ଶୁଭୁଥାଏ । ଚିଲିକାତୀରରେ ଥିବା ଗ୍ରାମମାନ ଏହିସବୁ ବୃକ୍ଷମାନଙ୍କ ଦ୍ୱାରା ବିଶେଷ ଭାବରେ ମଣ୍ଡିତ । ଚିଲିକା ବକ୍ଷରୁ ବହି ଆସୁଥିବା ସମୀରଣ ବୃନ୍ତରେ ପ୍ରସ୍ଫୁଟିତ କେତକୀ ଫୁଲକୁ ସର୍ବଦା ସେବା କରୁଥାଏ । କବି ଏହିସବୁ ଦୃଶ୍ୟକୁ ବହୁବାର ଦେଖିଥିଲେହେଁ ପ୍ରତ୍ୟେକ ଥର ଏହା ତାଙ୍କୁ ନୂତନ ମନେ ହୋଇଥିଲା । ପୂର୍ବରୁ ଦେଖିଥିଲେହେଁ ତାହା ଅପୂର୍ବ ମନେହେବା ସୁନ୍ଦରପଣର ଚିରନ୍ତନ ସତ୍ୟ । ତେଣୁ ସୌନ୍ଦର୍ଯ୍ୟ ଉପଭୋଗରେ ତୃପ୍ତିର ସମାପ୍ତି ନାହିଁ । ତାହାକୁ ଯେତେ ଦେଖୁଥିଲେହେଁ ତାହା ନୂଆ ଦିଶୁଥାଏ ।

କବିଭାବନାର ଚତୁର୍ଥ ଅଂଶରେ ଚିଲିକାର ପଶ୍ଚିମତୀରର ଶୋଭା ବର୍ଣ୍ଣିତ ହୋଇଅଛି । ଏହା କାବ୍ୟର ୨୩୩ ଧାଡ଼ିଠାରୁ ଆରମ୍ଭ କରି ୩୩୮ ଧାଡ଼ି ପର୍ଯ୍ୟନ୍ତ ବ୍ୟାପ୍ତ ।

ଚିଲିକାର ପଶ୍ଚିମଖଣ୍ଡର ଶୋଭାର ନିଜସ୍ୱ । ଏହି ଶୋଭାକୁ ସନ୍ଦର୍ଶନ କଲେ କାହା ହୃଦୟ ବା ତହିଁରେ ଲାଖି ନ ରହିବ ? ପାହାଡ଼ରେ ଅବସ୍ଥିତ ଶ୍ୟାମଳ, ନୀଳ ଓ ନୀଳାଭର ମେଘାଳ ସ୍ତରସ୍ତର ଭାବରେ ଶୋଭା ପାଉଅଛି । ଭାଲେରୀ ପର୍ବତ ଚିଲିକାଗର୍ଭରେ ଉଚ୍ଚ ଆକାଶଚୁମ୍ବୀ ପ୍ରାଚୀର ସଦୃଶ ଶୋଭା ପାଉଅଛି । ଭାଲେରୀର ନାସି ସମାନ୍ତର ଭାବରେ ସୂକ୍ଷ୍ମାକାରରେ ଚିଲିକାର ନୀଳ ଜଳରାଶି ମଧ୍ୟକୁ ପ୍ରବେଶ କରିଅଛି । ଭାଲେରୀ ପର୍ବତର ଶିଖରଦେଶ ପର୍ଯ୍ୟନ୍ତ ଏକେଣ ଚେଟେଣ ବାଟ ପଡ଼ିଅଛି । ଜଟିଆ ପାହାଡ଼ ଶ୍ୟାମଳବର୍ଣ୍ଣ ଧାରଣ କରି ଓ ନିଜକୁ ଗୁଳ୍ମାବୃତ କରି ଚିଲିକାର ଗର୍ଭକୁ ଯାଇ ଜଳ-ମଧ୍ୟରେ ପ୍ରବେଶ କରିଅଛି । ଜଟିଆ ନାସିକୁ ଚିନ୍ଦାଗଡ଼ରୁ ଚିଲିକାର ତରଙ୍ଗ ଗର୍ଜନ କରି ଆକ୍ରମଣ କରନ୍ତି ଏବଂ ଶେଷରେ କେବଳ ନିଜର କ୍ଳୀବତ୍ୱ ପ୍ରକାଶ କରନ୍ତି । ଚିଲିକାର ତଟଦେଶରେ ଅରଣ୍ୟ ମଧ୍ୟରେ ଅନ୍ଧାରୁଆ ଅବସ୍ଥିତ । ଏହି ସ୍ଥାନଟି ଜଳଦେବୀଙ୍କର କୋଳିଗୁହା । ଏହି ଗୁହାରେ ପାଷାଣଭେଦୀ ଗୁଳ୍ମ ଉଠିଥାଏ ଏବଂ ଏହାଦ୍ୱାରା ଏକ ତୋରଣର ଶୋଭା ସୃଷ୍ଟି ହୋଇଥାଏ । ଗୁହାର ଚଟାଣ ଶିଉଳିସ୍ତର ଦ୍ୱାରା ଚିକ୍କଣ ହୋଇଅଛି । ଜଳବାସିନୀ ଅପ୍ସରାମାନେ ଏଠାରେ ସ୍ୱଚ୍ଛ ମୁକ୍ତାଫଳ ଦ୍ୱାରା ସେମାନଙ୍କର କବରୀ ମଣ୍ଡନ କରନ୍ତି । ବୃକ୍ଷଲତା ଶୂନ୍ୟ ରୁକ୍ଷ ସିଂହେଶ୍ୱର ପର୍ବତ ଏଠାରେ ଅବସ୍ଥିତ ।

ନିର୍ମଳ ଜଳପୂର୍ଣ୍ଣ ସାଲିଆ ନଦୀ ଚିଲିକା ଗର୍ଭରେ ପତିତ ହୋଇଅଛି । ଏହାର ତଟଦେଶରେ ଘଣ୍ଟଶିଳା ପାହାଡ଼ ଅବସ୍ଥିତ । ଇନ୍ଦ୍ରମଣି କାନ୍ତି ଧାରଣ କରିଥିବା ସୋଲରୀ ପର୍ବତକୁ ଦେଖି କବି ବର୍ଣ୍ଣନା କରିଛନ୍ତି, ସତେ ଯେପରି ସୂର୍ଯ୍ୟପୁତ୍ର ବଳି ଦୈତ୍ୟଶିଳ୍ପୀ ମୟଙ୍କ ଦ୍ୱାରା ନିର୍ମିତ ରଥରେ ବସି ପୃଥିବୀ ଭେଦକରି ଉପରକୁ ଉଠିଆସୁଛନ୍ତି । ଅପରାଜିତା ଫୁଲର ନୀଳିମାକୁ ହରଣ କରିଥିବା କେତେକ ପର୍ବତ ଦୂରରେ ଶୋଭା ପାଉଛନ୍ତି । ହସ୍ତୀର ମସ୍ତକ ଆକୃତି ଧାରଣ କରିଥିବା ଖଣ୍ଡାହଣା ପାହାଡ଼ର ପ୍ରାନ୍ତରରେ ପୃଥକ-

ମାନେ ତଟଭ୍ରଷ୍ଟ ହୋଇଥାଆନ୍ତି । ଏହି ସ୍ଥାନଟି ଅନ୍ଧକାରପୂର୍ଣ୍ଣ । ମଧ୍ୟାହ୍ନ ସମୟରେ ମଧ୍ୟ ଏହା ଏପରି ଅନ୍ଧକାରମୂର୍ତ୍ତି ଯେ, ଏହି ଅନ୍ଧକାରକୁ କବି କନ୍ଦୀପକ୍ଷ୍ମମାନଙ୍କର ଶ୍ମଶ୍ରୁର ଅନୁରୂପ କଳ୍ପନା କରିଛନ୍ତି । ଘନ ବଂଶବନ ଓ ନାଗଷ୍ଟୁମ୍ବି ଶ୍ରେଣୀଆ ମନୋ-ହେଳାକାଶରରେ ଅବସ୍ଥିତ । ସର୍ପାକୃତ ଶୀର୍ଷ ମୈନାକ ପର୍ବତର ଶିଖରଦେଶରେ ଚନ୍ଦ୍ରପୁରର ଅଧିଷ୍ଠାତ୍ରୀ ଦେବୀଙ୍କ ମନ୍ଦିର । ତାହାର ପଶ୍ଚିମ ତଟରେ ଏହିସବୁ ପର୍ବତମାନଙ୍କର ସାମୂହିକ ଶୋଭା ଏପରି ଯେପରି ବାରୁଣୀ-ବଦନରେ ମୃଗମଦାଙ୍କିତ ପତ୍ରାବଳୀର ଶୋଭା ଧାରଣ କରିଥାଏ ।

ଚିଲିକାର ପୂର୍ବଭାଗରୁ ନୌକା ଆରୋହଣ କରି ପଶ୍ଚିମ-ଭାଗକୁ ଅଗ୍ରସର ହେବା ସମୟରେ ଏହିସବୁ ଦୃଶ୍ୟ କ୍ରମାଗତ ଭାବରେ ଦର୍ଶକର ଦୃଷ୍ଟିପଥାରୂଢ଼ ହୋଇଥାଏ । ଦୂରଦେଶରୁ ଦେଖିଲେ ପର୍ବତମାନଙ୍କର ଅଗ୍ରଭାଗ ସତେଯେପରି ଆକାଶକୁ ସ୍ପର୍ଶ କରିବା ପରି ଦେଖାଯାଏ । ଚିଲିକା ବକ୍ଷରେ ଦ୍ୱୀପମାନଙ୍କରେ ଥିବା ପର୍ବତ-ଗୁଡ଼ିକ ସତେ ଯେପରି ଇନ୍ଦ୍ରନୀଳମଣିରେ ନିର୍ମିତ ଗମ୍ବୁଜଗୁଡ଼ିଏ ଉପରକୁ ଉଠି ଆସୁଥିବା ପରି ଦେଖାଯାଏ । ଦୂରରୁ ଯେଉଁ ପାହାଡ଼-ଗୁଡ଼ିକ ଲଗାଲଗି ହୋଇ ରହିଥିବା ଭଳି ଦେଖାଯାଏ, କ୍ରମେ ନୌକା ଆଗକୁ ଗତିକରିବା ସମୟରେ ସେଗୁଡ଼ିକ ଛୁଡ଼ା ଛୁଡ଼ା ଥିବାପରି ଦେଖାଯାଆନ୍ତି । ଦୂରରୁ ଯାହା ସୂକ୍ଷ୍ମାକାର ଦେଖାଯାଉଥିଲା, କ୍ରମେ ତାହା ସ୍ଥୂଳାକାର ଦେଖାଯାଏ । ଦୂରରୁ ଯାହା ଗୋଟିଏ ବର୍ଣ୍ଣ ଧାରଣ କରିଥିବାର ଦେଖାଯାଏ, ନିକଟରେ ତାହା ଭିନ୍ନ ଭିନ୍ନ ବର୍ଣ୍ଣ ଧାରଣ କରିଥିବାର ଦେଖାଯାଏ । ଚକ୍ଷୁର ପଲକରେ ଛାୟା ଓ ଆଲୋକର କ୍ରୀଡ଼ା ଦେଖା ଦେଇଥାଏ । ସୂର୍ଯ୍ୟାସ୍ତ ସମୟରେ ପଶ୍ଚିମ ଆକାଶରେ ମେଘଖଣ୍ଡ ଭାସି ବୁଲୁଥାଏ । ଏହା ଅସ୍ତ ସୂର୍ଯ୍ୟର ସୁବର୍ଣ୍ଣ କିରଣରେ ରଞ୍ଜିତ ହୋଇଥାଏ । ସ୍ଥାନେ ସ୍ଥାନେ ପାହାଡ଼ ଉପରୁ ମେଘଖଣ୍ଡ ସ୍ୱର୍ଣ୍ଣକାନ୍ତି ଧାରଣ କରି ସତେ ଯେପରି ନିମ୍ନଦେଶକୁ ଝାଙ୍କି ପଡ଼ିବା ଭଳି ଦେଖାଯାଆନ୍ତି । ଏଗୁଡ଼ିକର ସୌନ୍ଦର୍ଯ୍ୟ ଆକାଶ

ଓ ସ୍ୱନଦ୍ୱୀପର ପ୍ରକାଶ ପାଇବାରୁ ଚିଲିକାବକ୍ଷରେ [illegible] ହୋଇଥାଏ ।

କବିବର ରାଧାନାଥ ଚିଲିକାର ଏହି ପ୍ରାକୃତିକ ଦୃଶ୍ୟ ପ୍ରତି ଆକୃଷ୍ଟ ହୋଇ କହିଅଛନ୍ତି ଯେ, ଏ କଣାଭୂମି ଉପମା ଏ ମର୍ତ୍ତ୍ୟଭୁବନରେ ନାହିଁ, ଯଦି ଥିବ ତେବେ ସ୍ୱର୍ଗରେ । ଏ ଶୋଭାସମ୍ଭାର ଅପ୍ସରା ଭୁବନକୁ ଦେଖି କେହି ଏହାକୁ ଭୁଲିପାରିବ ନାହିଁ । ସୌନ୍ଦର୍ଯ୍ୟପିପାସୁ ବାଣୀସାଧକ ଏହାକୁ ଥରେ ମାତ୍ର ଚିନ୍ତାକରି କୋଟିଥରଦେଖିଲେ ତୃପ୍ତିଲାଭ କରିପାରିବ ନାହିଁ । ଏହାକୁ କେହି କଥାରେ ପ୍ରକାଶ କରିପାରିବ ନାହିଁ, ଏହାକୁ କେବଳ ହୃଦୟ ଅନୁଭବ କରିପାରିବ ।

ନାନା ତୀର୍ଥର ଜଳ ଢେଉଗୁଡ଼ି ପ୍ରବାହିତ ହୋଇ ଆସି ଚିଲିକାର ଅଙ୍ଗକୁ ପବିତ୍ର କରିଥାଏ । ସର୍ବଦେବଦେବୀଙ୍କର ସ୍ନାନ ଫଳରେ ପବିତ୍ର ହୋଇଥିବା ଅଠରନଳା ନଦୀ ଚିଲିକାରେ ପତିତ ହୋଇ ଅଛି । ପୁନାଗ ଅରଣ୍ୟ-ଲକ୍ଷ୍ମୀଙ୍କର ଦର୍ପଣ ସଦୃଶ ଭୃଗୁଋଷିଙ୍କର ତପସ୍ୟା ଫଳରେ ଉଜ୍ଜ୍ୱଳ ହୋଇଥିବା ଜଳରାଶି ଧାରଣ କରି ଭାର୍ଗବୀ ନଦୀ ଚିଲିକାରେ ପଡ଼ିଅଛି । ଏହା ସ୍ୱର୍ଗଲାଭ ନିମିତ୍ତ ସୋପାନ ସଦୃଶ ଏବଂ ଏହାର ଜଳ ମାରବେଣୀ ଅତ୍ୟନ୍ତ ମନୋହର । ରତ୍ନଚିରା ନଦୀ ଚିଲିକାରେ ପଡ଼ିଅଛି । ଏହି ନଦୀରେ ବ୍ରାହ୍ମଣକନ୍ୟାମାନେ ସ୍ନାନକରିବା ସମୟରେ ସେମାନଙ୍କର ମୁଖଗୁଡ଼ିକ ହସ୍ତି ପଦ୍ମ ସମ ପ୍ରତିଭାତ ହୋଇଥାଏ । ମଞ୍ଜୁକୁଞ୍ଜଅନା କୁଞ୍ଜରେ ବିହାର କରିଥିବା ଓ ସାକ୍ଷୀଗୋପାଳଙ୍କର ହୃଦୟକୁ ହରଣ କରିଥିବା ବ୍ରାହ୍ମଣ କନ୍ୟା ଲକ୍ଷ୍ମୀଙ୍କର ସ୍ନାନ ଫଳରେ ରତ୍ନଚିରା ପୁଣ୍ୟନୀରା ହୋଇଅଛି । ଏହାର ଜଳ ସୌଗନ୍ଧିକ ଗନ୍ଧରେ ସୁଗନ୍ଧିତ । ଦଧିବାର, ଧୀବର ମୁନୀନ୍ଦ୍ର ଦଧୀଚିଙ୍କର ଅଭିଷେକ ଫଳରେ ଯାହାର ତଟଦେଶ ପବିତ୍ର, ଧର୍ମାଶୋକର ବନ୍ଧୁଦସ୍ୟୁର ଯେ ମୂର୍ତ୍ତିମନ୍ତ ବିଗ୍ରହ, ଧଉଳି ପର୍ବତର ଦର୍ଶନପ୍ରଦାନ [illegible] ଦୟାନଦୀ ପ୍ରବାହିତ ହୋଇ ଚିଲିକାରେ ପତିତ ହୋଇଅଛି । ଭୁବନେଶ୍ୱରଙ୍କର କେଳି ଉପବନ ଏକାମ୍ରକାନନର

ଗୁମ୍ଫା ଅନ୍ଧକାରରେ ମୃଦୁ କଳନାଦ କରି ମନ୍ଦାକିନୀ ନଦୀର ସ୍ୱଚ୍ଛଧାର ପ୍ରବାହିତ ହୋଇ ଉତ୍କଳର ରାଜ୍ୟର ବନ ମଧ୍ୟରେ ଗଡ଼ିକରି ଚିଲିକାରେ ପତିତ ହୋଇଅଛି । ଏହିସବୁ ବିଭିନ୍ନ ପୁଣ୍ୟୈଶ୍ୱର୍ଯ୍ୟର ସଙ୍କଳନ କରି ଚିଲିକାର ମନୋରମଚିତ୍ର ପୁଷ୍ଟ ହୋଇଅଛି । ମହୋଦଧିର ନୀର ମଧ୍ୟ ଚିଲିକାରେ ପ୍ରବେଶ କରିଥାଏ । ପବିତ୍ରତା ଓ ସୌନ୍ଦର୍ଯ୍ୟର ଅପୂର୍ବ ସମାବେଶ ଚିଲିକାରେ ହୋଇଅଛି । ତେଣୁ ଚିଲିକାର ତଟଦେଶ ଏବଂ ଚିଲିକା ମଧ୍ୟସ୍ଥ ଦ୍ୱୀପମାଳା ଦେବଦେବୀମାନଙ୍କର ବାସସ୍ଥଳୀରେ ପରିଣତ ହୋଇଅଛି । ତାରା, ଚଣ୍ଡୀ, ଭଗବତୀ, ନାଗେଶ୍ୱରୀ କୁଞ୍ଜବାସୀ ନକ୍ଷେଶ୍ୱର ମହାଦେବ ପ୍ରଭୃତି ଚିଲିକା ତୀରରେ ବାସ କରୁଅଛନ୍ତି ।

ଚିଲିକାର ସୌନ୍ଦର୍ଯ୍ୟ ଦର୍ଶନରେ ମନୁଷ୍ୟ ଚିତ୍ତର ସସୀମତା ଅସୀମରେ ପ୍ରବେଶ କରେ । ଏହିଠାରେ କବି ଭାବନାର ଚତୁର୍ଥ ଅଂଶ ଶେଷ ହୋଇଅଛି ।

କବି ଭାବନାର ପଞ୍ଚମଅଂଶରେ ଚିଲିକା ସମ୍ପୃକ୍ତ ଦୁଇଗୋଟି ତଥ୍ୟକଥିତ ଐତିହାସିକ କଥାବସ୍ତୁର ସଂଯୋଗ ସ୍ଥାପିତ ହୋଇଅଛି । କବି ଚିଲିକାକୁ ଅତୀତର ସାକ୍ଷୀ ଭାବରେ ସମ୍ବୋଧନ କରିଛନ୍ତି । ଚିଲିକା ମନୁଷ୍ୟର କେତେ ଉତ୍ଥାନ ଓ ପତନ ଦେଖିଅଛି । ଚିଲିକା ତୀରରେ କେତେ ରାଜାଙ୍କର ରାଜଧାନୀ ଗଢ଼ିଉଠିଛି, ପୁଣି ଅକାଳରେ ପତନର ସମ୍ମୁଖୀନ ହୋଇଅଛି । ବର୍ତ୍ତମାନ ଚିଲିକାର ଊର୍ମିମାଳା ସେହି ରାଜଧାନୀମାନଙ୍କର କାଳଚର୍ବିତ କଙ୍କାଳକୁ ଧୌତ କରୁଅଛି । କେତେ ରାଜା, କେତେ ଦିଗ୍‌ବିଜୟୀ ବୀର ଚିଲିକାର ନୀଳନୀରକୁ ଆଲୋଡ଼ିତ କରିଥିଲେ । ସେମାନେ ଚିଲିକାର ଆକାଶକୁ ଜୟବାଦ୍ୟରୋଳରେ ମୁଖରିତ କରି, ଚିଲିକାର ବାତ୍ୟାରେ ଜୟପତାକା ଉଡ଼ାଇ, ହୃଦୟରେ ଅକ୍ଷୟ ଯଶର ଆଶା ଧାରଣ କରି ଚିଲିକା-ବକ୍ଷରେ ତାମ୍ରର ସହିତ ନୌକା ଗୃଜନା କରିଥିଲେ । ସେମାନେ ଅଭିଯାନ କରିବା ସମୟରେ ସେମାନଙ୍କର ତସ୍କର ମେରୁଦଣ୍ଡର ଗୁମ୍ଫା ଯେପରି ଚିଲିକା ବକ୍ଷରେ ପଡ଼ି ସଙ୍ଗେ ସଙ୍ଗେ ଅନ୍ତର୍ହିତ ହୋଇ

ଯାଉଥିଲା ସେହିପରି ସେମାନଙ୍କର ଯଶ ସଙ୍ଗେ ସଙ୍ଗେ ଅନ୍ତର୍ହିତ ହୋଇଗଲା । ପୃଥିବୀରେ ଲକ୍ଷ ଲକ୍ଷ ଲୋକଙ୍କର ମୁଣ୍ଡମାଣି ଅଳ୍ପଦିନ ପାଇଁ ସେମାନେ କଣ ବା ନକଲେ ? ଯଶ ପ୍ରତିଷ୍ଠା କରିବା ନିମନ୍ତେ ଅତିମାତାରେ ଆଗ୍ରହୀ ହୋଇ ସେମାନେ ଯାହା କରିଗଲେ ତାହା ଦ୍ୱାରା ସେମାନଙ୍କର ଯଶ କଣ ପ୍ରତିଷ୍ଠିତ ହୋଇ ପାରିଲା ? ଭକ୍ତମାନଙ୍କ ପରି କାଳ କେବେହେଲେ ଈଶ୍ୱର ବଶବର୍ତ୍ତୀ ହୋଇ ନପାରେ ।

ଚିଲିକାକୁ କବି ଇତିହାସର ରଙ୍ଗସ୍ଥଳୀ ବୋଲି ସମ୍ବୋଧନ କରିଅଛନ୍ତି । ଚିଲିକା ତୀରରେ ଭବଗ୍ରାହୀ ପ୍ରଭୁ ଜଗନ୍ନାଥ ମାଣିକ ଗଉଡୁଣୀଠାରୁ ଦହି ଖାଇଥିଲେ । ଦିନେ କବି ଚିଲିକାତୀରରେ ନିକାଞ୍ଜନରେ ବସିଥିବା ସମୟରେ ପୁରୁଷୋତ୍ତମଦେବଙ୍କର କାଞ୍ଚିବିଜୟ କଥା ତାଙ୍କର ମନେ ପଡ଼ିଲା । କାଳସ୍ରୋତର ପ୍ରତିଲୋମ ଗତିରେ କବି ସ୍ୱପ୍ନରେ ଭାସିଯାଇ ଅମରୀ ବିରଞ୍ଚିତ ଧାମରେ ପହଞ୍ଚିଲେ । ସେଠାରେ ସେ ସରସ୍ୱତୀଙ୍କର ସହଚରୀ କଳ୍ପନା ସୁନ୍ଦରୀଙ୍କୁ ଦେଖିଲେ । କବି ତାଙ୍କୁ ଭକ୍ତି ସହକାରେ ଆରାଧନା କରିବାରୁ ସେ ତାଙ୍କୁ ଦିବ୍ୟ ଚକ୍ଷୁ ପ୍ରଦାନ କଲେ । ତାପରେ କବି ଚିଲିକାତୀରରେ ବସି ଯେଉଁ ଦୃଶ୍ୟ ଦେଖିଲେ ତାହା ତାଙ୍କର ସ୍ମୃତି ପଟରେ ଲିଖି ରହିଲା । ପବନରେ ଅଞ୍ଚଳମାଳାକୁ ସ୍ଫୀତ କରି ଦକ୍ଷିଣରୁ ଶତ ଶତ ତରୀ ଆସିବାର କବି ଦେଖିଲେ । ସେହି ତରୀଗୁଡ଼ିକରେ ସୈନିକମାନେ ବସିଥିଲେ । ସେମାନଙ୍କର ଶରୀରର ସାଞ୍ଜୁ ଓ ଅସ୍ତ୍ରଶସ୍ତ୍ର ସୂର୍ଯ୍ୟ କିରଣରେ ଉଦ୍ଭାସିତ ହେଉଥିଲା । ସ୍ୱର୍ଣ୍ଣ ବର୍ଣ୍ଣର ସୁଦର୍ଶନ ଚିହ୍ନରେ ଚିହ୍ନିତ ନୀଳ ପତାକା ପବନରେ ଉଡ଼ୁଥିଲା । ଚିଲିକା ବକ୍ଷରେ ତାଳଦେଇ କ୍ଷେପଣୀ ପଡୁଥିଲା ଓ ଜୟଗୀତର ଧ୍ୱନି ଶୁଭୁଥିଲା । ସମସ୍ତ ତରୀ ମଧ୍ୟରେ ଏକ ଗଜଦନ୍ତ ନିର୍ମିତ ତରୀ ଅତ୍ୟନ୍ତ ଶୋଭା ପାଉଥିଲା । ସେହି ତରୀରେ ସ୍ଫଟିକର ଯଷ୍ଟି ସାହାଯ୍ୟରେ ରଙ୍ଗୀନ ଚାନ୍ଦୁଆ ଟଣା ଯାଇଥିଲା । ଚାନ୍ଦୁଆରେ ସୁନାର ତାରକା ଖଚିତ ହୋଇଥିଲା । ଚାନ୍ଦୁଆର ତଳେ ଝାଲର ପରି ପଦ୍ମସଂବୃତ ଫୁଲ ସୁନ୍ଦର ଭାବରେ ଝୁଲୁଥିଲା । ସେହି ତରୀରେ ସିଂହାସନ

ଉପରେ ଜଣେ ସୁନ୍ଦରୀ ଯୁବତୀ ବସିଥିଲେ । ସେ ଥିଲେ ସୌନ୍ଦର୍ଯ୍ୟରେ ଅନୁପମା । ସମୁଦ୍ର ମନ୍ଥନରୁ ବାହାରି ପାରିଜାତ କୁଞ୍ଜରେ ଲକ୍ଷ୍ମୀ ଯେପରି ଶୋଭା ପାଉଥିଲେ, ଏହି ସୁନ୍ଦରୀ ଯୁବତୀ ତରୀମଧ୍ୟରେ ସେହିପରି ଶୋଭା ପାଉଥିଲେ । ତାଙ୍କର ମୁଖ ବିଷାଦପୂର୍ଣ୍ଣ ଥିବାରୁ ମ୍ଳାନ ଦେଖାଯାଉଥିଲା ଏବଂ ଭ୍ରୂଭଙ୍ଗରେ ଲଜ୍ଜାର ସୂଚନା ମିଳୁଥିଲା । ଭ୍ରୂମଧ୍ୟରେ କୁଙ୍କୁମର ବିନ୍ଦୁ ଏବଂ କର୍ଣ୍ଣଦ୍ୱୟରେ ମଣିମୟ କର୍ଣ୍ଣଭୂଷଣ ଶୋଭା ପାଉଥିଲା । ତାଙ୍କର ପୃଷ୍ଠଦେଶରେ ଦୋଳୁଥିବା କୃଷ୍ଣ କେଶ ମଣିମୟ କର୍ଣ୍ଣଭୂଷଣରେ ବିପରୀତ କାନ୍ତି ସୃଷ୍ଟି କରୁଥିଲା । ସୁଗନ୍ଧଦ୍ୱାରା ଆକୃଷ୍ଟ ହୋଇ ଭ୍ରମରମାନେ ତାଙ୍କର ଚତୁର୍ପାର୍ଶ୍ୱରେ ଉଡ଼ିବୁଲି ଗୁଞ୍ଜରଣ କରି ତାଙ୍କୁ ଆକୁଳ କରିଦେଉଥିଲେ । ସେ ଦକ୍ଷିଣହସ୍ତରେ ଲୀଳା ଅରବିନ୍ଦ ଚାଳନା କରି ସମ୍ଭ୍ରମର ସହିତ ଭ୍ରମରମାନଙ୍କୁ ତଡ଼ୁଥିଲେ । ନିଜ ନିଜର ମୁଖଚନ୍ଦ୍ରରେ ମନୋନିବେଶକୁ ମଣ୍ଡିତ କରି ଅପରୂପ ମଣ୍ଡିତ ତଳଭୂମିର ଦୃଢ଼ଦ୍ୱାରା ଅନ୍ୟ ନାରୀମାନେ ଦକ୍ଷିଣହସ୍ତରେ ରୌପ୍ୟ-ନିର୍ମିତ ନେଉରୀ ଧରି ତରୀଟିକୁ ଚଳାଉଥିଲେ । ଚିଲିକାର ଜଳରେ ନେଉରୀ ପଡ଼ିବାରୁ ଲୀଳାପ୍ଲୁତ ସ୍ରୋତରେ ତହିଁରୁ ସ୍ୱର୍ଣ୍ଣକ-ଜ୍ୟୋତି ପ୍ରକାଶିତ ହେଉଥିଲା । ସୁନ୍ଦରୀଙ୍କର ନେତ୍ରର ଶୋଭାକୁ ଅନୁକରଣ କରି ଚିଲିକା ଜଳରେ ଶୁଭ୍ର ଦଣ୍ଡିକରି ମାଛମାନେ ପ୍ରକାଶିତ ହେଉଥିଲେ । ନାରୀମାନଙ୍କର କେଶପାଶ ଏପରି ଘନ ନୀଳବର୍ଣ୍ଣ ଯେ, ତାହା ଚିଲିକାର ନୀଳଜଳଟିକୁ ଉପହାସ କରୁଥିଲା । ତେଣୁ ତରଙ୍ଗମାନେ ଅପମାନିତ ହୋଇ ତରଣୀ ପଞ୍ଜରରେ ଶିର ପିଟୁଥିଲେ ବୋଲି କବି କଳ୍ପନା କରିଅଛନ୍ତି । ତାଙ୍କର କେଶରାଶିରେ, କୁସୁମମୁକୁଟରେ ପଦ୍ମଫୁଲ ଖୁଡ଼ା ବାତ୍ୟା-ଆନ୍ଦୋଳିତ ହେଉଥିଲା ।

ଏହି ତରୀପରି ଆଉ ଗୋଟିଏ ସମଶୋଭିତ ଗଜଦନ୍ତ-ନିର୍ମିତ ତରୀ ଆସୁଥିଲା । ପ୍ରଥମ ତରୀରେ ଥିବା ସୈନ୍ୟଙ୍କର ସମସଂଖ୍ୟକ ସୈନ୍ୟ ଏହି ତରୀରେ ବର୍ମୋଜ୍ଜ୍ୱଳ ଅଙ୍ଗ ପ୍ରଦର୍ଶନ କରି ତରୀକୁ ରକ୍ଷା କରୁଥିଲେ । ଏହି ତରୀ ଉପରେ ସିଂହାସନରେ ଦେବାକୃତି ଯୁବା ସିଂହସଦୃଶ ପରାକ୍ରମଶାଳୀ ଶରୀର ଧାରଣ କରି ବସିଥିଲେ । ତାଙ୍କର ମୁଖ ସୌନ୍ଦର୍ଯ୍ୟ, ତେଜ ଓ ଗାମ୍ଭୀର୍ଯ୍ୟ ଭାବ ପ୍ରକାଶ କରୁ-

ଥିଲ । ତାଙ୍କ ହସ୍ତରେ ଖଡ୍ଗ ଶୋଭା ପାଉଥିଲା । ତାଙ୍କୁ ଦେଖିଲେ ମନେ ହେଉଥିଲା ସତେ ଯେପରି ସାହସ କ୍ଷତ୍ରଧର୍ମ ବା ବୀରରସ ମୂର୍ତ୍ତି ଧାରଣ କରିଅଛି । ଋଷିକୁଲ୍ୟା ନଦୀଠାରୁ ସୁବର୍ଣ୍ଣରେଖା ନଦୀପର୍ଯ୍ୟନ୍ତ ଯାହାଙ୍କର ରାଜ୍ୟ ପରିବ୍ୟାପ୍ତ, ତାଙ୍କର ସେହି ସ୍ୱର୍ଣ୍ଣଛତ୍ର ମସ୍ତକ ଉପରେ ଶୋଭିତ ହୋଇ ତାହାଙ୍କୁ ଉତ୍କଳର ସମ୍ରାଟ ବୋଲି ଚିହ୍ନିତ କରୁଥିଲା ।

ଚିଲିକା ତୀରରେ ଥିବା ଦୁର୍ଗ ଉପରେ ଶସ୍ତ୍ରଧାରୀ ପ୍ରହରୀମାନେ ସେହି ଦୃଶ୍ୟକୁ ସମ୍ଭ୍ରମର ସହିତ ଲକ୍ଷ କରୁଥିଲେ । ଗିରିବାସୀ ସମସ୍ତ ସାମନ୍ତ ଓ ପ୍ରଧାନମାନେ ଡ଼ଗରମୁଖରୁ ସମ୍ବାଦ ପାଇ ଆଗରୁ ସାବଧାନ ହୋଇ ଦଳ ଦଳ ହୋଇ ଆସି ସେଠାରେ ଉପସ୍ଥିତ ହୋଇଥିଲେ । ପତାକାରେ ସୁଦର୍ଶନ ଲାଞ୍ଛନ ଦେଖି, ତରଣୀ ନିକଟକୁ ଆସିବାରୁ ସେମାନେ ମଥା ଅବନତ କରି ପ୍ରଣତି ଜଣାଇଲେ । ତଟଦେଶରେ ଉପସ୍ଥିତ ଥିବା ଭାଟମାନେ ସେହି ସୁନ୍ଦରୀ ଯୁବତୀଙ୍କୁ ବିଶ୍ୱସୁନ୍ଦରୀ ବୋଲି ସମ୍ବୋଧନ କରି ସ୍ୱାଗତ ଜଣାଇଲେ । ବିଶ୍ୱମନୋରମା କାଞ୍ଚିକନ୍ୟାଙ୍କର ଜୟଗାନ କରି ତାଙ୍କୁ ବିରିଞ୍ଚି ସୃଷ୍ଟିରେ ଶୋଭାର ଉପମା ରୂପେ ବର୍ଣ୍ଣନା କଲେ । ତାଙ୍କର ଆଗମନ ଫଳରେ, ଜାହ୍ନବୀ ପ୍ରବାହିତ ହେବା ଯୋଗୁଁ ଧରାତଳ ପବିତ୍ର ହେବାପରି ଉତ୍କଳ ପବିତ୍ର ହେଲା । ସରୋବରରେ ପଦ୍ମ ଶୋଭା ପାଇବା ପରି, ପଦ୍ମରେ ପଦ୍ମାଳୟା ଅର୍ଥାତ ଲକ୍ଷ୍ମୀ ଶୋଭାପାଇବା ପରି ସେ ଉତ୍କଳରେ ଶୋଭା ପାଇବେ ବୋଲି ସ୍ୱାଗତଗୀତିକାରେ ପ୍ରକାଶ ପାଇଲା ।

ଶତ୍ରୁ ଦମନକାରୀ ପୁରୁଷୋତ୍ତମ ଦେବଙ୍କର ଜୟଗାନ କରି ସେମାନେ ପ୍ରକାଶ କଲେ ଯେ, ସେ ବିଶ୍ୱକୁ ରକ୍ଷା କରିବା ବ୍ରତରେ ସମର୍ଥ । ଜଗତ ସମକ୍ଷରେ ନିଜର ଯୋଗ୍ୟତା ପ୍ରଦର୍ଶନ କରି ସେ ଅପୂର୍ବ ସୌନ୍ଦର୍ଯ୍ୟ ବିଶିଷ୍ଟା କାଞ୍ଚିକନ୍ୟାଙ୍କୁ ଲାଭ କରିଅଛନ୍ତି । ପୁରୁଷୋତ୍ତମ ଦେବ ଓ ପଦ୍ମାବତୀଙ୍କର ମିଳନ ଶୌର୍ଯ୍ୟ ସହିତ ସୌନ୍ଦର୍ଯ୍ୟର ମିଳନପରି । ଏହି ମିଳନ ସତେ ଯେପରି ତାରାଙ୍କ ସହିତ ଚନ୍ଦ୍ରଙ୍କର ମିଳନ ଏବଂ ବିଷ୍ଣୁଙ୍କ ସହିତ ଲକ୍ଷ୍ମୀଙ୍କର ମିଳନ ପରି । ଏହି ଦୁଇଜଣଙ୍କୁ ସୃଷ୍ଟି କରିବାରେ ବ୍ରହ୍ମା ଯେଉଁ ଅପୂର୍ବ କୌଶଳ ପ୍ରଦର୍ଶନ କରିଥିଲେ ତାହା ଏହି

ମିଳନରେ ସାର୍ଥକ ହେଲା । ବନ୍ଦାପନା କାର୍ଯ୍ୟ ଶେଷ ହେବାରୁ ବାଦ୍ୟର ଶବ୍ଦରେ ମନ୍ଦିର ଓ ଆକାଶ ପ୍ରକମ୍ପିତ ହୋଇ ଉଠିଲା । ଚିଲିକା ଖାଟରେ ଥିବା ଗିରିଗୁଡ଼ିକ ସେଥିରେ ଯୋଗଦେଲେ ଓ ସମୀରଣ ତାହାକୁ ଭିନ୍ନ ଭିନ୍ନ ଦିଗକୁ ବହିନେଲା । ଏହି ଆନନ୍ଦ ଉତ୍ସବରେ ଯୋଗଦେଇ ଚିଲିକାର ତରଙ୍ଗ ଉଛୁଳି ହୋଇ ଉଠିଲା । ଏହି ଘୋର ଶବ୍ଦରେ କବିଙ୍କର ଧ୍ୟାନ ଭାଙ୍ଗିଗଲା ଓ ତାହାଙ୍କ ସଙ୍ଗେ ସଙ୍ଗେ ସମସ୍ତ ଦୃଶ୍ୟ ଅନ୍ତର୍ହିତ ହୋଇ ଗଲା । ତାପରେ କବି ଜାଣିପାରିଲେ ଯେ ଏସବୁ କେବଳ କଳ୍ପନାର ଇନ୍ଦ୍ରଜାଲ । କବି ଚକ୍ଷୁ ଫିଟାଇ ଦେଖିଲେ ଯେ, ଅନନ୍ତ-ନୀଳିମାର ଦୃଶ୍ୟରେ ବିଭାସିତ ଚିଲିକାର ଅମର ଦୃଶ୍ୟ ତାଙ୍କ ସମ୍ମୁଖରେ ବିରାଜିତ ।

ଉତ୍କଳର ଦୁର୍ଦ୍ଦାନ୍ତ ଶତ୍ରୁ ପାଇଁ ଚିଲିକା ତାର ରୁଦ୍ରମୂର୍ତ୍ତିକୁ ଲୁକ୍କାୟିତ କରି ରଖିଥାଏ । ସୂର୍ଯ୍ୟକାନ୍ତ ମଣି ଯେପରି ସ୍ପର୍ଶରେ ଶୀତଳ ଓ ତେଜସ୍ୱୀ ଦେଖିବାମାତ୍ରେ ତେଜୋଦୀପ୍ତ ହୋଇଥାଏ ଚିଲିକା ସେହିପରି ଶତ୍ରୁ ଦେଖିବା ମାତ୍ରକେ ତାର ପ୍ରଚ୍ଛନ୍ନ ମାରଣାତ୍ମିକା ଶକ୍ତିକୁ ପ୍ରକାଶ କରିଥାଏ । ଦୈତ୍ୟ ରକ୍ତବାହୁ ଉତ୍କଳ ଆକ୍ରମଣ କରି ଚିଲିକାର ସେହି ମାରଣାତ୍ମିକା ମୂର୍ତ୍ତିକୁ ଦେଖିଥିଲା । ତମଗୁଣ ବିଶିଷ୍ଟ ଦୈତ୍ୟ ଅସ୍ତ୍ରବଳରେ ମନୁଷ୍ୟକୁ ମାଛି ଜ୍ଞାନ କରିଥିଲା । ଉତ୍କଳକୁ ଭସ୍ମୀଭୂତ କରି, ନର ରକ୍ତରେ ଧରାକୁ ପ୍ଲାବିତ କରି, ସର୍ବରତ୍ନପୂର୍ଣ୍ଣ ଜଗତର ସର୍ବଶ୍ରେଷ୍ଠ ଜଗନ୍ନାଥ-ଭଣ୍ଡାରକୁ ସେ ଲୁଟି କରିଥିଲା । ବିଜୟ ଉଲ୍ଲାସରେ ତାର ତରୀ ଚଳାଇ ନିଜ ଦେଶକୁ ଫେରିବା ସମୟରେ ଆନନ୍ଦ ଉଲ୍ଲାସରେ ସେ ଯେଉଁ ଗୀତ ଗାନ କରିଥିଲା, ତାହା ଚିଲିକାର ପ୍ରତାପ ଫଳରେ ବିଳାପରେ ପରିଣତ ହୋଇଥିଲା । ଚିଲିକା ରକ୍ତବାହୁର କାଳ ଓଗାଳି ଥିଲା । ଆକାଶ, ପାତାଳ ସମସ୍ତେ କୁହାଟ ଛାଡ଼ିଥିଲେ । କାଳୀଜାଈ ପର୍ବତରେ ପାର୍ବତୀ ଠିଆହୋଇ ଚିଲିକାକୁ ସଙ୍କେତ ପ୍ରଦାନ କରିଥିଲେ । ସେ ଚିଲିକାର ତରଙ୍ଗକୁ ତାଙ୍କର ସୁବର୍ଣ୍ଣର ତ୍ରିଶୂଳ ଫିଙ୍ଗିଥିଲେ । ପାର୍ବତୀଙ୍କଠାରୁ ସଙ୍କେତ ପାଇ ଚିଲିକାର ଫେନଚୂଡ଼ ଊର୍ମିମାଳା ସିଂହ ବିକ୍ରମରେ ତରୀକୁ ଗ୍ରାସ କରିବାକୁ ଧାଇଁ ଆସିଲେ । ଚିଲିକାର ଇଙ୍ଗିତରେ ମାଳାମ୍ବୁ ସମ୍ରାଟ ତାଙ୍କର ଊର୍ମି ଆଠକୁ ସଙ୍ଗରେ

ଆଣି ଦଉଡ଼ି ଆସିଲେ । ବିଶ୍ୱଧ୍ୱଂସୀ ରୁଦ୍ର-ପ୍ରଖର ନିଶ୍ୱାସ ପରି ଅଟ୍ଟଘୂର୍ଣ୍ଣ ବାୟୁ ବହିଲା । ଦୈତ୍ୟହନ୍ତା ଇନ୍ଦ୍ର ଧୂମ ବଜ୍ର ହସ୍ତରେ ଧାରଣ କରି ମେଘବାହନରେ ଆକାଶରେ ଦେଖାଦେଲେ । ବଜ୍ରର ଘୋର ଶବ୍ଦରେ ଅବନୀ ପ୍ରକମ୍ପିତ ହେଲା । ପର୍ବତମାନେ ଥରହର ହୋଇ ପରସ୍ପରକୁ ଡାକି ଗ୍ରଭିଲେ । ଭୃଗୁଲେଖ ପର୍ବତ ସୋଲଖ ପର୍ବତକୁ ଡାକି ଦେଲା । ସେ ଡାକ ଅନ୍ୟ ପର୍ବତମାନଙ୍କ ପାଖକୁ ଚାଲିଗଲା । ଆକାଶରେ ମେଘଦେହରେ ବିଜୁଳି ମାରିବାରୁ ଚିଲିକା ବକ୍ଷରେ ତାହା ପ୍ରତିବିମ୍ବିତ ହେଲା । ଚିଲିକାର ସଂହାରମୂର୍ତ୍ତି ପ୍ରକୃତିର କରାଳଲୀଳାକୁ ଦେଖାଇ ଦେଲା । ଏହା ଦେଖି ଦୈତ୍ୟରାଜ ରକ୍ତବାହୁ ନିଜର 'ଭୁଜବଳକୁ ଅସାର ମନେ କରିଥିଲା । ତାର ଖଡ୍ଗ ଅପେକ୍ଷା ଅଧିକ ଶକ୍ତିଶାଳୀ ଖଡ୍ଗ ଅଛି ବୋଲି ସେ ଅକାଳରେ ଜାଣି ପାରିଲା । ଚିଲିକାର କଷାଘାତ ପାଇ ସେ ଶିଖିଲା ଯେ, ଦୈବ ମନୁଷ୍ୟର ଭ୍ରୂକୁଟୀକୁ ଭୟ କରେ ନାହିଁ । ଚିଲିକାର ଊର୍ମିମାନେ ତରଙ୍ଗଗୁଡ଼ିକୁ ପେଣ୍ଡୁପରି ଆକାଶକୁ ଫିଙ୍ଗିଲେ । ଧର୍ମଦ୍ରୋହୀ ଆକ୍ରମଣକାରୀମାନେ ଖାଲି ଖାଲି ଡାକଗ୍ରଡ଼ି କିଏ କେଉଁଠାରେ ଯାଇ ପଡ଼ିଲେ । ସମସ୍ତେ ନିର୍ମୂଳ ଓ ନିଃଶେଷ ହୋଇଯିବା ପରେ ଖବର ଦେବାକୁ ଆଉ କେହି ରହିଲେ ନାହିଁ । ବିଜୟ ଉତ୍ସବର ଅବସାନ ହେଲା ଓ ଚିଲିକାବକ୍ଷରେ ବିଜୟୀଙ୍କର ଶବ ଭାସିଲା । ସେମାନେ ଉତ୍କଳର ଧନସମ୍ପଦ ପ୍ରତି ଆକୃଷ୍ଟ ହୋଇ ଆସିଥିଲେ ଏବଂ ଚରଣାମ୍ବରେ ପ୍ରାୟଶ୍ଚିତ୍ତ କଲେ ।

ଯେଉଁମାନଙ୍କର ଭ୍ରୂଭଙ୍ଗୀରେ ଭୂତଳ କମ୍ପି ଯାଉଥିଲା ସେମାନଙ୍କର ମାଟିଟିଏ ଛଡ଼ିବାକୁ ଶକ୍ତି ରହିଲାନାହିଁ । ଯେଉଁମାନେ ତ୍ରିଭୁବନକୁ ଅଳ୍ପବୋଲି ମନେ କରିଥିଲେ ସେମାନେ ସାତହାତ ଖଣ୍ଡ ଶଯ୍ୟାରେ ଶେଷ ଆଶ୍ରୟ ଗ୍ରହଣ କଲେ । ଏହିଠାରେ କବିଭାବନାର ପଞ୍ଚମ ଅଂଶ ଶେଷ ହୋଇଅଛି ।

କବିଭାବନାର ଷଷ୍ଠ ଅଂଶରେ ଚିଲିକା ତୀରରେ ସନ୍ଧ୍ୟା ବର୍ଣ୍ଣିତ ହୋଇଅଛି । ଏହା କାବ୍ୟର ୫୩୨ ଧାଡ଼ିଠାରୁ ଆରମ୍ଭ କରି ୬୩୮ ଧାଡ଼ି ପର୍ଯ୍ୟନ୍ତ ଗତି କରିଅଛି ।

ସୂର୍ଯ୍ୟଦେବ ଅସ୍ତଗାମୀ ହେବା ଫଳରେ ଧଉଳେଶ୍ୱର ପର୍ବତର ଶିଖର ଏକ ସ୍ୱର୍ଣ୍ଣ ସିଂହାସନ ସମ ଶୋଭିତ ହେଉଅଛି । ପର୍ବତରେ ସ୍ଥାନେ ସ୍ଥାନେ ଛାୟା ପଡ଼ି କ୍ରମେ ହରିତ୍‌ବର୍ଣ୍ଣ ନୀଳବର୍ଣ୍ଣରେ ପରିଣତ ହେଉଅଛି । ମନ୍ଦିରରେ ବଜାଯାଉଥିବା ଘଣ୍ଟାର ନାଦରେ ଗିରି ଓ ତଟ-ଦେଶକୁ ମୁଖରିତ କରି ଦଳ ଦଳ ହୋଇ ଗୋରୁ ଓ ମେଷମାନେ ଫେରି ଆସୁଛନ୍ତି । ମଣ୍ଡପ ବେକରେ ବନ୍ଧାହୋଇଥିବା ଟିପାର ଗୁଣୁ ଗୁଣୁ ଧ୍ୱନିରେ ଅରଣ୍ୟପଥ ମୁଖରିତ ହୋଇ ଉଠୁଛି । ଗୋଷ୍ଠରୁ ଧୂମରେଖା ଉପରକୁ ଉଠି ଗିରିର ପାଦଦେଶ ଓ କାନନକୁ କୁଞ୍ଚିତ ଗତିରେ ଆଚ୍ଛାଦିତ କରୁଅଛି । ଏହି ପକ୍ଷୀମାନେ କଳରବ କରି ହ୍ରଦରୁ ଉଠି ଅରଣ୍ୟ ମଧ୍ୟରେ ନିଜ ନିଜର ନୀଡ଼ଥିବା ବୃକ୍ଷକୁ ଖୋଜୁଛନ୍ତି । ଅସ୍ତ ସୂର୍ଯ୍ୟର ପୀତରାଗ ସେମାନଙ୍କର ଡେଣାରେ ପଡ଼ିବାରୁ ତାହା ଅସ୍ତିରାଗରେ ସୁନାରେ ମଣ୍ଡିତ ହେବାପରି ଦେଖାଯାଉଅଛି । ପଥରେ ରଶ୍ମିଗୁଡ଼ିଏ ଝାମ୍ପଦେଇ ସୂର୍ଯ୍ୟ ଧଉଳେଶ୍ୱର ପର୍ବତର ପଛପଟରେ ବୁଡ଼ିଗଲେ । କାଦମ୍ବିନୀ ରୂପକ ନାଗୀ ବହୁତ ଯତ୍ନରେ ସେ ମଣିକୁ ତାର ଫଣାରେ ବାନ୍ଧି ନେଇଯାଉଅଛି । ଧରିତ୍ରୀର ବଦନରେ ପୀତ ଅସ୍ତରାଗ ସତେ ଯେପରି ସୁବର୍ଣ୍ଣର ପରାଗ ବୋଳି ଦେଇଅଛି । ଶରତକାଳୀନ ସନ୍ଧ୍ୟା-ଲକ୍ଷ୍ମୀ ତାଙ୍କର ଲୀଳାମୟୀ ରୂପରେ କେତେ ନୂଆ ନୂଆ ଛବି ସୃଷ୍ଟି କରୁଅଛନ୍ତି । ବିଶାଳ ଧଉଳେଶ୍ୱର ପର୍ବତର ଛାୟା କ୍ରମେ ପୂର୍ବାଞ୍ଚଳର ସ୍ଥଳଭାଗରେ ପଡ଼ିଲାଣି । ଦ୍ୱୀପ ଓ ପର୍ବତର ମଥାରେ ଅସ୍ତ ସୂର୍ଯ୍ୟର କିରଣ ଯାହା ପଡୁଥିଲା ତାହା ଏବେ ଛାୟାପାତ ଯୋଗୁଁ ଲୁଚିଗଲା । ଚିଲିକା ବକ୍ଷରେ ସନ୍ଧ୍ୟାଲୋକ ପଡ଼ିବାରୁ ଚକ୍ରବାକ ତାର ପ୍ରିୟାକୁ ଛାଡ଼ି ଶୋକର ସମ୍ବାଦ ଦୂରକୁ ବହିଲା । ଚିଲିକାର ନୀଳବକ୍ଷ ଉପରେ ସନ୍ଧ୍ୟାରାଗ ଦର୍ଶନ କରି ଭାବୁକ ଏହି ଭାବନାରେ ଉପନୀତ ହୁଏ ଯେ, ପଶ୍ଚିମ ଦିଗରେ ବରୁଣଙ୍କର ପୋହଳା ନିର୍ମିତ ଅଟ୍ଟାଳିକାର କାନ୍ତି ଚିଲିକାର ନୀଳ ନୀର ଭେଦକରି ଉପରକୁ ପ୍ରକାଶ ପାଉଅଛି । ଚିଲିକାର କୂଳରେ, ଦ୍ୱୀପରେ, ପାହାଡ଼ରେ ଥିବା ବୃକ୍ଷ ଉପରେ ପକ୍ଷୀମାନେ ନାନାରଙ୍ଗରେ ଯାଇ ବସୁଅଛନ୍ତି । ପଶ୍ଚିମାସନ୍ଧ୍ୟାର ବନ୍ଦାପନା ପାଇଁ ଯନ୍ତମାନେ ପର୍ବତରୁ ଓହ୍ଲାଇ ଆସୁଛନ୍ତି । ପଶ୍ଚିମଦିଗ ବର୍ଣ୍ଣ ବୈଭବରେ ପରିପୂର୍ଣ୍ଣ । ଦିବସ ଏହି ପଶ୍ଚିମ ଦିଗରେ ଅସ୍ତଗତ

ମହାସାଗରରେ ବିଲୁପ୍ତ ହୋଇଯାଏ । ନିଜ କିରଣରେ ଆକାଶମାର୍ଗକୁ ରଞ୍ଜିତ କରି ଚନ୍ଦ୍ର ବିରାଜିତ ହେଲେ । ତାଙ୍କ ନିକଟରେ ଗୋଟିଏ ତାରା ଅବସ୍ଥାନ କରି ଅର୍ଦ୍ଧ ଆକାଶରେ ଦୁର୍ଦ୍ଦେ ଗର୍ଜନ୍ତ କରୁଛନ୍ତି । ବାଳ ଜ୍ୟୋତ୍ସ୍ନାରେ ପୂର୍ବଦିଗ ଧୌତ ହୋଇ ମୁଖରେ ହିମରଜ ବୋଳିଦେଲା ପରି ଦେଖା ଯାଉଅଛି । ପରସ୍ପରଠାରୁ ବିପରୀତ ଦିଗରେ ବସି ପୂର୍ବ ଓ ପଶ୍ଚିମ ଦିଗ ନିଜ ନିଜର ରୂପଶୋଭା ଗର୍ବର ସହିତ ପ୍ରକାଶ କରୁଅଛନ୍ତି । ପୂର୍ବାକାଶ ଚନ୍ଦ୍ରାଲୋକରେ ଧୌତ ହୋଇ-ଅଛି ଏବଂ ପଶ୍ଚିମାକାଶ କୁଙ୍କୁମ ରାଗରେ ଅରୁଣ ହୋଇଅଛି । ଆକାଶର ଏହି ଶୋଭା ଅର୍ଦ୍ଧାଙ୍ଗ ଈଶ୍ୱର ଓ ଅର୍ଦ୍ଧାଙ୍ଗ ପାର୍ବତୀ ରୂପରେ କଳ୍ପିତ ଅର୍ଦ୍ଧନାରୀଶ୍ୱରଙ୍କ ପରି ଦେଖା ଯାଉଅଛି । ଦିଗ୍-ବଳୟ ବ୍ୟାପୀ ନୀଳ ଜଳରାଶିକୁ ଚନ୍ଦ୍ରକିରଣ ନିଜର ଶୁଭ୍ରବର୍ଣ୍ଣରେ ରଞ୍ଜିତ କରୁଅଛି । ପୂର୍ବଦିଗରେ ମୀନଜୀବୀମାନଙ୍କର ନାବଗୁଡ଼ିକ ଚହଟିରି ସ୍ଥାନେ ସ୍ଥାନେ ଦେଖାଯାଉଅଛି । ମୀନଜୀବୀମାନେ ସମୁଦ୍ର ମୁହାଣରେ ମାଛ ଧରି ନିଜ ନିଜର ଘର କଥା ମନରେ ଭାବି ଭଲେଶ୍ୱର ଶିଖରରେ ସନ୍ଧ୍ୟାତାରା ଦେଖିବା ମାତ୍ରେ ନୌକାର ପାଲକୁ ଟେକି ଅତ୍ୟନ୍ତ ଆନନ୍ଦ ମନରେ ଫେରୁଅଛନ୍ତି । ସେମାନଙ୍କ କଣ୍ଠରୁ ଝରିପଡୁଥିବା କବିସୂର୍ଯ୍ୟ ବଳଦେବ ରଥଙ୍କର ଚମ୍ପୂ ଗୀତକୁ ଚଳକାର ସମୀରଣ ଦୂରରୁ ବହନ କରି ଆଣୁଅଛି । ଉଲ୍ଲାସର ଆତ୍ମା ସ୍ୱରୂପ ସେମାନଙ୍କର ସଙ୍ଗୀତର ତାନ ଚିଲିକାର ନୀଳ ବକ୍ଷରେ ଅବସ୍ଥାନ କରୁଅଛି । ଜ୍ୟୋତ୍ସ୍ନା ରୂପକ ପାଟ ପିନ୍ଧି ଚତୁର୍ଦ୍ଦିଗରେ ଦିଗ୍‌ବଧୂମାନେ ହସୁଅଛନ୍ତି । ମୀନଜୀବୀମାନଙ୍କର କଣ୍ଠ-ସଙ୍ଗୀତ ମନରେ ଭାବାନ୍ତର ଜାତ କରୁଅଛି । ଏହି ସଙ୍ଗୀତ ଶ୍ରବଣରେ ମନ ନାନା ରୂପ ଧାରଣ କରି ଅତୀନ୍ଦ୍ରିୟ ରାଜ୍ୟରେ ଯାଇ ବିଚରଣ କରୁଅଛି । ମନ ଏପରି ଉତ୍ତଳା ହେଉଅଛି ଯେ, ତାହା ଶୂନ୍ୟେ ଶୂନ୍ୟେ କେଉଁ ସ୍ଥାନକୁ ଚାଲିଯାଉଅଛି ଏବଂ କଣ ପାଇବା ପାଇଁ ଚାଲିଯାଉଅଛି ତାହା ସେ ଜାଣେ ନାହିଁ । ଯାହାର ଆଜ୍ଞାରେ ସରସ୍ୱତୀ ଏହି ଲୀଳା ରଚନା କରନ୍ତି ସେ ଧନ୍ୟ । କବିସୂର୍ଯ୍ୟ ବଳଦେବ ରଥ ଏଥିପାଇଁ ଧନ୍ୟ ଓ ସେ ଉତ୍କଳରେ ଅମର । ତାଙ୍କର ମର କଳେବରକୁ ଶ୍ମଶାନ

ଗ୍ରାସ କରିଅଛି; ମାତ୍ର ତାଙ୍କର ଯଶ ରୂପକ କଳେବରରେ ସେ ଜୀବିତ ।

ମନୁଷ୍ୟମାନଙ୍କୁ ଆକୃଷ୍ଟ କରିବା ପାଇଁ ନାବିକ ତାର ନାବରେ ମଶାଲ ଜାଳି ଦେଲାଣି । ତାହା ସଂସାରରେ ପାପର ମୂର୍ତ୍ତି ସଦୃଶ । ତାହା ସ୍ୱର୍ଗରେ ମାରାତ୍ମକ ମାତ୍ର ରୂପରେ ରମ୍ୟ । ପାହ୍ନଡ଼ିରେ ଯେପରି ଅଙ୍ଗାର ଦେଖାଯାଏ, ମୀନମାନେ ସେହିପରି ଡଙ୍ଗାଗର୍ଭକୁ ଯାଇ ପ୍ରାଣ ବିସର୍ଜନ କରିବେ । ତରଙ୍ଗରେ ଦୋଳାୟିତ ହେଉଥିବାରୁ ନୌକା ଥରେ ଦେଖାଦେଇ ଥରେ ଲୁଚି ଯାଉଅଛି । ଦୁଃଖୀ ଲୋକର ମନରେ ଯେପରି ଆଶାର ଉତ୍ଥାନ ପତନ ହେଉଥାଏ, ଅଗ୍ନିଶିଖା ସେହିପରି ଘନ ଘନ ଉତ୍ଥିତ ଓ ପତିତ ହେଉଅଛି । କ୍ରମେ ରାତି ବଢୁଥିବାରୁ ଲୋକ କୋଳାହଳ ନିଃଶେଷ ହୋଇ ଅବସ୍ଥା ନିସ୍ତବ୍ଧ ହେଉଅଛି । ଜଳ, ସ୍ଥଳ ଓ ଆକାଶ ଜ୍ୟୋତ୍ସ୍ନାରେ ପରିପୂର୍ଣ୍ଣ ହୋଇଥିବାରୁ ସମଗ୍ର ସୃଷ୍ଟି ଯେପରି ପାରଦଧୌତ ହେବାପରି ଦେଖାଦେଉଛି । ଦ୍ୱୀପ, ଶୈଳ ପ୍ରଭୃତିରେ ପ୍ରତିବିମ୍ବ ହ୍ରଦର ଅନ୍ତଃସ୍ଥଳରେ ସ୍ପଷ୍ଟଭାବରେ ଶୋଭିତ ହେଉଛି । ଜ୍ୟୋତ୍ସ୍ନାର୍ଣ୍ଣବରେ ଭାସି ଗିରି, ବନ, ନାସି ପ୍ରଭୃତି ସ୍ପଷ୍ଟ ଭାବରେ ପ୍ରକାଶିତ ହେଉଅଛି । ସ୍ନିଗ୍ଧ ତରୁପତ୍ର ଉପରେ ଓ ମସୃଣ ପଥର ଉପରେ ଜ୍ୟୋତ୍ସ୍ନାର ପ୍ରତିଫଳନ ଦେଖାଯାଉଅଛି । ପର୍ବତରେ ଶୋଭିତ ଶିବଙ୍କ ଶରୀର ପରି ଅରଣ୍ୟ ଛାୟା ଓ ଆଲୋକର ମିଶ୍ରଣରେ ଶୋଭାପାଉଅଛି । ଗିରି ଓ ବନରେ ମନୁଷ୍ୟ ଗହଳି ନଥିବାରୁ ତାହା ପ୍ରଶାନ୍ତ ରୂପ ଧାରଣ କରିଅଛି । ଏପରି ନିର୍ଜନ ପରିବେଶରେ ଦୂରର ଝରନାଦ ଓ ଝିଙ୍କାରୀର ଝଙ୍କାର ଧ୍ୱନିର ପ୍ରଭାବକୁ ପ୍ରକାଶ କରୁଅଛି । କଳିର ଉପଦ୍ରବରେ ଶାନ୍ତି ଲୋକାଳୟ ତ୍ୟାଗ କରି ଏହି ସ୍ଥାନରେ ଆଶ୍ରୟ ନେଇଅଛନ୍ତି କି ? କବି ଚିଲିକାକୁ ସମ୍ବୋଧନ କରି କହିଅଛନ୍ତି ଯେ, ଚିଲିକାର ଏହି ଶୋଭା, ସାୟଂକାଳୀନ ବର୍ଣ୍ଣୋଜ୍ଜ୍ୱଳମୟ ଦୃଶ୍ୟ ସର୍ବଶୋଭାର ମଥାମଣି ସଦୃଶ । ଏହା ପ୍ରକୃତରେ ମନୋରମ ଚିତ୍ରପୁସ୍ତ । କବି ଭାବନାର ଷଷ୍ଠ ଅଂଶ ଏହିଠାରେ ସମାପ୍ତିଲାଭ କରିଅଛି । ଏହି ଅଂଶରେ କବିଙ୍କର ସୌନ୍ଦର୍ଯ୍ୟ ବୋଧ ଦୃଷ୍ଟି କୋଣର ପରିଚୟ ମିଳିଅଛି ।

କବି ଭବନାର ସପ୍ତମ ଅଂଶ ଜାବ୍ୟର ୬୩୯ ଧାଡ଼ିଠାରୁ ୬୦୨ ଧାଡ଼ି ମଧ୍ୟରେ ପ୍ରକାଶ ପାଇଅଛି । ଏଥିରେ କବିଙ୍କର ଜୀବନ ଦର୍ଶନ ପ୍ରକାଶ ପାଇଅଛି ।

ଚିଲିକାର ଅପରୂପ ସୌନ୍ଦର୍ଯ୍ୟ କବିବର ରାଧାନାଥଙ୍କ ପ୍ରାଣରେ ସୃଷ୍ଟି କରିଛି ଅପୂର୍ବ ଆନନ୍ଦ । ମାତ୍ର କବି ସେ ଆନନ୍ଦର ଭଜନ ନୁହନ୍ତି । ଏହି ସୌନ୍ଦର୍ଯ୍ୟ ଉପଭୋଗ କବିଙ୍କ ପକ୍ଷରେ ଏକ କ୍ଷଣ-ସ୍ଥାୟୀ ସ୍ୱପ୍ନସମ । ସେ ସଂସାରର ନିଗଡ଼ ବନ୍ଧନରେ, ସଂସାରର କାରାଗାରରେ ଆବଦ୍ଧ ହୋଇ ଜୀବନ ଯାପନ କରିବାର କଥା । ବନ୍ଦୀ ଯେପରି କାରାଗାରର ପ୍ରକୋଷ୍ଠ ମଧ୍ୟରେ ଆବଦ୍ଧ ଥାଇ ତାର ଅତୀତର ସ୍ୱାଧୀନତାକୁ ସ୍ମରଣ କରୁଥାଏ, କବିବର ରାଧାନାଥ ସେହିପରି ସଂସାରର ନିଗଡ଼ରେ ଆବଦ୍ଧ ରହି ଚିଲିକାର ଅନୁପମ ସୌନ୍ଦର୍ଯ୍ୟକୁ କେବଳ ସ୍ମରଣ କରୁଥିବେ । ସଂସାରକୁ ଫେରିବା ପାଇଁ କବି ଚିଲିକାଠାରୁ ବିଦାୟ ନେଇଅଛନ୍ତି । ଚିଲିକାର ପଶ୍ଚିମ-ଭାଗରେ କବି ତାଙ୍କର ଶେଷଜୀବନ ଅତିବାହିତ କରିବାର ଆଶା ପୋଷଣ କରିଥିଲେ । ଏହାଦ୍ୱାରା ତାଙ୍କର ସୌନ୍ଦର୍ଯ୍ୟ ପିପାସା ବିନା ପରିଶ୍ରମରେ ତୃପ୍ତ ହୋଇପାରିଥାଆନ୍ତା । ଭାଗ୍ୟ ଯେବେ ତାଙ୍କ ପକ୍ଷରେ ଅନୁକୂଳ ହୋଇଥାଆନ୍ତା, ତାହାହେଲେ ସେ ଚିଲିକାର ମନୋରମ କୂଳରେ ଆଶ୍ରୟ ଗ୍ରହଣ କରିପାରିଥାଆନ୍ତେ । କଣ୍ଟିଆ ନାମିର ପାଦଦେଶରେ କୁଟୀରଟିଏ ନିର୍ମାଣ କରି ସେ ତାଙ୍କର ଶେଷ ଜୀବନ ଅତିବାହିତ କରିବାର କାମନା ପୋଷଣ କରିଥିଲେ । ମାତ୍ର ପରିଣାମରେ, ଇନ୍ଦ୍ରଜାଲ ପରି ତାଙ୍କର ଆଶା ନୈରାଶ୍ୟରେ ପରିଣତ ହେଲା । ସଂସାରରେ ଥାଇ ମଧ୍ୟ କବି ସବୁବେଳେ ଉଦାସୀନ ପ୍ରାୟ ଦିନଯାପନ କରିଅଛନ୍ତି । ସଂସାରୀମାନଙ୍କ ସହିତ ସଙ୍ଗୀ ହେବାପାଇଁ ସେ କେବେହେଲେ ମନବଳାଇ ନଥିଲେ । ସେମାନେ ହସିଖେଳି ଜୀବନକୁ ଉପଭୋଗ କରନ୍ତି । ସେମାନଙ୍କର ଧାରଣା ଯେ ଜୀବନ ହେଉଛି ଉତ୍ସବମୁଖରିତ । କବିଙ୍କର ଭାଗ୍ୟ ପାଷାଣାଚ୍ଛାଦିତ ଓ ତାଙ୍କର ଜୀବନର ଉପାଦାନ ଭିନ୍ନ । ତାଙ୍କର

ଜୀବନ ଚିରଦାହାକାର ପୂର୍ଣ୍ଣ, ଓ ଏହା ଜୀବନ ନୁହେଁ; ଜୀବନ୍ତ ମରଣ । ସେ ଚିରଦିନ ଦୁଃଖର ପ୍ରହାରରେ ଜର୍ଜରିତ ଓ ସେ ଦୁଃଖ ଗୁରୁଙ୍କର ପଟ୍ଟଶିଷ୍ୟ । ଦୁଃଖଦତ୍ତ ଜ୍ଞାନଚକ୍ଷୁରେ ସେ ଜଗତକୁ ଦେଖିବାରେ ସର୍ବଦା ଅଭ୍ୟସ୍ତ । ସଂସାରର ଲୋକମାନେ ଯାହାକୁ ସୁଖ ବୋଲି କହନ୍ତି ତାହାକୁ କବି ଦୂରରୁ ଜୁହାରି କରୁଥାଆନ୍ତି । ଲୋକମାନଙ୍କ ଚକ୍ଷୁକୁ ଯାହା ସୁଖରୂପରେ ଦେଖାଦିଏ, ତାହା ଗୋଟିଏ ହାତରୁ ଆସି ଆଉ ଗୋଟିଏ ହାତରେ ପଡ଼ିଥାଏ । ତାହା ବସ୍ତୁ ନୁହେଁ, ଧୂମ । ତାହାର ଅନ୍ୟ ନାମ ଆକାଶ କୁସୁମ । ଚିଲିକା ତୀରର ମୃଗତୃଷ୍ଣା ପରି ତାହା ମନୁଷ୍ୟର ମନରୂପକ ମୃଗକୁ ଭ୍ରମରେ ପକାଇଥାଏ । ସେ ପ୍ରକାର ସୁଖ ପ୍ରତି କବି କେବେ ସ୍ପୃହା ପ୍ରକାଶ କରିନଥିଲେ । ସେ ଚିଲିକା ତୀରବର୍ତ୍ତୀ ଗୁହା ପ୍ରତି ଲକ୍ଷ୍ୟ ରଖିଥିଲେ । ଶାନ୍ତ ରସ ଆସ୍ପଦ ସେହି ତୀରରେ ବସି କବି ନିର୍ଜନରେ ସରସ୍ୱତୀଙ୍କର ପାଦପୂଜା କରିବାକୁ ଇଚ୍ଛା ପୋଷଣ କରିଥିଲେ । କବି ବଳଦେବ ଓ ଉପେନ୍ଦ୍ର ଯେପରି ଭାବରେ ବାଣୀ ଅର୍ଚ୍ଚନା କରିଥିଲେ କବିବର ରାଧାନାଥ ସେହିପରି ବାଣୀ ଅର୍ଚ୍ଚନା କରିବାକୁ ଇଚ୍ଛା କରିଥିଲେ । ମାତ୍ର ସେମାନଙ୍କ ସହିତ କବି କେବେହେଲେ ସମକକ୍ଷ ନୁହନ୍ତି । କବିଙ୍କର ଏ ଆଶା ଜାଗ୍ରତ ସ୍ୱପ୍ନ ମାତ୍ର । ମନରେ ଆଶା ପୋଷଣ କରି କବି ମନ-ମୋଦକରେ ଉଦରକୁ ପୂର୍ତ୍ତି କରିଥିଲେ । ତାଙ୍କର ଜୀବନ-ପଞ୍ଜିକା ନଦେଖି ସେ ମନେ ମନେ ଅଟ୍ଟାଳିକା ଗଢୁଥିଲେ ଓ ମୃଗତୃଷ୍ଣା ଜଳରେ ସ୍ନାନ କରୁଥିଲେ । ମାତ୍ର ଆଗରେ ଧୂମ ଭବିତବ୍ୟର ଛାୟା ପଡ଼ିବାରୁ ପଲକ ମାତ୍ରକେ ତାଙ୍କ ମନରୁ ସେ ମୋହନ୍ ମାୟା ତୁଟିଗଲା । ସେହି ଛାୟାର ଅନ୍ଧକାରରେ କବି ନୈରାଶ୍ୟ ରୂପକ ପ୍ରେତର ବିକଟ ନୃତ୍ୟ ଦେଖିବାକୁ ପାଇଲେ । ସେହି ବିଭୀଷିକା କବିଙ୍କ ମନରୁ ଚିଲିକାର ସୁନ୍ଦର ଛବିକୁ ତଡ଼ିଦେଲା । ଏହିଠାରେ କବିଙ୍କର ଭାବନାର ସପ୍ତମ ଅଂଶ ସମାପ୍ତି ଲାଭ କରିଅଛି ।

କବି ଭାବନାର ଅଷ୍ଟମ ଅଂଶ କାବ୍ୟର ୭୦ମ ଧାଡ଼ିଠାରୁ ଆରମ୍ଭ ହୋଇ କାବ୍ୟର ପରିସମାପ୍ତି ପର୍ଯ୍ୟନ୍ତ ଗତି କରିଅଛି । ଏହି ଅଂଶରେ

କବି ଉତ୍କଳର ଦୁର୍ଦ୍ଦଶା କଥା ବର୍ଣ୍ଣନା କରି ଉତ୍କଳର ଉନ୍ନତି ନିମିତ୍ତ ଆଶା ଘୋଷଣା କରି ଅଛନ୍ତି ।

ସରସ୍ୱତୀଙ୍କୁ କବି ପ୍ରଶ୍ନ କରିଅଛନ୍ତି ଯେ, କେଉଁ ପାପଫଳରୁ ଉତ୍କଳ ପ୍ରତି ତାଙ୍କର କରୁଣା ଊଣା ହୋଇଅଛି । ପ୍ରକୃତରେ ଉତ୍କଳ ଶୋଭାର ଗନ୍ତାଘରଂ । ମାତ୍ର ଏହି ଶୋଭାରେ ସରସ୍ୱତୀଙ୍କର ଅଧିଷ୍ଠାନ ନଥିବାରୁ ତାହା ବନର ଫୁଲ ପରି ଅଜଣା ହୋଇଅଛି । ସିପ୍ରାନଦୀ ନିତାନ୍ତ କ୍ଷୁଦ୍ର ହେଲେହେଁ ତାହା ଜଗତ ବିଖ୍ୟାତ ହୋଇଅଛି । ମାତ୍ର ମହାନଦୀ ବୃହତ୍ ହେଲେହେଁ ତାର ନାମ ଅଜ୍ଞାତ । ଗୋଷ୍ପ-ଖୁର ପରିମିତ ପୁଷ୍କରହ୍ରଦ ପଜାସ୍ପଦ ହୋଇଅଛି, ମାତ୍ର ସ୍ୱରୂପା ଅଂଶୁପାର ନାମ ଅଜ୍ଞାତ ରହିଅଛି । ସରସ୍ୱତୀଙ୍କର ଦୟା ବଳରେ କ୍ଷୁଦ୍ର ମହୀୟାନ ହୁଏ ଏବଂ ଦୟାର ଅଭାବରେ ମହୀୟାନ କ୍ଷୁଦ୍ର ହୁଏ । ଖର୍ବ ଗୋବର୍ଦ୍ଧନ ଗିରି ମହାତୀର୍ଥ ଭାବରେ ପୂଜିତ ଏବଂ ଗିରୀନ୍ଦ୍ରର ଆସନ ଅଧିକାର କରିଅଛି, ମାତ୍ର ପ୍ରକୃତରେ ମେଘାସନ ଗିରୀନ୍ଦ୍ର ହେଲେହେଁ ତାହା ଆଦୌ ପରିଚିତ ନୁହେଁ । ସରସ୍ୱତୀଙ୍କର କରୁଣାର ଅଭାବରୁ ଉତ୍କଳ ଜନନୀଙ୍କର ନାମ ଖ୍ୟାତିସମ୍ପନ୍ନ ହୋଇ ପାରିନାହିଁ । ତାର ଭାଗ୍ୟଦୋଷ ହେତୁ ଅଜ୍ଞାନ ଶର୍ବରୀର ଅନ୍ଧକାରରେ ନିଜର ଶରୀରକୁ ଭାଗ୍ୟହୀନା ଭାବରେ ଲୁକ୍କାୟିତ କରି ରହିଅଛି ।

କବି ଓଡ଼ିଆ ଭାଷା ଓ ସାହିତ୍ୟର ବିକାଶ ବିଷୟରେ ଆଶାବାଦୀ ହୋଇ ପ୍ରକାଶ କରିଅଛନ୍ତି ଯେ, ଘୋର ଅନ୍ଧକାର ରଜନୀର ଅବସାନ ହେଲାଣି ଓ ଉତ୍କଳ-ଭାଷା-କମଳିନୀ ବିକଶିତ ହେବାର ସମୟ ଉପଗତ ହେଲାଣି । ଏହି ଘୋର ଅନ୍ଧକାର ରଜନୀର ଅବସାନ ସୂଚକ କାବ୍ୟତାରା ରୂପରେ ଗଙ୍ଗବଂଶୀୟ ବୀର ବାମଣ୍ଡାର ରାଜା ବିଶ୍ୱର କଲ୍ୟାଣଭାଜନ ବାସୁଦେବ ଉଦିତ ହୋଇଅଛନ୍ତି । ସେ ନିଜର ସୁନାମ ରକ୍ଷାକରି ଯଶ ପ୍ରତିଷ୍ଠା କରିଅଛନ୍ତି । ଅନ୍ଧକାର କ୍ରମେ ଅପସାରିତ ହୋଇଅଛି । ପୂର୍ବାକାଶ ନବୀନାଲୋକରେ ଉଦ୍‌ଭାସିତ ହୋଇ ଉଠିଛି । ରବି ରୂପରେ ସୂର୍ଯ୍ୟବଂଶୀୟ ରାଜା ରାମଚନ୍ଦ୍ର ନାମ ଧାରଣ କରି ଉତ୍କଳରେ ଉଦିତ ହୋଇଅଛନ୍ତି । ସେ

ଉତ୍କଳର ଅଜ୍ଞାନ ଅନ୍ଧକାରର ଧ୍ୱଂସକାରୀ । ସୌଦାମିନୀର ନ୍ୟାୟରେ ଉଦ୍‌ଭାସିତ ଶିଖର ମେଘାସନ କୁଞ୍ଜରେ ବିହାର କରୁଥିବା ରସିକ ବିମଚନ୍ଦ୍ର ଦାଶ, ଫାଲ୍ଗୁନନାରେ ଅଦ୍‌ଭୁତ କୌଶଳୀ ।..ତାଙ୍କର କଳ୍ପନାର ନଳୀ ଦୃଷ୍ଟିଭେଦୀ । ସରସ୍ୱତୀଙ୍କର ପୂଜାଯୋଗ୍ୟ ପଦ୍ମ-ସମ୍ଭାର ପ୍ରସ୍ଫୁଟିତ ହେବାର ଏହାହିଁ ପ୍ରକୃଷ୍ଟ ସମୟ । ନବୋଦିତ ଜ୍ୟୋତିଷର କଳକ ଯୋଗ ସେହି ପଦ୍ମ କବିମାନଙ୍କର ହୃଦୟରେ ପ୍ରସ୍ଫୁଟିତ ହେବ । ଉତ୍କଳବାସୀ ପଦ୍ମବାସିନୀ ବାଗ୍‌ଦେବୀଙ୍କ ଚରଣକୁ ସେହି ପଦ୍ମରେ ପୂଜା କରିବେ । ଚିଲିକାର ବନ୍ଧୁର, ଲଳିତ ତୀରଭୂମି ସେହି ଭକ୍ତଙ୍କର କରଣରେ ଆଲୋକିତ ହେବ । ଚିଲିକା ତୀର ବାଣୀଙ୍କର ଆବିର୍ଭାବ ଲାଗି ଉପଯୁକ୍ତ ସ୍ଥାନ ବୋଲି ଜାଣି, ପଣ୍ଡିତ, କବି ଓ ଜ୍ଞାନୀ ଲୋକମାନେ ସେଠାରେ ଆଶ୍ରୟ ଗ୍ରହଣ କରିବେ । ଚିଲିକା ସେମାନଙ୍କର ବିହାର-ପୁଷ୍କରିଣୀ ରୂପରେ ସମଗ୍ର ମାନବ-ସମାଜର ଅନୁରାଗ ଲାଭ କରିବ ।

ଏହିଠାରେ ହିଁ ଚିଲିକା କାବ୍ୟର ପରିସମାପ୍ତି ଘଟିଅଛି । କବିବର ରାଧାନାଥଙ୍କର ଅପୂର୍ବ କାବ୍ୟ ରଚନାଶୈଳୀ ଏଥିରେ ସାର୍ଥକ ରୂପଲାଭ କରିଅଛି । କବିବର ରାଧାନାଥ ଗୋଟି ଗୋଟି କରି ଆଠଗୋଟି ଖଣ୍ଡିତ ଭାବନାକୁ ଏପରି ଭାବରେ ସଂଯୋଜିତ କରିଅଛନ୍ତି ଯେ, କାବ୍ୟର ଅଖଣ୍ଡତା ଯଥାର୍ଥ ଭାବରେ ରକ୍ଷିତ ହୋଇଅଛି । ଏ ବିଷୟରେ ଅଧ୍ୟାପକ ନଟବର ସାମନ୍ତରାୟ ଲେଖିଛନ୍ତି, "ଭିନ୍ନମୁଖୀ କଥାବସ୍ତୁର ଏକମୁଖିତା ଅର୍ଥାତ୍ ବହୁ ବିଭିନ୍ନ ବିଷୟବସ୍ତୁର ଏକଦା ଏକ ମଧ୍ୟରେ ଯୋଗ-ସୂତ୍ରରେ ଗ୍ରଥିତ ହେବାର ବିଶିଷ୍ଟ ପ୍ରକୃତି ହେଉଛି ଚିଲିକା କାବ୍ୟର ଏକ ଅଭିନବ ସୃଷ୍ଟି-ଗୁହାଣୀ । କାରଣ, ବିଷୟବସ୍ତୁ ଖଣ୍ଡ ଖଣ୍ଡ ହେଲେହେଁ ସେମାନେ ଅଖଣ୍ଡ-ସୌନ୍ଦର୍ଯ୍ୟବୋଧରେ ରସାଣିତ ହୋଇ ଏକ ଅଖଣ୍ଡ ମୌଳିକ ପୂର୍ଣ୍ଣାଙ୍ଗ ସୃଷ୍ଟିରେ ରୂପାନ୍ତରିତ ହୋଇଛନ୍ତି । କେବଳ ଭିନ୍ନ ଭିନ୍ନ ବିଷୟବସ୍ତୁ ନୁହନ୍ତି, ଅନ୍ୟ ସାହିତ୍ୟର ବହୁ ଚିନ୍ତାଧାରା ଏବଂ ଶ୍ଳୋକଗତ ଅନୁବାଦ ବା .ଅନୁସରଣ ଏଥିରେ ଥିଲେ ହେଁ ଏମାନେ କାବ୍ୟର

ସେଇ ସମଗ୍ର ସୌନ୍ଦର୍ଯ୍ୟ ଭିତରେ ଅବଲୁପ୍ତ ହୋଇପଡ଼ିଛନ୍ତି; ଅର୍ଥାତ୍ ଏମାନଙ୍କର ବ୍ୟକ୍ତିଗତ ସତ୍ତା ପାଠକ ମନରେ ଯେଉଁ ରସବୋଧ ଜାତ କରାଇଥାନ୍ତି ସେ ରସ-ବୋଧ ଖଣ୍ଡ ସୌନ୍ଦର୍ଯ୍ୟର ଦ୍ୟୋତକ ନୁହେଁ, ତାହା ସମଗ୍ର କାବ୍ୟର ଅଖଣ୍ଡ ସୌନ୍ଦର୍ଯ୍ୟ ଅଭିବୃଦ୍ଧିର ସହାୟକ ମାତ୍ର । (୧)

ଚିଲିକାକୁ କେନ୍ଦ୍ରକରି କବି କାବ୍ୟରଚନା କରିଥିଲେ ହେଁ ଯଥାର୍ଥରେ ଏହି କାବ୍ୟରେ କେବଳ ଚିଲିକା ବିଷୟ ବର୍ଣ୍ଣିତ ହୋଇ ନାହିଁ । ଚିଲିକା ଓ ତାର ତୀର-ଦେଶର ନଦନଦୀ, ପର୍ବତ, ଅରଣ୍ୟ, ମନ୍ଦିର, ଦେବଦେବୀ ପ୍ରଭୃତି ଏଥିରେ ବର୍ଣ୍ଣିତ ହୋଇଅଛି । ଭାରତର ବହୁ ସ୍ଥାନର ପ୍ରାକୃତିକ ଦୃଶ୍ୟକୁ କବି ତୁଳନାତ୍ମକ ଭାବରେ ଏହି କାବ୍ୟରେ ଉପସ୍ଥାପିତ କରିଅଛନ୍ତି । ଚିଲିକାର ସୌନ୍ଦର୍ଯ୍ୟକୁ କବିବର ରାଧାନାଥ କେବଳ ଯେ ଦର୍ଶନ କରିଥିଲେ, ତାହା ନୁହେଁ । ସେ ଏହାକୁ ନିଜ ହୃଦୟରେ ଅନୁଭବ କରିବା ସଙ୍ଗେ ସଙ୍ଗେ ପାଠକ-ମାନଙ୍କ ହୃଦୟର ଅନୁଭୂତି ଲାଗି ଆହ୍ୱାନ କରି ଅଛନ୍ତି । କବି କାବ୍ୟରେ ଯେତେ ଯେତେ ପ୍ରସଙ୍ଗ ଉତ୍ଥାପନ କରନ୍ତୁ ନା କାହିଁକି ସବୁଠାରେ ପାଠକମାନଙ୍କର ମନକୁ ଚିଲିକାର ସୌନ୍ଦର୍ଯ୍ୟ ପ୍ରତି ସଚେତନ କରାଇଅଛନ୍ତି । କାବ୍ୟର ପ୍ରଥମ ୫୦ ଧାଡ଼ି ପାଠକଲେ ପାଠକ ଚିଲିକାର ସୌନ୍ଦର୍ଯ୍ୟ ପ୍ରତି ଅବହିତ ହୋଇଥାଏ । କବି ଯଦି ଏତିକରେ ତାଙ୍କର ବର୍ଣ୍ଣନାକୁ ସୀମିତ କରିଥାଆନ୍ତେ, ତେବେ ଏହା ଏକ କବିତା ଭାବରେ ଚିଲିକାର ସୌନ୍ଦର୍ଯ୍ୟ ପ୍ରକାଶ କରିବାକୁ ସମର୍ଥ ହୋଇଥାଆନ୍ତା । ମାତ୍ର କବିଙ୍କର ଦୃଷ୍ଟି ସୀମିତ ନହୋଇ ସୁଦୂର ପ୍ରସାରି ହୋଇଅଛି । ଛବିଳ ଉତ୍କଳରେ ଚିଲିକାର ଛବି ଅତୁଳ ବୋଲି ପ୍ରକାଶ କରିବା ପରେ କବି ତାଙ୍କର ଭାରତ ଭ୍ରମଣ କାଳରେ ଦେଖିଥିବା ପ୍ରାକୃତିକ ଦୃଶ୍ୟଗୁଡ଼ିକ ବର୍ଣ୍ଣନା କରିଛନ୍ତି । କବିଙ୍କର ଭାଷାରେ—

---

(୧) ରାଧାନାଥ ଓ ଚିଲିକା କାବ୍ୟ—ପୃ ୧୨-୧୩ ।

"ବହୁ ବନ ଭ୍ରମି ଭ୍ରମି ଅବିରତେ
ଦେଖିଲେଣି ନାନାସ୍ଥାନ ଭୂଭାରତେ,
କି ଉତ୍ତରଖଣ୍ଡ, କି ଦକ୍ଷିଣାପଥ,
ଭ୍ରମିଲି ମୁଁ ନଗ୍ୟବଶେ ଚକ୍ରବତ ।"

୧୮୮୩ ସାଲରେ କବିବର ରାଧାନାଥ ଆନ୍ତର୍ଜାତିକ ପ୍ରଦର୍ଶନୀ ଦେଖିବା ଉଦ୍ଦେଶ୍ୟରେ କଲିକତା ଯାଇଥିଲେ । ସେ କଟକରୁ ଷ୍ଟିମର ଯୋଗେ ଚାନ୍ଦବାଲି ବନ୍ଦରକୁ ଯାଇ ସେଠାରୁ ସାଗର ପଥରେ ଜାହାଜରେ କଲିକତା ଯାତ୍ରା କରିଥିଲେ । କଲିକତାରେ ପ୍ରଦର୍ଶନୀ ଦେଖିବା ପରେ ସେ ଭାରତର କେତେକ ପ୍ରଧାନ ସ୍ଥାନ ବୁଲି ଦେଖିବା ନିମନ୍ତେ ପରିଭ୍ରମଣ କରିଥିଲେ । "କଲିକତାରେ ପ୍ରଦର୍ଶନୀ ଦେଖି ରାଧାନାଥ ରାୟ କାଶୀ, ଅଯୋଧ୍ୟା, ଲକ୍ଷ୍ନୌ, ପ୍ରୟାଗ, ଦିଲ୍ଲୀ, ଆଗ୍ରା, ମଥୁରା, ବୃନ୍ଦାବନ, ହରିଦ୍ୱାର, ଜୟପୁର, ଜବଲପୁର, ଆଜମିର, ଉଜ୍ଜୟିନୀ, ବୋମ୍ବାଇ ପ୍ରଭୃତି ବୁଲି ଶେଷକୁ ଦାର୍ଜିଲିଂ ଯାଇଥିଲେ ।" (୧) ଭାରତର ବିଭିନ୍ନ ସ୍ଥାନଗୁଡ଼ିକୁ ବୁଲି ଦେଖିବା ପାଇଁ କବି ସରକାରୀ କର୍ମ କ୍ଷେତ୍ରରୁ ଛଅମାସ ଛୁଟି ନେଇ ଯାଇଥିଲେ । ଏହାପରେ କବି ଓଡ଼ିଶାର ଶିକ୍ଷାବିଭାଗର କର୍ମଚାରୀ ଭାବରେ ଓଡ଼ିଶାର ବିଭିନ୍ନ ସ୍ଥାନ ବୁଲି ଦେଖିବାର ସୁଯୋଗ ପାଇଥିଲେ । କବି ଭାରତ ଭ୍ରମଣ କରିବା ସମୟରେ ଯେଉଁ ସ୍ଥାନଗୁଡ଼ିକର ପ୍ରାକୃତିକ ଦୃଶ୍ୟ ଅବଲୋକନ କରିଥିଲେ, ସେଗୁଡ଼ିକୁ ଅତ୍ୟନ୍ତ ଦକ୍ଷତାର ସହିତ ଚିଲିକା କାବ୍ୟରେ ବର୍ଣ୍ଣନା କରିଛନ୍ତି । ଭାରତର ବିଭିନ୍ନ ସ୍ଥାନରେ ପ୍ରାକୃତିକ ଦୃଶ୍ୟ ଅବଲୋକନ କରିବା ସମୟରେ କବି ଚିତ୍ତରେ ଆହ୍ଲାଦିତ ହେବା ପରିବର୍ତ୍ତେ ଖିନ୍ନ ଅଥବା ଅଶାନ୍ତ ହୋଇଛନ୍ତି । ତେଣୁ ପ୍ରତ୍ୟେକ କ୍ଷେତ୍ରରେ ସେ ଚିଲିକାର ସ୍ନିଗ୍ଧରୂପକୁ ସ୍ମରଣ କରିଛନ୍ତି ।

"ପ୍ରବୁଦ୍ଧ ଭାବେ ଏହି ମହା ଦୃଶ୍ୟମାନ
ଦେଖିଲି ଭାରତେ ଭ୍ରମି ନାନାସ୍ଥାନ,

(୧) ରାଧାନାଥ ଜୀବନୀ — ପୃ-୧୫୧

ଭୀଷଣ, ବିକଟ, ଉତ୍କଟ, ଉଦାର
ଦୃଶ୍ୟ ଦେଖି ହେଲ ବିସ୍ମୟ ଅପାର,
ଚିତ୍ତବୃତ୍ତି ଗଲା ନିଜପଥ ଛାଡ଼ି,
ସଞ୍ଚିଲା ସେହି ମହାଭାବେ ବୁଡ଼ି,
ଖର ସୌରକରେ ତାରକା ଯେସନ
ଅଦୃଶିତା ବିସ୍ମୟେ ହେଲା ନିମଗନ,
ଗୁରୁପ୍ରାୟେ ତାଙ୍କୁ ଦୂରୁଁ କରି ଭୀତ
ସଖୀ ପ୍ରାୟେ ତୋତେ ସ୍ମରୁଥିଲି ନିତ୍ୟ ।"

କବି ଭାରତର ବିଭିନ୍ନ ସ୍ଥାନର ପ୍ରାକୃତିକ ଦୃଶ୍ୟ ଅବଲୋକନ କରିବା ସମୟରେ ବାରମ୍ବାର ଚିଲିକାକୁ ସ୍ମରଣ କରୁଥିଲେ । ଭାରତର ଅନ୍ୟାନ୍ୟ ସ୍ଥାନର ପ୍ରକୃତିକୁ ଗୁରୁ ତୁଲ୍ୟ ଜ୍ଞାନ କରି କବି ଦୂରରୁ ଭୀତ ହୋଇଛନ୍ତି । ସେହି ସମୟରେ ଯେତେବେଳେ ଚିଲିକାର ସ୍ମୃତି ତାଙ୍କର ମାନସ ପଟରେ ଉଦିତ ହୋଇଛି ସେତେବେଳେ ସେ ତାକୁ ସଖୀ ଭାବରେ ଅନୁଭବ କରିଛନ୍ତି । ତେଣୁ କବିଙ୍କ ଲେଖାରେ ଚିଲିକା ହିଁ ସମଗ୍ର ଭାରତରେ ପ୍ରାକୃତିକ ଦୃଶ୍ୟଭାବରେ ଶ୍ରେଷ୍ଠତମ । ଚିଲିକାର ସୌନ୍ଦର୍ଯ୍ୟକୁ ବର୍ଣ୍ଣନା କରିବାକୁ ଯାଇ କବି ଯେ ତାହାକୁ କେବଳ ଭାରତର ଶ୍ରେଷ୍ଠତମ ସୌନ୍ଦର୍ଯ୍ୟ-ପୂର୍ଣ୍ଣ ସ୍ଥାନ ଭାବରେ ବର୍ଣ୍ଣନା କରିଛନ୍ତି, ତାହା ନୁହେ । ଚିଲିକାର ସୌନ୍ଦର୍ଯ୍ୟ ବର୍ଣ୍ଣନାରେ ଶତମୁଖ କବି ଲେଖିଛନ୍ତି,

"ଆହା ଏ ଶୋଭାର କାହିଁ ପଟାନ୍ତର ?
ଥିଲେ ଥିବ ସ୍ୱର୍ଗେ ମର୍ତ୍ତ୍ୟେ ଅଗୋଚର,
ପାଶୋରିବ ଦେଖି, କହ, କେଉଁ ଜନ
ଏ ଶୋକ ପାସୋରା ଅପୂର୍ବ ଭୁବନ ?
ଭାରଣୀ-ଉକତ କେଉଁ ରୂପ ପାୟୀ
ତୃପ୍ତ ହେବ ଏହା ଥରେ ମାତ୍ର ଧ୍ୟାୟି ?
ବଚନ ବିଷୟ ନୁହଇ ଏ ଛବି
ହୃଦ ସେ କେବଳ ପାରେ ଅନୁଭବି ।"

କବି ଚିଲିକାର ସୌନ୍ଦର୍ଯ୍ୟକୁ ଶତମୁଖରେ ବର୍ଣ୍ଣନା କରିବା ସଙ୍ଗେ ସଙ୍ଗେ ଚିଲିକାର ପବିତ୍ରତା ସୂଚିତ କରିଅଛନ୍ତି । ଚିଲିକା ହ୍ରଦରେ ବହୁ ନଦନଦୀର ପତନ ଏବଂ ମହୋଦଧିର ନୀର ମିଳନସ୍ଥଳକୁ ବର୍ଣ୍ଣନା କରିବା ସଙ୍ଗେ ସଙ୍ଗେ ଚିଲିକାର ତୀରଦେଶରେ ବହୁ ଦେବଦେବୀଙ୍କର ଅଧିଷ୍ଠାନ ସ୍ଥଳ ବିଷୟ କବି ସୂଚିତ କରି ଅଛନ୍ତି । କବିଙ୍କ ଦୃଷ୍ଟିରେ ଚିଲିକା କେବଳ ସୁନ୍ଦର ନୁହେଁ, ସୁନ୍ଦର ଏବଂ ପବିତ୍ର । ତେଣୁ କବି ଲେଖିଛନ୍ତି,

"ଏ ଆଦି ବିବିଧ ପୁଣ୍ୟତୀର୍ଥ ସଙ୍ଗ
ଲଭି ପରିପୁଷ୍ଟ ତୋର ନୀଳ ଅଙ୍ଗ
ନିଜେ ତୀର୍ଥେଶ୍ୱର ସର୍ବତୀର୍ଥାଶ୍ରୟ
ତୋ ସଙ୍ଗେ କରନ୍ତି ନୀର ବିନିମୟ,
ତେବେ ସୁନ୍ଦର, ସୁନ୍ଦର ପାବନ,
ତୋଠାରେ ହୋଇଛି ଏହା ସଙ୍ଘଟନ ।
ତେଣୁ ସିନା ତୋର ତୀର ଦ୍ୱୀପାବଳୀ
ଦେବ ଦେବୀଙ୍କର ପ୍ରିୟ ବାସସ୍ଥଳୀ
ତେଣୁ ସିନା ତାରା, ଚଣ୍ଡି, ଭଗବତୀ,
ସଦରେ ତୋଠାରେ ବିହ୍ୱଳେ ବସତି ।"

ଚିଲିକାର ସୌନ୍ଦର୍ଯ୍ୟ ଓ ପବିତ୍ରତା କବିଙ୍କୁ ଏପରି ଆନନ୍ଦ ବିହ୍ୱଳ କରିଦେଇଛି ଯେ, କବି ସେହି ସୌନ୍ଦର୍ଯ୍ୟାନୁଭୂତିରେ କଳ୍ପନାର ଅତୀନ୍ଦ୍ରିୟ ଜଗତକୁ ଚାଲିଯାଇଛନ୍ତି । ସୌନ୍ଦର୍ଯ୍ୟର ପୂଜାରୀ ରାଧାନାଥଙ୍କ ଚକ୍ଷୁରେ ଭାସିଯାଇଛି ପୁରୁଷୋତ୍ତମ ଦେବଙ୍କର କାଞ୍ଚି ଅଭିଯାନର ପ୍ରତ୍ୟାବର୍ତ୍ତନ ଦୃଶ୍ୟ । ଏହି ଦୃଶ୍ୟ ବର୍ଣ୍ଣନା ଏପରି ଜୀବନ୍ତ ହୋଇଅଛି ଯେ, ପାଠକ ଏହାକୁ ପାଠକରିବା ସମୟରେ ଅନୁଭବ କରେ ସତେ ଯେପରି ତାର ଚକ୍ଷୁ ସମ୍ମୁଖରେ ସବୁ ଘଟିଯାଉଅଛି ।

କାବ୍ୟରେ ପ୍ରସଙ୍ଗ କ୍ରମରେ କବି ବହୁ ଉପାଖ୍ୟାନ ଓ କିମ୍ବଦନ୍ତୀକୁ ସ୍ଥାନ ଦେଇଅଛନ୍ତି । କାବ୍ୟର ରସ ବିନ୍ୟାସ ଦୃଷ୍ଟିରୁ ତାହାର

ଯାଥାର୍ଥ୍ୟ ଅନୁଭୂତ ହୋଇଥାଏ । ମାତ୍ର କାଞ୍ଚି ଅଭିଯାନ ପ୍ରସଙ୍ଗ ବର୍ଣ୍ଣନା କରିବାର ଅବ୍ୟବହିତ ପୂର୍ବରୁ କବି ଟେଳିକାକୁ ଇତିହାସର ରଙ୍ଗସ୍ଥଳୀ ଭାବରେ ଉପସ୍ଥାପିତ କରିଅଛନ୍ତି । ଟେଳିକା ସହିତ ଏ ଦେଶର ଇତିହାସକୁ ସଂପୃକ୍ତ କରିବାକୁ ଯାଇ କବି ମାଣିକ ଗଉଡୁଣୀ ପ୍ରସଙ୍ଗ ଏବଂ କାଞ୍ଚି ଅଭିଯାନ ପ୍ରସଙ୍ଗର ଅବତାରଣା କରିଛନ୍ତି । ମାତ୍ର ଏ ଦୁଇଟିଂ ପ୍ରସଙ୍ଗ ଓଡ଼ିଶାର ଇତିହାସ ସମ୍ମତ ନୁହେଁ । ଏହାକୁ କମ୍ବଦନ୍ତୀ ଭାବରେ ଗ୍ରହଣ କରିବାର କଥା । ଅନ୍ତ ମାହାତରେ ଧର୍ମପ୍ରବଣ ଓଡ଼ିଆମାନେ ଏହି ପ୍ରସଙ୍ଗକୁ ସତ୍ୟ ବୋଲି ମନେ କଲେହେଁ ଏହାର ସତ୍ୟତା ଅଛି ବୋଲି କୁହାଯାଇ ପାରିବ ନାହିଁ । ଧର୍ମବିଶ୍ୱାସୀ ଦେଶବାସୀ ଏହି ଘଟଣାକୁ ବିଶ୍ୱାସ କରିବାର ମଧ୍ୟ ଯଥେଷ୍ଟ କାରଣ ଅଛି । ଶ୍ରୀପଞ୍ଚମୀ ଦିନ ପୁରୀ ମନ୍ଦିରରେ ଏବଂ କେନ୍ଦ୍ରାପଡ଼ାସ୍ଥ ବଳଦେବଜୀଉଙ୍କ ମନ୍ଦିରରେ ଠାକୁରମାନେ କାଞ୍ଚିକାବେରୀ ବେଶ ହୁଅନ୍ତି । ଏହି ବେଶକୁ ଦେଖିବା ପାଇଁ ମନ୍ଦିରମାନଙ୍କରେ ବହୁ ଜନସମାଗମ ହୋଇଥାଏ । ଦେବଶକ୍ତିରେ ଦୃଢ଼ବିଶ୍ୱାସ ସ୍ଥାପନ କରୁଥିବା ଦେଶବାସୀ ଜଗନ୍ନାଥ ଓ ବଳଭଦ୍ରଙ୍କର ଏହି ବେଶ ଦର୍ଶନକୁ ସତ୍ୟ ଭାବରେ ଗ୍ରହଣ କରିବାରେ ଅସ୍ୱାଭାବିକତା ନଥାଇ ପାରେ । ମାତ୍ର ଏ ପ୍ରକାର ବେଶ ବା ପର୍ବାନୁଷ୍ଠାନ କେବେଠାରୁ ମନ୍ଦିରମାନଙ୍କରେ ଆରମ୍ଭ କରାଗଲା ସେ କଥା ଜାଣିବା ପାଇଁ ଧର୍ମବିଶ୍ୱାସୀ ଦେଶବାସୀଙ୍କ ମନରେ କୌତୁହଳ ସୃଷ୍ଟି ହେବାର ସମୟ ଏବେ ମଧ୍ୟ ଆସିନାହିଁ ।

ଓଡ଼ିଶାର ଇତିହାସରେ ଏହି କାଞ୍ଚିଅଭିଯାନ ବିଷୟଟିକୁ ଖୋଜି ବସିଲେ ଆମକୁ ନିରାଶ ହେବାକୁ ପଡ଼ିଥାଏ । ଏ ବିଷୟରେ ଓଡ଼ିଶା ଇତିହାସରେ ଯେଉଁ ତଥ୍ୟ ପରିବେଷିତ ହୋଇଅଛି, ତାହାକୁ ଏଠାରେ ଉଦ୍ଧାର କରାଯାଇ ପାରେ ।

"ଦକ୍ଷିଣରେ କାଞ୍ଚି ରାଜ୍ୟର ରାଜା ସାଲୁବନରସିଂହ ଓ ବାହମନି ସୁଲତାନ ପ୍ରବଳ ଥିଲେ । ସାଲୁବନରସିଂହ ଅନ୍ଦାଜ ଖ୍ରୀ୧୪୫୬ରେ ଚନ୍ଦ୍ରଗିରି ରାଜ୍ୟର ଶାସନ ଗ୍ରହଣ କରନ୍ତି । ଏହାଙ୍କ

ପିତାଙ୍କ ନାମ ଗୁହ ଓ ମାତାଙ୍କ ନାମ ମଲ୍ଲାମ୍ବିକା । ସାଲ୍ୱନରସିଂହ ଶାସନଭାର ଗ୍ରହଣ କରିବା ମାତ୍ରକେ ନିଜର ରାଜ୍ୟ ବିସ୍ତାରର ଉଦ୍ୟମ କଲେ; ମାତ୍ର ସେ ଉଦ୍ୟମର ପ୍ରଧାନ ଅନ୍ତରାୟ ଥିଲେ କପିଳେନ୍ଦ୍ର ଦେବ । ତାଙ୍କ ମୃତ୍ୟୁପରେ ସାଲ୍ୱନରସିଂହ ଖ୍ରୀ୧୪୬୮ରେ ଉଦୟଗିରି ଅଧିକାର କରିବା ପାଇଁ ଅଭିଯାନ ଆରମ୍ଭ କଲେ । ଚନ୍ଦ୍ରଗିରି ଓ ଉଦୟଗିରି ମଧ୍ୟରେ ଥିବା ସମସ୍ତ ଓଡ଼ିଆ ଦୁର୍ଗମାନ ସେ ଅଧିକାର କରି ଉଦୟଗିରିରେ ପହଞ୍ଚିଲେ । ସେ ସମୟରେ ସେହି ଅଞ୍ଚଳର ପ୍ରାଦେଶିକ ଶାସକ ଦକ୍ଷିଣ କପିଳେଶ୍ୱର କୁମାର ମହାପାତ୍ର । ରାଜନାଥ ଡିଣ୍ଡିମଙ୍କ କୃତ 'ସାଲ୍ୱାଭ୍ୟୁଦୟମ୍' ନାମକ ଐତିହାସିକ କାବ୍ୟରେ ବର୍ଣ୍ଣିତ ଅଛି ଯେ, ଏ ଯୁଦ୍ଧରେ ବହୁ ଓଡ଼ିଆ ସେନା ଓ ସେନାପତି ନିହତ ହୋଇଥିଲେ । ଓଡ଼ିଆ ବାହିନୀ ପରାସ୍ତ ହୋଇ ଉଦୟଗିରି ଦୁର୍ଗଭିତରେ ଆଶ୍ରୟ ନେଲେ । ତାପରେ ନରସିଂହ ବଳ କୌଶଳ ପ୍ରୟୋଗ କରି ସେ ଦୁର୍ଗ ଅଧିକାର କରିଥିଲେ ବୋଲି 'ସାଲ୍ୱାଭ୍ୟୁଦୟମ୍'ରେ ମିଳେ; ମାତ୍ର ଏହା ସତ୍ୟ ନୁହେଁ ବୋଲି ନିଜନସ୍ ନାମକ ପର୍ତ୍ତୁଗୀଜ ଲେଖକ କହନ୍ତି । ଏହାଙ୍କ ଲେଖାନୁସାରେ ସାଲ୍ୱନରସିଂହ, ରଜଚୁର, ଉଦୟଗିରି ଓ କୋଣ୍ଡାବିଡୁ କେବେହେଁ ଅଧିକାର କରିପାରିନଥିଲେ । ଯାହାହେଉ, ସେତେବେଳେ ଯେ ସାଲ୍ୱବାହିନୀ ଓ ଓଡ଼ିଆ ବାହିନୀ ମଧ୍ୟରେ ସଂଘର୍ଷ ହୋଇଥିଲା ଏଥିରେ ସନ୍ଦେହ ନାହିଁ । ବୋଧହୁଏ ସେହି ସଂଘର୍ଷରେ ଦକ୍ଷିଣ କପିଳେଶ୍ୱର କୁମାର ମହାପାତ୍ର ନିହତ ହୋଇ-ଥିଲେ । ଦକ୍ଷିଣରେ ଏ ସଂଘର୍ଷର ସମ୍ବାଦ ପାଇ ପୁରୁଷୋତ୍ତମ ବିଶାଳ ସେନାବାହିନୀ ନେଇ ରାଜ୍ୟରକ୍ଷା ଉଦ୍ଦେଶ୍ୟରେ ଯାତ୍ରା କଲେ । ଅଭିଲେଖମାନଙ୍କରେ ବର୍ଣ୍ଣିତ ଅଛି ଯେ, ପୁରୁଷୋତ୍ତମ ଦେବଙ୍କ ସେନାବାହିନୀର ଗତିପଥରେ ପୃଥିବୀ ଟଳମଳ ହୋଇଥିଲା । ଶତ୍ରୁପକ୍ଷ ଓଡ଼ିଆ ସେନାବାହିନୀର ଉଚ୍ଚ ନୀଳ ପତାକା ଓ ଶୌର୍ଯ୍ୟ ବୀର୍ଯ୍ୟ ଦେଖି ବିବ୍ରତ ହେଲେ । ଅତର୍କିତ ଭାବରେ ପୁରୁଷୋତ୍ତମ ଦେବ ଉଦୟଗିରିଦ୍ୱାରରେ ସାଲ୍ୱନରସିଂହଙ୍କୁ ଆକ୍ରମଣ କଲେ । ସାଲ୍ୱବାହିନୀ ତୁମୁଳ ଯୁଦ୍ଧ କରିଥିଲେ ସୁଦ୍ଧା ଶେଷରେ ପରାସ୍ତ ହେଲେ ଓ

ସାଲ୍ୱ ନରସିଂହ ନିଜେ ବନ୍ଦୀ ହେଲେ । କରଯୋଡ଼, କ୍ଷମାପ୍ରାର୍ଥନା କରି ସାଲ୍ୱ ନରସିଂହ ଉଦୟଗିରି ରାଜ୍ୟ ପୁରୁଷୋତ୍ତମ ଦେବଙ୍କୁ ଛାଡ଼ିଦେଲେ । ଏହିଠାରେ ପୁରୁଷୋତ୍ତମ ଦେବଙ୍କ ସହିତ ସାଲ୍ୱ ନରସିଂହଙ୍କ ସନ୍ଧି ହୋଇଥିବାର ଜଣାଯାଏ । କାରଣ ଉଦୟଗିରି ରାଜ୍ୟ ପୁରୁଷୋତ୍ତମ ଫେରି ପାଇଲେ; ମାତ୍ର ଉଦୟଗିରିଠାରୁ ଦକ୍ଷିଣକୁ କାବେରୀ ପର୍ଯ୍ୟନ୍ତ ରାଜ୍ୟର ଅଧିକାଂଶ ସାଲ୍ୱ ନରସିଂହ ହୋଇଥିବାର ଅଭିଲେଖମାନଙ୍କରୁ ଜଣାଯାଏ । ଏ ସନ୍ଧି ଖ୍ରୀ୧୪୭୦ ଅକ୍ଟୋବର ମାସରେ ହୋଇଥିବାର ଜଣାଯାଏ । ସାଲ୍ୱ ନରସିଂହଙ୍କ ପରାଜୟରୁ ସୁବିଦିତ କାଞ୍ଚିକାବେରୀ କିମ୍ବଦନ୍ତୀର ସୃଷ୍ଟି ବୋଲି ମନେହୁଏ । ପୁରୁଷୋତ୍ତମ ଦେବଙ୍କ ପତ୍ନୀଙ୍କ ନାମ ରୂପାମ୍ବିକା । ଏହା କାଞ୍ଚି-କାବେରୀ ପ୍ରସିଦ୍ଧ ପଦ୍ମାବତୀଙ୍କ ଅପର ନାମ ବୋଲି କେହି କେହି କହନ୍ତି । ଯଦି ରୂପାମ୍ବିକା, ସାଲ୍ୱ ନରସିଂହଙ୍କ କନ୍ୟା ହୋଇଥିବେ, ତେବେ ଏହି ସମୟରେ ରୂପାମ୍ବିକାଙ୍କ ସହ ପୁରୁଷୋତ୍ତମ ଦେବଙ୍କ ବିବାହ ହୋଇଥିଲା । କାଳକ୍ରମେ ରୂପାମ୍ବିକା ପରିବର୍ତ୍ତେ ପଦ୍ମାବତୀଙ୍କ ନାମ ଜନଶ୍ରୁତିକୁ ଆସିଯାଇଛି । ପଦ୍ମାବତୀ ପ୍ରତାପରୁଦ୍ର ଦେବଙ୍କ ପତ୍ନୀଥିଲେ ।”(୧)

ଇତିହାସର ଏହି ଘଟଣା କାଳକ୍ରମେ କିମ୍ବଦନ୍ତୀରେ କାଞ୍ଚିକାବେରୀ ଉପାଖ୍ୟାନରେ ପରିଣତ ହୋଇଅଛି । ଇତିହାସରେ ପୁରୁଷୋତ୍ତମ ଦେବଙ୍କର ଅଭିଯାନର ଉଦ୍ଦେଶ୍ୟ କିମ୍ବଦନ୍ତୀରେ ସମ୍ପୂର୍ଣ୍ଣ ପରିବର୍ତ୍ତିତ ରୂପ ଗ୍ରହଣ କରିଅଛି । ଓଡ଼ିଆ ଜାତିର ଓ ତାର ଇଷ୍ଟଦେବଙ୍କର ମାହାତ୍ମ୍ୟ ପ୍ରକଟନ କରିବା ଉଦ୍ଦେଶ୍ୟରେ ଏହି କିମ୍ବଦନ୍ତୀକୁ ଗ୍ରହଣ କରାଗଲେହେଁ ଏହାର ଅନ୍ତରାଳରେ ଭକ୍ତିସର୍ବସ୍ୱ ପ୍ରକୃତିର ଉଦ୍ଦେଶ୍ୟ ଅତ୍ୟନ୍ତ ସ୍ପଷ୍ଟ । ପୁରୁଷୋତ୍ତମ ଦେବଙ୍କୁ କାଞ୍ଚି-ଯୁଦ୍ଧରେ ସାହାଯ୍ୟ କରିବା ଉଦ୍ଦେଶ୍ୟରେ ଜଗନ୍ନାଥ ଓ ବଳରାମ ଧଳାଘୋଡ଼ା ଓ କଳାଘୋଡ଼ା ଚଢ଼ି କାଞ୍ଚିକୁ ଯାତ୍ରା କରିବା ବିଷୟ ମାଣିକ ଗଉଡୁଣୀ ପ୍ରସଙ୍ଗରୁ ଜଣାପଡ଼ୁଥାଏ । ଏହାକୁ ମଧ୍ୟ ଏକ

(୧) ଓଡ଼ିଶା ଇତିହାସ—ମହତାବ-ପୃ. ୧୬୪—୧୬୬ ।

ଐତିହାସିକ ଘଟଣା ଭାବରେ ଗ୍ରହଣ କରାଯାଇ ନପାରେ । ଏ ବିଷୟରେ କେତେକ ଆଲୋଚକ ଆଲୋଚନା କରିଥିଲେହେଁ ଏହା ଯେ ଭକ୍ତମାନଙ୍କର ଏକ ମନଗଢ଼ା କାହାଣୀ, ଏଥିରେ ସନ୍ଦେହ ନାହିଁ । ଏ ବିଷୟରେ ପଣ୍ଡିତ ନୀଳକଣ୍ଠ ମତ ପ୍ରଦାନ କରିଛନ୍ତି, "ମାଣିକ ଗଉଡ଼ୁଣୀ ଆଖ୍ୟାନଟି ଗୋଟିଏ ଭକ୍ତଙ୍କ ମନଗଢ଼ା ମିଥ୍ୟା । ଏହା ଜଗମୋହନ କାନ୍ଥରେ କେବେ କିପରି ଖୋଦିତ ବା ନିର୍ମିତ ହୋଇଥିଲା, ତା କହିହେବ ନାହିଁ । ପୁରୁଷୋତ୍ତମ ଭକ୍ତଙ୍କ କଥା ବା ଭକ୍ତିଭାବରେ ଅନ୍ଧହୋଇ; କିମ୍ବା ନିଜର ଚଳନ୍ତି ବିଗ୍ରହରେ ମୁଗ୍ଧ ହୋଇ ଏହା କରାଇଥିବା ବିଚିତ୍ର ନୁହେ । କିମ୍ବା ଚଳନ୍ତି-ବିଗ୍ରହ ପରମ୍ପରାଟି ଯେଉଁ ଆଡ଼ୁ ଆସିଛି ସେଆଡ଼େ ସେକାଳେ ସମ୍ରାଟଙ୍କ ଜୈତଯାତ୍ରାରେ ଘୋଡ଼ାରେ ଚଢ଼ି, ହୁଏତ ଚନ୍ଦ୍ରଦେବଙ୍କୁ ସଙ୍ଗେ ଘେନି ଯାଉଥିବା ସ୍ୱୟଂ ଅସୁରଙ୍କ (ଉପାସ୍ୟଙ୍କ) ଏଇଭଳି କୌଣସି ଆଖ୍ୟାନର ସମ୍ପର୍କ ଥିବ ଓ ତାହାର ଗୁପ୍ତାରେ ଏ ଚିହ୍ନଟି ପୁରୁଷୋତ୍ତମ ଦେବଙ୍କ ପୂର୍ବରୁ ମନ୍ଦିର କାନ୍ଥରେ ନିର୍ମିତ ହୋଇଥିବ ।"(୧)

ମାଣିକ ଗଉଡୁଣୀ ଆଖ୍ୟାନଟି ମୂଳରେ ଯେ କୌଣସି ଐତିହାସିକ ସତ୍ୟତା ନାହିଁ ଏକଥା ବହୁଦିଗରୁ ଆଲୋଚନା କରି ପଣ୍ଡିତ ନୀଳକଣ୍ଠ ପ୍ରତିପାଦିତ କରିଛନ୍ତି । ଚିଲିକା କାବ୍ୟରେ ପ୍ରସଙ୍ଗକ୍ରମେ ସ୍ଥାନ ପାଇଥିବା ଲକ୍ଷ୍ମୀ ଆଖ୍ୟାନ, ସାକ୍ଷୀଗୋପାଳ ଆଖ୍ୟାନ ପ୍ରଭୃତିକୁ 'କବି କିମ୍ବଦନ୍ତୀରୁ ଗ୍ରହଣ କରିଛନ୍ତି । କବିବର ରାଧାନାଥ ଏହିସବୁ ଆଖ୍ୟାନକୁ କିମ୍ବଦନ୍ତୀରୁ ଗ୍ରହଣ କରିଥିଲେହେଁ ଏସବୁକୁ 'ଇତିହାସ' ରୂପରେ ଉପସ୍ଥାପିତ କରିବା ଦ୍ୱାରା ପ୍ରକାରାନ୍ତରରେ ପାଠକମାନଙ୍କ ଚିତ୍ତକୁ ବିଭ୍ରାନ୍ତ କରିଅଛନ୍ତି ବୋଲି କୁହାଯାଇପାରେ । କବିବର ରାଧାନାଥ ତାଙ୍କର ଅନ୍ୟ କାବ୍ୟମାନଙ୍କରେ ଯେପରି ମିଥ୍ୟାର ମନୋଜ୍ଞ ଆବରଣ ଭିତରେ କାବ୍ୟରୂପକୁ ପ୍ରତିଷ୍ଠିତ କରି ପାଠକମାନଙ୍କ ଚିତ୍ତକୁ ଆହ୍ଲାଦିତ କରିବାକୁ ପ୍ରୟାସ କରିଅଛନ୍ତି, ଏକ୍ଷେତ୍ରରେ ତାଙ୍କର ସେହି ପ୍ରୟାସ ହିଁ ଲକ୍ଷ୍ୟ କରିବାର କଥା ।

(୧) ଓଡ଼ିଆ ସାହିତ୍ୟର କ୍ରମପରିଣାମ—ଦ୍ୱିତୀୟ ଭାଗ—ପୃ. ୧୭୫ ।

ରକ୍ତବାହୁର ଉତ୍କଳ ଆକ୍ରମଣ ଘଟଣାଟି ମଧ୍ୟ ଐତିହାସିକ ସତ୍ୟ ଭାବରେ ସ୍ୱୀକୃତି ଲାଭ କରିନାହିଁ । କିମ୍ବଦନ୍ତୀରୁ ଜଣାଯାଏ ଯେ ରକ୍ତବାହୁ ଜଣେ ବୌଦ୍ଧ ଧର୍ମାବଲମ୍ବୀ ବୀର ଥିଲା । ସେ ଆନ୍ଧ୍ରଦେଶରୁ ଆସିଥିଲା । ଉତ୍କଳ ଆକ୍ରମଣ କରି ଉତ୍କଳର ଧନରତ୍ନ ଲୁଣ୍ଠନ କରି ସେ ସ୍ୱଦେଶକୁ ଫେରିବା ସମୟରେ ଚିଲିକା ବକ୍ଷରେ ଧବଳ ତୋଫାନରେ ପଡ଼ି ପ୍ରାଣ ହରାଇଥିଲା । କବି ଏହି ପ୍ରସଙ୍ଗରେ ଚିଲିକାର ମାରାତ୍ମିକା ଶକ୍ତି ବର୍ଣ୍ଣନା କରିଅଛନ୍ତି ।

"ରୁଦ୍ରମୂର୍ତ୍ତି ତୋର ରଖିଲୁ ଘୋଡ଼ାଇ
ଦୁରନ୍ତ ଉତ୍କଳ ପରିପନ୍ଥୀ ପାଇଁ
ସୂର୍ଯ୍ୟକାନ୍ତ ଯଥା ପରଶେ ଶୀତଳ
ତେଜସ୍ୱୀ ଦର୍ଶନେ ହୁଏ ଉଜ୍ଜ୍ୱଳ ,
ଶତ୍ରୁ ଦେଖି ତୁହି ସେରୂପେ ଚିଲିକା
ପ୍ରକୁଟ ପ୍ରଚ୍ଛନ୍ନ ଶକ୍ତି ମାରାତ୍ମିକା ।"

ରକ୍ତବାହୁର ପ୍ରତ୍ୟାବର୍ତ୍ତନ ସମୟରେ କବି ଚିଲିକାର ଯେଉଁ କରାଳ ରୂପର ବର୍ଣ୍ଣନା କରିଅଛନ୍ତି ତାହା କବିଙ୍କର ବ୍ୟକ୍ତିଗତ ଅନୁଭୂତିଜଡ଼ିତ । ଏ ବିଷୟରେ ରାଧାନାଥ ଗ୍ରନ୍ଥାବଳୀର ପାଦଟୀକାରେ କୁହାଯାଇଛି, "ଲେଖକ ସ୍ୱୟଂ ଥରେ ନିଶୀଥ ସମୟରେ ଚିଲିକାର ଗଭୀରତମ ଏବଂ ବିଷମ-ସଙ୍କୁଳ ଅଂଶ . କାଳିଜାଈ ଗଣ୍ଡରେ ନୌକାଯୋଗେ ଯାଉଁ ଯାଉଁ ଭୟଙ୍କର ଝଟିକା ନିବନ୍ଧନ ପ୍ରାଣସଂଶୟରେ ପଡ଼ିଥିଲେ ।"

କବିବର ରାଧାନାଥ ଚିଲିକା ବକ୍ଷରେ ଝଟିକାର କରାଳରୂପ ଦେଖି ତାହାକୁ ରକ୍ତବାହୁର ପ୍ରତ୍ୟାବର୍ତ୍ତନ ସମୟରେ ଘଟିଥିବାର ଝଟିକା ଭାବରେ ବର୍ଣ୍ଣନା କରିବାପାଇଁ ସମର୍ଥ ହୋଇ ଅଛନ୍ତି । ଏଠାରେ କବିଙ୍କ କଳ୍ପନା ସହିତ ବାସ୍ତବ ଅନୁଭୂତିର ମିଳନ ଘଟିଅଛି । ଏହି ବର୍ଣ୍ଣନାରେ କବି ପ୍ରକୃତିର ମାରାତ୍ମିକା ଶକ୍ତିକୁ ପ୍ରକାଶ କରିଅଛନ୍ତି । ପ୍ରକୃତିକୁ ଏ ପ୍ରକାର ରୂପ ପ୍ରଦାନ କରିବାରେ

କବିବର ରାଧାନାଥ ଓଡ଼ିଆ ସାହିତ୍ୟରେ ନିଜର ବୈଶିଷ୍ଟ୍ୟ ପ୍ରକାଶ କରିଅଛନ୍ତି । କବିବର ରାଧାନାଥଙ୍କର ଏହି ପ୍ରଭାବ ତାଙ୍କର ସମସାମୟିକ ଓ ପରବର୍ତ୍ତୀ ବହୁ କବି ଓ ଲେଖକଙ୍କ ଉପରେ ପଡ଼ିଥିବାର ଦେଖାଯାଏ । ପ୍ରକୃତିର ମାରତ୍ମିକାଟକୁ ପ୍ରକାଶ କରିବାକୁ ଯାଇ କବି ଲେଖିଛନ୍ତି,

"ତୋ ରଙ୍ଗେ ସଙ୍ଗେ ଯେଣେ ଭ୍ରମିଥାଉ
ଦଉଡ଼ି ଆସିଲେ ମୀନାମ୍ବୁ ସମ୍ରାଟ,
ବିଶ୍ୱ ଧ୍ୱଂସି-ରୁଦ୍ର-ପ୍ରଖର-ନିଶ୍ୱାସ
ପବଯ୍ୟେ ବହିଲା ବାୟୁ ଅଣଗୃଣ,
ଦୈତ୍ୟଦନ୍ତା ବଜୀ ଧୂମ-ବଜ୍ରକରେ
ଜୀମୂତ ବାହନେ ଉଇଁଲେ ଅମ୍ବରେ,
ଦମ୍ଭୋଳି ସେନାନେ କଲା ଘୋର ଧ୍ୱନି,
ଥରହର ହୋଇ କମ୍ପିଲା ଅବନୀ,
ଥରହର ହୋଇ ଅବନୀ ସଙ୍ଗତେ,
ଛବିଙ୍କୁ ଡକା ଗୁଡ଼ିଲେ ପର୍ବତେ,
ଭୂଲୋକେ କହିଲା ସୋଲଶିଳ ରାଇ
ଗଲା ସେ ଆପଣ ଶୃଙ୍ଗୁ ଶୃଙ୍ଗେ ଧାଇଁ ।
ତୋ ଉରଦର୍ପଣେ ସଘନେ ବିମ୍ବିତ
ହୋଇ ଚମକିଲା ଜୀମୂତ ତଡ଼ିତ,
ଦେଖାଇଦେଲା ତୋ ସଂହାର ମୂରତି
ପ୍ରକୃତିର ସେହି କରାଳ ଆକୃତି ।"

ପ୍ରକୃତିର ମାରତ୍ମିକା ଶକ୍ତି ପ୍ରକାଶ କରିବାକୁ ଯାଇ କବି ଘଣ୍ଟବାତ୍ୟାର ଧ୍ୱଂସ ବିଷୟ ବର୍ଣ୍ଣନା କରିଛନ୍ତି । ତାପରେ ସୌନ୍ଦର୍ଯ୍ୟ ପିପାସୁ କବିଙ୍କର ଦୃଷ୍ଟିରେ ଚିଲିକା ଶରଦର ସନ୍ଧ୍ୟା ଅତୀବ ହୃଦୟସ୍ପର୍ଶୀ ହୋଇ ପଡ଼ିଛି । ଏହି ବର୍ଣ୍ଣନାରେ କବି ପ୍ରକୃତିର ମନୋରମ

ଆଲେଖ୍ୟ ଅଙ୍କନ କରିଅଛନ୍ତି । କବିଙ୍କର ଏହି ବର୍ଣ୍ଣନା ପାଠକଲେ ଯେ କୌଣସି ପାଠକର ଚିତ୍ତ ସୌନ୍ଦର୍ଯ୍ୟର ଦିଗ୍‌ବଳୟକୁ ଅତିକ୍ରମ କରି ଚାଲିଯାଏ । ଭାବ ପ୍ରକାଶ ଲାଗି କବିଙ୍କର ଭାଷା ଏଠାରେ ଯଥାର୍ଥରେ ମର୍ମସ୍ପର୍ଶୀ ହୋଇଅଛି ବୋଲି କୁହାଯାଇପାରେ ।

"ଜଳଂସ୍ଥଳ ନଭଃ ଜ୍ୟୋତ୍ସ୍ନା ପରିପ୍ଲୁତ
ଦୃଷ୍ଟି ଦିଶେ ଯେହ୍ନେ ପାରଦ-ଧଉତ,
ପ୍ରତିବିମ୍ବ ବିଜ ଦ୍ୱୀପ–ଶୈଳ-ତଳେ
ସ୍ପଷ୍ଟାକାରେ ଶୋଭେ ହ୍ରଦ ଅନ୍ତସ୍ଥଳେ,

କ୍ଷୀରୋଦ ସୋଦର ଜ୍ୟୋତ୍ସ୍ନାର୍ଣ୍ଣବେ ଭାସି
ଦିଶନ୍ତି ବିଶଦ ଗିରି ବନ୍ୟରାଶି
ସ୍ନିଗ୍ଧ ତରୁମନେ, ମସୃଣ ଉପଳେ
ଜଳ ଜଳ ହୋଇ ଜ୍ୟୋତ୍ସ୍ନା ପ୍ରତିଫଳେ

ସର୍ପେ ଶିଷ ଚନ୍ଦ୍ରଚୂଡ଼ ତନୁଭଳି
ଛାୟା ମିଶ୍ରଣରେ ଶୋଭେ ବନସ୍ଥଳୀ,
ପ୍ରଶାନ୍ତ, ନୀରବେ ଗିରି ବନ ଦେଶ,
ନାହିଁ ଏଥି ନର ଚହଳର ଲେଶ,

ଦୂର ଝରନାଦ, ଝିଙ୍କାରି-ଝଙ୍କାର
କରେ ନିଶୀଥିନୀ ପ୍ରଭାବ ପ୍ରଚାର,
କଳି ଉପଦ୍ରବେ ତ୍ୟଜି ଲୋକାଳୟ
ଶାନ୍ତି କି ଏସ୍ଥଳେ ଭଜିଲେ ଆଶ୍ରୟ ?

ଚିଲିକା ! ତୋହର ଏହି ଶୋଭାବନ
ବର୍ଣ୍ଣୋଦ୍ରବମୟ ଦୃଶ୍ୟ ସାପୁନ୍ତନ
ଅଟେ ସର୍ବଶୋଭା–ସୀମନ୍ତର ଟୀକା,
ପ୍ରକୃତିର ଚାରୁ ଆଲେଖ୍ୟ—ଚିଲିକା ।"

ଚିଲିକାର ଏହି ସୌନ୍ଦର୍ଯ୍ୟ କବିଚିତ୍ତକୁ ଆହ୍ଲାଦିତ କରିବାକୁ ସମର୍ଥ ବୋଲି କବି ଚିଲିକା ଶିରରେ ତାଙ୍କର ଶେଷଜୀବନ

ଅତିବାସ୍ତବ ଜଗତର କଳ୍ପନା କରିଥିଲେ । ମାତ୍ର ତାଙ୍କର ସେ ଆଶା କେବଳ ଆଶାରେହିଁ ରହିଗଲା । ଚିତ୍ରକଳା ସୌନ୍ଦର୍ଯ୍ୟରେ ସ୍ୱର୍ଗୀୟ ଶାନ୍ତରସ ଆସ୍ୱାଦନ ସମର୍ଥ କବି ପୁଣି କଠୋର କର୍ତ୍ତବ୍ୟର ତାଡ଼ନାରେ ସଂସାରକୁ ଫେରିଛନ୍ତି । ସଂସାରର କର୍ତ୍ତବ୍ୟ ମଧ୍ୟରେ କବି ଚିତ୍ରକାର ସୌନ୍ଦର୍ଯ୍ୟକୁ ଅଭୁଲା ସ୍ମୃତି ରୂପରେ ମନମଧ୍ୟରେ ରଖିବାର କଳ୍ପନା କରିଛନ୍ତି । କବିବର ରାଧାନାଥ ନିଜ ଜୀବନର କଷ୍ଟିକର ଅନୁଭୂତି ପ୍ରକାଶ କରିବା ସଙ୍ଗେ ସଙ୍ଗେ ନିଜର ଜୀବନା-ଦର୍ଶର ସ୍ପଷ୍ଟ ଚିତ୍ର ଅଙ୍କନ କରିଅଛନ୍ତି । ଜଗତର ଅନ୍ୟ ଲୋକ-ମାନଙ୍କ ଭଳି ସେ ଜୀବନକୁ କେବେହେଲେ ଦେଖିନାହାନ୍ତି । ତାଙ୍କ ଚକ୍ଷୁରେ ଜୀବନ ଏକ ପ୍ରହେଳିକା । ସୁଖକୁ ଜୀବନର ସମ୍ପଦ ମନେ-ନକରି ସେ ନିଜ ଜୀବନକୁ ଦୁଃଖଦତ୍ତ ଜ୍ଞାନ ଚକ୍ଷୁରେ ଦେଖି ସୁଖର ଯଥାର୍ଥ ବିଶ୍ଳେଷଣ କରିଅଛନ୍ତି । ସେଥିପାଇଁ କବିଙ୍କ ଲେଖନୀରୁ ପ୍ରକାଶ ପାଇଛି;

"ଘୁର ଭାଗ୍ୟ ମୋର ପିଣ୍ଡିତ ପାଷାଣେ,
ମୋ ଜୀବନ ଗଢା ଅନ୍ୟ ଉପାଦାନେ,
ଚିର ହାହାମୟ ଏଘୁର ଜୀବନ
ଜୀବନ ନୁହଇ ଜୀବନ୍ତ ମରଣ !
ଚିରଦିନ ଦୁଃଖ ପ୍ରହାରେ ଜର୍ଜର,
ପଟ୍ଟଶିଷ୍ୟ ମୁହିଁ ଦୁଃଖ-ଗୁରୁଙ୍କର
ଦୁଃଖଦତ୍ତ ଜ୍ଞାନଚକ୍ଷୁରେ ଜଗତ
ଦେଖିବାରେ ମୁହିଁ ଅଭ୍ୟସ୍ତ ସତତ,
ସୁଖବୋଲି ଯାକୁ ବୋଲଇ ସଂସାର,
କରୁଥାଇ ତାକୁ ଦୂରୁ ମୁଁ ଜୁହାର,
ସୁଖରୂପେ ଯାହା ଜନନେତ୍ରେ ଦିଶେ,
ହାତେ ଆସେ ହାତୁଁ ପଡ଼ିବା ପାଇଁ ସେ,
ବସ୍ତୁ ନୁହଇ ସେ ଅଟଇଟି ଧୂମ,
ଅନ୍ୟନାମ ତାର ଆକାଶ କୁସୁମ ।"

କବିବର ରାଧାନାଥଙ୍କର ଅନ୍ୟ କାବ୍ୟମାନଙ୍କରେ ପ୍ରସଙ୍ଗକ୍ରମେ ଜୀବନାଦର୍ଶର ସଙ୍କେତ ମିଳିଥିଲେହେଁ ଚିଲିକା କାବ୍ୟରେ ପ୍ରକାଶ ପାଇଥିବା ଜୀବନାଦର୍ଶର ସ୍ୱାତନ୍ତ୍ର୍ୟ ବିଶେଷ ଭାବରେ ଲକ୍ଷଣୀୟ । କବିଙ୍କ ଜୀବନର ଅନୁଭୂତି ଏଠାରେ ଯେପରି ଭାବରେ ପ୍ରକାଶ ପାଇଅଛି ତାହାକୁ ଲକ୍ଷ୍ୟ କରି ଆଲୋଚକମାନେ ରାଧାନାଥଙ୍କୁ ଜଣେ ବିଷାଦବାଦୀ କବି ଭାବରେ ଗ୍ରହଣ କରିଥାଆନ୍ତି । କବିଙ୍କର ଏହି ବିଷାଦବାଦ ପ୍ରକାଶର ଅନ୍ତରାଳରେ ସମସ୍ୟାର ଗୁରୁତ୍ୱ ପ୍ରଣିଧାନ ଯୋଗ୍ୟ ।

କବିବର ରାଧାନାଥ ତାଙ୍କର କର୍ମମୟ ଜୀବନରେ ଜଣେ ଶିକ୍ଷକ ଭାବରେ ଜୀବନ ଆରମ୍ଭ କରି ନିଜର କର୍ତ୍ତବ୍ୟନିଷ୍ଠା ତଥା ଅଧ୍ୟବସାୟ ବଳରେ ଶିକ୍ଷାବିଭାଗର ଉଚ୍ଚତମ ପରିଦର୍ଶକ କର୍ମଗୃହର ଆସନ ଗ୍ରହଣ କରିଥିଲେ । କବି ଭାବରେ ଓଡ଼ିଶାର ଅଗଣିତ ପାଠକଙ୍କଠାରୁ ସେ ମଧ୍ୟ କମ୍ ସମ୍ମାନ ପାଇନାହାନ୍ତି । ଓଡ଼ିଶାରେ ତାଙ୍କ ଭଳି ଜଣେ ଭାଗ୍ୟବାନ ବ୍ୟକ୍ତି ନିଜକୁ ଏପରି ଭାଗ୍ୟହୀନ ବୋଲି ପ୍ରକାଶ କରିବାର ଦେଖିଲେ ମନେହୁଏ, ସତେ ଯେପରି ତାଙ୍କର ଜୀବନ ତିକ୍ତ ଘାତପ୍ରଦ ଭାବ ସଂସୃଷ୍ଟ ଥିଲା । ମାତ୍ର ପ୍ରକୃତ ପକ୍ଷରେ ଦେଖିବାକୁ ଗଲେ କବିବର ରାଧାନାଥ ଚିଲିକା କାବ୍ୟରେ ନିଜ ଆତ୍ମ ପରିଚୟ ଉଦ୍ଦେଶ୍ୟମୂଳକ ଭାବରେ ଦେଇଅଛନ୍ତି ।

ପାର୍ବଣ୍ଡ କାବ୍ୟ ରଚନା କରି କବିବର ରାଧାନାଥ ଏ ଦେଶବାସୀଙ୍କଠାରୁ କମ୍ ନିନ୍ଦା ପାଇନାହାନ୍ତି । ଏହି ନିନ୍ଦା ଫଳରେ ସେ ଏତେ ପରିମାଣରେ ବିଚଳିତ ହୋଇ ନଥାନ୍ତେ ଯେବେ ତାଙ୍କ ବିରୁଦ୍ଧରେ ସେସମୟରେ କେତେକ ଲୋକଙ୍କ ଆବେଦନ ଫଳରେ ସରକାରୀ ଗୁପ୍ତତଦନ୍ତ ହୋଇନଥାନ୍ତା । ସମ୍ମାନର ଉଚ୍ଚତମ ଶିଖରରେ ନିଜର ସ୍ଥାନ ବାନ୍ଧିନେବାକୁ ତତ୍ପର ଥାଇ ସାରା ଜୀବନ କର୍ମରତ ରାଧାନାଥ ତାଙ୍କ ଜୀବନର ଶେଷଭାଗରେ ଯେତେବେଳେ ସାଧାରଣ-ପାଠକ ଏବଂ ସରକାର ଉଭୟଙ୍କର ଅନାସ୍ଥାଭାଜନ ହୋଇ ପଡ଼ିଛନ୍ତି ସେତେବେଳେ ତାଙ୍କର ଚିତ୍ତରାଜ୍ୟରେ ନୈରାଶ୍ୟ ତୀବ୍ରତର ବିକଟ

ନବୀନ ଛଡ଼ା ଆଉ କଣ ବା ଦେଖିପାରିଥାଆନ୍ତେ ? କେବଳ ଏତିକ ନୁହେଁ, ପୁତ୍ର ଶଶିଭୂଷଣଙ୍କ ସ୍ୱାସ୍ଥ୍ୟହାନ ମଧ୍ୟ ତାଙ୍କ ଚିତ୍ତକୁ ଏହି ସମୟରେ ବାରମ୍ବାର ବିକ୍ଷିପ୍ତ କରିଦେଇଥିଲା । ରାଧାନାଥଙ୍କ ଜୀବନରେ ଅଶାନ୍ତିର କାରଣ ସମ୍ବନ୍ଧରେ ନିମ୍ନୋକ୍ତ ଉଦ୍ଧୃତି ଗ୍ରହଣୀୟ ।

"ରାଧାନାଥଙ୍କ ଦୁର୍ଭାଗ୍ୟ, ତାଙ୍କ ବିରୁଦ୍ଧରେ ୧୮୮୦ସାଲରୁ ଚାଲି ଆସୁଥିବା ଆନ୍ଦୋଳନ ଏହି ସମୟରେ ଚରମସୀମାରେ ଉପନୀତ ହୋଇଥିଲା । ଏ ଆନ୍ଦୋଳନ ପ୍ରଥମେ ପାଠ୍ୟପୁସ୍ତକକୁ କେନ୍ଦ୍ରକରି ଆରମ୍ଭ ହୋଇଥିଲେହେଁ ତାହା ରାଧାନାଥ ସାହିତ୍ୟର ତୀବ୍ର ସମାଲୋଚନାରେ ପର୍ଯ୍ୟବସିତ ହୋଇଥିଲା । ୧୮୯୦ ସାଲର ପ୍ରଥମଭାଗରେ ପଣ୍ଡିତ ଗୋବିନ୍ଦରଥ ସଦର ବୋର୍ଡ୍‌କୁ ରାଧାନାଥଙ୍କ ବିରୁଦ୍ଧରେ ଏକ ଦୀର୍ଘ ଆବେଦନ ପତ୍ର ପ୍ରେରଣ କରିଥିଲେ । ଏହାର ବିଚାର ପାଇଁ ବୋର୍ଡ୍ ଡାଇରେକ୍ଟରଙ୍କ ନିକଟକୁ ସେ ପତ୍ର ପଠାଇଦେଇଥିଲେ । ଇନ୍‌ସ୍ପେକ୍ଟର୍ ବ୍ରଜମୋହନ ମଲ୍ଲିକଙ୍କ ଓଡ଼ିଶା ଆଗମନ ଓ ପଣ୍ଡିତ ରଥଙ୍କ ଅଭିଯୋଗର ଅନୁସନ୍ଧାନ ପରେ ସେ ଯେଉଁ ରିପୋର୍ଟ୍ ଲେଖିଥିଲେ ସେଥିରେ ରାଧାନାଥଙ୍କର କୌଣସି ଦୋଷ ସେ ଦେଖାଇ ନଥିଲେ । ପଣ୍ଡିତ ରଥ ଓ ତାଙ୍କ ଦଳୀୟ ଲୋକ ଏଥିରେ ସନ୍ତୁଷ୍ଟ ନହୋଇ ଆଉଥରେ ଅନୁସନ୍ଧାନ ହେବାପାଇଁ ସେଇବର୍ଷ ଏପ୍ରିଲ୍ ମାସରେ ପୁନର୍ବାର ଦାବୀ କରିଥିଲେ । ଏହାର ଫଳ କିଛି ନହେଲେହେଁ ରାଧାନାଥଙ୍କ ମନରେ ଯେ ଘୋର ପ୍ରତିକ୍ରିୟା ଜାତ ହୋଇଥିଲା ଏଥିରେ ସନ୍ଦେହ ନାହିଁ । ତାଙ୍କ ହୃଦୟର ଅଖଣ୍ଡ ଶାନ୍ତି ଓ ସୁସ୍ଥତା, ମନେହୁଏ, ବିପର୍ଯ୍ୟସ୍ତ ହୋଇଯାଇଥିବାରୁ ସେ ପାର୍ବତୀ କାବ୍ୟକୁ ଅସମ୍ପୂର୍ଣ୍ଣ ଅବସ୍ଥାରେ ରଖିବାକୁ ବାଧ୍ୟ ହୋଇଥିଲେ ।" (୧)

---

(୧) ଓଡ଼ିଆ ସାହିତ୍ୟର ଇତିହାସ, ନଟବର ସାମନ୍ତରାୟ— ପୃ: ୨୯୪ ।

କବିବର ରାଧାନାଥଙ୍କର ଚିତ୍ତର ଅଶାନ୍ତ ଅବସ୍ଥା ଫଳରେ ପାର୍ବତୀ କାବ୍ୟ ଅସମାପ୍ତ ରହିଗଲା । ତା ପରେ ରାଧାନାଥ ଚିଲିକା କାବ୍ୟ ରଚନା କଲେ । ତେଣୁ ଚିଲିକା କାବ୍ୟରେ ତାଙ୍କର ଚିତ୍ତ ଅଶାନ୍ତି ଜନିତ ମନୋଭାବ ପ୍ରକାଶ ପାଇବା ନିତାନ୍ତ ସ୍ୱାଭାବିକ । କବିବର ରାଧାନାଥଙ୍କ ଜୀବନରେ ୧୮୮୦ ସାଲଠାରୁ ଏହିସବୁ ଘଟଣା ଘଟିନଥିଲେ ମନେହୁଏ, ଚିଲିକା କାବ୍ୟରେ ତାଙ୍କର ବିଷାଦବାଦ ଏପ୍ରକାର ରୂପ ଧାରଣ କରିନଥାନ୍ତା । ନିଜ ଜୀବନର ଏହି ଅବସ୍ଥା ପ୍ରତି କବି ଯେତେବେଳେ ସଚେତନ ହୋଇ ପଡ଼ିଛନ୍ତି, ସେତେବେଳେ ସ୍ୱାଭାବିକ ଭାବରେ ନିଜକୁ ଭାଗ୍ୟହୀନ ମନେ କରି ଉପେନ୍ଦ୍ର ଭଞ୍ଜ ଓ କବିସୂର୍ଯ୍ୟ ବଳଦେବ ରଥଙ୍କ ଜୀବନ ସହିତ ନିଜ ଜୀବନକୁ ତୁଳନା କରିଛନ୍ତି । ତେଣୁ ସେ ଉପେନ୍ଦ୍ର ଓ ବଳଦେବଙ୍କୁ ଯଥାର୍ଥରେ ଭାଗ୍ୟବାନ ବୋଲି ସ୍ୱୀକାର କରିଅଛନ୍ତି ।

କବି ଉପେନ୍ଦ୍ର ଓ ବଳଦେବଙ୍କୁ ଭାଗ୍ୟବାନ ବୋଲି କହିବାରେ ତାତ୍ପର୍ଯ୍ୟ ଥିବାର ମନେହୁଏ । ଉପେନ୍ଦ୍ର ଓ ବଳଦେବ ଯେପରି ଭାବରେ ନିଜ ନିଜର ଜୀବନରେ ବାଣୀ ଆରାଧନା କରିଗଲେ ତାହା କବିଙ୍କ ଚକ୍ଷୁରେ ଅତ୍ୟନ୍ତ ଉଚ୍ଚ ଆଦର୍ଶ ଭାବରେ ଦେଖାଦେଇଅଛି । ଉପେନ୍ଦ୍ର ଏବଂ ବଳଦେବଙ୍କ ଜୀବନରେ ଘଟିଥିବା ବହୁ ଦୁର୍ଭାଗ୍ୟଜନକ ଘଟଣାସତ୍ତ୍ୱେ ସେ ଦୁହେଁ ଯେପରି ଭାବରେ ବାଣୀ ଆରାଧନା କରିଗଲେ ତାହା ଆଦର୍ଶ ସ୍ଥାନୀୟ । ସେ ଦୁହିଙ୍କର ଜୀବନାଦର୍ଶ ଏଠାରେ କବିଙ୍କ ଚିତ୍ତକୁ ମୁଗ୍ଧ କରିଅଛି ବୋଲି କୁହାଯାଇପାରେ । ମାତ୍ର କେବଳ ଏତିକରେ ରାଧାନାଥଙ୍କର ମନୋଭାବ ପ୍ରକାଶର ପରିସମାପ୍ତି ଘଟି ନାହିଁ । କବିବର ରାଧାନାଥ ଯେତେବେଳେ ଉପେନ୍ଦ୍ର ଓ ବଳଦେବଙ୍କ ଜୀବନ ସହିତ ନିଜ ଜୀବନକୁ ତୁଳନା କରୁଥିଲେ ସେତେବେଳେ ନିଜର କର୍ମମୟ ଜୀବନରେ କରିଥିବା କେତେକ ସ୍ୱାର୍ଥପୂର୍ଣ୍ଣ କାର୍ଯ୍ୟର ପରିଣତିକୁ ତଉଲି ଦେଖୁଥିଲେ । ଉପେନ୍ଦ୍ର ଏବଂ ବଳଦେବ ଯାହା କରନ୍ତୁନା କାହିଁକି ସେ ଦୁହେଁ ଥିଲେ ଯଥାର୍ଥରେ କବି । କାବ୍ୟ କବିତା ସୃଷ୍ଟି ଥିଲା ସେ ଦୁହିଙ୍କ ଜୀବନର

ପରମ ଏବଂ ଚରମ ଆଦର୍ଶ । ସେଥିପାଇଁ ଉପେନ୍ଦ୍ରଙ୍କୁ ରାଜସିଂହାସନ ତ୍ୟାଗ କରିବାକୁ ପଡ଼ିଥିଲା ଏବଂ ବଳଦେବଙ୍କୁ ଓଡ଼ିଶାରେ ଏକାଧିକ ରାଜସଭାରେ ଉପେକ୍ଷିତ ହେବାକୁ ପଡ଼ିଥିଲା । ସେ ଦୁହେଁ ଚେଷ୍ଟା କରିଥିଲେ ନିଜ ନିଜର ପ୍ରତିପତ୍ତି ଏବଂ ଯଶସ୍ଥାପନ ନିମିତ୍ତ କର୍ମପନ୍ଥା ଗ୍ରହଣ କରିପାରିଥାଆନ୍ତେ । ମାତ୍ର ସେମାନେ ତାହା କରି ନାହାନ୍ତି । କବିବର ରାଧାନାଥ ସରକାରୀ କର୍ମକୁ ନିଜର ପ୍ରତିପତ୍ତି ତଥା ଯଶ ପ୍ରତିଷ୍ଠା ନିମନ୍ତେ ଯେପରି ଭାବରେ ବ୍ୟବହାର କରିଛନ୍ତି ତାହା ତାଙ୍କୁ ଏଠାରେ ଅନୁଶୋଚନା କରିବାକୁ ବାଧ୍ୟ କରିଛି । ତାହା ନହୋଇ ଥିଲେ କବିବର ରାଧାନାଥଙ୍କ ଭଳି ଜଣେ ଉଚ୍ଚପଦସ୍ଥ ସରକାରୀ କର୍ମଚାରୀ ଓ ସମାଜରେ ସମ୍ମାନିତ ବ୍ୟକ୍ତିଙ୍କ ଲେଖନୀ ଏପ୍ରକାର ବର୍ଣ୍ଣନା ଦେଇ ପାରି ନଥାନ୍ତା । କବିବର ରାଧାନାଥ ମନେ ମନେ ଭାବିନେଇଥିଲେ ଯେ, ସେ ତାଙ୍କର କର୍ମମୟ ଜୀବନର ସୁଯୋଗରେ ଓଡ଼ିଶାର ଜନସାଧାରଣଙ୍କ ନିକଟରେ ନିଜକୁ ଏପରି ଭାବରେ ପ୍ରତିଷ୍ଠିତ କରିଦେଇଯିବେ, ଯାହାକି ସମୟ ସ୍ରୋତର ଗତିସଙ୍ଗେ କ୍ଷୟ ପ୍ରାପ୍ତ ହେବ ନାହିଁ । ମାତ୍ର ତାଙ୍କର ଏପ୍ରକାର ମନୋଭାବ ବା ଉଚ୍ଚାକାଙ୍‌କ୍ଷା କାର୍ଯ୍ୟରେ ପରିଣତ ହେବାରେ ବାଧା ଦେଖାଗଲା । ତେଣୁ ସେ ସେହିକଥା ପ୍ରକାଶ କରିବା ପାଇଁ ଲେଖିଛନ୍ତି,

"ଆଶାମଦେ ମତ୍ତ ହୋଇ କେତେଥର
ପୂରିଇଲି ମନ ମୋଦକେ ଉଦର
ନଦେଖି ମୋହର ଜୀବନ ପଞ୍ଜିକା,
ଗଢ଼ୁଥିଲି କେତେ ମନ ଅଟ୍ଟାଳିକା,
ତୋଳୁଥିଲି ସିନା ବ୍ୟୋମ-ପୁଷ୍ପମାନ
କରୁଥିଲି ମୃଗତୃଷ୍ଣା-ଜଳେ ସ୍ନାନ ।"

କବିବର ରାଧାନାଥ ଭାବିଥିଲେ ତାଙ୍କ ଜୀବନରେ ଘଟିବ ଏକ ପ୍ରକାର, ମାତ୍ର ଓଡ଼ିଶାର କେତେକ ବ୍ୟକ୍ତିଙ୍କର ପ୍ରତିବାଦ ଫଳରେ ଦେଖିବାକୁ ପାଇଲେ ଯେ ତାଙ୍କର କଳ୍ପନା ଓ ଯୋଜନା କେବେହେଲେ

କାର୍ଯ୍ୟରେ ଏଗ୍ରଣତ ହୋଇ ପାରବ ନାହିଁ । ତେଣୁ ଏକ ଉଜ୍ଜ୍ୱଳ ଭବଷ୍ୟତର ସ୍ୱପ୍ନ ଦେଖିଥିବା ଗ୍ରାଧାନାଥ ଦେଖିଲେ ବାସ୍ତବରେ "ଶ୍ରୀମ ଭବତବ୍ୟ"। ଭବଷ୍ୟତ ତାଙ୍କର ଉଜ୍ଜ୍ୱଳ ନୁହେଁ, ଭୟଙ୍କର । ଏହିପର ଅବସ୍ଥାରେ ସେ ପୁଣି ଦେଖିଲେ ଭବଷ୍ୟତର ଅନ୍ଧକାର ମଧ୍ୟରେ ନୈରାଶ୍ୟ-ପ୍ରେତର ବକଟ ନର୍ତ୍ତନ । କବବର ରାଧାନାଥଙ୍କର ଚିତ୍ତବୃତ୍ତି ଏହି ସମୟଠାରୁ ପ୍ରକୃତ ପକ୍ଷରେ ନଜ ପଥ ହୁଡ଼ ଯାଇଅଛି । ଜୀବନର ସନ୍ଧ୍ୟାତାରା ଯେତେବେଳେ ତାଙ୍କ ସମ୍ମୁଖରେ ଆଖିମିଟିକା ମାରୁଛି ସେତେବେଳ ପର୍ଯ୍ୟନ୍ତ କବବର ରାଧାନାଥ ଏହି ବଷାଦ-ଭାବକୁ ବସ୍ମୃତ ହୋଇ ପାରନାହାନ୍ତ ।

କବବର ରାଧାନାଥଙ୍କର ସୃଷ୍ଟି ପ୍ରତଭା ପ୍ରତ ଓଡ଼ିଶାର କେତେକ ବ୍ୟକ୍ତିଙ୍କର ଆକ୍ଷେପକୁ କବ ଆଦୌ ସହ୍ୟ କରପାର ନାହାନ୍ତ । ଓଡ଼ିଶାରେ ଆଧୁନକ ଶିକ୍ଷାର ପ୍ରସାର ଘଟାଇ ରାଧାନାଥଙ୍କର କବପ୍ରତଭା ତଥା ଆଧୁନକ ଓଡ଼ିଆ ସାହତ୍ୟ ପ୍ରତ ଆଧୁନକ ଶିକ୍ଷିତବ୍ୟକ୍ତିମାନଙ୍କୁ ଆକୃଷ୍ଟ କରବାର ପରକଳ୍ପନା ରାଧାନାଥ କରଥିଲେ । ଏହି ପରକଳ୍ପନାରେ ଆଂଶିକ ଭାବରେ ସେ କୃତକାର୍ଯ୍ୟ ହେଲେହେଁ ସମ୍ପୂର୍ଣ୍ଣଭାବରେ ହୋଇପାରନାହାନ୍ତ । ଯେଉଁମାନେ ତାଙ୍କ ସାହତ୍ୟକୁ ଆକ୍ଷେପ କର ମଧ୍ୟଯୁଗୀୟ ଓଡ଼ିଆ କାବ୍ୟ ସାହତ୍ୟକୁ ଯଥାର୍ଥ ସାହତ୍ୟ ପଦବାଚ୍ୟ ବୋଲ ମତ ପ୍ରକାଶ କରୁଥିଲେ ସେମାନଙ୍କୁ କେନ୍ଦ୍ରକର ରାଧାନାଥ ନଜର ମନୋଭାବ ପ୍ରକାଶ କରଅଛନ୍ତି । ସେମାନଙ୍କର ମତବାଦକୁ କବ ଅଜ୍ଞତା ଭାବରେ ଗ୍ରହଣ କରୁଛନ୍ତି । ଉତ୍କଳର ଏହି ପ୍ରକାର ବ୍ୟକ୍ତିଙ୍କର ଅଜ୍ଞତାହିଁ ବୀଣାପାଣିଙ୍କର କରୁଣା ଅଭାବର କାରଣ । ଯେଉଁମାନେ ରାଧାନାଥଙ୍କର କାବ୍ୟ ପାଠ କର ତାଙ୍କ ଉପରେ ଦୋଷାରୋପ କରଥିଲେ ସେମାନେ ଆଧୁନକ ଚନ୍ତାଠାରୁ ଦୂରରେ ଥିଲେ । ସେମାନେ ଅତୀତର ଦୃଷ୍ଟି କୋଣରେ ଦେଶର ବଭବ, ମର୍ଯ୍ୟାଦା ପ୍ରଭୃତକୁ ଦେଖୁଥିଲେ । ତେଣୁ ସେମାନଙ୍କର ରକ୍ଷଣଶୀଳ ମନୋବୃତ୍ତି ଅନୁସାରେ ଏଦେଶର ପ୍ରାକୃତକ ବଭବର ଯଥାଥ ପ୍ରକାଶ ସମ୍ଭବ ହୋଇନାହିଁ । ଏଥିପାଇଁ କବ ହୃଦୟର ରୁଦ୍ଧ ବେଦନା ଏଠାରେ

ପ୍ରକାରାନ୍ତରରେ ପ୍ରକାଶ ପାଇଅଛି । ମହାନଦୀ, ଅଂଶୁପା, ମେଘାସନ, ପ୍ରଭୃତି ପ୍ରାକୃତିକ ବିଭବ ଏ ଦେଶବାସୀଙ୍କର ରକ୍ଷଣଶୀଳ ମନୋବୃତ୍ତି ଯୋଗୁଁ ବିଶେଷ ଭାବରେ କାବ୍ୟ କବିତାରେ ପ୍ରକାଶ ପାଇନାହିଁ । ବୀଣାପାଣିଙ୍କର କୃପା ନଥିବାରୁ ଉତ୍କଳ ଖ୍ୟାତିଲାଭ କରିପାରି ନାହିଁ । ଏଠାରେ କବି ବୀଣାପାଣିଙ୍କର କୃପାର ଅଭାବ ବିଷୟ ପ୍ରକାଶ କରିବାର ଅର୍ଥ ହେଉଛି ଏଦେଶବାସୀଙ୍କର ଜ୍ଞାନର ଅଭାବ ଶିକ୍ଷାଦୀକ୍ଷାର ଅଭାବ । ସେମାନେ ଶିକ୍ଷିତ ମନନେଇ କୌଣସି ଏକ ନୂତନ ତଥ୍ୟକୁ ଗ୍ରହଣ କରିବାପାଇଁ ଅସମର୍ଥ । ଏହା ଦେଶ ପକ୍ଷରେ ଦୁର୍ଭାଗ୍ୟର କାରଣ । ତେଣୁ କବି ପ୍ରକାଶ କରିଛନ୍ତି,

"ଭାଗ୍ୟଦୋଷେ ଅଙ୍ଗ ଅଜ୍ଞାନ-ଶର୍ବରୀ
ଅନ୍ଧାରେ ଅଭାଗୀ ରହିଛି ଆବରି ।"

ଉତ୍କଳଜନନୀଙ୍କର ଏହି ଦୁର୍ଭାଗ୍ୟରେ କବି ବ୍ୟଥିତ ହୋଇଛନ୍ତି । ମାତ୍ର ଆଶାବାଦୀ କବି ପୁଣି ସ୍ୱପ୍ନ ଦେଖିଛନ୍ତି, ଏ ଦୁର୍ଭାଗ୍ୟ ଦୂର ହୋଇଯିବ । ଦେଶର ଅଜ୍ଞାନ ଅନ୍ଧକାର ଦୂର ହୋଇଯିବ । ଭାଷା ସାହିତ୍ୟର ଅରବିନ୍ଦ ପ୍ରସ୍ଫୁଟିତ ହେବ । କାରଣ, ଦେଶରେ ଯେତେ ପ୍ରତିବନ୍ଧକ ଥିଲେହେଁ ଆଧୁନିକ ମତବାଦକୁ ଗ୍ରହଣ କରିବାପାଇଁ ଓ କରଇବା ପାଇଁ ଯୋଗ୍ୟପାତ୍ର ଆତ୍ମପ୍ରକାଶ କଲେଣି । କବି ଆଧୁନିକ ମତବାଦର ଗ୍ରାହକ ଏବଂ ପ୍ରଚାରକ ଭାବରେ ବାମଣ୍ଡାରାଜା ସୁଦଳଦେବ ଏବଂ ଭଞ୍ଜଭୂମିପତି ଶ୍ରୀରାମଚନ୍ଦ୍ରଦେବଙ୍କ ନାମୋଲ୍ଲେଖ କରିଅଛନ୍ତି । ଏ ଦୁହେଁ ଆଧୁନିକ ମତବାଦ ଗ୍ରହଣ କରିବାର ସପକ୍ଷରେ ନଥିଲେ କବିବର ରାଧାନାଥଙ୍କର କାବ୍ୟ କବିତାକୁ ପ୍ରଶଂସା କରି, ପ୍ରକାଶନ ନିମିତ୍ତ ଉତ୍ସାହ ଦାନ କରି, କବିଙ୍କୁ ପୁରସ୍କୃତ କରି ନଥାନ୍ତେ । କବିବର ରାଧାନାଥ ଓଡ଼ିଶାରେ ଆଧୁନିକ ରୁଚିସମ୍ମତ ଚିନ୍ତାଧାରାର ପ୍ରକାଶ ଏବଂ ପ୍ରଚାରର ଲାଗି କିପରି ବ୍ୟଗ୍ର ଥିଲେ ତାହା ଏହି ବର୍ଣ୍ଣନାରୁ ଅନୁମିତ ହୋଇଥାଏ ।

ଚିଲିକା କାବ୍ୟ ରଚନା କରିବା ସମୟରେ କବିବର ରାଧାନାଥ କିପରି ଭାବରେ ଅନ୍ୟ କବିମାନଙ୍କଦ୍ୱାରା ପ୍ରଭାବିତ ହୋଇ-ଅଛନ୍ତି ସେ ବିଷୟରେ ଅଧ୍ୟାପକ ଗୌରୀକୁମାର ବ୍ରହ୍ମା ପ୍ରାଞ୍ଜଳ ଭାବରେ ଆଲୋଚନା କରିଅଛନ୍ତି । (୧) ସଂସ୍କୃତ; ଇଂରେଜୀ ତଥା ପ୍ରାଚୀନ ଓଡ଼ିଆ ସାହିତ୍ୟର ବହୁ କବିଙ୍କର ପ୍ରଭାବ କବିଙ୍କ ଉପରେ ପଡ଼ିଅଛି ବୋଲି କୁହାଯାଇପାରେ । ତନ୍ମଧ୍ୟରୁ କେତେକ ଏଠାରେ ଉଦ୍ଧାର କରାଯାଇପାରେ ।

ମହାକବି କାଳିଦାସ ତାଙ୍କର ରଘୁବଂଶ କାବ୍ୟରେ ସମୁଦ୍ର ବର୍ଣ୍ଣନା ପ୍ରସଙ୍ଗରେ ଲେଖିଛନ୍ତି,

"ପକ୍ଷଚ୍ଛିଦା ଗୋତ୍ରଭିଦାତ୍ତଗନ୍ଧାଃ
ଶରଣ୍ୟମେନଂ ଶତଶୋ ମହୀଧ୍ରାଃ ।
ନୃପାଇବୋ ପପ୍ଳାବିନଃ ପରେଭ୍ୟୋ
ଧର୍ମୋତ୍ତରଂ ମଧ୍ୟମମାଶ୍ରୟନ୍ତେ ।"

ମହାକବି କାଳିଦାସଙ୍କର ଏହି ବର୍ଣ୍ଣନା ପୌରାଣିକ ଆଖ୍ୟାନକୁ ଅବଲମ୍ବନ କରିଅଛି । କବିବର ରାଧାନାଥ କାଳିଦାସଙ୍କ ବର୍ଣ୍ଣନାକୁ ଅନୁସରଣ କରି ଲେଖିଛନ୍ତି,

"ପକ୍ଷଚ୍ଛେଦୀ-ଶକ୍ର-ଭୟେ କି ଶଇଳେ
ଲୁଚି ରହିଥିଲେ ତୋହର ସଲିଳେ ।"

ସମୁଦ୍ରବର୍ଣ୍ଣନା ପ୍ରସଙ୍ଗରେ ମହାକବି କାଳିଦାସ ରଘୁବଂଶରେ ଲେଖିଛନ୍ତି,

"ବୈଦେହି ! ପଶ୍ୟାମଲୟାଦ୍ ବିଭକ୍ତଂ
ମତ୍ସେତୁନା ଫେନିଳ ମମ୍ବୁରାଶିମ୍ ।

(୧) ଚିଲିକା ଓ ରାଧାନାଥ — ପୃ. ୧୭୩ — ୨୦୫ ।

ତ୍ରାସ୍ୱାଁତଥେନେବ ଶରତ୍ପ୍ରସନ୍ନ-
ମାକାଶମାବଷ୍କୃତମୁତ୍ତାରମ୍ ।"

କବିବର ରାଧାନାଥ ମହାକବି କାଳିଦାସଙ୍କର ଭାବକୁ କିପରି ଗ୍ରହଣ କରିଛନ୍ତି ତାହା ଏଠାରେ ପରୀକ୍ଷା କରାଯାଇ ପାରେ, ସେ ଲେଖିଛନ୍ତି,

"ସ୍ଥାନେ ସ୍ଥାନେ ନୀର ଭେଦନ୍ତି ସୈକତ
ଶାରଦ ଆକାଶେ ଯେହ୍ନେ ଛାୟାପଥ
ତୀରପୁଞ୍ଜେ ଯଥା ଶୋଭେ ହଂସଜାଳ
ପୁଳିନ ତେସନ ଶୁଭ୍ର ଶୁକ୍ତିଶାଳୀ ।"

ଭବଭୂତିଙ୍କର ଉତ୍ତରରାମ ଚରିତରେ କଦମ୍ବଶାଖାରେ ସୀତାଙ୍କ ପାଳିତ ମୟୂରର ନୃତ୍ୟ କରିବା ବିଷୟ ବର୍ଣ୍ଣିତ ହୋଇଅଛି ; ସେଠାରେ ଅଛି,

"ମଣିମୁକୁଟ ଇବୋଚ୍ଛିଖଃ କଦମ୍ବେ
ନଦତି ସ ଏଷ ବଧୂସଖଃ ଶିଖଣ୍ଡୀଃ ।"

କବିବର ରାଧାନାଥ ଏହି ବର୍ଣ୍ଣନାର ଅନୁସରଣରେ ଲେଖିଛନ୍ତି,

"ଯହିଁ ମେଘାଲୋକେ ପ୍ରଫୁଲ୍ଲ ଅନ୍ତର
ମୈଥିଳୀପାଳିତ କେକୀ-ବଂଶଧର;
ନାଚେ ନୃତ୍ୟକାରୀ ନୀଳକଣ୍ଠ କେକା
ଅଦ୍ୟାପି ହୁରଇ ରାମାଶ୍ରମରେଖା"।

ମହାକବି କାଳିଦାସଙ୍କର ଋତୁସଂହାର କାବ୍ୟରେ ଶରତ୍‌ଋତୁ ବର୍ଣ୍ଣନା ପ୍ରସଙ୍ଗରେ ଥିବା ଗୋଟିଏ ଶ୍ଳୋକକୁ ଅନୁସରଣ କରି ରାଧାନାଥ ଚିଲିକା କାବ୍ୟରେ ଶରତ୍‌ଋତୁ ବର୍ଣ୍ଣନା ପ୍ରସଙ୍ଗରେ ପଦରଚନା କରିଅଛନ୍ତି । କାଳିଦାସଙ୍କ ଭାଷାରେ,

"କାଶୈର୍ମହୀ ଶିଶିରଦୀଧିତିନା ରଜନ୍ୟୋ
ହଂସୈର୍ଜଳାନି ସରିତାଂ କୁମୁଦୈଃ ସରାଂସି
ସପ୍ତଚ୍ଛଦୈ କୁସୁମଭାରନତୈର୍ବନାନ୍ତାଃ
ଶୁକ୍ଳୀକୃତାନ୍ୟୁପବନାନି ଚ ମାଳତୀଭିଃ।"

କବିବର ରାଧାନାଥଙ୍କ ରଚନାରେ କେତେକ ପଦ ମଧ୍ୟ ମିଳିଯିବାର ଦେଖାଯାଏ । ସେ ଲେଖିଛନ୍ତି,

"ଶଶାଙ୍କ ଧବଳା ନିଶା ଜ୍ୟୋତିସ୍ପୃଷ୍ଟ
କାଶଦାମସମ୍ପୃକ୍ତ ଶୁଭ୍ର ସ୍ରୋତସ୍ୱତୀ
ମାଳତୀ ବଳିତ ନିବିଡ଼ ନିକୁଞ୍ଜ
କୁମୁଦ ଧବଳ ସରୋବର ପୁଞ୍ଜ ।"

ଚିଲିକା କାବ୍ୟରେ କବିବର ରାଧାନାଥଙ୍କର ବହୁଶାସ୍ତ୍ରଦର୍ଶିତାର ବହୁ ପ୍ରମାଣ ଏହିପରି ଭାବରେ ମିଳିଥାଏ । କବି ଯେଉଁସବୁ କାବ୍ୟ କବିତାରୁ ଭାବ ଆହରଣ କରିଛନ୍ତି ସେଗୁଡ଼ିକୁ ଏପରି ଭାବରେ ପ୍ରକାଶ କରିଛନ୍ତି ଯେ ସେଗୁଡ଼ିକ ସ୍ୱତନ୍ତ୍ର ପରି ମନେ ହୋଇଥାଏ । କବିଙ୍କର ପାଣ୍ଡିତ୍ୟ ଏବଂ ବହୁଶାସ୍ତ୍ରଦର୍ଶିତା ପ୍ରତିଭାର ସମନ୍ୱୟରେ ସ୍ୱତନ୍ତ୍ର ମୌଳିକ ସୃଷ୍ଟିରେ ପରିଣତ ହୋଇଅଛି ବୋଲି କୁହାଯାଇପାରେ । ଏହି ଦୃଷ୍ଟିରୁ ଅଧ୍ୟାପକ ନଟବର ସାମନ୍ତରାୟଙ୍କର ମତ ଉଲ୍ଲେଖଯୋଗ୍ୟ । ତାଙ୍କର ଭାଷାରେ, "ଶୁଷ୍କ ପାଣ୍ଡିତ୍ୟ ରସପ୍ରାପ୍ତ ରଚନାର ପରିପୂରକ ନୁହେଁ, ପାଣ୍ଡିତ୍ୟ ପ୍ରତିଭାର ଅନୁଗାମୀ ହେଲେ ସୃଷ୍ଟି ଏକ ଅମଳିନ ଜ୍ୟୋତିରେ ଉଦ୍ଭାସିତ ହୋଇଉଠେ । ଖ୍ୱେର ରସବୋଧ ଓ ଅପୂର୍ବ ଦୃଷ୍ଟିଶକ୍ତିର ଅଧିକାରୀ ହୋଇନଥିଲେ ରାଧାନାଥ ଚିଲିକା କାବ୍ୟରେ ଗତାନୁଗତିକ ଆହରଣକୁ ଏକ ମୌଳିକ ସୃଷ୍ଟିସୌନ୍ଦର୍ଯ୍ୟରେ ରସାଣିତ କରିପାରି ଥାଆନ୍ତେ ବୋଲି ମନେହୁଏ ନାହିଁ ୨) ।

(୧) ରାଧାନାଥ ଓ ଚିଲିକା କାବ୍ୟ — ପୃ: ୨୫ ।

# ମହାଯାତ୍ରା

୧୮୯୨ ସାଲରେ ଉତ୍କଳପ୍ରଭା ପତ୍ରିକାରେ ( ୧୨୯୯ ଆଷାଢ଼ ଦ୍ୱିତୀୟ ଭାଗ ତୃତୀୟ ସଂଖ୍ୟା ) ମହାଯାତ୍ରାର ପ୍ରଥମସର୍ଗ ପ୍ରକାଶ ପାଇ-ଥିଲା । ଏହାପରେ ୧୮୯୭ ସାଲରେ କନିକା ରାଜମାତା କୃଷ୍ଣପ୍ରିୟା ପାଟ-ମହାଦେଈଙ୍କ ଦ୍ୱାରା ମହାଯାତ୍ରା ପ୍ରକାଶିତ ହେଲା । ମହାଯାତ୍ରାକୁ ଓଡ଼ିଆ ସାହିତ୍ୟ ଜଗତରେ ଏକ ମହାକାବ୍ୟ ଭାବରେ ଗ୍ରହଣ କରା ଯାଇଅଛି; ମାତ୍ର ଏହା ସଂପୂର୍ଣ୍ଣ ନୁହେଁ । ଏହାର ସାତଗୋଟି ମାତ୍ର ସର୍ଗ ଲିଖିତ ଓ ପ୍ରକାଶିତ । ମହାଯାତ୍ରା ରଚନା କରିବା ସମୟରେ କବିବର ରାଧାନାଥ କପରି ଭାବରେ ଅଶାନ୍ତି ଭୋଗ କରିଥିଲେ ଓ କେଉଁ କାରଣରୁ ଏହା ଅସମାପ୍ତ ରହିଗଲା ତାହା ଆଲୋଚନାର ପରବର୍ତ୍ତୀ ଅଂଶରେ ଉପସ୍ଥାପିତ କରାଯିବ । ଏଥିପାଇଁ ଏକାଧିକ କାରଣ ଦାୟୀ ବୋଲି କୁହାଯାଇ ପାରେ । ମହାଯାତ୍ରା ପ୍ରକାଶ ପାଇବାପରେ ଏ ଦେଶର ପାଠକମାନେ ତାହାକୁ ଉଚ୍ଛ୍ୱସିତ ପ୍ରଶଂସା କରିଥିଲେ । କବିବର ରାଧାନାଥଙ୍କର ସୃଷ୍ଟି ସମ୍ଭାର ମଧ୍ୟରେ ମହାଯାତ୍ରା ଯେ ଶୀର୍ଷସ୍ଥାନ ଅଧିକାର କରିଅଛି ଏହା ଓଡ଼ିଆ ସାହିତ୍ୟର ଆଲୋଚକମାନଙ୍କର ମତ ।

ପ୍ରଥମ ସର୍ଗରେ କବି ଆଶୀନମସ୍କ୍ରିୟା ସଂପାଦନ ଛଳରେ କାବ୍ୟ-କଥାବସ୍ତୁର ଆରମ୍ଭ କରି ଅଛନ୍ତି । ଯଦୁବଂଶ ଧ୍ୱଂସପରେ ଶ୍ରୀକୃଷ୍ଣଙ୍କର ଇହଲୀଳା ସମ୍ବରଣ ବାର୍ତ୍ତା ଶ୍ରବଣ କରି ଯୁଧିଷ୍ଠିର ରାଜ୍ୟ ତ୍ୟାଗ କରିବାର ବାସନା ପ୍ରକାଶ କଲେ । ଯୁଧିଷ୍ଠିରଙ୍କର ବନଗମନ କଥା ଶୁଣି ଭୀମ, ଅର୍ଜ୍ଜୁନ, ନକୁଳ, ସହଦେବ ଓ ଦ୍ରୌପଦୀ ତାଙ୍କ ସହିତ ଗମନ କରିବା ପାଇଁ ପ୍ରାର୍ଥନା କଲେ । ସେମାନଙ୍କୁ ସଙ୍ଗରେ ନେବାପାଇଁ ଯୁଧିଷ୍ଠିର ସମ୍ମତି ପ୍ରଦାନ କଲେ । ବିଧିଅନୁସାରେ ପରୀକ୍ଷିତଙ୍କୁ ସିଂହାସନରେ ବସାଇ ପାଣ୍ଡବ ଓ ଦ୍ରୌପଦୀ ରାଜ୍ୟ ତ୍ୟାଗ କଲେ ।

ଦ୍ୱିତୀୟ ସର୍ଗରେ ପାଣ୍ଡବମାନଙ୍କର ତୀର୍ଥାଟନର ବର୍ଣ୍ଣନା ପ୍ରସଙ୍ଗରେ କବି ଭାରତର ବିଭିନ୍ନ ତୀର୍ଥର ପ୍ରାଧାନ୍ୟ ସୂଚିତ କରି-ଅଛନ୍ତି । ପାଣ୍ଡବମାନେ ହସ୍ତିନାରୁ ବାହାରି ମଥୁରା, ପ୍ରୟାଗ, କାଶୀ, ଅଯୋଧ୍ୟା, ନୈମିଷାରଣ୍ୟ, ଗୟା, ରାଜଗିରି, କାଳଘାଟ, ଆସାମ ପ୍ରଭୃତି ତୀର୍ଥମାନଙ୍କରେ ଭ୍ରମଣ କରି ବ୍ରହ୍ମପୁତ୍ର ନିକଟରେ ଉପସ୍ଥିତ ହେଲେ । ତାପରେ ସେମାନେ କପିଳାଶ୍ରମ ଓ ତାମ୍ରଲିପ୍ତି ଅତିକ୍ରମ କରି ନୀଳାଚଳ କ୍ଷେତ୍ରରେ ପ୍ରବେଶ କଲେ । ଏହିଠାରେ ମହୋଦଧିର ଜଳଭେଦ କରି ଅଗ୍ନିଦେବଙ୍କର ଆବିର୍ଭାବ ସେମାନେ ଦେଖିଲେ । ଅଗ୍ନିଦେବ ଅର୍ଜୁନଙ୍କୁ ନିଜର ପରିଚୟ ଦେଇ ଗାଣ୍ଡିବଧନୁ ଓ ଅକ୍ଷୟ ତୂଣୀରଯୁଗ୍ମ ଜଳରେ ନିକ୍ଷେପ କରିବାକୁ ଅନୁରୋଧ କଲେ । ତାପରେ ଅଗ୍ନିଦେବ ପାଣ୍ଡବମାନଙ୍କ ସମକ୍ଷରେ ଚକ୍ରତୀର୍ଥର ଉତ୍ପତ୍ତି ଓ ମାହାତ୍ମ୍ୟ ବର୍ଣ୍ଣନା କଲେ । ଏଥିରେ ଉତ୍କଳର ମାହାତ୍ମ୍ୟ ବର୍ଣ୍ଣନା କରିବାକୁ ଯାଇ କବି ନିଜର ଦେଶପ୍ରାଣତାର ପରିଚୟ ଦେଇଅଛନ୍ତି । ଚକ୍ରତୀର୍ଥରେ ପାଣ୍ଡବମାନେ ଅଗ୍ନିଦେବଙ୍କ ସହିତ ଏକଦିନ ଓ ରାତି ଯାପନ କରି ପରଦିନ ପ୍ରତ୍ୟୁଷରେ ମହେନ୍ଦ୍ରକାନ୍ତାର ପଥରେ ଅଗ୍ରସର ହେଲେ ।

ତୃତୀୟ ସର୍ଗରେ, ପାଣ୍ଡବମାନେ ଅଗ୍ନିଦେବଙ୍କ ସହିତ ଉତ୍କଳର ପାର୍ବତ୍ୟ ଅଞ୍ଚଳରେ ପ୍ରବେଶ କଲେ । ଅଗ୍ନିଦେବ ସେମାନଙ୍କୁ ଉତ୍କଳର ଅରଣ୍ୟ ପ୍ରକୃତିର ବୈଚିତ୍ର୍ୟ ପ୍ରଦର୍ଶନ କରି ବିଭିନ୍ନ ସ୍ଥାନଗୁଡ଼ିକର ମାହାତ୍ମ୍ୟ ବୁଝାଇଦେଲେ । ଏହି ଅବସରରେ କବିଙ୍କ ଲେଖନୀରେ ଉତ୍କଳର ଭୀମକାନ୍ତି ପ୍ରକୃତି ସ୍ପଷ୍ଟ ରୂପରେ ପ୍ରକାଶ ପାଇଅଛି । ମେଘାସନ, ଗୋନାସା, ମାଲ୍ୟଗିରି, ମୈନାକ, କପିଳାସ ଓ ପଞ୍ଚଧାର ପ୍ରଭୃତି ଉତ୍କଳର ବିଶିଷ୍ଟ ଶିଖରୀମାନଙ୍କର ବର୍ଣ୍ଣନା ଦିଆଯାଇଅଛି । ପାଣ୍ଡବମାନେ ସାତକୋଶିଆରୁ ବିଦାୟ ନେଇ ପଶ୍ଚିମ ଦିଗକୁ ଅଗ୍ରସର ହେଲେ । ପଥ ମଧ୍ୟରେ ଭୀଷଣ ଅରଣ୍ୟ ପ୍ରକୃତିର ଦୃଶ୍ୟ ଦେଖି ଦେଖି ପାଣ୍ଡବମାନେ ମଧ୍ୟଦେଶର ମାଳଭୂମିରେ ପହଞ୍ଚିଲେ । ସେଠାରେ ଥିବା ବିଭିନ୍ନ ଋଷିଆଶ୍ରମ ସେମାନେ ପରିଦର୍ଶନ କଲେ । ତାପରେ ସେମାନେ ଇନ୍ଦ୍ରକଦ୍ରି (ଆଧୁନିକ ସାତପୁରା) ଅତିକ୍ରମ କରି ତାପ୍ତୀନଦୀ ତୀରରେ ପହଞ୍ଚିଲେ । ଅଗ୍ନିଦେବ ସନ୍ଧ୍ୟାଦ୍ରି

( ଆଧୁନିକ ପଶ୍ଚିମଘାଟ ପର୍ବତମାଳା ) ବିଷୟରେ ବର୍ଣ୍ଣନା କରିବା ପ୍ରସଙ୍ଗରେ କଳି ଆଗମନ ବିଷୟ ପ୍ରକାଶ କରି ଏହି ଦୃଶ୍ୟ ଦେଖାଇବା ପାଇଁ ପାଣ୍ଡବମାନଙ୍କୁ ସହ୍ୟାଦ୍ରି ଶିଖରକୁ ନେଇଗଲେ ।

ଚତୁର୍ଥ ସର୍ଗରେ ବର୍ଣ୍ଣିତ ହୋଇଅଛି ଯେ, ଯୁଧିଷ୍ଠିର ସହ୍ୟାଦ୍ରି ଶିଖରରେ ବସି ଅପୂର୍ବ ଦେବସଭା ସନ୍ଦର୍ଶନ କଲେ । ଏହି ଦେବସଭାରେ, ଧର୍ମ, ସାହସ, ସତ୍ୟ, ନ୍ୟାୟ, ତପଃ, କ୍ଷମା, ଦୟା, ଶୌଚ, ତିତିକ୍ଷା, ଆର୍ଜବ ପ୍ରଭୃତି ବିଗ୍ରହ ରୂପରେ ଉପସ୍ଥିତ । ପୁଣି ସୌନ୍ଦର୍ଯ୍ୟ ଓ ଐଶ୍ୱର୍ଯ୍ୟର ଅଧିଦେବୀ ଲକ୍ଷ୍ମୀ ଓ ବିଦ୍ୟାଦାତ୍ରୀ ସରସ୍ୱତୀ ମଧ୍ୟ ଏହି ସଭାରେ ଆସନ ଅଳଙ୍କୃତ କରିଅଛନ୍ତି । ଦେବଦେବୀଙ୍କ ବିଷୟ ବର୍ଣ୍ଣନା କବିଙ୍କ କଳ୍ପନାର ପରାକାଷ୍ଠା ପ୍ରଦର୍ଶନ କରିଅଛି । କଳିର ଆଗମନରେ ଦେବଦେବୀମାନେ କେଉଁ ସ୍ଥାନରେ ଆଶ୍ରୟ ଗ୍ରହଣ କରିବେ ବୋଲି ମନ୍ତ୍ରଣା କରିବା ସମୟରେ କଳିର ଆଗମନ ପ୍ରଦର୍ଶିତ । କଳି ତା'ର ଦଳବଳ ସହ ପ୍ରବେଶ କରିଅଛି । କଳିର ପଛରେ କାମ; କ୍ରୋଧ, ଲୋଭ, ମୋହ, ମଦ, ଈର୍ଷା, ମିଥ୍ୟା, ଶାଠ୍ୟ, କଳହ ଓ ଆଳସ୍ୟ, ଯଥାକ୍ରମେ ନିଜ ନିଜର ବିଶେଷତ୍ୱ ପ୍ରଦର୍ଶନ କରି ଭାରତର ଧର୍ମ ଓ ସଦ୍‌ଗୁଣଗୁଡ଼ିକୁ ଆକ୍ରମଣ କଲେ । କବିବର ରାଧାନାଥ ନିଜର ଅପୂର୍ବ ବର୍ଣ୍ଣନା କୌଶଳ ଯୋଗୁଁ ଏହି ସର୍ଗଟିକୁ ଜୀବନ୍ତ ରୂପ ପ୍ରଦାନ କରିଛନ୍ତି । ଏଥିପାଇଁ ତାଙ୍କ ଉପରେ ଇଂରେଜୀ ଓ ସଂସ୍କୃତ ସାହିତ୍ୟର ପ୍ରଭାବ ପଡ଼ିଅଛି ସତ୍ୟ, ମାତ୍ର ସେ ଇଂରେଜୀ ବା ସଂସ୍କୃତ ସାହିତ୍ୟରେ ଥିବା ବର୍ଣ୍ଣନାକୁ ଅନ୍ଧ ଭାବରେ ଅନୁସରଣ କରିନାହାନ୍ତି । ସେ ନିଜର ପାଣ୍ଡିତ୍ୟ ବଳରେ ଯଥୋଚିତ ବର୍ଣ୍ଣନା ଦେଇ ନିଜର ଔଚିତ୍ୟ-ଜ୍ଞାନର ପରିଚୟ ପ୍ରଦାନ କରିଅଛନ୍ତି ।

ପଞ୍ଚମ ସର୍ଗର ଆରମ୍ଭରେ କବି ମୟୂରଭଞ୍ଜାଧୀଶ ରାମଚନ୍ଦ୍ର ଭଞ୍ଜଙ୍କର ଗୁଣାବଳୀ ବର୍ଣ୍ଣନା କରିଅଛନ୍ତି । ମହାକାବ୍ୟର ପ୍ରସଙ୍ଗ ମଧ୍ୟରେ ଏ ପ୍ରକାର ରାଜପ୍ରଶସ୍ତି ଗାନ ଦୋଷାବହ ବୋଲି ଆଳଙ୍କାରିକମାନେ ମତ ପ୍ରଦାନ କରିଅଛନ୍ତି । ଚତୁର୍ଥ ସର୍ଗରେ କବି ସୂଚନା ଦେଇଅଛନ୍ତି ଯେ, ବ୍ରାହ୍ମଣ ଓ କ୍ଷତ୍ରିୟଙ୍କର ପତନ ହେଲେ ଭାରତର ପତନ ସୁନିଶ୍ଚିତ । ଏହି ସର୍ଗରେ କବି ବ୍ରାହ୍ମଣ ଓ କ୍ଷତ୍ରିୟଙ୍କର ପତନ ବିଷୟ ବର୍ଣ୍ଣନା

କରିଅଛନ୍ତି । କାବ୍ୟରେ ପୌରାଣିକ ବିଷୟବସ୍ତୁର ବିନ୍ୟାସ ପରିବର୍ତ୍ତେ ଏଠାରେ ଐତିହାସିକ ବିଷୟ ବସ୍ତୁର ସୂଚନା ଦିଆଯାଇଅଛି । ଭାରତର ପତନ ପରେ ଭାରତର ଦୁରବସ୍ଥାକୁ ସୁଧାରିବା ନିମନ୍ତେ ବୁଦ୍ଧଦେବଙ୍କର ଜନ୍ମ ଓ କାର୍ଯ୍ୟ ସମ୍ବନ୍ଧରେ ଅଗ୍ନିଦେବ ସୂଚନା ପ୍ରଦାନ କରିଅଛନ୍ତି । ବୌଦ୍ଧଧର୍ମ ଭାରତରେ ପ୍ରଚରିତ ହୋଇ ଅଶୋକଙ୍କ ଦ୍ୱାରା ପ୍ରତିଷ୍ଠିତ ହେବ । ମାତ୍ର ଅଳ୍ପକାଳ ପରେ ବୌଦ୍ଧଧର୍ମର ପ୍ରଭାବ ଦୂରୀଭୂତ ହେବ । ହିନ୍ଦୁମାନେ ପରସ୍ପର ସହିତ କଳହରେ ବ୍ୟାପୃତ ହୋଇ ସେମାନଙ୍କର ସ୍ୱାଧୀନତା ହରାଇ ବସିବେ । ଏହା ଫଳରେ ଯବନମାନେ ଭାରତକୁ ଅଧିକାର କରିବେ ।

ଷଷ୍ଠ ସର୍ଗର ଆରମ୍ଭରେ ବାମଣ୍ଡାଧୀଶ ସୁଡ଼ଳଦେବଙ୍କର ପ୍ରଶସ୍ତି ଗାନ କରାଯାଇଅଛି । ତାପରେ ଅନଳଦେବଙ୍କ ଇଚ୍ଛା ଅନୁସାରେ ସ୍ୱାହା-ଦେବୀ ସନ୍ଧ୍ୟାଗିରି ନିକଟରେ ଆବିର୍ଭୂତା ହୋଇ ଦିବ୍ୟ ଆଜ୍ୟପାତ୍ର ପ୍ରଦାନ କଲେ । ଅଗ୍ନିଦେବ ସେଥିରେ ଦିବ୍ୟାଞ୍ଜନ ପ୍ରସ୍ତୁତ କରି ଯୁଧିଷ୍ଠିରଙ୍କ ଚକ୍ଷୁରେ ଲଗାଇଦେଲେ । ଏହି ଅଞ୍ଜନ ବଳରେ ଯୁଧିଷ୍ଠିର ଭବିଷ୍ୟତରେ ଭାରତରେ କଣ ଘଟିବ, ତାହା ଦେଖିବାକୁ ପାଇଲେ । ଯୁଧିଷ୍ଠିର ଦିଲ୍ଲୀ ନଗରୀର ଦୃଶ୍ୟ ସହିତ ଦିଗ୍ୱିଜୟୀ ଜୟଚନ୍ଦ୍ର ଓ ପୃଥ୍ୱୀରାଜଙ୍କ ବିବାଦ ବିଷୟରେ ବର୍ଣ୍ଣନା କରାଯାଇଅଛି । ଏହିଠାରୁ ଆରମ୍ଭ କରି ସପ୍ତମ ସର୍ଗର ଶେଷ ପର୍ଯ୍ୟନ୍ତ କବି ଐତିହାସିକ ଘଟଣା ଉପରେ ନିର୍ଭର କରି-ଅଛନ୍ତି । ଦିଗ୍ୱିଜୟୀ ତରୋଗ୍ୱା ଯୁଦ୍ଧ ପାଇଁ ସୈନ୍ୟ ସମାଗମର ବର୍ଣ୍ଣନା କରି କବି ଷଷ୍ଠ ସର୍ଗର ବର୍ଣ୍ଣନା ସମାପ୍ତ କରିଅଛନ୍ତି ।

ସପ୍ତମ ସର୍ଗରେ କବି ମନ୍ତ୍ରଣା, ପ୍ରୟାଣ ଓ ସମରର କ୍ରମିକ ବର୍ଣ୍ଣନା କରିଅଛନ୍ତି । ବିଭିନ୍ନ ପ୍ରଦେଶରୁ ଆସିଥିବା ସୈନ୍ୟମାନଙ୍କର ସମାଗମ ସମ୍ବାଦ ପାଇ ପୃଥ୍ୱୀରାଜ ଯୁଦ୍ଧକୁ ବାହାରିଲେ । ପୃଥ୍ୱୀରାଜଙ୍କ ସହିତ ଅମର୍ଷୀ ଓ ତାଙ୍କ ପଛରେ ସଂଯୁକ୍ତା ଅଶ୍ୱାରୋହଣ କରି ଯୁଦ୍ଧକ୍ଷେତ୍ରକୁ ଯିବା ବର୍ଣ୍ଣନାରେ କବିଙ୍କର ପାରଦର୍ଶିତା ପରିଲକ୍ଷିତ ହୋଇଅଛି । ପୃଥ୍ୱୀରାଜ ଦୂରାଗତ ସୈନ୍ୟମାନଙ୍କୁ ସାଦର ସମ୍ଭାଷଣ ଜଣାଇ ଯୁଦ୍ଧ ନିମନ୍ତେ ମନ୍ତ୍ରଣା କରିବାରୁ

ସେନାପତିମାନେ ଯୁଦ୍ଧ ନକରି ସନ୍ଧିକରିବା ପ୍ରସ୍ତାବ ଆଗତ କଲେ । ଏଥିରେ ପୃଥ୍ୱୀରାଜ ଅତ୍ୟନ୍ତ ବିଷଣ୍ଣ ହେଲେ । ତେଣୁ ଅମର୍ଷୀ ସୈନ୍ୟମାନଙ୍କୁ ଉଦ୍‌ବୋଧନ ବାଣୀ ଶୁଣାଇଲେ । ଫଳରେ ଅମର୍ଷୀଙ୍କୁ ପ୍ରଧାନ ସେନାପତି ରୂପେ ବରଣ କରି ସୈନ୍ୟମାନେ ଯୁଦ୍ଧ ପାଇଁ ପ୍ରସ୍ତୁତ ହେଲେ । ଅମର୍ଷୀଙ୍କ ମୁଖରେ କବି ଯେଉଁ ଉଦ୍‌ବୋଧନ ବାଣୀ ପ୍ରକାଶ କରିଅଛନ୍ତି, ତାହା କବିବର ରାଧାନାଥଙ୍କର ଗଭୀର ଦେଶପ୍ରେମର ପରିଚୟ ପ୍ରଦାନ କରିଅଛି । ସୈନ୍ୟମାନେ ଅମର୍ଷୀଙ୍କୁ ପ୍ରଧାନ ସେନାପତି ରୂପେ ବରଣ କରିବାରୁ ପୃଥ୍ୱୀରାଜ ତାଙ୍କୁ ଅଭିଷିକ୍ତ କଲେ ଏବଂ ଦିଲ୍ଲୀର ପାଟରାଣୀ ସଂଯୁକ୍ତା ତାଙ୍କର ନୀରାଜନା ବିଧି ସମାପ୍ତ କଲେ । ତାପରେ ଯୋଦ୍ଧାମାନେ ଯୁଦ୍ଧକ୍ଷେତ୍ରକୁ ଅଗ୍ରସର ହେଲେ । ଯୁଦ୍ଧକ୍ଷେତ୍ର ନାନା ପ୍ରକାର ବାଦ୍ୟରୋଳରେ ପ୍ରକମ୍ପିତ ହୋଇ ଉଠିଲା ଏବଂ ଆର୍ଯ୍ୟ ଓ ଯବନ ପକ୍ଷୀୟ ସୈନ୍ୟମାନେ ପରସ୍ପର ପ୍ରତି ଆକ୍ରମଣ କଲେ । ଭୀଷଣ ଯୁଦ୍ଧରେ ଭାରତୀୟମାନଙ୍କର ଗୌରବ ରବି ଅସ୍ତମିତ ହେଲା । ଏହି ଯୁଦ୍ଧର ପରିସମାପ୍ତି ସହିତ ଯୁଧିଷ୍ଠିରଙ୍କ ଚକ୍ଷୁ ସମକ୍ଷର ସମସ୍ତ ଦୃଶ୍ୟ ହଠାତ୍ ଅନ୍ତର୍ହିତ ହୋଇଗଲା ।

ଏହିଠାରେ ହିଁ ମହାଯାତ୍ରା ମହାକାବ୍ୟର ବର୍ଣ୍ଣନା ଅସମ୍ପୂର୍ଣ୍ଣ ଭାବରେ ରହି ଯାଇଅଛି । ଏହା ଯେବେ ସଂପୂର୍ଣ୍ଣ ହୋଇଥାଆନ୍ତା ତେବେ ଓଡ଼ିଆ ସାହିତ୍ୟର ଏକମାତ୍ର ମହାକାବ୍ୟ ଲଗି ଓଡ଼ିଆ ସାହିତ୍ୟ ଗୌରବାନ୍ୱିତ ହୋଇଥାଆନ୍ତା । ତଥାପି ଓଡ଼ିଆ ସାହିତ୍ୟର ମହାକାବ୍ୟ ଭାବରେ ଏହାର ଗୌରବ କ୍ଷୁଣ୍ଣ ହୋଇନାହିଁ ବୋଲି କୁହାଯାଇପାରେ ।

ପୂର୍ଣ୍ଣିମା ରାତିରେ ଆକାଶରେ ପୂର୍ଣ୍ଣଚନ୍ଦ୍ର ଦେଖାଯାଏ । ପୂର୍ଣ୍ଣିମା ପୂର୍ବରୁ ରାତିରେ ଆକାଶରେ ଯେତେବେଳେ ଚନ୍ଦ୍ର ଦେଖାଯାଏ ସେତେବେଳେ ତାକୁ ଚନ୍ଦ୍ର କୁହାଯାଏ, ପୂର୍ଣ୍ଣିମା ରାତିର ଚନ୍ଦ୍ରକୁ ମଧ୍ୟ ଚନ୍ଦ୍ର କୁହାଯାଏ । ପୂର୍ଣ୍ଣିମା ପୂର୍ବ ରାତିର ଚନ୍ଦ୍ର ପୂର୍ଣ୍ଣଚନ୍ଦ୍ର ନହେଲେ ମଧ୍ୟ ତାକୁ ଯେପରି ଚନ୍ଦ୍ର ବ୍ୟତୀତ ଅନ୍ୟ ନାମରେ ନାମିତ କରାଯାଇ ପାରେନାହିଁ, ମହାଯାତ୍ରା ମହାକାବ୍ୟ ସେହିପରି ଅସଂପୂର୍ଣ୍ଣ ହେଲେହେଁ ତାକୁ ମହାକାବ୍ୟ ବ୍ୟତୀତ ଅନ୍ୟ ଭାବରେ ଗ୍ରହଣ କରାଯାଇନାହିଁ ।

ଏହି ଦୃଷ୍ଟିରୁ, ମହାଯାତ୍ରାର ଗୌରବ ଯେ କ୍ଷୁଣ୍ଣ ହୋଇନାହିଁ; ଏକଥା ଆଲୋଚକମାନଙ୍କ ମତ ଅନୁସାରେ ଗ୍ରହଣ କରାଯାଇଅଛି ।

କାବ୍ୟର ଆରମ୍ଭରେ କବି ଯେପରି ଭାବରେ ସାରଳାଙ୍କର ବନ୍ଦନା କରିଅଛନ୍ତି ତାହା ପାଠକରି କେତେକ ଆଲୋଚକ ମତ ପ୍ରଦାନ କରନ୍ତି ଯେ କବିବର ରାଧାନାଥ ଏଠାରେ ମଧ୍ୟଯୁଗୀୟ କାବ୍ୟାଦର୍ଶକୁ ଗ୍ରହଣ କରିଅଛନ୍ତି । ମାତ୍ର ପ୍ରକୃତ ପକ୍ଷରେ କବି ଏଠାରେ ମଧ୍ୟଯୁଗୀୟ କାବ୍ୟାଦର୍ଶର ଅନୁସରଣ କରି ନାହାନ୍ତି ।

"ପଙ୍କଜବାସିନି ଦେବି ଉତ୍କଳ ଭାରତି
ସାରଳେ ! କି କଲେ, କହ କୁନ୍ଦଚୂଡ଼ାମଣି ।"

ମଧ୍ୟଯୁଗୀୟ କବିମାନଙ୍କର ପରଂପରା ଅନୁସାରେ ସେମାନେ କାବ୍ୟର ଆରମ୍ଭରେ ସେମାନଙ୍କର ଇଷ୍ଟଦେବ ବା ସରସ୍ୱତୀଙ୍କର ବନ୍ଦନା କରିଥାଆନ୍ତି । ମହାଯାତ୍ରାର ଆରମ୍ଭରେ କବି ଯେପରି ଭାବରେ ସାରଳାଙ୍କୁ ସମ୍ବୋଧନ କରିଅଛନ୍ତି ତାହା ଯଥାର୍ଥରେ ଇଷ୍ଟବନ୍ଦନା ପର୍ଯ୍ୟାୟଭୁକ୍ତ ହୋଇନପାରେ । କବି ଏଠାରେ ସାରଳାଙ୍କୁ ସମ୍ବୋଧନ କରି ମହାଭାରତର ସ୍ୱର୍ଗାରୋହଣ ପର୍ବରେ ଘଟିଥିବା ବିଷୟ ପ୍ରଶ୍ନ କରିଅଛନ୍ତି । ସାରଳାଙ୍କ ମୁଖରୁ ଏହି ବିଷୟ ଶୁଣିବା ପାଇଁ କବି ଇଚ୍ଛା କରିଅଛନ୍ତି । ସାରଳାଙ୍କୁ କବି ଉତ୍କଳର ଅଧିଷ୍ଠାତ୍ରୀ ଦେବୀ ଭାବରେ ବର୍ଣ୍ଣନା କରିଅଛନ୍ତି । ତେଣୁ ସେ ତାଙ୍କୁ "ପଙ୍କଜବାସିନୀ" ଓ "ଉତ୍କଳ ଭାରତୀ" ଭାବରେ ସମ୍ବୋଧନ କରିବା ନିତାନ୍ତ ସ୍ୱାଭାବିକ । ସାରଳାଙ୍କୁ କବି ଉତ୍କଳ ଭାରତୀ ଭାବରେ ସମ୍ବୋଧନ କରି ସତେ ଯେପରି ସାରଳା ଦାସଙ୍କର ଧ୍ୱନିର ପ୍ରତିଧ୍ୱନି ସୃଷ୍ଟି କରିଛନ୍ତି । କବି ସାରଳା ଦାସ ଝଙ୍କଡ଼ର ଅଧିଷ୍ଠାତ୍ରୀ ଦେବୀ ସାରଳାଙ୍କର ଶରଣାପନ୍ନ ହୋଇ ଅପୂର୍ବ କବିତ୍ୱ ଶକ୍ତି ଲାଭ କରିଥିବା କଥା ସୁବିଦିତ । ସାରଳା ଦାସ ଲେଖିଛନ୍ତି ଯେ ସାରଳା ଦେବୀ ତାଙ୍କୁ ଯାହା କହିଦିଅନ୍ତି ସେ ତାହାକୁ ଲେଖିରଖନ୍ତି । ଏହିପରି ଭାବରେ ସେ ମହାଭାରତ ରଚନା

କରିଥିଲେ । ସାରଳାଙ୍କ ମୁଖରୁ ମହାଭାରତର କଥାବସ୍ତୁ ବାହାରି-ଥିବା ପ୍ରସିଦ୍ଧିକୁ କବିବର ରାଧାନାଥ ଏଠାରେ ଗ୍ରହଣ କରିଅଛନ୍ତି । ତେଣୁ ମହାଭାରତର କଥାବସ୍ତୁ ସମାପ୍ତି ଲାଭ କରିବା ପରେ ଭାରତ-ବର୍ଷରେ କଣ କଣ ଘଟିଗଲା ସେକଥା ସାରଳାଙ୍କ ମୁଖରୁ ଶୁଣିବାପାଇଁ ସେ ସାରଳାଙ୍କୁ ସମ୍ବୋଧନ କରିଅଛନ୍ତି । ପାଠକମାନେ ଯେତେବେଳେ ଦେଖନ୍ତି ଯେ କାବ୍ୟର ଆରମ୍ଭରେ ସାରଳାଙ୍କ ବିଷୟ ଉତ୍ଥାପିତ ହୋଇଅଛି ଏବଂ ମହାଭାରତର ମହାପ୍ରସ୍ଥାନିକ ପର୍ବ ଓ ସ୍ୱର୍ଗାରୋହଣ ପର୍ବର କଥାବସ୍ତୁର ଉଲ୍ଲେଖ ରହିଛି ସେତେବେଳେ ପାଠକମାନେ ମହାଯାତ୍ରାକୁ ମହାଭାରତର କାବ୍ୟରୂପ ମନେ କରିବା ସ୍ୱାଭାବିକ । କବିବର ରାଧାନାଥ ଯାହା କିଛି ବର୍ଣ୍ଣନା କରିଥିଲେହେଁ ମହାଯାତ୍ରାର କଥାବସ୍ତୁକୁ ଆରମ୍ଭରୁ ଏ ଦେଶର ପୌରାଣିକ ଭିତ୍ତିରେ ପ୍ରତିଷ୍ଠିତ କରିବାପରି ମନୋବୃତ୍ତି ପୋଷଣ କରିଅଛନ୍ତି । ଏଥିପାଇଁ ସେ ବହୁ ଆଲୋଚକଙ୍କଦ୍ୱାରା ନିତାନ୍ତ ନିର୍ମମ ଭାବରେ ସମାଲୋଚିତ ହୋଇଅଛନ୍ତି । କବିବର ରାଧାନାଥ କାବ୍ୟର ଆରମ୍ଭରେ ସାରଳାଙ୍କୁ ସମ୍ବୋଧନ କରିଛନ୍ତି ବୋଲି ଏବଂ ମହାଯାତ୍ରାର କଥାବସ୍ତୁର ଆରମ୍ଭ ମହାଭାରତର ଶେଷାଂଶରୁ କରିଅଛନ୍ତି ବୋଲି ତାହା ଯେ ଭାରତୀୟ ପୁରାଣ ସାହିତ୍ୟର ଅନୁରୂପ ଏକଥା ଭାବିବା ଯେ କୌଣସି ପାଠକ ବା ଆଲୋଚକଙ୍କ ପକ୍ଷରେ ସମୀଚୀନ ନୁହେଁ । କବିବର ରାଧାନାଥଙ୍କର ସାହିତ୍ୟ ସୃଷ୍ଟିରେ କଥାବସ୍ତୁର ଆହରଣ ଶୈଳୀ ସବୁବେଳେ ପାଠକମାନଙ୍କ ପକ୍ଷରେ ଭ୍ରାନ୍ତିପୂର୍ଣ୍ଣ ହୋଇଅଛି । ମହାଯାତ୍ରାର କଥାବସ୍ତୁ ସେଥିରୁ ବା ବାଦ୍ ଦେଉନ୍ତା କପରି ? କବି କାବ୍ୟର ଆରମ୍ଭରେ ସାରଳାଙ୍କୁ ସମ୍ବୋଧନ କରି ଯେପରି ଭାବରେ କଥାବସ୍ତୁ ବିଷୟରେ ତାଙ୍କୁ ପ୍ରଶ୍ନ କରିଛନ୍ତି ତାହା ପାଶ୍ଚାତ୍ୟ କାବ୍ୟ ସାହିତ୍ୟ ରୀତିର ଅନୁରୂପ ହୋଇଅଛି ।

ଭର୍ଜିଲଙ୍କର ଏନିଡ୍ କାବ୍ୟର ଆରମ୍ଭରେ ମିଉଜ୍‌ଙ୍କୁ ଅତୀତର ଇତିହାସ ଉନ୍ମୋଚନ କରିବାପାଇଁ କୁହାଯାଇଅଛି । ମିଉଜ୍ ହେଉଛନ୍ତି ଗ୍ରୀସୀୟ ସଂସ୍କୃତିର ବାକ୍‌ଦେବୀ । କାବ୍ୟରେ ବର୍ଣ୍ଣିତ ଅଛି,

"O Muse! the causes and the crimes relate;
What geddess was provoked, and where her hate,
For what offense the Queen of Heav'n began
To persecute so brave, so just a man;
Involv'd his anxious life in endless cares,
Expos'd to wants, and hurried into wars!"

ମହାକବି ଦାନ୍ତେଙ୍କର ଡିଭାଇନ୍ କମେଡ଼ିର ଦ୍ୱିତୀୟ ସର୍ଗର ଆରମ୍ଭରେ ଠିକ୍ ଏହିପରି ମିଉଜଙ୍କ ବିଷୟ ବର୍ଣ୍ଣିତ ହୋଇଅଛି । ସେଠାରେ ବର୍ଣ୍ଣିତ ଅଛି,

"O Mases! O high genius! now vouchsafe
Your aid! O mind! that all I saw hast kept
Safe in a written record, here thy worth
And eminent endowments come to proof."

ମିଲ୍‌ଟନ୍‌ଙ୍କର ପାରାଡ଼ାଇଜ୍ ଲଷ୍ଟ୍ କାବ୍ୟରେ ଏହିପରି ବର୍ଣ୍ଣନା ଅଛି,

Snig, Heavenly Muse, that, on the secret top
Of Oreb, or of Sinai, didst inspire
That Shepherd who first taught the chosen seed
In the beginning how the heavens and earth
Rose out of chaos."

ପାଶ୍ଚାତ୍ୟ କବିମାନେ ମିଉଜଙ୍କୁ ଗାନ କରିବା ପାଇଁ ଅନୁରୋଧ-କରିବା ସ୍ଥଳେ କବିବର ରାଧାନାଥ ସାରଳାଙ୍କୁ ବିଷୟବସ୍ତୁ କହିବା ପାଇଁ ଅନୁରୋଧ କରିଅଛନ୍ତି । ଗାନ କରିବା ବା କହିବା ଏକ ଅର୍ଥରେ ଗ୍ରହଣ କରାଯାଇଅଛି । କବିବର ରାଧାନାଥ ମାଇକେଲ୍

ମଧୁସୂଦନ ଦତ୍ତଙ୍କର ମେଘନାଦ ବଧ କାବ୍ୟକୁ ଅନୁସରଣ କରି ଗାନ ଶବ୍ଦ ପରିବର୍ତ୍ତେ 'କହ' ଶବ୍ଦ ବ୍ୟବହାର କରିଅଛନ୍ତି ବୋଲି ଅଧ୍ୟାପକ ଡକ୍ଟର୍ ନଟବର ସାମନ୍ତରାୟ ମତ ପ୍ରଦାନ କରିଅଛନ୍ତି । (୧) ସେ ଯାହାହେଉ ନା କାହିଁକି ଗାନ କରିବା ବା କହିବା ମଧ୍ୟରେ ବିଶେଷ କୌଣସି ପାର୍ଥକ୍ୟ ନାହିଁ । କେବଳ ଏଠାରେ ଏତିକି ଲକ୍ଷ୍ୟ କରିବାର କଥା ଯେ କବିବର ରାଧାନାଥ ମଧ୍ୟଯୁଗୀୟ କାବ୍ୟାଦର୍ଶ ଅନୁସରଣରେ ବନ୍ଦନା ନକରି ପାଶ୍ଚାତ୍ୟ କାବ୍ୟାଦର୍ଶର ଅନୁସରଣରେ ସାରଳାଙ୍କୁ କାବ୍ୟର କଥାବସ୍ତୁ ବର୍ଣ୍ଣନା କରିବା ପାଇଁ ଅନୁରୋଧ କରିଅଛନ୍ତି ।

କାବ୍ୟର କଥାବସ୍ତୁ ପାଇଁ କବି ମହାଭାରତରୁ ଉପାଦାନ ଗ୍ରହଣ କରିଥିଲେହେଁ ଏହା କେତେକ ସ୍ଥଳରେ ପରିବର୍ତ୍ତିତ ରୂପ ଗ୍ରହଣ କରିଅଛି । ପରୀକ୍ଷିତଙ୍କୁ ରାଜସିଂହାସନ ଭାର ଦେଇ ପାଣ୍ଡବମାନେ ରାଜ୍ୟତ୍ୟାଗ କରି ବହୁ ତୀର୍ଥ ଭ୍ରମଣ କରିଅଛନ୍ତି । ପାଣ୍ଡବମାନେ ପୁରୁଷୋତ୍ତମ କ୍ଷେତ୍ରକୁ ଆସିଛନ୍ତି । ସେଠାରେ ସେମାନେ ଅଗ୍ନିଦେବଙ୍କ ସାକ୍ଷାତ ପାଇଛନ୍ତି । ଅଗ୍ନିଦେବଙ୍କ କଥା ଅନୁସାରେ ଏବଂ ଯୁଧିଷ୍ଠିରଙ୍କ ଆଦେଶରେ ଅର୍ଜୁନ ତୂଣ ସହିତ ଗାଣ୍ଡୀବଧନୁ ପୁଣି ସାଗରରେ ନିକ୍ଷେପ କଲେ । କବିବର ରାଧାନାଥ ଏହି ବର୍ଣ୍ଣନାକୁ ଇଂରେଜ କବି ଟେନିସନ୍‌ଙ୍କର ପାସିଙ୍ଗ୍ ଅଫ୍ ଆର୍ଥର କବିତାରେ ଥିବା 'ଏକ୍ସ୍‌କାଲିବର୍' ଖଡ୍ଗ ନିକ୍ଷେପ ବର୍ଣ୍ଣନାର ଅନୁରୂପ କରିଅଛନ୍ତି ।

କବିବର ରାଧାନାଥଙ୍କ ଲେଖନୀରେ ଏହି ବର୍ଣ୍ଣନା ହୋଇଛି,

"ଅଗ୍ରଜ ସଙ୍କେତେ ତହୁଁ ପାର୍ଥ-ମହାମତି
ଫିଙ୍ଗିଲେ ସାଗରେ ଧନୁ ବେନିତୂଣ ସହି,
ଆଦରେ ଜଳାମ୍ବୁ ସ୍ୱାମୀ ପ୍ରସାରି ଅମ୍ବରେ
ଉତୁଙ୍ଗ-ତରଙ୍ଗ-ବାହୁ ନେଲେ ତା ତକ୍ଷଣେ,
ବୁଡ଼ିଗଲା ଜଳେ ସେହି ଆଗ୍ନେୟ ଧନୁ,
ମିଶିଯାଏ ମେଘ ଯେହ୍ନେ ବିବର୍ଣ୍ଣ-ରଞ୍ଜିତ
ଶକ୍ରଚାପ, ତଡ଼ିଲ୍ଲତା-ଶିଞ୍ଜିନୀ-ସଂଯୁତ ।"

---

(୧) ଓଡ଼ିଆ ସାହିତ୍ୟର ଇତିହାସ – ପୃ. ୨୯୮

ଟେନିସନ୍‌ଙ୍କ ବର୍ଣ୍ଣନାରେ ଅଛି,

"Then quickly rose Sir Bedivere, and ran,
And, leaping down the ridges lightly, plunged
Among the bulrush beds, and clutched the sword,
And strongly wheeled and threw it. The great brand
Made lightnings in the splendor of the moon
And flashing round and round, an whirled in an arch,
Shot like a streamer of the northern morn,
Seen where the moving isles of winter shock
By night, with noises of the Northern sea.
So flashed and fell the brand Excalibur;
But ere he dipt the surface, rose an arm
Clothed in white samite, mystic, wonderful,
And caught him by the hilt, and brandished him
Three times, and drew him under in the mere."

ଅଗ୍ନିଦେବଙ୍କ ମୁଖରେ କବି ଶ୍ରୀକ୍ଷେତ୍ରର ମାହାତ୍ମ୍ୟ ଯେପରି ଭାବରେ ପ୍ରକାଶ କରିଛନ୍ତି ତାହା ତାଙ୍କର ଜନ୍ମଭୂମିପ୍ରୀତିର ଅପୂର୍ବ ଉଦାହରଣ ।

"ପୁଣ୍ୟତମ ଏ ସୈକତ ବଣ୍ଡ ତଟରେ,
ବାଛି ନେଇଛନ୍ତି ଯାହା ନିଜେ ଲୀଳାମୟ

ପୁଣି ମର୍ତ୍ତ୍ୟଲୋକ ଲାଗି ଅଖିଳ ଭାରତେ,
ତୀର୍ଥଦଳେ ଶ୍ରେଷ୍ଠ ଯେହ୍ନେ ପ୍ରସୂନ ଲଳିତ
ଶ୍ରେଷ୍ଠ ଏ ଉତ୍କଳ ଭୂମି ଗୁଣେ ଗରୀୟସୀ
ଯାମ୍ୟେ ଯାର ଋଷିକୁଲ୍ୟା କପିଶା ଉତ୍ତରେ
ପଶ୍ଚିମେ ଭାର୍ଗବାଶ୍ରମ ମହେନ୍ଦ୍ର ଶିଖରୀ,
ଚିର କୋଳାହଳମୟ ପୂର୍ବେ ପୟୋନିଧି,
ପୁଷ୍ପକୁଣ୍ଡେ ଶ୍ରେଷ୍ଠ ତାର କେଶର ଯେସନେ,
ଶ୍ରେଷ୍ଠ ଏ ନୀଳାଦ୍ରି ଧାମ ସମଗ୍ର ଉତ୍କଳେ,
ନବସନ୍ତ ନାନା ସ୍ଥାନେ ଦେବଦେବୀ ଯେତେ
ଭାରତ, ଭାରତଖଣ୍ଡେ, ଆସି ଏ ପ୍ରଦେଶେ
ବିହରିବେ ଠାବେ ଠାବେ ନିଜ ରୁଚିମତେ,
ପୂଜ୍ୟ ହେବ ଅବଶେଷେ ପୁଣି ଏ ସ୍ଥଳେ
ଅଖିଳ ଭାରତ-ତୀର୍ଥ-ଭ୍ରମଣ ସୁକୃତ ।"

କେବଳ ଶ୍ରୀକ୍ଷେତ୍ରର ମାହାତ୍ମ୍ୟ ଯେ କବିଙ୍କ ଲେଖନୀରେ ଅତ୍ୟନ୍ତ ଗୁରୁଗମ୍ଭୀର ଭାବରେ ପ୍ରକାଶ ପାଇଅଛି ତାହା ନୁହେଁ । ପାଣ୍ଡବମାନେ ଅଗ୍ନିଦେବଙ୍କ ସହିତ ଉତ୍କଳର ବିଭିନ୍ନ ସ୍ଥାନ ଭ୍ରମଣ କରିବା ସମୟରେ କବିଙ୍କ ଲେଖନୀ ଉତ୍କଳର ପ୍ରଶଂସାଗାନରେ ଶତମୁଖ ହୋଇ ପଡ଼ିଅଛି । ଏହି ଅବସରରେ କବି କମନୀୟ ଉତ୍କଳ ପ୍ରକୃତିର ଚିତ୍ର ଅଙ୍କନ କରିଅଛନ୍ତି । କବିଙ୍କ ଲେଖନୀରେ କିମ୍ବଦନ୍ତୀ ଓ ପୁରାଣ ପରମ୍ପରାର ବହୁଳ ବର୍ଣ୍ଣନା ଦେଖାଦେଇ-ଅଛି । ମହାନଦୀ ବିଷୟରେ ଅଗ୍ନିଦେବ ପାଣ୍ଡବମାନଙ୍କୁ କହିଛନ୍ତି,

"ହେ ରାଜନ, ଦେଖ ଏଥି ବହନ୍ତି କେସନେ
ମହାନଦୀ ନାମେ ପୂର୍ବସାଗର ଗାମିନୀ
ହରମୌଳିକଳା ଦେବୀ ହିମ୍ରେତା ଜାହ୍ନବୀ,
ସୁକାନ୍ତ ମହର୍ଷି-ତପେ ପତିତପାବନୀ

ରୁଷ୍ଟ ହୋଇ ଏହି ମୁଖେ ଆସିଲେ ସେ କାଳେ
ଅର୍ଦ୍ଧ ପଥେ ତାଙ୍କ ଗତି ରୋଧିଲେ ଏଠାବେ

ମାତଙ୍ଗ-ପ୍ରାଚୀର କୃତ ଏହି ମହାଗିରି,
ତହୁଁ କୁଳଶୀଙ୍କି ଋଷି ତୋଷି ତପୋବଳେ

ଏ ବର୍ତ୍ମ ଛେଦିବା ଲାଗି କଲେ ଅନୁରୋଧ,
ବଜ୍ରକରେ ଅବତରି ଏହି ଶୈଳ ଚୂଳେ

ଛେଦି ଏ ଶଇଳ ବଜ୍ରୀ ରଚିଲେ କୌଶଳେ
ଉତ୍କଳର ମୁକ୍ତ ଦ୍ୱାରରୂପୀ ଏ ତୋରଣ

ସପ୍ତକୋଶବ୍ୟାପୀ, ଶୈଳକୁଞ୍ଜେ ଅନ୍ଧାରିତ,
ଛିନ୍ନ ଶିଳାପୁଞ୍ଜ ଯାର ବିଷମି ଏ କାଳେ

ନଦୀଶଯ୍ୟା ଉପୁଜାନ୍ତି ଅସଂଖ୍ୟ ପ୍ରମାଦ
ଠାବେ ଠାବେ, ଜଳରବେ ପୂରାଇ ଅଟବୀ ।"

ଉତ୍କଳର ଅରଣ୍ୟଭୂମିରେ ପାଣ୍ଡବମାନଙ୍କ ସହିତ ଅଗ୍ନିଦେବ ଭ୍ରମଣ କରିବା ସମୟରେ ପ୍ରସିଦ୍ଧ ସ୍ଥାନମାନଙ୍କ ବିଷୟରେ ଯେଉଁ ବର୍ଣ୍ଣନାସମୂହ ପ୍ରକାଶ ପାଇଅଛି ସେଗୁଡ଼ିକ କବିଙ୍କର ସ୍ୱଦେଶ ପ୍ରୀତିର ପରିଚୟ ପ୍ରଦାନ କରିବା ସଙ୍ଗେ ସଙ୍ଗେ ପୌରାଣିକ ପରମ୍ପରା ବିଷୟରେ କବିଙ୍କର ଜ୍ଞାନର ଯଥାର୍ଥ ପରିଚୟ ଦେଇଥାଏ । ଏହି ସବୁ ଦୃଶ୍ୟ ବର୍ଣ୍ଣନା କରିବା ସମୟରେ କବିଙ୍କ ଉପରେ ବହୁ ସ୍ୱଦେଶୀ ଓ ବିଦେଶୀ କାବ୍ୟର ପ୍ରଭାବ ପଡ଼ିଅଛି ବୋଲି ଆଲୋଚକମାନେ ମତପ୍ରଦାନ କରନ୍ତି । ଏହାସତ୍ତ୍ୱେ କବିଙ୍କର ମୌଳିକତା ଅବଶ୍ୟ ସ୍ୱୀକାର୍ଯ୍ୟ । କବି ଏହିସବୁ ଦୃଶ୍ୟକୁ ଗଭୀର ଅଭିନିବିଷ୍ଟ ଚିତ୍ତରେ ଦର୍ଶନ କରିନଥିଲେ ଏହିସବୁ ବର୍ଣ୍ଣନା କେବେ-ହେଲେ ଏପରି ଜୀବନ୍ତ ହୋଇପାରିନଥାନ୍ତା । ଏହି ବର୍ଣ୍ଣନାଗୁଡ଼ିକରେ କବିଙ୍କର ଦକ୍ଷତା ପ୍ରମାଣିତ ହୋଇଅଛି । ଆଲୋଚକଙ୍କ ମତରେ ଏହି ବର୍ଣ୍ଣନାରେ ଯଦି ଗୋଟିଏ ପଦ ବା ଗୋଟିଏ ବର୍ଣ୍ଣ ପରିବର୍ତ୍ତିତ

କରିଦିଆଯାଏ, ତେବେ ବର୍ଣ୍ଣନାର ସମଗ୍ର ସୌନ୍ଦର୍ଯ୍ୟ ନଷ୍ଟ ହୋଇଯିବ । (୧)

ପାଣ୍ଡବମାନେ ଅଗ୍ନିଦେବଙ୍କ ସହିତ ମଧ୍ୟଦେଶର ମାଳଭୂମିରେ ପ୍ରବେଶ କରିଛନ୍ତି । ସେଠାରେ ସେମାନେ ବହୁ ଋଷି ଆଶ୍ରମ ପରିଦର୍ଶନ କରିଅଛନ୍ତି । କବି ରାମାୟଣର ବର୍ଣ୍ଣନାଦ୍ୱାରା ପ୍ରଭାବିତ ହୋଇ ଏହି ସ୍ଥଳର ସୌନ୍ଦର୍ଯ୍ୟ ଓ ମାହାତ୍ମ୍ୟ ବର୍ଣ୍ଣନା କରିଅଛନ୍ତି । କବିଙ୍କର ସୌନ୍ଦର୍ଯ୍ୟବୋଧ ଦୃଷ୍ଟିକୋଣ ଏଠାରେ ବହୁ ଅଂଶରେ ମହାକବି କାଳିଦାସଙ୍କର ପଦାଙ୍କ ଅନୁସରଣ କରିଥିବାର ପ୍ରତୀତ ହୁଏ । କବିଙ୍କ ଭାଷାରେ,

"ଚିତ୍ରକୂଟୁଁ ପଞ୍ଚବଟୀ ଭଜେ ଯେବା କାଳେ;
ପର୍ଣ୍ଣଶାଳା ରଚି ଏଥି ଥିଲେ ଦାଶରଥି,
ପ୍ରସ୍ତରେ ଅଙ୍କିତ ତାଙ୍କ ପଦାଙ୍କ ଏବନେ
ବନ ପୁଷ୍ପ ଞ୍ଜଳ ଦେଇ ପୂଜନ୍ତି କିରାତେ
ଶିଖି-ପୁଚ୍ଛ ତାଳବୃନ୍ତ ତାଳି ଭକ୍ତିଭାବେ,
ଦାଶରଥି-ଶରେ ହତ ହୋଇ ଏହି ସ୍ଥଳେ
ଲଭିଣ ବିରାଧ ମୁକ୍ତ ଗଲା ଦିବ୍ୟଲୋକେ
ଅଶୋକ, ମାଧବୀ, ନାଗ-କେଶର ବଲ୍ଲରୀ-
ଦୋଳନେ ଦୋଳନ୍ତି ଏଥି ନିଭୃତେ ଅପ୍‌ସରୀ
ମଧୁମାସେ, ରାମାୟଣ ଗାଇ ମଧୁତାନେ
ଫଗୁଖେଳ ରଚି ବନ-ପ୍ରସୂନ-ପରାଗେ,
ନବ କିଶଳୟେ, ଦେଖ ହରିଜେ କେସନେ,
ଗୈରିକେ ଅରଣ୍ୟ ଭୂମି ହିର୍‌ବିକଳଯୁ ଯାଏ,
ମୈଥିଳୀ ସୁନ୍ଦରୀ ଯେବେ ତୋଳୁଥିଲେ ଏଥି

(୧) ରାଧାନାଥ ଗ୍ରନ୍ଥାବଳୀ—ପୃ ୭୫୨.

ବନପୁଷ୍ପ, ଝର ତାଙ୍କ ଶ୍ରୀକରୁ ଅଳକା
ରଞ୍ଜିଲା କି ତରୁଲତା ଏ ମଞ୍ଜୁଳରାଗେ ?

ତାଙ୍କ କରେ ସେହ୍ନକାଳୁ ଅଛି ମୋତେ ମନା
ଦାବାନଳରୂପେ ଏଥି ସଞ୍ଚରିବା ପାଇଁ,

ଦସ୍ୟୁବଶ ମୈଥିଳୀର ଶ୍ରୀହସ୍ତ-ଜଳିତ
ଅଦ୍ୟାପି ଏବନେ ଛନ୍ତି ବୃକ୍ଷ କୃଷ୍ଣସାର

ଜର୍ଜରାଙ୍ଗି, ଶୁଣି ଯେହ୍ନ ଜଳଦ ଆଗମେ
ସୁଚମ୍ପୀର ଘନଘୋଷ ସ୍ମରନ୍ତି ବିଷାଦେ

ବ୍ରହ୍ମାଣ୍ଡ ବିବରବ୍ୟାପୀ କୋଦଣ୍ଡ ଟଙ୍କାର
ଲଙ୍କାପତି ଅରିତର, ଭୃଶାହାର ତେଜି

ନିର୍ନିମେଷେ ଏକଧ୍ୟାନେ ମୁଞ୍ଚନ୍ତି ଲୋତକ ।"

ଭାରତର ବହୁସ୍ଥାନରେ ପ୍ରାକୃତିକ ଅବସ୍ଥିତି ମଧ୍ୟରେ ରାମଚନ୍ଦ୍ରଙ୍କର ସ୍ମୃତି ଜଡ଼ିତ ଥିବାର କିମ୍ବଦନ୍ତୀ ଏବେ ମଧ୍ୟ ପ୍ରଚଳିତ ଅଛି । ଏହିସବୁ ସ୍ଥାନ ଏବଂ କିମ୍ବଦନ୍ତୀ ସହିତ କବିବର ରାଧାନାଥ ଉତ୍ତମ ଭାବରେ ପରିଚିତ ଥିଲେ । କବି ଚିଲିକା କାବ୍ୟରେ ବର୍ଣ୍ଣନା କରିଅଛନ୍ତି,

"ଭ୍ରମିଲି ଦକ୍ଷିଣ ପଥେ ଉପତ୍ୟକା
ଝିଲ୍ଲି-ଝଙ୍କାରିତ ଅଟବୀ ଦଣ୍ଡକା,

ତୀର୍ଥାଶ୍ରମ, ଗିରି, ତଟିନୀ, କନ୍ଦର
ମହାରଣ୍ୟମାନେ ଚିର କଳେବର,

ଦୂଷଣ ତ୍ରିଶିର ଖର ଅଧ୍ୟାସିତ
ଜନସ୍ଥାନ ଯାର ଥିଲା ସନ୍ନିହିତ,

ଧାରାସ୍ରାବୀ, ଭ୍ରମରବୀ, ତଡ଼ିଦ୍‌ବନ୍ତ-
ପର୍ଜନ୍ୟ ଗର୍ଜନେ କମ୍ପିଲେ ଦିଗନ୍ତ,

ଯହିଁ ମେଘାଲୋକେ ପ୍ରଫୁଲ୍ଲ ଅନ୍ତର
ମୈଥିଳୀ-ପାଳିତ କେକୀ-ବଂଶଧର

ନାଚେ ନୃତ୍ୟକାଳ ନୀଳକଣ୍ଠ-କେକୀ
ଅଦ୍ୟାପି ସୂଚଇ ସୀମାଶ୍ରମ ରେଖା ।"

ଅରଣ୍ୟ ପ୍ରକୃତି ବର୍ଣ୍ଣନାରେ କବି କିପରି ଭାବରେ ମହାକବି କାଳିଦାସଙ୍କ ଦ୍ୱାରା ପ୍ରଭାବିତ ହୋଇଅଛନ୍ତି ତାହାର ଏକ ଉଦାହରଣ ଏଠାରେ ଦିଆଯାଇପାରେ । ମହାକବି କାଳିଦାସଙ୍କର ଅଭିଜ୍ଞାନ ଶକୁନ୍ତଳାଂରେ ଅଛି ,

"ନୀବାରାଃ ଶୁକଗର୍ଭକୋଟରମୁଖଭ୍ରଷ୍ଟାସ୍ତରୂଣାମଧଃ
ପ୍ରସ୍ନିଗ୍ଧାଃ କ୍ୱଚିଦିଙ୍ଗୁଦୀଫଳଭିଦଃ ସୂଚ୍ୟନ୍ତ ଏବୋପଳାଃ ।
ବିଶ୍ୱାସୋପଗମାଦଭିନ୍ନଗତୟଃ ଶବ୍ଦଂ ସହନ୍ତେ ମୃଗାଃ
ତୋୟାଧାରପଥାଶ୍ଚ ବଲ୍‌କଳଶିଖା ନିଃସ୍ୟନ୍ଦରେଖାଙ୍କିତାଃ ।"

କବିବର ରାଧାନାଥଙ୍କ ବର୍ଣ୍ଣନା ହେଉଛି,

"ବିଚରନ୍ତି ମୃଗଶିଶୁ ନିରୁଦ୍‌ବେଗେ ବନେ
ଦଳେ ଦଳେ, କୁଶାଙ୍କୁର-କବଳ ଲାଳସୀ,
ବିକୀର୍ଣ୍ଣ ଠାବେ ଠାବେ ଗୁଳ୍ମାଦିରୁ ମୂଳେ
ଶିଳାଖଣ୍ଡ, ମସୃଣିତ ଇଙ୍ଗୁଦୀ-ଦଳନେ
କାହିଁ ବନସ୍ପତି ଡାଳେ ବାଳାତପ ପ୍ରଭ
ଜଳାଦ୍ର୍ ବଲ୍‌କଳ ଦୋଳେ ମୃଦୁବନ ବାତେ ।"

ପାଣ୍ଡବମାନେ ଅଗ୍ନିଦେବଙ୍କ ସହିତ ନାନାସ୍ଥାନ ଭ୍ରମଣ କରିବା ପରେ ସହ୍ୟାଦ୍ରି ନିକଟରେ ଉପସ୍ଥିତ ହେଲେ । ଅଗ୍ନିଦେବ ସହ୍ୟାଦ୍ରି ବିଷୟରେ ବର୍ଣ୍ଣନା କରିବା ସଙ୍ଗେ ସଙ୍ଗେ କଳି ଆଗମନ ବିଷୟରେ ସୂଚନା ପ୍ରଦାନ କଲେ । କଳିର ଆଗମନ ଦୃଶ୍ୟ ପାଣ୍ଡବମାନଙ୍କୁ ଦେଖାଇବା ନିମନ୍ତେ ଅଗ୍ନିଦେବ ସେମାନଙ୍କୁ ସହ୍ୟାଦ୍ରି ଶିଖରକୁ ନେଇ-

ଗଲେ । ଇଂରେଜ କବି ମିଲଟନ୍‌ଙ୍କର ପାରାଡାଇଜ୍ ଲଷ୍ଟ୍ କାବ୍ୟରେ ଦେବଦୂତ ମାଇକେଲ୍ ସୃଷ୍ଟିର ପ୍ରଥମ ମନୁଷ୍ୟ ଆଡାମ୍‌ଙ୍କୁ ଇଡେନ୍ ଗାର୍ଡ଼େନ୍‌ଠାରେ ଥିବା ପର୍ବତ ଶିଖରକୁ ନେଇଯାଇ ତାଙ୍କ ଚକ୍ଷୁରେ ଅଞ୍ଜନ ଲଗାଇଥିବା ବର୍ଣ୍ଣନା ଭଳି କବିବର ରାଧାନାଥ ଏଠାରେ ତାଙ୍କର ବର୍ଣ୍ଣନା ଦେଇଅଛନ୍ତି । ଯୁଧିଷ୍ଠିରଙ୍କ ନେତ୍ରରେ ଅଗ୍ନିଦେବ ଦିବ୍ୟାଞ୍ଜନ ଲଗାଇବା ବିଷୟ ମହାଯାତ୍ରା କାବ୍ୟର ଷଷ୍ଠସର୍ଗରେ ବର୍ଣ୍ଣିତ ହୋଇଅଛି ।

ଯେଉଁଦିନ ଅଗ୍ନିଦେବ ପାଣ୍ଡବମାନଙ୍କୁ ସହ୍ୟାଦ୍ରି ନିକଟକୁ ନେଲେ ସେଦିନ ଦ୍ୱାପରଯୁଗର ଶେଷଦିନ । କଳିର ଆଗମନ ଦେଖାଇବା ପାଇଁ ଅଗ୍ନିଦେବ ପାଣ୍ଡବମାନଙ୍କୁ ସହ୍ୟାଦ୍ରି ଶିଖରକୁ ନେଇଗଲେ । କବିବର ରାଧାନାଥ ତୃତୀୟ ସର୍ଗକୁ ଶେଷକରି ଚତୁର୍ଥ ସର୍ଗରେ କଳି ଆଗମନର ବିସ୍ତାରିତ ବର୍ଣ୍ଣନା କରିଅଛନ୍ତି । କଳିଯୁଗର ଆଗମନ ନିତାନ୍ତ ଅପ୍ରତ୍ୟାଶିତ ନୁହେଁ ବୋଲି ଆଲୋଚକମାନେ ମତ ପ୍ରଦାନ କରିଅଛନ୍ତି । କଳିର ଆଗମନ ପୂର୍ବରୁ ବହୁ ପ୍ରକାର ଶକୁନ ଦର୍ଶନ ଘଟିଥିଲା ବୋଲି ବାଲ୍ମୀକି, ବ୍ୟାସ, ବାଣଭଟ୍ଟ, ଭର୍ତ୍ତୃହରି ପ୍ରମୁଖ କବିମାନେ ବର୍ଣ୍ଣନ କରିଅଛନ୍ତି । ମାତ୍ର କବିବର ରାଧାନାଥ ଏ ପ୍ରକାର ଶକୁନ ଦର୍ଶନର ଅବତାରଣା କରିନାହାନ୍ତି । ଏହାଦ୍ୱାରା କବି କାବ୍ୟର ମହତ୍ତ୍ୱକୁ ଯଥାର୍ଥ ଭାବରେ ରକ୍ଷା କରିବାରେ ଅସମର୍ଥ ହୋଇଅଛନ୍ତି ବୋଲି କୁହାଯାଇପାରେ । ଆଲୋଚକ ଜଗଦାନନ୍ଦ ମହାନ୍ତିଙ୍କ ମତରେ ଏହା କବିଙ୍କ ପକ୍ଷରେ ଦୋଷାବହ ।' (୧) ମନେହୁଏ, ଆଲୋଚକ କବିଙ୍କର କାବ୍ୟ ଆଲୋଚନା କରିବା ସମୟରେ ପ୍ରାଚୀନ କାବ୍ୟଧାରାର ମାନ୍ତ ଅନୁସାରେ ଅତିମାତ୍ରରେ ପ୍ରଭାବିତ ହୋଇପଡ଼ିଅଛନ୍ତି । କବିବର ରାଧାନାଥ ପୁରାଣର କଥାବସ୍ତୁକୁ ତାଙ୍କର କାବ୍ୟର କଥା-ବସ୍ତୁଭାବରେ ଗ୍ରହଣ କରିଥିଲେହେଁ ବହୁ ସ୍ଥଳରେ ତାହାକୁ ପରିବର୍ତ୍ତନ କରିଅଛନ୍ତି । ତାଙ୍କ ଦୃଷ୍ଟିରେ କାବ୍ୟର ଉତ୍କର୍ଷ ପ୍ରତିପାଦନ ପାଇଁ ଯାହା ଯଥାର୍ଥ ତାହାକୁହିଁ ସେ ଗ୍ରହଣ କରିଅଛନ୍ତି । ଅଗ୍ନିଦେବଙ୍କ ଦ୍ୱାରା କବି ପାଣ୍ଡବମାନଙ୍କୁ ଯେଉଁସବୁ ତୀର୍ଥ ବା ସ୍ଥାନମାନଙ୍କରେ

(୧) ରାଧାନାଥ ଜୀବନୀ—ପୃ ୬୭୪—୬୭୭

ଉପସ୍ଥିତ କରାଇଅଛନ୍ତି ସେସବୁ ଯଥାର୍ଥରେ ପୁରାଣର ଅନୁସାରୀ ନୁହେଁ । କବିଙ୍କ କଳ୍ପନାରେ ଏହିସବୁ ବର୍ଣ୍ଣନାର ସ୍ୱାତନ୍ତ୍ୟ ଲକ୍ଷ୍ୟ କରିବା ବିଧେୟ । ଯୁଧିଷ୍ଠିରଙ୍କର ରାଜତ୍ୱ ସମୟରେ କଳି ଆସିଯାଇଥିଲା ବୋଲି ଆଲୋଚକ ମତ ପ୍ରଦାନ କରିଅଛନ୍ତି । ତାଙ୍କ ମତାନୁସାରେ, "ମୂଳ ମହାଭାରତ ବର୍ଣ୍ଣନାରୁ ଆମ୍ଭେମାନେ ଅବଗତ ହେଉଁ ଯେ, ଦୁର୍ଯ୍ୟୋଧନ ପ୍ରଭୃତି କୌରବମାନଙ୍କ ମନରେ କଳିର ସେନାପତି 'ଈର୍ଷ୍ୟା', 'ଶାଠ୍ୟ' 'ମଦ', 'ଲୋଭ' ପ୍ରଭୃତି କୀଚକର ମନରେ 'କାମ' ଶାମ୍ବାଦି ଶ୍ରୀକୃଷ୍ଣଙ୍କ ପୁତ୍ରମାନଙ୍କ ମନରେ 'ଛଳନା' ଏବଂ ଯାଦବମାନଙ୍କ ମନରେ 'ମଦ' ପ୍ରଭୃତି ଆଧିପତ୍ୟ ସ୍ଥାପନ କରିଥିଲେ । ଏମନ୍ତ କି, ଅର୍ଜ୍ଜୁନଙ୍କ ମନରେ ମଧ୍ୟ 'ମୋହ' କ୍ଷଣକାଳ ପାଇଁ ସ୍ଥାନ ପାଇଥିଲା । ଅତଏବ ସହ୍ୟାଦ୍ରି ଶିଖରରେ ପୁନର୍ବାର କଳିର ଅବତରଣ ଏବଂ ଯୁଧିଷ୍ଠିରଙ୍କୁ ଅଗ୍ନିଙ୍କର ସେମାନଙ୍କ ପରିଚୟ ଦେବାର ଏଠାରେ ଅବସର ନାହିଁ ।" (୧)

ଆଲୋଚକଙ୍କର ଏହି ସମାଲୋଚନାତ୍ମକ ମତବାଦ ତାଙ୍କର ଅନୁଶୀଳନ ପ୍ରବୃତ୍ତିର ପରିଚାୟକ । ମାତ୍ର ଆଲୋଚକ ସବୁବେଳେ ଅବହିତ ଥିବା ଉଚିତ ଯେ କାବ୍ୟ ଇତିହାସ ନୁହେଁ, ବା ତର୍କଶାସ୍ତ୍ର ନୁହେଁ । ମହାଭାରତର ବର୍ଣ୍ଣନା ଅନୁସାରେ ଶାଠ୍ୟ, ମଦ, ଲୋଭ ପ୍ରଭୃତି କୌରବମାନଙ୍କର ନିକଟରେ ଆଧିପତ୍ୟ ବିସ୍ତାର କରିଥିବାର ଅର୍ଥ ନୁହେଁ ଯେ, ସେ ସମୟରେ କଳିର ଆଧିପତ୍ୟ ବିସ୍ତାର ଲାଭ କରିଥିଲା । ଦ୍ୱାପର ଯୁଗ ପରେ କଳିଯୁଗର ଆଗମନ କଥା ଜାଣି ଏ ପ୍ରକାର ଆଲୋଚନା କରାଯାଇପାରେ । ମାତ୍ର ତ୍ରେତୟାଯୁଗରେ ରାମାୟଣ ବର୍ଣ୍ଣିତ ଘଟଣାସମୂହରେ ଶାଠ୍ୟ, ମଦ, ମୋହ ପ୍ରଭୃତିଙ୍କର ଆଧିପତ୍ୟ ତ କମ୍ ଦେଖିବାକୁ ମିଳେ ନାହିଁ ? ତେବେ କଣ ଏହି ସିଦ୍ଧାନ୍ତରେ ଉପନୀତ ହେବାକୁ ହେବ ଯେ ତ୍ରେତୟାଯୁଗରେ ମଧ୍ୟ କଳିର ପ୍ରବେଶ ଥିଲା ? କାବ୍ୟର ପ୍ରସଙ୍ଗ ବର୍ଣ୍ଣନାରେ ଏ ପ୍ରକାର ହିସାବ ନିକାଶ କରାଯାଇ ନପାରେ । ମହାଯାତ୍ରା ଏକ ଆଧୁନିକ ମହାକାବ୍ୟ, କବି ଜଣେ ଆଧୁନିକ କବି ଏବଂ ଆଲୋଚକ ଜଣେ ଆଧୁନିକ

(୧) ରାଧାନାଥ ଜୀବନୀ— ପୃ ୬୫୪-୬୫୫

ଶିକ୍ଷିତ ସମାଲୋଚକ; ମାତ୍ର କାବ୍ୟର କଥାବସ୍ତୁ ଏ ଦେଶର, ଏ ଜାତିର ପରମ୍ପରାକୁ ନେଇ ଗଢ଼ି ଉଠିଛି । ସେ ପରମ୍ପରାକୁ ଭୁଲିଗଲେ ଚଳିବ ନାହିଁ । ପୁଣି, କଳିର ଆଗମନକୁ ଇତିହାସ ସମ୍ମତ ନୁହେଁ ବୋଲି ଆଲୋଚକ ଦର୍ଶାଇ ଅଛନ୍ତି । ଏଠାରେ ଇତିହାସର ପ୍ରଶ୍ନ ଉତ୍‌ଥାପନ କରିବା ଆଦୌ ଯୁକ୍ତିଯୁକ୍ତ ନୁହେଁ । ସତ୍ୟ, ଦ୍ୱାପର, କଳି ପ୍ରଭୃତି ବିଭିନ୍ନ ଯୁଗମାନଙ୍କ ବିଷୟ ଆଜି ଇତିହାସର ଅନ୍ଧକାରରେ ବିଲୁପ୍ତ । ଇତିହାସ ଦୃଷ୍ଟିରୁ ପୁରାଣକୁ ବିଗ୍ଳ କଲେ କୌଣସି ସ୍ଥିର ନିଶ୍ଚିତ ସିଦ୍ଧାନ୍ତରେ ଉପନୀତ ହେବା ସହଜ ସାଧ୍ୟ ନୁହେଁ । ଆର୍ଯ୍ୟଜାତି ତାର ପରମ୍ପରାରେ କେବେହେଲେ ଇତିହାସ ଲେଖି ରଖିବାର ପ୍ରୟାସ କରିନଥିଲ । ଯଦିବା ସେ ପ୍ରୟାସ କ୍ଷୀଣଭାବରେ ଥିଲ ତାହା ଆଧୁନିକ ଜଗତର ସନ, ତାରିଖ ବ୍ୟାବସ୍ଥାଯୁକ୍ତ ଇତିହାସ ନୁହେଁ । ସେ ଇତିହାସର ମର୍ମ ଥିଲ,

"ଧର୍ମାର୍ଥ କାମମୋକ୍ଷଣାମୁପଦେଶସମନ୍ୱିତମ୍
ପୂର୍ବବୃତ୍ତକଥାଯୁକ୍ତମିତିହାସ ପ୍ରଚକ୍ଷ୍ୟତେ ।"

ଧର୍ମ, ଅର୍ଥ, କାମ ଓ ମୋକ୍ଷ—ଏହି ଚତୁର୍ବର୍ଗ ଫଳ ଉଦ୍ଦେଶ୍ୟରେ ଜାତିର ଅଗ୍ରଗତି ସୂଚିତ କରୁଥିବା ପୁରାତନ କଥାହିଁ ଇତିହାସ । ଏହି ଦୃଷ୍ଟିରୁ ପୁରାତନ ସଂସ୍କୃତିକୁ ବିଗ୍ଳ କରିବାର କଥା । କଳିଯୁଗ କେବେ ଆସିଲ ତାହା ଆମର ଆଲୋଚନାର ମୁଖ୍ୟ ବିଷୟ ନହୋଇ କଳିଯୁଗ କିପରି ଆସିଲ, ତାହା ଆମର ଆଲୋଚନାର ମୁଖ୍ୟ ବିଷୟ ହେବା ଉଚିତ ।

ଚତୁର୍ଥ ସର୍ଗର ଆରମ୍ଭରେ ପାଣ୍ଡବମାନେ ଅଗ୍ନିଦେବଙ୍କ ପ୍ରସାଦରେ ଦେବସଭାର ଦୃଶ୍ୟ ସନ୍ଦର୍ଶନ କରିଅଛନ୍ତି । ଦେବସଭାରେ ଉପସ୍ଥିତ ଥିବା ଦେବଦେବୀମାନେ ପୌରାଣିକ ଭାବରେ ବର୍ଣ୍ଣିତ ନହୋଇ ରୂପକ ଛଳରେ ବା ପ୍ରତୀକ ଛଳରେ ବର୍ଣ୍ଣିତ ହୋଇଛନ୍ତି । କଳିର ଆଗମନ ଯୋଗୁଁ ଦେବ ସଭାରେ ବିଷାଦ ଭାବ ଦୃଷ୍ଟି । କଳିର ଆଗମନ ବର୍ଣ୍ଣନା କବିଙ୍କ ଲେଖନୀରେ ଯଥାର୍ଥ ରୂପ ଧାରଣ କରିଅଛି ।

"× × ନଭଃ ସ୍ପର୍ଶ ତମସେ
ଗଳା ପୂରି ବିକଟାଳ କରାଳ-ଆକୃତି
ଉର୍ଦ୍ଧ୍ୱ ଓହ୍ଲାଇଲେ କଳି ନିଜ ଦଳବଳେ;
କ୍ଷୋଭିତ ମଙ୍ଗଳ ଗ୍ରହ ପ୍ରାପ୍ତେ ଭୟାବହ,
ଅମଙ୍ଗଳ ବେନି ଚକ୍ଷୁ, ନିଃସରଇ ଯହିଁ
ଧୂମ ଧୂମକେତୁ ପୁଚ୍ଛସମ ଜ୍ୟୋତିରେଖା;
କୃତାନ୍ତର କରପଥ ପ୍ରାପ୍ତ ତ୍ରାସପ୍ରଦ
ଆବର୍ତ୍ତିଅନ୍ତି ଭ୍ରୁକୁଟୀ ଶାଣିତ ଦନ୍ତାବଳୀ।"

କଳିର ପଛେ ପଛେ ତାର ଅନୁଚରମାନେ ନିଜ ନିଜ ବେଶରେ ଆସୁଅଛନ୍ତି।

କଳି ଏବଂ ତାର ଅନୁଚରମାନଙ୍କର ଆଗମନ ବର୍ଣ୍ଣନା କବିଙ୍କର ଏକାନ୍ତ ନିଜସ୍ୱ ନୁହେଁ। ଏଥି ନିମିତ୍ତ କବିଙ୍କ ଉପରେ ଶ୍ରୀହର୍ଷଙ୍କର ପ୍ରଭାବ ଲକ୍ଷ କରାଯାଇପାରେ। ଶ୍ରୀହର୍ଷଙ୍କର ପଦାଙ୍କ ଅନୁସରଣ କରି ମାଇକେଲ୍ ମଧୁସୂଦନ ଦତ୍ତ ମଧ୍ୟ ଅନୁରୂପ ବର୍ଣ୍ଣନା କରିଅଛନ୍ତି। ଶ୍ରୀହର୍ଷ କାମକୁ ବର୍ଣ୍ଣନା କରିବାକୁ ଯାଇ ଲେଖିଛନ୍ତି,

"ଅଦ୍ରାକ୍ଷୁ ରାଜଧାନଂ ତେ ସ୍ମରମଗ୍ରେସର ସୁରାଃ
ଅକ୍ଷାବଧନ୍ୟୁଶିକ୍ଷାର୍ଥଂ କଳିନେବ ପୁରସ୍କୃତମ୍।
ଅଗମ୍ୟାର୍ଥେ ତୃଣପ୍ରାଣା ପୃଷ୍ଠାସ୍ଥି କୃତଖିହ୍ୱୟଃ
ସମ୍ଭୋଗ-ଭୁକ୍ତସଙ୍ଘା ଜନାସ୍ତ୍ରିତ୍ ପାରିପାର୍ଶ୍ୱିକାଃ।"

ବାଲୁକେଶ୍ୱର ମହାପାତ୍ରଙ୍କର ନୈଷଧୀୟ ଚରିତରେ ଏହାର ଅନୁବାଦ ହୋଇଛି,

"ଦେଖିଲେ ସେ ସୁରେ ଅଗ୍ରସର ତହିଁ
ହୋଇଅଛି କାମ ବଳୀ,
ଇନ୍ଦ୍ରିୟ ଦୁର୍ମତି ଶିକ୍ଷା ଦେବାଲାଗି
ଗୃହେ ତାକୁ ଆଗେ କଳି।

ଅଗମ୍ୟା ଗମନେ ପ୍ରାଣ ଭୃଙ୍ଗ ମଣି
ଆସନ୍ତି ତା ଅନୁଚରେ ।
ସମ୍ପଳୀ-ଶୋଷିତ- ସର୍ବସ୍ୱ ତାଙ୍କର
ଲଜ୍ଜଭୟ ନାହିଁ ତଳେ ।"

ମାଇକେଲ୍ ମଧୁସୂଦନଙ୍କ ବର୍ଣ୍ଣନା ହେଉଛି,

"ଆଉ ଏକ ବାମାଦଳ ସମ୍ମୋହନ ରୂପେ
ପଦ୍ମମଳମୟ ଫୁଲେ ମଣ୍ଡିତ କବରୀ,
କାମାଗ୍ନିର ତେଜୋରାଶି କୁରଙ୍ଗ ନୟନେ,
ମିଷ୍ଟତର ସୁଧାରସ ମଧୁର ଅଧରେ !
ଦେବରାଜ କମ୍ବୁସମ ମଣ୍ଡିତ ରତନେ
ଗ୍ରୀବାଦେଶ ! ସୂକ୍ଷ୍ମସ୍ୱର୍ଣ୍ଣ-ସୂତାର କାଞ୍ଚଲି
ଆଚ୍ଛାଦନ ଛଳେ ତାକେ କେବଳ ଦେଖାଇତେ
କୁଚରୁଚି, କାମକ୍ଷୁଧା ବାଢ଼ାଏ ହୃଦୟେ
କାମୀର ସୁକ୍ଷୀଣ କଟି, ମଳ ମଠବାସେ,
(ସୂକ୍ଷ୍ମ ଅତି) ଗୁରୁଉରୁ ଯେନ ଘୃଣା କରି ।
ଆବରଣ ରମ୍ଭାକାନ୍ତି ଦେଖାୟ କୌତୁକେ;
× × × ×
ମୃଦଙ୍ଗେର ରଙ୍ଗେ ବୀଣା ରବାବ ମନ୍ଦିରା,
ଆନନ୍ଦ ସ୍ୱରଙ୍ଗ ସବେ ମନ୍ଦେ ମିଲାଇଛେ
ସଙ୍ଗୀତ ତରଙ୍ଗେ ରଙ୍ଗେ ଭାସିଛେ ଅଙ୍ଗନା ।"

ଇଂରେଜ କବି ମିଲ୍ଟନ୍‌ଙ୍କ ପାରାଡାଇଜ୍ ଲଷ୍ଟ୍ କାବ୍ୟରେ ମଧ୍ୟ ଏହିପରି ଏକ ବର୍ଣ୍ଣନା ଅଛି ।

"A bevy of fair women,
richly gay
In gems and wanton dress
to the harp they sung
Soft amorous ditties and
in dance they come."

କବିବର ରାଧାନାଥ ଉପର୍ଯ୍ୟୁକ୍ତ କବିମାନଙ୍କଠାରୁ ଭାବ ଆହରଣ କରିଅଛନ୍ତି ସତ୍ୟ, ମାତ୍ର ସେ ଭାବକୁ ସବୁଠାରୁ ଚମତ୍କାର ଭାବରେ ପ୍ରକାଶ କରିଅଛନ୍ତି । ରାଧାନାଥଙ୍କର ବର୍ଣ୍ଣନା ଯେପରି ଦୀର୍ଘ ସେହିପରି ପ୍ରସଙ୍ଗୋଚିତ ହୋଇଅଛି । ରାଧାନାଥଙ୍କର ବର୍ଣ୍ଣନାର କିୟଦଂଶ ଏଠାରେ ଉଦ୍ଧାର କରାଯାଇ ପାରେ ।

"ଲଳିତ ଲଳନା ଭୁରୁ-ଧନୁ ଶରଧାରୀ
ଅଗ୍ରେ ବିଶ୍ୱଜୟୀ 'କାମ' ପୁଷ୍ପର ମୁକୁଟ
ଶୋଭେ ଶିରେ, ପୁଷ୍ପମାଳା ଲମ୍ବିତ ଉରସେ,
ଆସୁଛନ୍ତି ଚଉପାଶେ ବେଢ଼ି ନବରସର
କୁରଙ୍ଗ-ତରଙ୍ଗେ କ୍ଷଣୀ ଚମ୍ପକ-ବରଣୀ
ବିମ୍ବାଧରୀ, ଘନଲମ୍ବ କେଶୀ ସ୍ମେରାନନା
ବାରାଙ୍ଗନାଦଳ ରତି ଜିଣି ରୂପବତୀ,
ସ୍ଥୂଳବକ୍ଷ କୋରକିତ ଉରଜ କୋରକେ
ଲାଳସାର ସ୍ୱର୍ଣ୍ଣମାଡ଼ି କି ଅବା ସେ ବେନି
ସୁବଳିତ ରମ୍ଭଉରୁ ଆବୃତ ଦୁକୂଳେ,
ଯେଉଁ ଆବରଣ ଭେଦି ନଭୃତ ପ୍ରଦେଶ—
ସଞ୍ଚରଣେ ଲୋଳ ସଦା କାମୁକ କଳ୍ପନା!"

ଏହିପରି ଭାବରେ କବିଙ୍କର ବର୍ଣ୍ଣନା ଗତିଶୀଳ ହୋଇଅଛି । ଏହି ବର୍ଣ୍ଣନାରେ କବିଙ୍କର କଳ୍ପନାଶକ୍ତି ଓ ଜାଗତିକ ତତ୍ତ୍ୱ ସମୀକ୍ଷାର ଯଥେଷ୍ଟ ଉଦାହରଣ ମିଳିଅଛି । କବିଙ୍କର ବର୍ଣ୍ଣନା

ପାଠ କଲାବେଳେ ମନେ ହୁଏ, ସତେ ଯେପରି କବି ଆଧୁନିକ ସମାଜକୁ ଆଖିଆଗରେ ରଖି ତାର ଚିତ୍ର ଅଙ୍କନ କରିଅଛନ୍ତି । କବିବର ରାଧାନାଥ ଯେପରି ଭାବରେ କାମ ଓ ତାର ଦଳବଳଙ୍କର ଆଗମନ ବିଷୟ ବର୍ଣ୍ଣନା କରିଅଛନ୍ତି ତାହାକୁ ଆକ୍ଷେପ କରି ଆଲୋଚକ ଜଗଦାନନ୍ଦ ମହାନ୍ତି ମତ ପ୍ରଦାନ କରିଅଛନ୍ତି, "ମିଲଟନ୍ ଓ ଶ୍ରୀହର୍ଷ ଅତି ସଂଯତ ଭାବରେ କାମ ଓ କାମିନୀମାନଙ୍କର ବର୍ଣ୍ଣନା କରି ସ୍ୱ ସ୍ୱ କାବ୍ୟର ଉପାଦେୟତ୍ୱ ରକ୍ଷା କରିଅଛନ୍ତି । ମାତ୍ର ରାଧାନାଥ ମଧୁସୂଦନଙ୍କ ପନ୍ଥା ଅବଲମ୍ବନ କରି ଅତ୍ୟଧିକ କାମ ପ୍ରବୃତ୍ତିରୁ ଲୋକମାନଙ୍କୁ ନିବୃତ୍ତ କରାଇବା ମାନସରେ ଉପଦେଶଚ୍ଛଳରେ ଆଦିରସର ଅବତାରଣା କରିବାଦ୍ୱାରା ଘୋର ଅଶ୍ଳୀଳତାର ଆଶ୍ରୟ ଗ୍ରହଣ କରି ସ୍ୱ କାବ୍ୟର ଉପାଦେୟତାରେ ହୀନତ୍ୱ ପ୍ରତିପାଦନ କରିଅଛନ୍ତି । ସ୍ତ୍ରୀମାନଙ୍କର ସୌନ୍ଦର୍ଯ୍ୟ ବର୍ଣ୍ଣନା ଦୋଷାବହ ନୁହେଁ; ମାତ୍ର ବାରବନିତାମାନଙ୍କର ହାବଭାବ ବିଳାସାଦି ବର୍ଣ୍ଣନା ଏବଂ କାମୁକତାର ଜଘନ୍ୟ, ପରିଣାମ ବର୍ଣ୍ଣନା ସତ୍ୟ ହେଲେହେଁ ସେମାନଙ୍କ ଅନାବୃତ ଓ ଅସଂଯତ ଚିତ୍ର ଆମ୍ଭମାନଙ୍କ ରୁଚିକୁ କଳୁଷିତ କରିଦିଏ, ଏଣୁ ମହାକାବ୍ୟରେ ତାଦୃଶ ବର୍ଣ୍ଣନାର ସ୍ଥାନ କାହିଁ ?" (୧)

ଆଲୋଚକଙ୍କର ମତର ଯାଥାର୍ଥ୍ୟ କେତେକ ପରିମାଣରେ ଅନୁଭୂତ ହେଲେହେଁ କବିବର ରାଧାନାଥଙ୍କର କାବ୍ୟ ନିର୍ମାଣ କୌଶଳର ଯଥାର୍ଥ ଆଲୋଚନା ଭାବରେ ଏହାକୁ ଗ୍ରହଣ କରାଯାଇ ପାରିବ ନାହିଁ । କବିବର ରାଧାନାଥ ତାଙ୍କର ପୂର୍ବବର୍ତ୍ତୀ ଯେଉଁ କବିମାନଙ୍କର ଆଦର୍ଶକୁ ଗ୍ରହଣ କରିଅଛନ୍ତି ତାହା ଅପେକ୍ଷା ଅଧିକ ଆକର୍ଷଣୀୟ ରୀତିରେ ତାଙ୍କ କାବ୍ୟର ବର୍ଣ୍ଣନାକୁ ରୂପଦାନ କରି-ଅଛନ୍ତି । କବି ପ୍ରାଚ୍ୟ ଓ ପାଶ୍ଚାତ୍ୟ କାବ୍ୟାଦର୍ଶକୁ ଅତ୍ୟନ୍ତ ଦକ୍ଷତାର ସହିତ ଏକ ମିଶ୍ରିତ ରୂପ ପ୍ରଦାନ କରିଅଛନ୍ତି । ଏହି ବର୍ଣ୍ଣନାରେ ଯେ କବି ଅଶ୍ଳୀଳତା ଦୋଷଦୁଷ୍ଟ ହୋଇଅଛନ୍ତି, ଏପରି

(୧) ରାଧାନାଥ ଜୀବନୀ-ପୃ. ୨୬୨

ମତ ମଧ୍ୟ ଯଥାର୍ଥ ନୁହେଁ । କବି କାମର ଅନୁଚରମାନଙ୍କର ସ୍ପଷ୍ଟରୂପ ପ୍ରକାଶ କରିବାକୁ ଯେପରି ଭାବରେ ଚେଷ୍ଟିତ ହୋଇଅଛନ୍ତି ତାହା ତାଙ୍କର ବୈଶିଷ୍ଟ୍ୟ ରୂପରେ ଗୃହୀତ ହେବାର କଥା । ଆଲୋଚକଙ୍କ ମତରେ ଏହି ବର୍ଣ୍ଣନା ଯେବେ ଘୋର ଅଶ୍ଳୀଳ ହୋଇଥାଏ ତେବେ ଭାରତୀୟ ପୁରାଣ ସାହିତ୍ୟକୁ ଏହି ଦୃଷ୍ଟିରୁ ଅପାଠ୍ୟ ବୋଲି କୁହାଯାଇ ପାରେ । କବିବର ରାଧାନାଥଙ୍କର ଆଧୁନିକ ବିଶ୍ଳେଷଣାତ୍ମକ ମନୋବୃତ୍ତି ଏଠାରେ ଏକାନ୍ତ ପ୍ରଶଂସାର୍ହ ।

କାମ ପରେ କ୍ରୋଧର ଆଗମନ ବର୍ଣ୍ଣିତ ହୋଇଅଛି । ଏହି ବର୍ଣ୍ଣନା ନୈଷଧ କାବ୍ୟର ବର୍ଣ୍ଣନାକୁ ଅନୁସରଣ କରିବାର ଦେଖାଯାଏ । ନୈଷଧକାରଙ୍କ ଭାଷାରେ,

"ତତ୍ରିଷିପନ୍ତମ୍ବକମମୂତ୍‌ଆସୁକମଥାରୁଣମ୍
ବୁବୁଧୁର୍ବିବୁଧା କ୍ରୋଧ ମକ୍ରୋଶକ୍ରୋଶଘୋଷବମ୍
ଯସୁପାସନ୍ତୋ ଦନ୍ତୌଷ୍ଠସନ୍ତାସ୍ରକ୍ ଶିଷ୍ୟଚକ୍ଷୁଷଃ ।
ଭ୍ରୂକୁଟୀ ଫଣିନନାଦନଭନଃଶ୍ୱାସଫୁତ୍‌କୃତାଃ ।
ବୈବର୍ଣ୍ୟଂ ଯଃ କବେତ୍ତୁ ଛୈ ରଞ୍ଜନଂଜନଯନ୍ନପି
ସ୍ୱତେ ସବେଦନ୍‌ସ୍ୱାଚ୍ଛାଦ ପ୍ରଜ୍ୱଳନ୍ନପି ଯସ୍ତ୍ରମଃ ।"

ବାଲୁକେଶ୍ୱର ମହାପାତ୍ରଙ୍କର ଓଡ଼ିଆ ଅନୁବାଦରେ—

"କାମପାଶେ ଦେବେ କ୍ରୋଧକୁ ଦେଖିଲେ
କମ୍ପିତ ଅରୁଣ କାନ୍ତି,
ଆକ୍ରୋଶେ ଡ଼ାକଇ ଯାହା ପାଏ ତାହା
ଫିଙ୍ଗିଦିଏ ଚଡ଼କନ୍ତ ।
ରକ୍ତାକ୍ଷ କ୍ରୋଧର ଅନୁଗେ ଅଧର-
ମୂକଢ଼ ରୁଧିର କାଟି ।
ଭ୍ରୂକୁଟି-ଫଣିମ- ଫୁତ୍କାର ସଦୃଶ
ନିଃଶ୍ୱାସ ବହନ୍ତି ଗୁଡ଼ି ।

ମଦନେ ଦୁର୍ଭେଦ୍ୟ ଦୁର୍ବାସା ହୃଦୟ-
ଦୁର୍ଗ ଅବଲମ୍ବୀ କ୍ରୋଧ,
'ଛନ୍ଦଇ ସନାଥ ଜନେ କରିବାକୁ
ଅନାୟାସେ ବିଦଗଧ ।
ଅଧିକ କୃତ୍ରିମ ଆଣିଦିଏ ଏହୁ
ରାଗେ ରଞ୍ଜି ଅପଘନ,
ଅନ୍ତ ଧାପେ ତମ ଜନମାଇ କରେ
ସର୍ବେନ୍ଦ୍ରିୟ ଆବରଣ ।"

କବିବର ରାଧାନାଥ ନୈଷଧକାରଙ୍କ ଭାବନାଦ୍ୱାରା ପ୍ରଭାବିତ ହୋଇଥିଲେହେଁ ସ୍ୱକୀୟ ଚିନ୍ତାଶକ୍ତି ବଳରେ ଏହି ବର୍ଣ୍ଣନାକୁ ଅତ୍ୟନ୍ତ ଆକର୍ଷଣୀୟ କରିଅଛନ୍ତି ।

"ଆକ୍ରୋଶେ ଗରଜି କ୍ରୋଧ ଆସେ କାମପଛେ
ରକ୍ତଚକ୍ଷୁ ସତେ କି ସେ ଦହିବ ଜଗତ,
ବଜ୍ରର ଔରସେ; ବାତ୍ୟାଗର୍ଭେ ଜାତହୋଇ
ବାଡ଼ବାର ସ୍ତନ୍ୟେ ବଢିଥିଲା ଯେ ସାଗରେ
ଭୂକମ୍ପ-ଦୋଳାରେ ସୁଖେ ଦୋହଲି ଶୈଶବେ
ମହାଭୟଙ୍କର ବପୁ, ରକ୍ତିମା ଜନ୍ମାଇ
ଉପୁଜାଏ ବିରକ୍ତି କି, ବହ୍ନିଶିଖା ଜଳି
ଉପୁଜାଏ ତମଃ ଜ୍ଞାନ-ବିବେକ ବିଲୋପୀ
ସହଚର ରୂପେ ତାର ଆସଇ ସଙ୍ଗତେ
'ହତ୍ୟା' କରବାଳ ହାତେ, ରକ୍ତଲିପ୍ତ ବାସେ,
ତମ୍ଭ ପ୍ରାୟେ ଫଁ ଫଁ ସ୍ୱନେ ନିଶ୍ୱାସି ସଘନେ
ଆସୁଛନ୍ତି ପରିଜନେ, ବହଇ ଅଧରୁ
ଲହୁଧାର, ନିଜ ଦନ୍ତେ ନିଜକୁ କାମୋଡ଼ି,
କାଳଭୁଜଙ୍ଗିନୀ ପ୍ରାୟେ ଭ୍ରୂକୁଟି ଲଲାଟେ,

ଶୃଙ୍ଗହୀନ ହୋଇହୁଢା ଏକେକୁ ଆରକେ
ବାଡ଼ନେ ଉଦ୍ୟତ, ଯେହ୍ନେ ସବୁସାଧେଣୁନା
କଥାକେ କଥାକେ ଥୋକେ ଯାଉଛନ୍ତି ଋଷି
ଘସ ବହ୍ନି ଯୋଗେ ଯଥା, କଥାକେ କଥାକେ
ବାଡ଼ଆ ବାଢ଼େଇ ହୋଇ ମରନ୍ତ୍ରି ପାମରେ ।"

କବିବର ରାଧାନାଥ ଏଠାରେ ହତ୍ୟାକୁ କ୍ରୋଧର ସହଚର ରୂପେ ବର୍ଣ୍ଣନା କରିଅଛନ୍ତି । ମାଇକେଲ୍ ମଧୁସୂଦନ ଦତ୍ତ ତାଙ୍କ କାବ୍ୟରେ କ୍ରୋଧ ଓ ହତ୍ୟାକୁ ଯେପରି ଏକତ୍ର ଭାବରେ ବର୍ଣ୍ଣନା କରିଛନ୍ତି, ରାଧାନାଥ ସେହି ଚିନ୍ତା ଅନୁସରଣ କରିଥିବାର ମନେହୁଏ ।

କଳିର ଅନୁଚର ଭାବରେ ଯେଉଁମାନେ ଆସିଅଛନ୍ତି ସେମାନଙ୍କ ବର୍ଣ୍ଣନାରେ କବି ଏହିପରି ଭାବରେ ନୈଷଧକାର ଓ ଅନ୍ୟକବିମାନଙ୍କ ଦ୍ୱାରା ପ୍ରଭାବିତ ହୋଇଥିବାର ଦେଖାଯାଏ । କବି ଅନ୍ୟମାନଙ୍କ ଦ୍ୱାରା ପ୍ରଭାବିତ ହୋଇ ଥିଲେହେଁ ବର୍ଣ୍ଣନା ଭଙ୍ଗୀରେ କବିଙ୍କର ନିଜସ୍ୱ ଚିନ୍ତାଧାରା ବହୁଭାବରେ ପ୍ରକାଶ ଲାଭ କରିଅଛି ।

କଳି ତାର ଦଳବଳ ସହ ଭାରତ ଭୂମିରେ ପ୍ରବେଶ କରିବାର ଦେଖି ଯୁଧିଷ୍ଠିରଙ୍କ ହୃଦୟରେ ବ୍ୟଥା ଜାତ ହୋଇଅଛି । କଳିର ଆଗମନ ଫଳରେ ଭାରତବର୍ଷରୁ ସଦ୍‌ଗୁଣ ବିଦାୟ ନେଇ ଯାଇଅଛି । ଯେଉଁ ଭାରତଭୂମି ବ୍ରାହ୍ମଣ ଏବଂ କ୍ଷତ୍ରିୟଙ୍କ ଯୋଗୁଁ ଜଗତରେ ଧନ୍ୟ। ସେଥିରେ କଳିର ପ୍ରବେଶ ହେତୁ ମନ୍ଦଫଳ ଘଟିବା ବିଷୟ ଯୁଧିଷ୍ଠିର କଳ୍ପନା କରିପାରିଲେ ନାହିଁ । ତେଣୁ ଅଗ୍ନିଦେବ ଯୁଧିଷ୍ଠିରଙ୍କୁ ବୁଝାଇଦେଲେ ଯେ, ବ୍ରାହ୍ମଣ ଏବଂ କ୍ଷତ୍ରିୟ-ମାନଙ୍କ ହୃଦୟରେ ହିଁ କଳି ପ୍ରବେଶ କରିବ । ସେମାନଙ୍କ ଦୋଷରୁ ଭାରତ ତାର ବୈଶିଷ୍ଟ୍ୟ ହରାଇବ । ଭାରତର ପୁଣ୍ୟ ବର୍ଷ ପାପର ଭଣ୍ଡାରରେ ପରିଣତ ହେବ । ସାଧୁଜନମାନେ ଆଉ ଭାରତ ବର୍ଷରେ ସ୍ଥାନ ପାଇପାରିବେ ନାହିଁ । ଭାରତର ଏହି ଦୁରବସ୍ଥା ବର୍ଣ୍ଣନା

କରିବା ସମୟରେ ମନେହୁଏ, ସତେ ଯେପରି କବିଙ୍କର ଅନ୍ତର ଶତଧା ବିଦୀର୍ଣ୍ଣ ହୋଇଅଛି । ଭାରତର ଏହି ଦୁରବସ୍ଥା ବର୍ଣ୍ଣନା କରିବା ସମୟରେ କବିଙ୍କ ଉପରେ ଇଂରେଜ କବି ବାଇରନ୍ ଓ ବଙ୍ଗୀୟ କବି ହେମଚନ୍ଦ୍ରଙ୍କର ପ୍ରଭାବ ପଡ଼ିଅଛି ବୋଲି ଜଣାଯାଇ-ପାରେ ।

ପଞ୍ଚମ ସର୍ଗର ଆରମ୍ଭରେ କବି ମୟୂରଭଞ୍ଜାଧୀଶ ରାମଚନ୍ଦ୍ର ଭଞ୍ଜଦେବଙ୍କର ପ୍ରଶସ୍ତି ଗାନ କରିଅଛନ୍ତି । ମହାକାବ୍ୟର କଳେବର ମଧ୍ୟରେ ରାଜପ୍ରଶସ୍ତି ଗାନର ଅବକାଶ ନଥିବା ସତ୍ତ୍ୱେ କବିବର ରାଧାନାଥ ରାଜପ୍ରଶସ୍ତି ଗାନ କରିଥିବାରୁ ସମାଲୋଚକମାନଙ୍କ ଦ୍ୱାରା ନିନ୍ଦିତ ହୋଇଅଛନ୍ତି । କବିବର ରାଧାନାଥ ମୟୂରଭଞ୍ଜାଧୀଶଙ୍କ ଗୁଣଗାନ କରିବାର ଯଥେଷ୍ଟ କାରଣ ରହିଛି । ତାଙ୍କର ବିଦ୍ୟୋତ୍ସାହୀ ଗୁଣ ଉତ୍କଳରେ ପ୍ରାଧାନ୍ୟ ଲାଭ କରିଥିଲା । ବିଶେଷତଃ କବିବର ରାଧାନାଥ ତାଙ୍କଠାରୁ ଯେଉଁ ପ୍ରକାର ପ୍ରେରଣା ଲାଭ କରିଥିଲେ ତାହା ନିତାନ୍ତ ଉଲ୍ଲେଖଯୋଗ୍ୟ ।

ମୟୂରଭଞ୍ଜରୁ ପ୍ରକାଶିତ ଉତ୍କଳ ପ୍ରଭା ମାସିକ ପତ୍ରିକାରେ ରାଧାନାଥଙ୍କର ଚିଲିକା କାବ୍ୟ ପ୍ରକାଶ ପାଇଥିଲା । ଚିଲିକା କାବ୍ୟ ନିମିତ୍ତ କବି ଏକଶତ ଟଙ୍କା ପୁରସ୍କାର ମଧ୍ୟ ପାଇଥିଲେ । ମହାଯାତ୍ରାର ପଞ୍ଚମ ସର୍ଗ ମଧ୍ୟ ସେହି ପତ୍ରିକାରେ ପ୍ରକାଶ ପାଇଥିଲା । ମୟୂରଭଞ୍ଜ ମହାରାଜାଙ୍କର ରାଧାନାଥଙ୍କ ପ୍ରତି ବିଶେଷ ସହାନୁଭୂତି ଥିଲା । କବିବର ରାଧାନାଥ ମୟୂରଭଞ୍ଜ ରାଜାଙ୍କର ଗୁଣଗାନ କରିବାରେ ମଧ୍ୟ ସେସମୟର ଗୁରୁତ୍ୱ ରହିଛି । କବିବର ରାଧାନାଥ ପାର୍ବତୀ କାବ୍ୟ ରଚନା କରିବା ପରେ ଏ ଦେଶବାସୀଙ୍କ ଦ୍ୱାରା ଯେପରି ଭାବରେ ନିନ୍ଦିତ ହୋଇଥିଲେ ତାହା ସୁବିଦିତ । ଏକାଧିକ କାରଣ ବଶତଃ କବି ଯେତେବେଳେ ବହୁ ବ୍ୟକ୍ତିଙ୍କ ଆକ୍ଷେପୋକ୍ତିରେ ଜର୍ଜରିତ ହୋଇପଡ଼ିଥିଲେ ସେତିକିବେଳେ ଚିଲିକା ରଚନାରେ ସେ ମନ ଦେଇଥିଲେ । ସମସ୍ତଙ୍କଠାରୁ ନିନ୍ଦା ପାଇବା ସମୟରେ ଯଦି

କୌଣସି ଏକ ବ୍ୟକ୍ତି ଜଣକୁ ପ୍ରଶଂସାକରେ ବା ସମବେଦନା ପ୍ରକାଶ କରେ ତେବେ ପ୍ରଶଂସାକାଙ୍କ୍ଷୀ ପ୍ରତି ସେ ବ୍ୟକ୍ତିର ଅନ୍ତରରେ କୃତଜ୍ଞତା ଜାତ ହେବା ନିତାନ୍ତ ସ୍ୱାଭାବିକ । ଏଠାରେ ମୟୂରଭଞ୍ଜା-ଧୀଶଙ୍କ ପ୍ରତି ରାଧାନାଥଙ୍କର ଅନ୍ତରରେ କୃତଜ୍ଞତା ଜାତ ହେବାର ଯଥେଷ୍ଟ କାରଣ ରହିଛି । କବିଙ୍କ ଲେଖାମାନରେ ମଧ୍ୟ ଏହିଭାବ ପ୍ରକାଶ ପାଇଅଛି ।

"ତୁମର ଆଦେଶ, ବୀର, ଏ ମହାଗୀତିକା
ଗାଇବା ଆଶୟେ ଏବେ ଧରେଛି ମୁଁ କରେ;
ଚିରମୂକ ବୀଣାମୋର ସିକ୍ତ ନେତ୍ରଜଳେ,
ଆଦିଷ୍ଟ ଏଗୀତ ଆସୁ ହବ୍ୟ ଅବଧାନେ ।"

କବିବର ରାଧାନାଥଙ୍କର ବୀଣା କେବେହେଲେ ଚିରମୂକ ହୋଇପାରେ ? ତଥାପି ଭାବପ୍ରବଣ କବି ତାଙ୍କର ବୀଣାକୁ ଚିରମୂକ ବୋଲି ଲେଖିଛନ୍ତି । କେବଳ ସେତିକି ନୁହେଁ, ତାହା ନେତ୍ରଜଳରେ ସିକ୍ତ । ଏହି ସମୟରେ କବିବର ରାଧାନାଥଙ୍କର ବୀଣା ବା ଲେଖନୀ ଲୋତକ ଜଳରେ ସିକ୍ତ ହୋଇଥିଲା ବୋଲି କହିଲେ ଅନ୍ୟଥା ହେବ ନାହିଁ । ଏହି ଦୃଷ୍ଟିରୁ କବିବର ରାଧାନାଥ ଯେଉଁଭାବରେ ମୟୂରଭଞ୍ଜ ମହାରାଜାଙ୍କର ଗୁଣଗାନ କରିଅଛନ୍ତି ତାହା ତାଙ୍କର ମାନସିକ ଅବସ୍ଥାର ଏକ ପ୍ରତିଲିପି । ପ୍ରାଚୀନ ଆଲଙ୍କାରିକମାନଙ୍କ ମତାନୁସାରେ ମହାକାବ୍ୟର କଳେବର ମଧ୍ୟରେ ରାଜପ୍ରଶସ୍ତି ଗାନ ନହିଁଇ ଥିଲେହେଁ କବିବର ରାଧାନାଥ ପ୍ରାଚୀନତାର ଆବରଣକୁ ଛିନ୍ନ କରି ନୂତନ ପରମ୍ପରାର ଆହ୍ୱାନ କରିଅଛନ୍ତି । ମହାକାବ୍ୟର କଳେବର ମଧ୍ୟରେ ଏହି ନୂତନତ୍ୱକୁ ନିନ୍ଦିତ କରିବାର ମଧ୍ୟ କୌଣସି କାରଣ ନାହିଁ ।

ବ୍ରାହ୍ମଣ ଓ କ୍ଷତ୍ରିୟମାନଙ୍କର ପତନ ଯୋଗୁଁ ଭାରତର ମର୍ଯ୍ୟାଦା କ୍ଷୁଣ୍ଣ ହେବା ବିଷୟ ଅଗ୍ନିଦେବଙ୍କଠାରୁ ଶ୍ରବଣ କରି ଯୁଧିଷ୍ଠିର ବିଷଣ୍ଣ ହୋଇପଡ଼ିଲେ । ଦେଶର ଏହି ଅବସ୍ଥାକୁ

ସୁଧାରିବା ନିମନ୍ତେ କୌଣସି ଶକ୍ତିର ଉଦ୍‌ଭବ ହେବ କି ନା,
ସେ ବିଷୟରେ ଯୁଧିଷ୍ଠିରଙ୍କ ପ୍ରଶ୍ନର ଉତ୍ତରରେ ଅଗ୍ନିଦେବ କେତେକ
ଐତିହାସିକ ଘଟଣା ବର୍ଣ୍ଣନା କଲେ । ଏହି ପ୍ରସଙ୍ଗରେ ବୁଦ୍ଧଦେବ
ଓ ବୌଦ୍ଧଧର୍ମ ବିଷୟ ବର୍ଣ୍ଣିତ ହୋଇଅଛି । ବୌଦ୍ଧଧର୍ମ ଭାରତରେ କିଛି-
କାଳ ପ୍ରତିଷ୍ଠାଲାଭ କରିବା ପରେ ପୁଣି ବ୍ରାହ୍ମଣମାନଙ୍କ ଚକ୍ରାନ୍ତ ଫଳରେ
ତାହା ଲୋପ ପାଇବ । ଭବିଷ୍ୟତ ଆର୍ଯ୍ୟମାନଙ୍କ କୁକର୍ମର ପରିଣାମ ସ୍ୱରୂପ
ଭାରତ ତାର ସ୍ୱାଧୀନତା ହରାଇ ଯବନମାନଙ୍କ ଦ୍ୱାରା ଅଧିକୃତ ହେବ ।

ଷଷ୍ଠ ସର୍ଗରେ ଆରମ୍ଭରେ କବି ବାମଣ୍ଡାରାଜ ସୁଚଳଦେବଙ୍କର
ପ୍ରଶସ୍ତି ଅନେକ ସ୍ଥଳରେ ଗାନ କରିଅଛନ୍ତି । ସୁଚଳଦେବଙ୍କ ସହିତ କବିଙ୍କର
ସଦ୍‌ଭାବ ସୁବିଦିତ । କବିବର ରାଧାନାଥ ସୁଚଳଦେବଙ୍କର ପ୍ରଶସ୍ତି ଅନେକ
ସ୍ଥାନରେ ଗାନ କରିଅଛନ୍ତି । କବିବର ରାଧାନାଥ ଯେତେବେଳେ ବାମଣ୍ଡା
ଭ୍ରମଣରେ ଯାଇଥିଲେ ସେତେବେଳେ ତାଙ୍କୁ ଯେଉଁ ସମ୍ବର୍ଦ୍ଧନା ଜ୍ଞାପନ
କରାଯାଇଥିଲା ତାହା କବିବର ରାଧାନାଥଙ୍କ ଜୀବନର ଏକ ଅନନ୍ୟ ସାଧାରଣ
ଘଟଣା । ବାମଣ୍ଡା ରାଜସଭାରେ ଉପସ୍ଥିତ ହୋଇ କବି ପାଞ୍ଚପଦ କବିତା
ରଚନା କରି ପାଞ୍ଚଶତ ଟଙ୍କା ପୁରସ୍କାର ପାଇଥିଲେ । କବିବର ରାଧାନାଥ
ତାଙ୍କର "ବାମଣ୍ଡା" ଶୀର୍ଷକ ଭ୍ରମଣ ବୃତ୍ତାନ୍ତରେ ରାଜା ବାସୁଦେବ ସୁଚଳ-
ଦେବଙ୍କର ଆତିଥ୍ୟ ଏବଂ ବ୍ୟକ୍ତିତ୍ୱରେ କିପରି ମୁଗ୍‌ଧ ହୋଇଥିଲେ ସେ
ବିଷୟ ଲେଖିଅଛନ୍ତି । କବି ଯେତେବେଳେ 'ଦେଖିଛନ୍ତି ଯେ,
ଦେଶବାସୀ ତାଙ୍କର ଗୁଣରେ ମୁଗ୍‌ଧ ନହୋଇ ତାଙ୍କର ନିନ୍ଦାରେ
ତତ୍ପର ହୋଇପଡ଼ିଛନ୍ତି, ସେତେବେଳେ ସେ ତାଙ୍କର ଗୁଣମୁଗ୍‌ଧ
ଆଉ ଜଣେ ରାଜାଙ୍କ ବିଷୟ ବର୍ଣ୍ଣନା କରିବା ନିମନ୍ତେ ମହାଯାତ୍ରାର
କଳେବର ମଧ୍ୟରେ ସ୍ଥାନ ନିରୂପଣ କରିଅଛନ୍ତି । କାବ୍ୟଗତ ତ୍ରୁଟି
ଯାହା ହେଉନା କାହିଁକି, କବି ମହାଯାତ୍ରାର କଳେବର ମଧ୍ୟରେ
ଏହି ଦୁଇଜଣ ରାଜାଙ୍କ ବିଷୟ ବର୍ଣ୍ଣନା କରି ସେ ସମୟରେ
ତାଙ୍କର ମାନସିକ ଅବସ୍ଥାର ସୂଚନା ପ୍ରଦାନ କରିବା ସଙ୍ଗେ ସଙ୍ଗେ
ସମୟର ଗୁରୁତ୍ୱ ପ୍ରକାଶ କରିଅଛନ୍ତି ।

ଭବିଷ୍ୟତରେ ଭାରତର ଅବସ୍ଥା କଣ ହେବ ସେ ବିଷୟ ଜାଣିବା ନିମିତ୍ତ ଯୁଧିଷ୍ଠିରଙ୍କ ଅନୁରୋଧରେ ଅଗ୍ନିଦେବ ଉପାୟ ସ୍ଥିର କଲେ । ଅଗ୍ନିଦେବଙ୍କ ଇଚ୍ଛାକ୍ରମେ ସ୍ୱାହାଦେବୀ ସହ୍ୟଗିରିରେ ଆବିର୍ଭୂତା ହୋଇ ଅର୍ଘ୍ୟ ପାତ୍ର ପ୍ରଦାନ କଲେ । ଅଗ୍ନିଦେବ ସେଥିରେ ଦିବ୍ୟାଞ୍ଜନ ପ୍ରସ୍ତୁତ କରି ଯୁଧିଷ୍ଠିରଙ୍କ ଚକ୍ଷୁରେ ଲଗାଇଦେଲେ ।

ଯୁଧିଷ୍ଠିରଙ୍କ ଚକ୍ଷୁରେ ଅଗ୍ନିଦେବ ଦିବ୍ୟାଞ୍ଜନ ଲଗାଇବାର ବର୍ଣ୍ଣନା ଇଂରେଜ କବି ମିଲ୍‌ଟନ୍‌ଙ୍କର ପାରାଡାଇଜ୍ ଲଷ୍ଟ୍ କାବ୍ୟର ବର୍ଣ୍ଣନାର ଅନୁରୂପ ହୋଇଛି । ପାରାଡାଇଜ୍ ଲଷ୍ଟରେ ଦେବଦୂତ ମାଇକେଲ ଆଡାମ୍‌ଙ୍କୁ ପର୍ବତ ଶିଖରରେ ବସାଇ ତାଙ୍କ ଚକ୍ଷୁରେ ଅଞ୍ଜନ ଲଗାଇ ଦେଇଥିଲେ । ମିଲ୍‌ଟନ୍‌ଙ୍କ କାବ୍ୟରେ ଅଛି,

"Michael from Adam's eyes
the film removed
Which that false fruit that
promised clearer sight
Had bred; then purged with
euphrasy and rue
The visual, nerve, for he had
much to see,
And from the well of life
three drops instilled,
So deep the power of these
ingredients pierced,
Even to the inmost seat of
mental sight,
That Adam, now enforced
to close his eyes,
Sunk down, and all his spirits
became intranced."

ଈଶ୍ୱରଙ୍କ ଧ୍ୟାନାର୍ଥ ମିଲ୍‌ଟନ୍‌ଙ୍କ ବର୍ଣ୍ଣନାର ଅନୁରୂପ ବର୍ଣ୍ଣନା ତାଙ୍କ କାବ୍ୟରେ କରିଥିଲେହେଁ ଭାରତୀୟ ପୁରାଣ ପରମ୍ପରା ଅନୁସାରେ ମହତ୍ତ୍ୱ ପ୍ରଖ୍ୟାପନ କରିଅଛନ୍ତି । କବି ଅତ୍ୟନ୍ତ ସତର୍କତାର ସହିତ ମହାଭାରତ ବର୍ଣ୍ଣିତ ସଞ୍ଜୟଙ୍କ ଚକ୍ଷୁରେ ଲଗାଯାଇଥିବା ଅଞ୍ଜନ ସହିତ ଏହି ଅଞ୍ଜନର ସାମ୍ୟ ପ୍ରଦର୍ଶନ କରିଅଛନ୍ତି । ପ୍ରକୃତ ପକ୍ଷରେ ଦେଖିଲେ ମହାଭାରତ ବର୍ଣ୍ଣିତ ଅଞ୍ଜନ ସହିତ ଅଗ୍ନିଦେବଙ୍କର ଏହି ଅଞ୍ଜନ ସମାନ ନୁହେଁ । ସଞ୍ଜୟଙ୍କ ଚକ୍ଷୁରେ ଯେଉଁ ଅଞ୍ଜନ ଲଗାଯାଇ-ଥିଲା ତାହା କେବଳ ଦୂରବର୍ତ୍ତୀ ଦୃଶ୍ୟ ଦେଖିବା ନିମିତ୍ତ ଉଦ୍ଦିଷ୍ଟ । ମାତ୍ର ଏହି ଅଞ୍ଜନ କେବଳ ଦୂରବର୍ତ୍ତୀ ଦୃଶ୍ୟ ଦେଖିବା ନିମିତ୍ତ ଉଦ୍ଦିଷ୍ଟ ନୁହେଁ, ଏହା ଭବିଷ୍ୟତର ଦୃଶ୍ୟ ଦେଖିବା ନିମିତ୍ତ ଉଦ୍ଦିଷ୍ଟ । ମିଲ୍‌ଟନ୍‌ଙ୍କ କାବ୍ୟରେ ଆଡ଼ାମ୍ ଚକ୍ଷୁ ଫିଟାଇବା ମାତ୍ରେ ଈପ୍ସିତ ଦୃଶ୍ୟ ଦେଖିବା ପରି ଯୁଧିଷ୍ଠିର ଅଗ୍ନିଙ୍କ ଆଦେଶ ଅନୁସାରେ ଈପ୍ସିତ ଦୃଶ୍ୟ ଦେଖିବାକୁ ପାଇଛନ୍ତି । ଯୁଧିଷ୍ଠିର ହଠାତ୍ ଦେଖିବାକୁ ପାଇଛନ୍ତି ଦିଲ୍ଲୀ ନଗରର ଦୃଶ୍ୟ । ଏହି ଦୃଶ୍ୟ ବର୍ଣ୍ଣନା କବିଙ୍କ ଲେଖନୀରେ ଅତ୍ୟନ୍ତ ଚମତ୍କାର ରୂପଧାରଣ କରିଅଛି ।

"ସ୍ଫୁରିଲା ସହସା ଅଗ୍ରେ ଶତଗୃହ-ଗୃହ-<br>ତୋରଣ-ଶୋଭନା ଦିଲ୍ଲୀ ପତାକାମାଳିନୀ,

ମନୋମୋହନକାରୀ ସୁଖ ସ୍ୱପନ ଯେପରି,<br>ତରୁଣ-ଅରୁଣ- ରାଗେ ଦିଶି ଜଳ ଜଳ

କାଞ୍ଚନ-କଳସ ତୁଙ୍ଗ-ଦେବାଳୟ-ଚୂଡ଼େ<br>ଶାରଦସନ୍ଧ୍ୟାଭ୍ରପୁଞ୍ଜ ପ୍ରାୟେ ମହୋଜ୍ଜ୍ୱଳ;

ସୁନ୍ଦର ଗୋପୁର ବୃନ୍ଦ ଜଡ଼ିତ ରତନେ<br>ନାନାବର୍ଣ୍ଣ ଶୋଭଶ୍ରେଣୀ ଶ୍ରେଣୀ ପ୍ରମ୍ଭାବଳୀ

ଅଳିନ୍ଦେ, ଦ୍ୱିରଦ-ରଦ-ଗବାକ୍ଷ-ଶୋଭିତ<br>ସ୍ଫଟିକ-ଜଟିଳ-ସୌଧେ ମନୋହର ଅତି

ରତ୍ନଜାଳେ ସମୁଜ୍ଜ୍ୱଳ, ଝପଣି ଖାଥିକା,
ଅଗସ୍ତ ଶୋଷଣେ ଶୁଷ୍କ ରତ୍ନାକର ଛବି,
ଅବିରତ ମୋତିପ୍ରଭ ଶୀକର ବରଷି
ପ୍ରଧାନ ପାଟର ପୂତ ପ୍ରପାତ ପ୍ରତିମ
ଉତ୍ସମାନେ ବେଢ଼ା ଇନ୍ଦ୍ରମାଳ କ୍ରୀଡ଼ାଗିରି,
ନଭସ୍ପର୍ଶୀ କାର୍ତ୍ତିସ୍ତମ୍ଭ, କୈଳାଶ ସଙ୍କାଶ
ପ୍ରାକାର, ସୁରମ୍ୟ ତରୁଲତା-ଗୃହାରାମେ,
ମଞ୍ଜୁଳ ପ୍ରବାଳେ, କଳ-ସୁମନ-ସମ୍ଭାରେ,
ଅଦୂରେ କାଳନ୍ଦୀ ସ୍ରୋତେ ଧାଏଁ ଖରବେଗେ
ଘ୍ଲାନାଡଷ୍ଟ, ରଙ୍ଗେ ତୋଳ ଧବଳ ପକ୍ଷିକା
ହଂସାବଳୀ-ଅଳଙ୍କୃତ ଚନ୍ଦ୍ରେ ଉପୁଜାଇ।"

ଦିଲ୍ଲୀ ନଗରୀର ବର୍ଣ୍ଣନା ପାଠକଲେ କବିଙ୍କର ବର୍ଣ୍ଣନା ଶୈଳୀର ଆଭିଜାତ୍ୟ ପ୍ରମାଣିତ ହୋଇଥାଏ । ଏହି ବର୍ଣ୍ଣନାକୁ ପାଠକରି ଆଲୋଚକମାନେ ମତପ୍ରଦାନ କରିଅଛନ୍ତି ଯେ, ଏଥିପାଇଁ କବିବର ରାଧାନାଥଙ୍କ ଉପରେ ବହୁ ପ୍ରାଚ୍ୟ ଓ ପାଶ୍ଚାତ୍ୟ କବିଙ୍କର ପ୍ରଭାବ ପଡ଼ିଅଛି । ବିଶେଷତଃ ନୈଷଧର କୁଣ୍ଡିନଗର ବର୍ଣ୍ଣନାର ପ୍ରଭାବ ଏଥିରେ ଉପଲବ୍ଧ ହୋଇଥାଏ । ମଧ୍ୟଯୁଗୀୟ ଓଡ଼ିଆ କାବ୍ୟ ସାହିତ୍ୟରେ ନଗର ବର୍ଣ୍ଣନା ଏକ ବିଶିଷ୍ଟ ବିଭବ । କବିବର ରାଧାନାଥ ସଂସ୍କୃତ, ବଙ୍ଗଳା, ଓଡ଼ିଆ ଏବଂ ଇଂରେଜି କାବ୍ୟସମୂହରେ ଥିବା ନଗର ବର୍ଣ୍ଣନା ଦ୍ୱାରା ଯେ ବିଶେଷ ଭାବରେ ଆକୃଷ୍ଟ ହୋଇଅଛନ୍ତି, କହିବା ବାହୁଲ୍ୟ ମାତ୍ର । ଦିଲ୍ଲୀ ନଗରୀର ବର୍ଣ୍ଣନା ପରେ ପରେ କବି ସୈନ୍ୟ ସମାବେଶ ବର୍ଣ୍ଣନା କରିଛନ୍ତି । ଏହା ଅତ୍ୟନ୍ତ ଚମତ୍କାର ରୂପ ଧାରଣ କରିଅଛି ବୋଲି କୁହାଯାଇ ପାରେ । ପୃଥ୍ୱୀରାଜଙ୍କ ଆଦେଶ ଅନୁସାରେ ଭାରତର ବିଭିନ୍ନ ସ୍ଥାନରୁ ବୀରମାନେ ଆସି ପ୍ରାନ୍ତରରେ ସମବେତ ହୋଇଛନ୍ତି । ଏହି ପ୍ରସଙ୍ଗରେ କବି ଆଜମିର, ଗୁର୍ଜ୍ଜର, ସିନ୍ଧୁ, ରାଜସ୍ଥାନ, ବିରାଟ, ଶୂରସେନ, ମାଳବ, ବତ୍ସ, ଅବଧ, ମିଥିଳା,

ମିର୍ଜାପୁର, ଅଙ୍ଗ, ରେୱା, ବଙ୍ଗ, ପୌଣ୍ଡ୍ର, ଉତ୍କଳ, ନେପାଳ, ଭୋଜପୁର, ବିନ୍ଧ୍ୟାଞ୍ଚଳ, ଉଜ୍ଜୟିନୀ, ମାଣ୍ଡୁଭୂମି, ବିଦିଶା ପ୍ରଭୃତି ଭାରତର ବିଭିନ୍ନ ସ୍ଥାନର ନାମୋଲ୍ଲେଖ କରିଅଛନ୍ତି ।

ସପ୍ତମ ସର୍ଗରେ, ସୈନ୍ୟ ସମାବେଶ ସମ୍ବାଦ ପାଇ ପୃଥ୍ୱୀରାଜ ନାଟଶାଳରୁ ବହିର୍ଭୂତ ହେବା ବିଷୟ ବର୍ଣ୍ଣିତ ହୋଇଅଛି । ପୃଥ୍ୱୀରାଜ, ଅମର୍ଷୀ ଏବଂ ସଂଯୁକ୍ତା ଅଶ୍ୱାରୋହଣ କରି ସମବେତ ସୈନ୍ୟମାନଙ୍କ ଅଭିମୁଖରେ ଗତି କରିବାର ବର୍ଣ୍ଣନା କବିଙ୍କର କଳ୍ପନାରେ ଅତ୍ୟନ୍ତ ଜୀବନ୍ତ ହୋଇଅଛି । ଅମର୍ଷୀ ପୃଥ୍ୱୀରାଜଙ୍କର ସେନାପତି ଭାବରେ ଯୁଦ୍ଧର ଦାୟିତ୍ୱ ଗ୍ରହଣ କରିଅଛନ୍ତି । କବିବର ରାଧାନାଥ ତାଙ୍କୁ ଅମର୍ଷୀ ନାମରେ ନାମିତ କରିଅଛନ୍ତି ଟଡ୍‌ଙ୍କର ଆନାଲସ୍ ଅଫ୍ ରାଜସ୍ଥାନରେ ତାଙ୍କର ନାମ ସମର୍ଷୀ । ତାଙ୍କର ରାଜଧାନୀ ଚିତୋର ।

ସମବେତ ସୈନ୍ୟମାନେ ଯବନ ସହିତ ସନ୍ଧିକରିବା ପ୍ରସ୍ତାବ କରିବାରୁ ପୃଥ୍ୱୀରାଜ ବିଷଣ୍ଣ ହେଲେ ଏବଂ ଅମର୍ଷୀ ସେମାନଙ୍କର ପ୍ରସ୍ତାବକୁ ତିରସ୍କାର କରି ଯୁଦ୍ଧ ନିମିତ୍ତ ଅଗ୍ରସର ହେବାପାଇଁ ସେମାନଙ୍କୁ ଉଦ୍‌ବୋଧନ ବାଣୀ ଶୁଣାଇଲେ । କବିବର ରାଧାନାଥ ଏଠାରେ ଅମର୍ଷୀଙ୍କ ମୁଖରେ ଯେଉଁ ଭାଷା ଦେଇଛନ୍ତି ତାହା ତାଙ୍କର ଦେଶାତ୍ମ-ବୋଧର ଯଥାର୍ଥ ପରିଚୟ ଦେଇଥାଏ । କବିଙ୍କର ଏହି ଉଦ୍‌ବୋଧନ ବାଣୀ ବହୁ ଅଂଶରେ ନିଜସ୍ୱ ହେଲେ ହେଁ ଅନ୍ୟ କବିମାନଙ୍କର ପ୍ରଭାବକୁ ଅସ୍ୱୀକାର କରିହେବ ନାହିଁ । ବଙ୍ଗୀୟ କବି ହେମଚନ୍ଦ୍ରଙ୍କର ଭାରତ ସଙ୍ଗୀତ ଓ ବୃତ୍ରସଂହାର କାବ୍ୟରେ ଥିବା କେତେକ ଅଂଶ ସହିତ ଏହି ବର୍ଣ୍ଣନାର ସାମ୍ୟ ପରିଲକ୍ଷିତ ହୋଇଥାଏ । ବାଇରନ୍‌ଙ୍କର ଚାଇଲଡ୍ ହାରଲଡ୍‌ସ୍ ପିଲ୍‌ଗ୍ରିମେଜ୍‌ରେ ରୋମ୍ ଓ ଗ୍ରୀସ୍ ଦୁର୍ଭାଗ୍ୟଙ୍କ ପ୍ରତି ଆହ୍ୱାନ ମଧ୍ୟ କବିଙ୍କୁ କମ୍ ପରିମାଣରେ ପ୍ରଭାବିତ କରିନାହିଁ । ହେମଚନ୍ଦ୍ରଙ୍କ ଭାରତ ସଙ୍ଗୀତରୁ ଗୋଟିଏ ଉଦାହରଣ ଏଠାରେ ଦିଆ ଯାଇପାରେ,

"ଧିକ୍ ହିନ୍ଦୁକୁଳେ ! ବୀରଧର୍ମ ଭୁଲେ
ଆତ୍ମ ଅଭିମାନ ଡୁବାୟେ ସକଲେ

ବସ୍ତ୍ରାଛ ସର୍ମିସ୍ତା ଶତ୍ରୁ କରଛନ୍ତି
ସୋନାର ଭାରତ କରିଛେ ଗ୍ରାସ୍ତା ।

ସ୍ତାନୀ ବାଙ୍ଗ ସମ ବପ୍ନେ କୃତାଞ୍ଜଳି
ମସ୍ତକେ ଧରିଛେ ବୈରିପଦ ଧୂଳି
ହାଦେ ଦେଖ ହାୟ ମହା କୁତୂହଳି
ଭାରତ ନବାସୀ ଯତ କୁଳାଙ୍ଗାର ।"

ଅମର୍ଷୀ ହିନ୍ଦୁ ସୈନ୍ୟମାନଙ୍କୁ ଯେପରି ଭାବରେ ଉତ୍ତେଜିତ କରିଅଛନ୍ତି ତାହାର ଭାଷା ଅନେକାଂଶରେ ହେମଚନ୍ଦ୍ରଙ୍କ ଭାଷାର ଅନୁରୂପ । ବାଇରନ୍‌ଙ୍କ କାବ୍ୟରେ ରୋମ୍ ପ୍ରତି ଆହ୍ୱାନ କରି କବି ଲେଖିଛନ୍ତି,

"Oh Rome ! my country ! city
of the soul !
The orphans of the heart
must turn to thee,
Lone mother of dead empires !
and control
In their shut breasts
their petty misery.
What are our woes and
sufferance ? Come and see
The cypress, hear the owl, and
plod your way
O'er steps of broken thrones
and temples, ye !
Whose agonies are evils
of a day—
A world is at our feet
as fragile as our clay."

ବାଇରନ୍‌ଙ୍କ କାବ୍ୟର ସମଗ୍ର ବର୍ଣ୍ଣନା ପାଠ ନକଲେ କବିବର ରାଧାନାଥ କିପରି ଭାବରେ ତହିଁରୁ ଭାବ ଆହରଣ କରି ଅଛନ୍ତି ତାହା ଜାଣିବା ସହଜ ନୁହେଁ । କବିବର ରାଧାନାଥଙ୍କର ବହୁଶାସ୍ତ୍ରଦର୍ଶିତାର ଏହା ଏକ ବଳିଷ୍ଠ ପ୍ରମାଣ ।

ଯୁଦ୍ଧ ବର୍ଣ୍ଣନା ମଧ୍ୟ କବିଙ୍କର ଏକ ଅସାମାନ୍ୟ କୃତିତ୍ୱ । କବିଙ୍କର ବହୁଶାସ୍ତ୍ରଦର୍ଶିତା ଏଥିପାଇଁ ତାଙ୍କୁ ବିଶେଷ ଭାବରେ ସହାୟକ ହୋଇଅଛି ବୋଲି କୁହାଯାଇପାରେ । ଅମର୍ଷୀଙ୍କର ସଂଗ୍ରାମ କୌଶଳ କବିଙ୍କ ଲେଖନୀରେ ସାର୍ଥକ ରୂପ ଧାରଣ କରିଅଛି । ଯୁଦ୍ଧ କରିବା ଅବସ୍ଥାରେ ଅମର୍ଷୀ ନିଜର ଅଜ୍ଞାତସାରରେ ନିଜପକ୍ଷର ସୈନ୍ୟମାନଙ୍କଠାରୁ ବିଚ୍ଛିନ୍ନ ହୋଇ ଶତ୍ରୁପକ୍ଷର ବ୍ୟୂହ ମଧ୍ୟରେ ରହିଗଲେ । ତାଙ୍କର ଅଶ୍ୱ ଭୂପତିତ ହେଲା । ତଥାପି ସେ ଯୁଦ୍ଧରୁ ନିବୃତ୍ତ ହେଲେନାହିଁ । ଅମର୍ଷୀଙ୍କୁ ଶତ୍ରୁବ୍ୟୂହ ମଧ୍ୟରେ ଥିବାର ଦେଖି ତାଙ୍କର ସୈନ୍ୟମାନେ ଆସି ତାଙ୍କୁ ମୁକ୍ତକଲେ । ଯୁଦ୍ଧରେ ଯବନମାନେ ଆତଙ୍କିତ ହୋଇପଡ଼ିଲେ । ଯବନ ସେନାପତି ଶ୍ୱେତ ପତାକା ପ୍ରଦର୍ଶନ କଲେ । ଫଳରେ ଯୁଦ୍ଧ ସ୍ଥଗିତ ହେଲା । ଯବନ ଦୂତ ଆସି ପୃଥ୍ୱୀରାଜଙ୍କ ପଦ ନିକଟରେ ପତ୍ର ପ୍ରଦାନ କଲା । ଏହି ସମୟରେ ସୂର୍ଯ୍ୟଧ୍ୱଜଙ୍କ ଚକ୍ଷୁ ସମକ୍ଷରୁ ସମଗ୍ର ଦୃଶ୍ୟଟି ତିରୋହିତ ହୋଇଗଲା । ଏହିଠାରେ ହିଁ ମହାଯାତ୍ରାର ବର୍ଣ୍ଣନା ଅସମ୍ପୂର୍ଣ୍ଣ । ମହାଯାତ୍ରା ଯେବେ ସମ୍ପୂର୍ଣ୍ଣ ହୋଇଥାଆନ୍ତା ତେବେ ଓଡ଼ିଆ ସାହିତ୍ୟ ରାଜ୍ୟରେ ତାହା ଯେ କି ଗୌରବ ଲାଭ କରିଥାଆନ୍ତା, ତାହା କୁହାଯାଇ ନପାରେ ।

ମହାଯାତ୍ରା ବିଷୟରେ ଆଲୋଚନା କରି ପ୍ରିୟରଞ୍ଜନ ସେନ୍ ମତ ପ୍ରକାଶ କରିଅଛନ୍ତି,

"The novelty of Radhanath's Mahajatra was mainly due not so much to its historicity or its great and noteworthy attempt to relate the national epic of the Hindus, the Mahabharata, to

the land of Orissa, but to the new measure of blank verse which, like heady wine, appealed very strongly to the appreciative readers of poetry in Orissa." (୧)

ଅମିତ୍ରାକ୍ଷର ଛନ୍ଦରେ କାବ୍ୟ ରଚନା କରି କବିବର ରାଧାନାଥ ଯେଉଁ ଗୌରବର ଅଧିକାରୀ ହୋଇଅଛନ୍ତି ତାହା ସୁବିଦିତ । ଓଡ଼ିଆ ସାହିତ୍ୟରେ ଅମିତ୍ରାକ୍ଷର ଛନ୍ଦରେ କାବ୍ୟ ରଚନା କରିବାର ପ୍ରୟାସ ସର୍ବ ପ୍ରଥମେ କବିବର ରାଧାନାଥ କରିଥିଲେ । ଅମିତ୍ରାକ୍ଷର ଛନ୍ଦରେ ସଫଳତାର ସହିତ କାବ୍ୟ ରଚନା କରିବାରେ କବିବର ରାଧାନାଥ ଯେ ସର୍ବ ଶ୍ରେଷ୍ଠ କେବଳ ନୁହନ୍ତି ଜଣେ ପ୍ରଧାନ ସ୍ରଷ୍ଟା ଏ ବିଷୟ ଭକ୍ତକବି ମଧୁସୂଦନ ରାଓ ମହାଯାତ୍ରାର ମୁଖବନ୍ଧରେ ପ୍ରକାଶ କରିଅଛନ୍ତି । ଆଲୋଚକ ପ୍ରିୟରଞ୍ଜନ ସେନ ମଧ୍ୟ ଏହି ଉକ୍ତିକୁ ଯଥାର୍ଥ ବୋଲି ଗ୍ରହଣ କରିଛନ୍ତି ।

କବିବର ରାଧାନାଥ ମହାଯାତ୍ରାକୁ କେଉଁ କାରଣରୁ ଅସମାପ୍ତ ରଖିଲେ ତାହା ବର୍ତ୍ତମାନ ସୁଦ୍ଧା ନିର୍ଣ୍ଣିତ ଭାବରେ ଜଣାଯାଇ ନାହିଁ । ରାଧାନାଥ ଜୀବନୀରେ ଦିଆଯାଇଥିବା ବିବରଣୀ ଉପରେ ନିର୍ଭର କରି ଆଲୋଚକମାନେ ଯେଉଁ ମତ ପୋଷଣ କରିଅଛନ୍ତି ତାହା ଯଥେଷ୍ଟ ନୁହେଁ । ରାଧାନାଥ ଜୀବନୀ ଲେଖକ ଲେଖିଛନ୍ତି, "ରାଧାନାଥଙ୍କ ପ୍ରଣୀତ ମହାଯାତ୍ରାରେ ଥିବା କେତେକ ଅଂଶ ଯେନ ତାହାଙ୍କର ଜଣେ ଅଧସ୍ତନ କର୍ମଚାରୀ ଆପତ୍ତିକର ବୋଲି ଗଭର୍ଣ୍ଣମେଣ୍ଟଙ୍କୁ ଜଣାଇଦେବାରୁ ଗଭର୍ଣ୍ଣମେଣ୍ଟରେ ମହା ଆନ୍ଦୋଳନ ଲାଗିଥିଲା । ଏହି କର୍ମଚାରୀ ମହାଶୟଙ୍କୁ ରାଧାନାଥ ସର୍ବପ୍ରଥମରେ ଚାକିରି ଦେଇ ତାହାଙ୍କ ଗୁଣର ସମ୍ୟକ୍ ଆଦର କରୁଥିଲେ । କେତେକ ବର୍ଷ ଉତ୍ତାରୁ ଗୋଟିଏ ଜିଲ୍ଲାରେ ଡେପୁଟି ଇନ୍‌ସ୍‌ପେକ୍ଟର ପଦ ଶୂନ୍ୟ ହେବାରୁ ଏହାଙ୍କଠାରୁ ଅଧିକ କାଳ କାର୍ଯ୍ୟ କରିଥିବା ବ୍ୟକ୍ତିଙ୍କୁ ସେ ପଦ ରାଧାନାଥ ଡାଇରେକ୍ଟରଙ୍କୁ ଲେଖି ଦିଆଇଲେ ।

(୧) Modern Oriya Literature—P. 70

ଏଥିରୁ ପର କର୍ମଚାରୀଙ୍କର କ୍ରୋଧ ହେଲା । ସେ ମହାଯାତ୍ରା ୫ମ ସର୍ଗରେ ଥିବା କେତେକାଂଶ ଏବଂ କବିତାବଳୀରେ ଥିବା 'ଶିବାଜୀଙ୍କ ଉଦ୍ଭ୍ରାନ୍ତ ବାକ୍ୟ' ସ୍କୁଲ ପାଠ୍ୟ ହେବା ସକାଶେ ଆପତ୍ତିକର ବୋଲି ଗୋପନରେ ଗଭର୍ଣ୍ଣମେଣ୍ଟଙ୍କୁ ଜଣାଇ ଦେଲେ । ଗଭର୍ଣ୍ଣମେଣ୍ଟ ସେହି ଆପତ୍ତିକର ଅଂଶସମୂହ ମହାଯାତ୍ରାରୁ ଉଠାଇ ଦେଇ ଦ୍ୱିତୀୟ ସଂସ୍କରଣ ପ୍ରକାଶ କରିବା ସକାଶେ ରାଧାନାଥଙ୍କୁ ଗୋପନୀୟ ପତ୍ର ଲେଖିଲେ, ମାତ୍ର ଶିବାଜୀଙ୍କ 'ଉଦ୍ଭ୍ରାନ୍ତ ବାକ୍ୟ' କବିତାବଳୀରୁ ଉଠାଇଦେବା ସକାଶେ ଲେଖିନାହାନ୍ତି, କିନ୍ତୁ ରାଧାନାଥ ଶିବାଜୀଙ୍କ 'ଉଦ୍ଭ୍ରାନ୍ତ ବାକ୍ୟ' ମଧ୍ୟ କବିତାବଳୀରୁ ସ୍ୱେଚ୍ଛାକ୍ରମେ ଉଠାଇଦେଇ କବିତାବଳୀର ଦ୍ୱିତୀୟ ସଂସ୍କରଣ ପ୍ରକାଶ କରିଥିଲେ । ଜୁଲାଇ ୧୭ ତାରିଖ ୧୮୯୯ ସାଲରୁ ନଭେମ୍ବର ଶେଷ ପର୍ଯ୍ୟନ୍ତ ପ୍ରାୟ ୪୫ ମାସ ରାଧାନାଥଙ୍କ ସହିତ ଗଭର୍ଣ୍ଣମେଣ୍ଟଙ୍କର ଯେଉଁ ଗୋପନୀୟ ପତ୍ର ବ୍ୟବହାର ଚାଲିଥିଲା, ତହିଁରେ ରାଧାନାଥ ଅତିରିକ୍ତ ମାତ୍ରାରେ ବ୍ୟସ୍ତ, ଚିନ୍ତିତ, ବିବ୍ରତ ଓ ଅସ୍ଥିର ହୋଇ ପଡ଼ିଥିଲେ । ଦାରୁଣ ଦୁଶ୍ଚିନ୍ତାରେ ନିର୍ଯାତିତ ହୋଇ ତାହାଙ୍କର ମନ ଅବସନ୍ନ ଓ ସ୍ୱାସ୍ଥ୍ୟର ବିଷମ କ୍ଷତି ହୋଇଥିଲା । ଗଭର୍ଣ୍ଣମେଣ୍ଟଙ୍କର ସମସ୍ତ ପତ୍ରାଦି ଗୋପନୀୟ ଥିଲା, ଏଣୁ ସାଧାରଣଙ୍କ ଅବଗତି ନିମିତ୍ତ ତାହା ଏଠାରେ ପ୍ରଦର୍ଶିତ ହେଲା ନାହିଁ ।

× × × ×

ଏହି ସମୟରେ ରାଧାନାଥଙ୍କ ମନରେ ଅବସ୍ଥା ଏପରି ଭୟାବହ ହୋଇଥିଲା ଯେ, ସେ ଆଉ ଓଡ଼ିଆ ସାହିତ୍ୟରେ କିଛି ଲେଖିବେ ନାହିଁ କିମ୍ବା ସାହିତ୍ୟ ବିଷୟରେ କିଛି ରଚନା କରିବାକୁ କଲମ ପେନ୍‌ସିଲ୍ ଧରିବେ ନାହିଁ ବୋଲି ପ୍ରତିଜ୍ଞା କରିଥିଲେ । ଏହି ହେତୁରୁ ଅତିରିକ୍ତ ମାନସିକ କ୍ଷୋଭରେ ସେ ମହାଯାତ୍ରାର ୮ମ ସର୍ଗଠାରୁ ୧୨ଶ ସର୍ଗର ଶେଷପର୍ଯ୍ୟନ୍ତ ଲିଖିତ ପାଞ୍ଚୋଟି ସର୍ଗ ଏବଂ ଅବଶିଷ୍ଟ ୧୮ ସର୍ଗର ଖସଡ଼ା ପ୍ରଭୃତି ସମସ୍ତ ଶଶିଭୂଷଣଙ୍କ ସମ୍ମୁଖରେ ଅଗ୍ନିରେ ସମର୍ପଣ କଲେ । ଶଶିଭୂଷଣ ତାହାଙ୍କୁ ଏ

କାର୍ଯ୍ୟରୁ ଅନେକ ପ୍ରକାରରେ ନିରସ୍ତ କରିବାକୁ ବିବିଧ ଚେଷ୍ଟା କରି ସୁଦ୍ଧା ସଫଳକାମ ହେଲେ ନାହିଁ ।" (୧)

ମହାଯାତ୍ରାର ପାଣ୍ଡୁଲିପିକୁ କବିବର ରାଧାନାଥ ଅଗ୍ନିରେ ନିକ୍ଷେପ କରିବା ମୂଳରେ ଦୁଇଗୋଟି କାରଣ ଥାଇପାରେ । ଗୋଟିଏ ହେଉଛି, ଓଡ଼ିଶାର ଲୋକମାନଙ୍କର କୃତଘ୍ନତାରେ ବିରକ୍ତି ଓ ଅନ୍ୟଟି ହେଉଛି ଇଂରେଜ ସରକାରଙ୍କ ଭୟ । ଯଦି କବିବର ରାଧାନାଥ ଓଡ଼ିଶାର ଲୋକମାନଙ୍କର କୃତଘ୍ନତାରେ ବିରକ୍ତ ହୋଇଥିଲେ ତେବେ ସେ ହୁଏତ ମହାଯାତ୍ରାକୁ ଆଉ ନଲେଖି ସେତିକରେ ବନ୍ଦ କରିଦେଇ ଥାଆନ୍ତେ ଏବଂ ତାଙ୍କର ଉକ୍ତି ଅନୁସାରେ ଆଉ କିଛି ଲେଖିବା ପାଇଁ କଲମ ବା ପେନ୍‌ସିଲ୍ ଧରି ନଥାନ୍ତେ । ମାତ୍ର ସେ ପାଣ୍ଡୁଲିପିଟିକୁ ପୋଡ଼ିଦେଲେ କାହିଁକି ? ପୁଣି, ମହାଯାତ୍ରାର ପାଣ୍ଡୁଲିପିଟିକୁ ପୋଡ଼ିଦେବା ପରେ ମଧ୍ୟ ତାଙ୍କର ଉକ୍ତିକୁ ରକ୍ଷା କରିପାରି ନାହାନ୍ତି । ତାପରେ ସେ ପୁଣି କଲମ ବା ପେନ୍‌ସିଲ୍ ଧରି କାବ୍ୟ କବିତା ଲେଖିଛନ୍ତି । ଏହି ଦୃଷ୍ଟିରୁ, ମନେହୁଏ ରାଧାନାଥ ପ୍ରଥମ କାରଣ ପାଇଁ ମହାଯାତ୍ରାର ପାଣ୍ଡୁଲିପିକୁ ପୋଡ଼ି ନାହାନ୍ତି । ସେ ହୁଏତ ଏପରି କିଛି ସରକାର ବିରୋଧୀ କଥା କାବ୍ୟରେ ଲେଖିଥିଲେ ଯାହା କି ତଦନ୍ତ ଫଳରେ ସରକାରଙ୍କର ହସ୍ତଗତ ହୋଇଥିଲେ ତାଙ୍କର ଯଥେଷ୍ଟ ଅନିଷ୍ଟ ହୋଇଥାଆନ୍ତା । ତେଣୁ ସେ ପାଣ୍ଡୁଲିପିଟିକୁ ପୋଡ଼ି ଦେଇ ନିଜର ଅନିଷ୍ଟକୁ ଦୂରେଇ ଦେଇଅଛନ୍ତି । କବିବର ରାଧାନାଥ ଏବଂ ଇଂରେଜ ସରକାର ମଧ୍ୟରେ ସେ ସମୟରେ କି ପ୍ରକାର ଗୁପ୍ତ ପତ୍ର ଆଦାନ ପ୍ରଦାନ ହୋଇଥିଲା ତାହାର ସବିଶେଷ ବିବରଣ ରାଧାନାଥ ଜୀବନୀ ବା ଅନ୍ୟତ୍ର କେଉଁଠାରେ ପ୍ରକାଶ ପାଇନାହିଁ । ତେଣୁ ଏ ବିଷୟରେ ଯଥେଷ୍ଟ ସନ୍ଦେହ କରିବାର ଅଛି । ଯଦି କେବଳ ଶିବାଜୀଙ୍କ ଉତ୍ସାହ ବାକ୍ୟ ବା ମହାଯାତ୍ରାର ସପ୍ତମ ସର୍ଗର କେତେକାଂଶ ଯୋଗୁଁ ସରକାର ଚକ୍ଷୁରେ ରାଧାନାଥ ଦୋଷୀ ହୋଇଥାଆନ୍ତେ ତେବେ ସେହି ଦୁଇଟି ଅଂଶକୁ

(୧) ରାଧାନାଥ ଜୀବନୀ-ପୃ ୩୦୯—୩୧୨

ସେ ଅଗ୍ନିରେ ନିକ୍ଷେପ କରିଥାଆନ୍ତେ । ମାତ୍ର ସେ ଦୁଇଟି ଅଂଶ ରକ୍ଷା ପାଇଲା, ଅଥଚ ଅନ୍ୟ ଅଂଶଗୁଡ଼ିକ ଭସ୍ମୀଭୂତ ହେଲା । ତେଣୁ ଆମକୁ ଏଠାରେ ଗ୍ରହଣ କରିନେବାକୁ ପଡ଼ିବ ଯେ ଯେଉଁ ଅଂଶଗୁଡ଼ିକୁ ରାଧାନାଥ ପୋଡ଼ିଦେଲେ ତହିଁରେ ସରକାର ବିରୋଧୀ କଥା ରହିଥିଲା ।

ସେ ଯାହାହେଉନା କାହିଁକି, ମହାଯାତ୍ରା ଆଧୁନିକ ଓଡ଼ିଆ ସାହିତ୍ୟରେ ସର୍ବାଧିକ ସମ୍ମାନିତ ଆସନର ଯୋଗ୍ୟ । ମହାଯାତ୍ରା ଯଥାର୍ଥରେ କବିବର ରାଧାନାଥଙ୍କର ସମ୍ମତ କବି ପ୍ରତିଭାର ମହାଯାତ୍ରା ସମ୍ପାଦନ କରିଅଛି ବୋଲି କୁହାଯାଇପାରେ ।



# ମଧ୍ୟାହ୍ନର ସୂର୍ଯ୍ୟପରାଗ

ପ୍ରଭାତରେ ଉଦିତ ହୋଇ ସୂର୍ଯ୍ୟ ତାର ଔଜ୍ଜ୍ୱଲ୍ୟ ବୃଦ୍ଧି କରି କରି ମଧ୍ୟାହ୍ନରେ ମଧ୍ୟ ଆକାଶରେ ଉପନୀତ ହୁଏ । ପୂର୍ବାହ୍ନର ସୂର୍ଯ୍ୟ ମଧ୍ୟାହ୍ନରେ ସର୍ବାପେକ୍ଷା ଅଧିକ ତେଜୋଦୀପ୍ତ ହୋଇଥାଏ । ଅପରାହ୍ନରେ ସୂର୍ଯ୍ୟର ଦୀପ୍ତି କ୍ରମେ ମଳିନ ଆସେ । ଅପରାହ୍ନର ସୂର୍ଯ୍ୟ ତାର ଦୀପ୍ତିକୁ ହରାଇ ହରାଇ ଅସ୍ତାଚଳ ଅଭିମୁଖରେ ଲକ୍ଷ୍ୟ ରଖେ ।

ମଧ୍ୟାହ୍ନର ସୂର୍ଯ୍ୟ ସର୍ବାଧିକ ତେଜୋଦୀପ୍ତ ହେବାର କଥା ; ମାତ୍ର ଯେବେ ମଧ୍ୟାହ୍ନରେ ସୂର୍ଯ୍ୟପରାଗ ହୁଏ ତେବେ ମଧ୍ୟାହ୍ନର ସୂର୍ଯ୍ୟ ତାର ସେ ତେଜ ବା ଦୀପ୍ତିକୁ ପ୍ରକାଶ କରିପାରେ ନାହିଁ ; ଆକାଶରେ ତାର ସତ୍ତାହିଁ କେବଳ ପରିଲକ୍ଷିତ ହୋଇଥାଏ । ପରାଗମୁକ୍ତ ସୂର୍ଯ୍ୟ ପୁଣି ତାର ଦୀପ୍ତ ପ୍ରକାଶକ୍ଷମ ହେଲେହେଁ ଅପରାହ୍ନର ଆକାଶରେ ସେ ଦୀପ୍ତି କ୍ଷୟଶୀଳ ହୋଇଥାଏ ।

କବିବର ରାଧାନାଥଙ୍କୁ ଆଧୁନିକ ଓଡ଼ିଆ ସାହିତ୍ୟର ତେଜୋଦୀପ୍ତ ସୂର୍ଯ୍ୟଭାବରେ ଗ୍ରହଣ କରାଯାଇଅଛି । ସୂର୍ଯ୍ୟର କିରଣ ଯେପରି ଭାବରେ ପୂର୍ବାହ୍ନରେ କ୍ରମବର୍ଦ୍ଧନଶୀଳ ଓ ଅପରାହ୍ନରେ କ୍ରମକ୍ଷୟଶୀଳ; କବିବର ରାଧାନାଥଙ୍କର ସୃଷ୍ଟିପ୍ରତିଭା ସେହିପରି କ୍ରମବର୍ଦ୍ଧନଶୀଳ ଓ କ୍ରମକ୍ଷୟଶୀଳ ହୋଇଥିବାର ଦେଖାଯାଇଅଛି । ୧୮୯୨ ସାଲ ପର୍ଯ୍ୟନ୍ତ କବିବର ରାଧାନାଥ ଓଡ଼ିଆ ସାହିତ୍ୟାକାଶରେ ସୂର୍ଯ୍ୟ ସଦୃଶ ନିଜର ସୃଷ୍ଟି-ପ୍ରତିଭାର କିରଣ ବିସ୍ତାର କରିଅଛନ୍ତି । ୧୮୯୩ ସାଲ ହିଁ ଯଥାର୍ଥରେ କବିବର ରାଧାନାଥଙ୍କ ସୃଷ୍ଟି ପ୍ରତିଭାର ମଧ୍ୟାହ୍ନ । ଏହି ସମୟରେ କବିବର ରାଧାନାଥଙ୍କର ସୃଷ୍ଟିପ୍ରତିଭା ବହୁ କାରଣ ବଶତଃ ନାନା ଦୁର୍ବିପାକର ସମ୍ମୁଖୀନ ହୋଇଅଛି । ଏହି ସମୟରେହିଁ ତାଙ୍କର ଉତ୍ତୁଙ୍ଗ କବି ପ୍ରତିଭାର ବିଲୟପଥ ଉନ୍ମୋଚିତ ହୋଇଅଛି ।

କବିବର ରାଧାନାଥ ଯେତେବେଳେ ସବୁଠାରୁ ଅଧିକ ସମ୍ମାନ, ଗୌରବ ଓ ଯଶ ଆଶା କରିବାର କଥା ସେତିକବେଳେ ତାଙ୍କ ପ୍ରତି ଏକଦେଶର ପାଠକସମାଜର ଆକ୍ରମଣ ଲକ୍ଷ୍ୟ କରିବାର କଥା । ଏହି ସମୟରେ କବି ତାଙ୍କର ଲକ୍ଷ୍ୟ ପଥରୁ ବିଚ୍ୟୁତ ହୋଇ ପଡ଼ିଛନ୍ତି । ତାଙ୍କର ମାନସିକ ଅବସ୍ଥା ଅତ୍ୟନ୍ତ ଶୋଚନୀୟ ହୋଇ ପଡ଼ିଅଛି । ଏଥିପାଇଁ ସେ ତାଙ୍କର କୌଣସି ଭୁଲ୍‌ଭ୍ରାନ୍ତି ନଥିଲା, ସେକଥା କୁହାଯାଇ ପାରିବ ନାହିଁ । କବିବର ରାଧାନାଥଙ୍କୁ କେନ୍ଦ୍ରକରି କେତେକ ନିର୍ଦ୍ଦିଷ୍ଟ ବ୍ୟକ୍ତିଙ୍କର ଅସନ୍ତୋଷ ଏହି ସମୟରେ ପ୍ରକାଶଲାଭ କରିଅଛି ।

୧୮୮୦ ସାଲଠାରୁ କବିବର ରାଧାନାଥ ଓଡ଼ିଶାର ଶିକ୍ଷାବିଭାଗରେ କୃତିତ୍ୱର ସହିତ କାର୍ଯ୍ୟ କରି ଆସିଥିଲେ ହେଁ ତାଙ୍କର କାର୍ଯ୍ୟଫଳରେ କେତେକ ନିର୍ଦ୍ଦିଷ୍ଟବ୍ୟକ୍ତି ଯେ ଅସନ୍ତୁଷ୍ଟ ଥିଲେ ଏକଥା ତାଙ୍କ ଜୀବନରୁ ଜଣାଯାଏ । ପାଠ୍ୟପୁସ୍ତକ ନିର୍ବାଚନକୁ କେନ୍ଦ୍ରକରି ରାଧାନାଥଙ୍କ ବିରୁଦ୍ଧରେ ମଧ୍ୟ କମ୍ ଅପପ୍ରଚାର ହୋଇ ନାହିଁ । ସେ ସମୟରେ କେତେକ ବ୍ୟକ୍ତି ଆକ୍ଷେପ କରିଥିଲେ ଯେ, କବିବର ରାଧାନାଥ ଓଡ଼ିଶାର ବିଦ୍ୟାଳୟମାନଙ୍କରେ ପାଠ୍ୟପୁସ୍ତକ ରୂପେ ବ୍ୟବହୃତ ହେବା ଉଦ୍ଦେଶ୍ୟରେ ଯେଉଁ ପୁସ୍ତକଗୁଡ଼ିକୁ ନିର୍ବାଚନ କରିଥିଲେ ସେହି ପୁସ୍ତକଗୁଡ଼ିକର ଭାଷା ଶୁଦ୍ଧ ଓଡ଼ିଆ ନୁହେଁ । ତାହା ବିକୃତ ଓଡ଼ିଆ ଏବଂ ତାହାକୁ ପାଠକଲେ ପିଲମାନେ ସ୍ୱତଃ ବଙ୍ଗଳା ଭାଷା ଆଡ଼କୁ ଅଗ୍ରସର ହେବେ । ସେ ସମୟରେ ପୁଣି ପ୍ରଚାରିତ ହେଲା ଯେ, ବଙ୍ଗୀୟମାନେ ଓଡ଼ିଆ ଭାଷାକୁ ଲୋପ କରି ଓଡ଼ିଶାରେ ବଙ୍ଗଳା ଭାଷାର ପ୍ରଚଳନ ନିମିତ୍ତ ଯେଉଁ ଉଦ୍ୟମ କରିଥିଲେ, କବିବର ରାଧାନାଥଙ୍କର ଏପରି ପାଠ୍ୟପୁସ୍ତକ ନିର୍ବାଚନ ସେହି ଉଦ୍ୟମର ଅନ୍ୟ ଏକ ରୂପ ।

ଯେତେବେଳେ ଓଡ଼ିଶାର କେତେକ ବ୍ୟକ୍ତିଙ୍କର ମନୋଭାବ ରାଧାନାଥଙ୍କ ବିରୁଦ୍ଧରେ ଏହିପରି ଭାବରେ ରହିଥିଲା ସେତେବେଳେ କବିବର ରାଧାନାଥଙ୍କ ଲେଖନୀରୁ କେଦାରଗୌରୀ, ଚନ୍ଦ୍ରଭାଗା

ପ୍ରଭୃତି 'କାବ୍ୟ'ଗୁଡ଼ିକ ପ୍ରକାଶ ପାଇଲା । ଯେଉଁମାନେ ରାଧାନାଥଙ୍କ ବିରୋଧୀ ଥିଲେ ସେମାନେ ରାଧାନାଥଙ୍କ ବିରୁଦ୍ଧରେ ପ୍ରଚାର କରିବାର ଆଉ ଏକ ସୁଯୋଗ ପାଇଗଲେ । ସେମାନେ ପ୍ରଚାର କଲେ ଯେ, ରାଧାନାଥ ଓଡ଼ିଶାର ସାମାଜିକ ଜୀବନର କଳଙ୍କ ରଟନା କରିବାରେ ତତ୍ପର । ସେମାନେ କବିବର ରାଧାନାଥଙ୍କର କାବ୍ୟ ଗଠନ ଶୈଳୀର ମହତ୍ତ୍ୱ ହୃଦୟଙ୍ଗମ କରି ପାରିନଥିଲେ । ସେମାନେ ଏହି ଦୃଷ୍ଟିରୁ କବିବର ରାଧାନାଥଙ୍କୁ ଭୁଲ୍ ବୁଝିଥିଲେ ।

୧୮୮୦ ସାଲଠାରୁ ଆରମ୍ଭ କରି ରାଧାନାଥଙ୍କ ବିରୁଦ୍ଧରେ କିପରି ଭାବରେ ଏ ଦେଶର କେତେକ ବ୍ୟକ୍ତି କାର୍ଯ୍ୟପନ୍ଥା ଗ୍ରହଣ କରିଥିଲେ' ତାହା ନିମ୍ନୋକ୍ତ ଉଦ୍ଧୃତିରୁ ଜଣାଯାଇଥାଏ ।

"ସେ ସମୟରେ ରାଧାନାଥଙ୍କ ବିରୁଦ୍ଧରେ ପାଠ୍ୟପୁସ୍ତକ ସମ୍ପର୍କରେ ଏକ ଅଭିଯାନ ହୋଇଥିଲା । ପାଠ୍ୟ ପୁସ୍ତକ ପ୍ରଣୟନ, ସେମାନଙ୍କ ନିର୍ବାଚନ ଓ ବିଦ୍ୟାଳୟମାନଙ୍କରେ ପ୍ରଚଳନ—ଏହି ତିନି ବିଷୟରେ ୧୮୮୦—୯୦ ସାଲ ଭିତରେ ଓଡ଼ିଶାର ଏକ ବିଶିଷ୍ଟ ଲେଖକଦଳ ରାଧାନାଥଙ୍କ ବିରୁଦ୍ଧରେ ମାତି ଉଠିଥିଲେ । ଏମାନଙ୍କର ଏକ ବଦ୍ଧମୂଳ ଧାରଣା ଜାତ ହୋଇଥିଲା ଯେ, ରାଧାନାଥ ଶିକ୍ଷା ବିଭାଗର ଉଚ୍ଚତମ କର୍ତ୍ତା ଥିବାରୁ ସେ ନିଜର ଆତ୍ମୀୟ କିମ୍ବା ଅନ୍ତରଙ୍ଗ ବନ୍ଧୁମାନଙ୍କୁ ଶିକ୍ଷାୟତନମାନଙ୍କରେ ନିଯୁକ୍ତ କରିବା ସଙ୍ଗେ ସଙ୍ଗେ ପାଠ୍ୟପୁସ୍ତକ ପ୍ରଣୟନ, ନିର୍ବାଚନ ଓ ପ୍ରଚଳନ ବିଷୟରେ ଘୋର ପକ୍ଷପାତିତା ଦେଖାଉଛନ୍ତି । ଦୀର୍ଘ ଦଶବର୍ଷକାଳ ଏହି ଆନ୍ଦୋଳନ ଚାଲିଲା ପରେ ୧୮୯୦ ସାଲର ପ୍ରଥମଭାଗରେ ବିଭାଗୀୟ ଇନ୍ସ୍‌ପେକ୍ଟର୍ ବାବୁ ବ୍ରହ୍ମମୋହନ ମଲ୍ଲିକ ଏ ବିଷୟରେ ପୂର୍ଣ୍ଣ ଅନୁସନ୍ଧାନ କରିବା ପାଇଁ କଟକ ଆସିଥିଲେ । ସେ ମଧ୍ୟ ରାଧାନାଥଙ୍କ ପକ୍ଷରେ ନିଜ ମନ୍ତବ୍ୟ ପ୍ରକାଶ କରିଥିଲେ । ଦଶବର୍ଷର ପ୍ରଜ୍ୱଳିତ କ୍ରୋଧାଗ୍ନି ଏହି ବିଫଳ ଅନୁସନ୍ଧାନ ହେତୁ ଦ୍ୱିଗୁଣ ତେଜରେ ଜଳିଉଠିଲା ଓ ରାଧାନାଥଙ୍କ ବିରୁଦ୍ଧରେ ଏକ ତୀବ୍ରତର ପ୍ରତିକ୍ରିୟା ସୃଷ୍ଟି କରିବାକୁ ଏମାନେ ମନରେ ଆଦୌ ଦ୍ୱିଧା ପ୍ରକାଶ

କରିନଥିଲେ । ଏହି ବ୍ୟକ୍ତିଗତ ଆକ୍ରୋଶ ମଧ୍ୟ ତାଙ୍କ ସାହିତ୍ୟ ସମାଲୋଚନା ଉପରେ ପ୍ରତିଫଳିତ ହୋଇଥିବାର ଦେଖିବାକୁ ମିଳେ ।’’ (୧)

କଟକର ରାଧାନାଥଙ୍କ ବିରୁଦ୍ଧରେ ଏଦେଶର କେତେକ ବ୍ୟକ୍ତି ପୂର୍ବରୁ ଯେଉଁ ମନୋଭାବ ପୋଷଣ କରି ଆସିଥିଲେ, ସେହି ମନୋଭାବର ଚରମ ପରିଣତି ୧୮୯୩ ସାଲରେ ଦେଖା ଦେଇଥିଲା ଇନ୍ଦ୍ରଧନୁ ଓ ବିଜୁଳିର ପ୍ରକାଶରେ । ଇନ୍ଦ୍ରଧନୁ ଓ ବିଜୁଳି ବିଷୟରେ ଯାହା ଜଣାଯାଏ ତାହା ହେଉଛି ରାଧାନାଥ ଓ ଉପେନ୍ଦ୍ରଭଞ୍ଜଙ୍କୁ କେନ୍ଦ୍ରକରି ଦୁଇଦଳ ବ୍ୟକ୍ତିଙ୍କର ସମାଲୋଚନା ନାମରେ ପରସ୍ପରର କୁତ୍ସା ପ୍ରଚାର । ଆଧୁନିକ ଓଡ଼ିଆ ସାହିତ୍ୟର ସମାଲୋଚକମାନେ ଏହାକୁ ପୁରାତନ ଓ ନୂତନ ମତବାଦର ସଂଘର୍ଷ ରୂପରେ ଗ୍ରହଣ କରିଅଛନ୍ତି । ଏହି ଦୁଇଟି ପତ୍ରିକାର ସେ ସମୟରେ ଯେଉଁ ପ୍ରକାର ଆଲୋଚନା ହୋଇଥିଲା ତାହା ଆଦର୍ଶହୀନ ହୋଇଥିବାରୁ ବହୁ ଆଲୋଚକ ତାହା ବିରୁଦ୍ଧରେ ନିନ୍ଦାବାଦ କରିଅଛନ୍ତି ।

୧୮୯୩ ସାଲରେ ଓଡ଼ିଶାର କେତେକ ଶିକ୍ଷିତବ୍ୟକ୍ତିଙ୍କ ମଧ୍ୟରେ ରାଧାନାଥ ବଡ଼ କି ଉପେନ୍ଦ୍ରଭଞ୍ଜ ବଡ଼ ଏହି ବିଷୟ ନେଇ ଆଲୋଚନା ଆରମ୍ଭ ହେଲା । ୧୮୯୨ ସାଲରେ ସେସମୟର ଓଡ଼ିଶାର ପ୍ରାଇମେରୀ ସ୍କୁଲ ସମୂହର ଡେପୁଟି ଇନ୍‌ସ୍‌ପେକ୍ଟର ପ୍ୟାରୀମୋହନ ସେନ୍ କେତେକ ସ୍କୁଲପିଲାଙ୍କୁ ଉପେନ୍ଦ୍ରଭଞ୍ଜକୃତ କେତେକ କାବ୍ୟ ପୁରସ୍କାର ସ୍ୱରୂପ ପ୍ରଦାନ କରିଥିଲେ । ସେତେବେଳେ ଓଡ଼ିଆ ସାହିତ୍ୟରେ ଉଲ୍ଲେଖଯୋଗ୍ୟ ପୁସ୍ତକର ଯଥେଷ୍ଟ ଅଭାବ ଥିବାରୁ ଏବଂ ଓଡ଼ିଶାର ଜନସାଧାରଣଙ୍କ ନିକଟରେ ଉପେନ୍ଦ୍ରଭଞ୍ଜଙ୍କର ଏକ ବିଶିଷ୍ଟ ସମ୍ମାନ ଥିବାରୁ ପ୍ୟାରୀମୋହନ ସେନ୍ ଉପେନ୍ଦ୍ରଭଞ୍ଜଙ୍କର ପୁସ୍ତକକୁ ପୁରସ୍କାର ଦେବାପାଇଁ ନିର୍ବାଚନ କରିବା ନିତାନ୍ତ ସ୍ୱାଭାବିକ । ସେ ସମୟରେ ରେଭେନ୍‌ସା ବାଳକା ବିଦ୍ୟାଳୟର ହେଡ୍‌ପଣ୍ଡିତ ଥିଲେ ଲାଲ ରାମନାରାୟଣ ରାୟ । ସେ ପ୍ୟାରୀମୋହନ ସେନ୍‌ଙ୍କର ଏହି କାର୍ଯ୍ୟକୁ ଆଦୌ ପସନ୍ଦ କରି ପାରିଲେ

(୧) ଯୁଗ ପ୍ରବର୍ତ୍ତକ ସ୍ରଷ୍ଟା ରାଧାନାଥ—ନଟବର ସାମନ୍ତରାୟ, ପୃ: ୨୦୧-୨୦୨

ନାହିଁ ଏବଂ ଏହା ବିରୁଦ୍ଧରେ ମୟୂରଭଞ୍ଜରୁ ପ୍ରକାଶ ପାଉଥିବା ଉତ୍କଳ ପ୍ରଭା ପତ୍ରିକାର ତୀବ୍ର ପ୍ରତିବାଦ କଲେ । ସେତେବେଳେ କଟକରୁ ଗୌରୀଶଙ୍କର ରାୟଙ୍କ ସମ୍ପାଦନାରେ ପ୍ରକାଶ ପାଉଥିବା ଉତ୍କଳ ଦୀପିକା ପତ୍ରିକାରେ ଲାଲ ରାମନାରାୟଣ ରାୟଙ୍କ ମତବାଦର ଘୋର ପ୍ରତିବାଦ ପ୍ରକାଶ ପାଇଲା । ଯେଉଁମାନେ ଲାଲ ରାମନାରାୟଣ ରାୟଙ୍କ ବିରୁଦ୍ଧରେ ପ୍ରତିବାଦ କଲେ ସେମାନେ ମତ ପ୍ରକାଶ କଲେ ଯେ, ପିଲାମାନଙ୍କୁ ପୁରସ୍କାର ସ୍ୱରୂପ ଦେବାପାଇଁ ଉପେନ୍ଦ୍ର ଭଞ୍ଜଙ୍କ କାବ୍ୟ ଯଥାର୍ଥରେ ଉପଯୋଗୀ । ଯେଉଁମାନେ ଉପେନ୍ଦ୍ର ଭଞ୍ଜଙ୍କ ସପକ୍ଷରେ ଯୁକ୍ତି କଲେ ସେମାନଙ୍କ ପ୍ରତି ଲାଲ ରାମନାରାୟଣ ଅତି ମାତ୍ରାରେ ଅସହିଷ୍ଣୁ ହୋଇ ଉଠିଲେ । ଉତ୍କଳ ପ୍ରଭାରେ ନିଜର ଆକ୍ଷେପବାଣକୁ ପ୍ରକାଶ କରିବା ପାଇଁ ଯଥେଷ୍ଟ ମନେ ନକରି ଲାଲ ରାମନାରାୟଣ ବାମଣ୍ଡାଧିପତି ସୁଚଳଦେବ ଓ ସମ୍ବଲପୁର ହିତୈଷିଣୀ ପତ୍ରିକାର ସମ୍ପାଦକ ନୀଳମଣି ବିଦ୍ୟାରତ୍ନଙ୍କ ନିକଟରେ ସ୍ୱଇଚ୍ଛା ପ୍ରକାଶ କରି ହିତୈଷିଣୀରେ ନିଜର ମତ ପ୍ରଚାର କଲେ । ଉତ୍କଳ ଦୀପିକା ଏହି ଦ୍ୱନ୍ଦ୍ୱଯୁଦ୍ଧ ଲାଗି ଯଥେଷ୍ଟ ନହେବାରୁ କଟକରୁ ଇନ୍ଦ୍ରଧନୁ ନାମକ ଏକ ପତ୍ରିକା ପ୍ରକାଶ ପାଇଲା । ତାପରେ ବାମଣ୍ଡାର ରାଜଧାନୀ ଦେବଗଡ଼ରୁ ବିଜୁଳି ପତ୍ରିକା ପ୍ରକାଶ ପାଇଲା । ଇନ୍ଦ୍ରଧନୁ ପତ୍ରିକାରେ ଗୌରୀଶଙ୍କର ରାୟ, ଗୋପାଳ ବଲ୍ଲଭ ଦାସ, ଦାମୋଦର ପଟ୍ଟନାୟକ ଓ ସୁଦାମଚରଣ ନାୟକ ପ୍ରମୁଖ କେତେକ ବିଶିଷ୍ଟ ବ୍ୟକ୍ତି ଉପେନ୍ଦ୍ରଭଞ୍ଜଙ୍କର ସମର୍ଥକ ଭାବରେ ଦେଖାଦେଲେ ଏବଂ ବିଜୁଳି ପତ୍ରିକାରେ ଲାଲ ରାମନାରାୟଣ ରାୟ, ନୀଳମଣି ବିଦ୍ୟାରତ୍ନ, ସୁଚଳ ଦେବ, ବିଶ୍ୱନାଥ କର, ଚନ୍ଦ୍ରମୋହନ ମହାରଣା, ରାମକୃଷ୍ଣ ସାହୁ ପ୍ରମୁଖ ବିଶିଷ୍ଟ ବ୍ୟକ୍ତିମାନେ ରାଧାନାଥଙ୍କର ସମର୍ଥକ ଭାବରେ ଦେଖାଦେଲେ । ଦୁଇଦଳ ମଧ୍ୟରେ ସେତେବେଳେ ଯେଉଁ ଦ୍ୱନ୍ଦ୍ୱର ସୂତ୍ରପାତ ହେଲା ତାହା ଓଡ଼ିଶାର ସାହିତ୍ୟ ଜଗତକୁ ପରସ୍ପର ନିନ୍ଦାବାଦ ପ୍ରଚୁର ଦ୍ୱାରା କଳଙ୍କିତ କରିଦେଲା । କ୍ରମେ ଉଭୟ ଦଳର ସମର୍ଥକଙ୍କ ସଂଖ୍ୟା ବର୍ଦ୍ଧିତ ହେଲା । ଏହାଦ୍ୱାରା ସାହିତ୍ୟିକ ବାୟୁମଣ୍ଡଳ ଏପରି କଳୁଷିତ ହୋଇପଡ଼ିଲା ଯେ ବସ୍ତୁ ନିରପେକ୍ଷ ସାହିତ୍ୟିକ ଏହାଦ୍ୱାରା ବିବ୍ରତ ହୋଇପଡ଼ିଲେ । ଏହି ଦ୍ୱନ୍ଦ୍ୱକୁ ଲକ୍ଷକରି ସେତେବେଳେ ଭକ୍ତକବି ମଧୁସୂଦନଙ୍କ ଲେଖନୀରୁ

ଜନ୍ମନେଇଥିଲା "ଭଣ୍ଡ ରସାୟନ କାବ୍ୟ" ଏବଂ "ସାବାସ୍ ସାହିତ୍ୟ
ଚର୍ଚ୍ଚା ସାବାସ୍ ସାବାସ୍" ନାମକ ଦୁଇଗୋଟି ବ୍ୟଙ୍ଗକବିତା । ପରିଣାମ
ନିତାନ୍ତ ଅଶୋଭନୀୟ ହେବାର ଦେଖି କବିବର ରାଧାନାଥ ବାଲେଶ୍ୱରରୁ
ପ୍ରକାଶିତ 'ନବସମ୍ବାଦ' ପତ୍ରିକାରେ ନିଜକୁ ଉପେନ୍ଦ୍ରଭଞ୍ଜଙ୍କର ଜଣେ
ଅନୁକାଂକ୍ଷୀ ଭାବରେ ପ୍ରକାଶ କଲେ । ଏହା ଫଳରେ ଅଶୋଭନୀୟ
ମସୀଯୁଦ୍ଧର ଅବସାନ ଘଟିଲା ।

ସାଧାରଣ ଭାବରେ ଜଣାଯାଏ ଯେ ରାଧାନାଥଙ୍କର ପ୍ରେରିତ ପତ୍ର
ପ୍ରକାଶିତ ହେବାପରେ ଏ ମସୀଯୁଦ୍ଧର ଅବସାନ ଘଟିଲା । ମାତ୍ର ପ୍ରକୃତ
ପକ୍ଷରେ ଏ ମସୀଯୁଦ୍ଧର ଅବସାନ ହଠାତ୍ ଘଟିନାହିଁ । କବିବର
ରାଧାନାଥ ତା ୫-୬-୧୮୯୪ ରିଖରେ "ଓଡ଼ିଆ ଓ ନବସମ୍ବାଦ"କୁ ଯେଉଁ
ପତ୍ରଟି ଲେଖିଥିଲେ ତାହା ତା ୧୪-୬-୧୮୯୪ ରିଖ ସଂଖ୍ୟାରେ ପ୍ରକାଶ
ପାଇଥିଲା । ଏହି ପତ୍ରର ଅଷ୍ଟମ ଅନୁଚ୍ଛେଦରେ ଲିଖିତ ଥିଲା, "ଭଞ୍ଜ
କବିଙ୍କୁ ମୁଁ ମୋହୋର ଏକାନ୍ତର ଶିକ୍ଷାଗୁରୁ ଜ୍ଞାନ କରି ଆବାଲ୍ୟ ଭକ୍ତି
କରି ଆସୁଅଛି । ମୁଁ ଯେ କେବଳ ବାକ୍ୟଦ୍ୱାରା ତାହାଙ୍କ ପ୍ରତି ଭକ୍ତି
ଦେଖାଇ ଅଛି ତାହା ନୁହେଁ, କାର୍ଯ୍ୟତଃ ଭକ୍ତି ଦେଖାଇବାର ଅନେକ
ନିଦର୍ଶନ ମୋହର ନିଜ ପ୍ରକାଶିତ ପଦ୍ୟରୁ ସଂକଳିତ ହୋଇପାରେ ।
ମୋହଠାରୁ ଭଞ୍ଜଙ୍କର ଅଧିକ ଅନୁକାଂକ୍ଷୀ ପଦ୍ୟଲେଖକ ଓଡ଼ିଶାରେ
ବୋଧହୁଏ ଅଳ୍ପ ବାହାରିବେ ।" (୧)

କବିବର ରାଧାନାଥଙ୍କର ଏହି ଉକ୍ତି ସେ ସମୟର ଦ୍ୱନ୍ଦ୍ୱମୂଳକ
ବାୟୁମଣ୍ଡଳକୁ ଯେ ବିଶେଷ ଭାବରେ ଶାନ୍ତ କରିବା ନିମିତ୍ତ ଉପାଦାନ
ଯୋଗାଇଥିଲା, କହିବା ବାହୁଲ୍ୟ ମାତ୍ର । ଇନ୍ଦ୍ରଧନୁ ଓ ବିଜୁଳି ବିଷୟରେ
ସବିଶେଷ ଆଲୋଚନା କରି ଅଧ୍ୟାପକ ନଟବର ସାମନ୍ତରାୟ ଯେଉଁ ତଥ୍ୟ
ପରିବେଷଣ କରିଅଛନ୍ତି ତାହାର କେତେକାଂଶ ଏଠାରେ ଉଦ୍ଧାରଯୋଗ୍ୟ ।
"ଭଞ୍ଜ-ଗୌରବଗାନ ଓ ରାଧାନାଥ- କୁଖ୍ୟାତି ପ୍ରଖ୍ୟାପନ- ଏହି ଉଦ୍ଦେଶ୍ୟ
ଧରି ଇନ୍ଦ୍ରଧନୁ ପ୍ରକାଶ ପାଏ ୧୮୯୩ ସାଲ ଅଗଷ୍ଟ ମାସ ୧୭ତାରିଖରେ ।
ଏହାର ଠିକ୍ ଏକମାସ ପରେ ଏ ଦେଶରେ ବିଜୁଳି ଦେଖାଦିଏ ।

---

(୧) ଆଧୁନିକ ଓଡ଼ିଆ ସାହିତ୍ୟର ଭିତ୍ତିଭୂମି—ନଟବର ସାମନ୍ତରାୟ-ପୃ୬୦

ବିଜୁଳିର ସମ୍ପାଦକ ଶ୍ରୀ ଦାଶରଥି ରାଉତ ବିଜୁଳି ସମ୍ବନ୍ଧ ସମସ୍ତ ସମ୍ପର୍କ ତୁଟାଇ ଦେଇ ଗୋଟିଏ ସାଧାରଣ ବିଜ୍ଞାପନ ଲେଖନ୍ତି ୧୮୯୪ ସାଲ ସେପ୍ଟେମ୍ବର ମାସ ୧୬ ତାରିଖରେ । ତାପରେ ଏ ପତ୍ରିକାଟି ଚାରି ଦିନ ପାଇଁ ବନ୍ଦ ହୋଇଯାଏ; କିନ୍ତୁ ଇନ୍ଦ୍ରଧନୁ ପ୍ରାୟ ୧୮୯୬ ସାଲ ପର୍ଯ୍ୟନ୍ତ ମାସିକ ରୂପରେ ଗଭୀର ସାମୟିକଭାବେ ରାଧାନାଥଙ୍କୁ ସମାଲୋଚନା କରିବାର ଦେଖିବାକୁ ମିଳେ । ତା ୬-୯-୯୪ରେ ରାଧାନାଥ ପୂର୍ବପତ୍ରଟି ଲେଖିଥିଲେ ଯେଉଁ ତାହା ପ୍ରକାଶିତ ହୋଇଥିଲା ତା ୧୪-୩-୯୪ ରେ । ଏଇ ସାହିତ୍ୟିକ ବିବାଦର ସମୟକୁ (ଯେଉଁ ସମୟରେ କେବଳ ବିଜୁଳି ବାହାରୁଥିଲା) ଯଦି ଠିକ୍ ବାରମାସ ବୋଲି ଧରିନିଆଯାଏ ତାହେଲେ ରାଧାନାଥଙ୍କ ଏଇ ପତ୍ରଟି ବିଜୁଳି ପ୍ରକାଶର ଛ'ମାସ ପରେ ଓ ବିଜୁଳି ବନ୍ଦ ହେବାର ଛ'ମାସ ପୂର୍ବରୁ ଆତ୍ମପ୍ରକାଶ କରିଥିଲା । ପୁନଶ୍ଚ ୧୮୯୬ ସାଲ ପର୍ଯ୍ୟନ୍ତ ଇନ୍ଦ୍ରଧନୁ ମଧ୍ୟ ରାଧାନାଥଙ୍କୁ ସମୟେ ସମୟେ ସମାଲୋଚନା କରିଥିଲା । ଏପରି ସ୍ଥଳେ ରାଧାନାଥଙ୍କ ଏଇ ପତ୍ରଯୋଗୁଁ ବିବାଦ ଶୀଘ୍ର ବନ୍ଦ ହୋଇଗଲା; କହିବାରେ ଦୃଷ୍ଟି ଯଥାର୍ଥତା ଅଛି ବୋଲି ମନେ ହୁଏ ନାହିଁ । ଇନ୍ଦ୍ରଧନୁ ପ୍ରକାଶିତ ହେବାର ପାଖ ୧୫ ମାସ ପୂର୍ବରୁ ଲାଲ ରାମନାରାୟଣ ରାୟ ଉପେନ୍ଦ୍ର ଭଞ୍ଜ ସାହିତ୍ୟ ଉପରେ କଠୋର ସମାଲୋଚନା 'ଉତ୍କଳଦୀପିକା'ରେ ଆରମ୍ଭ କରନ୍ତି । ସେଇ ସମୟଠାରୁ ଏଇ ବିବାଦଟି ନିରବଚ୍ଛିନ୍ନ ଭାବେ ଇନ୍ଦ୍ରଧନୁ ପ୍ରକାଶ ପର୍ଯ୍ୟନ୍ତ ଲାଗି ରହିଥିଲା । ତେଣୁ ଏ ବିବାଦ ସଂପର୍କରେ ଇନ୍ଦ୍ରଧନୁ-ବିଜୁଳିର ଜନ୍ମ ଆଦୌ ଚମକପ୍ରଦ ନୁହେଁ କିମ୍ବା ଏ ବିବାଦ ବନ୍ଦହୋଇଯିବାରେ ରାଧାନାଥଙ୍କ ଏପତ୍ରଟି ଏକମାତ୍ର କାରଣ ନୁହେଁ ।"(୧)

ଇନ୍ଦ୍ରଧନୁ ଓ ବିଜୁଳିର କଳି ଓଡ଼ିଆ ସାହିତ୍ୟ ଜଗତରେ ଯେଉଁ ପ୍ରକାର ଆନ୍ଦୋଳନ ସୃଷ୍ଟି କରୁନା କାହିଁକି ଏହି କଳିହାରି କବିବର ରାଧାନାଥଙ୍କର ମାନସିକ ଅଶାନ୍ତି ଯେ ଯଥେଷ୍ଟ ଭାବରେ ବୃଦ୍ଧି ପାଇଥିଲା ଏଥିରେ ସନ୍ଦେହ ନାହିଁ । କବିବର ରାଧାନାଥ ତାଙ୍କ ପତ୍ରରେ ଯେଉଁ ବିଷୟ ଲେଖିଥିଲେ ତାହା ଯେ ଏକାନ୍ତ ସତ୍ୟ,

(୧) ଆଧୁନିକ ଓଡ଼ିଆ ସାହିତ୍ୟର ଭିତ୍ତିଭୂମି—ପୃ ୬୨

ଏକଥା କୁହାଯାଇ ପାରିବ ନାହିଁ । କବିବର ରାଧାନାଥଙ୍କର ଭଞ୍ଜ ସାହିତ୍ୟ ପ୍ରତି ଯଥେଷ୍ଟ ଅନୁରାଗ ଥାଇଥାଏ ମାତ୍ର ସେ ଯେ ପଦ୍ୟରଚନା କ୍ଷେତ୍ରରେ ଉପେନ୍ଦ୍ରଭଞ୍ଜଙ୍କର ଜଣେ ଅନୁକାରୀ ଏକଥାକୁ ସହଜରେ ବିଶ୍ୱାସ କରିଯାଇ ନପାରେ । କବିବର ରାଧାନାଥ ଯେଉଁ ପତ୍ରରେ ନିଜକୁ ଯେତେ ପରିମାଣରେ ନିର୍ଲିପ୍ତ ବୋଲି ପ୍ରକାଶ କରିଅଛନ୍ତି ସେ ପ୍ରକୃତରେ ସେତେ ପରିମାଣରେ ନିର୍ଲିପ୍ତ ନଥିଲେ । ଇନ୍ଦ୍ରଧନୁ ପ୍ରତି ତାଙ୍କର ଯଥେଷ୍ଟ ମନ୍ଦ ମନୋଭାବ ଥିଲା । ତେଣୁ ଇନ୍ଦ୍ରଧନୁରେ ଯେଉଁମାନେ ଉପେନ୍ଦ୍ର ସାହିତ୍ୟର ପ୍ରଶସ୍ତି ଗାନ କରୁଥିଲେ ସେମାନଙ୍କୁ ରାଧାନାଥ ଯେ ଶତ୍ରୁ ଦୃଷ୍ଟିରେ ଦେଖିଥିଲେ ଏକଥାକୁ କେବେହେଲେ ଅସ୍ୱୀକାର କରାଯାଇ ପାରିବ ନାହିଁ । ଯେଉଁମାନେ ବିଜୁଳି ପକ୍ଷ ଗ୍ରହଣ କରିଥିଲେ ସେମାନଙ୍କୁ ରାଧାନାଥ କୌଣସିଠାରେ ପ୍ରତ୍ୟକ୍ଷ ପ୍ରେରଣା ଦେବାର ପ୍ରମାଣ ନାହିଁ । ତଥାପି କବିବର ରାଧାନାଥ ଯେ ସେମାନଙ୍କ ସ୍ତୁତିଗାନ ଲାଗି ସେମାନଙ୍କ ନିକଟରେ କୃତଜ୍ଞ ଥିଲେ, କହିବା ବାହୁଲ୍ୟ ମାତ୍ର । କବିବର ରାଧାନାଥଙ୍କ ମନ ମଧ୍ୟରେ ଇନ୍ଦ୍ରଧନୁ ପ୍ରତି କିପରି ଅସହିଷ୍ଣୁ ଭାବ ରହିଥିଲା ତାହାର ଗୋଟିଏ ଉଦାହରଣ ହେଉଛି ପୁରୀଜିଲ୍ଲା ସ୍କୁଲ ପରିଦର୍ଶନ ସମୟରେ ଗୋପବନ୍ଧୁଙ୍କୁ କେନ୍ଦ୍ର କରି ତାଙ୍କର କାର୍ଯ୍ୟ କଳାପ ।

୧୮୯୪ ସାଲ ଜାନୁୟାରୀ ମାସ ୨୫ ତାରିଖରୁ ଫେବ୍ରୁୟାରୀ ମାସ ୨ ତାରିଖ ପର୍ଯ୍ୟନ୍ତ ରାଧାନାଥ ପୁରୀ ଇଂରେଜୀ ସ୍କୁଲ ପରିଦର୍ଶନ କରିବାକୁ ଯାଇଥିଲେ । ସେଠାରେ ସେ ତଦନ୍ତ କରି ବୁଝିବାକୁ ଚାହିଁଲେ ଯେ ସ୍କୁଲର କେଉଁ କେଉଁ ଛାତ୍ର ଇନ୍ଦ୍ରଧନୁ ଚିତନ୍ତ ଓ ଇନ୍ଦ୍ରଧନୁକୁ ଲେଖାପଠାନ୍ତି । ସେଠାରେ ସେ ଜାଣିବାକୁ ପାଇଲେ ଯେ ଚତୁର୍ଥ ଶ୍ରେଣୀର ଛାତ୍ର ଗୋପବନ୍ଧୁ ଦାଶ ଇନ୍ଦ୍ରଧନୁ ଚିତନ୍ତ ଓ ଇନ୍ଦ୍ରଧନୁକୁ ନିୟମିତ ଲେଖାପଠାନ୍ତି । ଏବିଷୟ ଗୋପବନ୍ଧୁଙ୍କୁ ପଚାରିଗଲା । ଗୋପବନ୍ଧୁ ଏବିଷୟ ଅସ୍ୱୀକାର କଲେ । ତେଣୁ ମିଥ୍ୟା କହିବା ଅପରାଧରେ ଗୋପବନ୍ଧୁଙ୍କର ସାତଦିନର ବୃତ୍ତି କାଟିଦିଆଗଲା ଏବଂ ଗତବର୍ଷର ପରୀକ୍ଷାରେ ପାରଦର୍ଶିତା ଅର୍ଜନ

କରୁଥିବା ଯୋଗୁଁ ସେ ଯେଉଁ ପୁରସ୍କାର ପାଇଥାଆନ୍ତେ ତାହାକୁ ମଧ୍ୟ ହାରି ବସିଥିଲେ । କବିବର ରାଧାନାଥ ସେପ୍ଟେମ୍ବର ମାସ ୨ ତାରିଖରେ କଟକ ଫେରିଲେ ଓ ତାର ତିନିଦିନ ପରେ ଏହି ଚିଠି ଲେଖି ପ୍ରକାଶ ପାଇଁ ପଠାଇଲେ । ଏପ୍ରକାର ମନୋବୃତ୍ତି ସତ୍ତ୍ୱେ ରାଧାନାଥ ଯେଉଁ ଚିଠି ଲେଖି ନିଜର ନିର୍ଲିପ୍ତ ଭାବ ପ୍ରଦର୍ଶନ କରିଥିଲେ ତାଙ୍କ ନିଜର ଭାଷାକୁ କପଟ ବା ବିଶ୍ୱାସ କରାଯାଇ ପାରିବ ? ତେଣୁ ମନେହୁଏ, ସେ ସମୟରେ ଘଟଣାର ପ୍ରବାହ ଏପରି ଅଶୋଭନୀୟ ହୋଇ ଉଠିଥିଲା, ଯାହାକୁ ପ୍ରଶମିତ କରିବା ପାଇଁ ରାଧାନାଥ ମିଥ୍ୟାର ଆଶ୍ରୟ ଗ୍ରହଣ କରିଥିଲେ ।

ସେ ସମୟର ଘଟଣା ପ୍ରବାହ ଯୋଗୁଁ କବିଚିତ୍ତ କିପରି ବିକ୍ଷିପ୍ତ ହୋଇ ପଡ଼ିଥିଲା ତାହାର ଯଥେଷ୍ଟ ପ୍ରମାଣ ମହାଯାତ୍ରା ଭଳି ଶ୍ରେଷ୍ଠତମ କୃତିର ଅସମ୍ପୂର୍ଣ୍ଣତା ଏବଂ ଦରବାର କାବ୍ୟରେ କବିଙ୍କର ନିଜ ଅବସ୍ଥା ଚିତ୍ରଣରୁ ମିଳିଥାଏ । ମହାଯାତ୍ରା ଭଳି ଏକ ବିଶିଷ୍ଟ ମହାକାବ୍ୟ ଅସମ୍ପୂର୍ଣ୍ଣ ରହିବା ମୂଳରେ କାରଣ ଅନ୍ୟ ଯାହା ଥାଉନା କାହିଁକି କବିଙ୍କର ମାନସିକ ଅବସ୍ଥାହିଁ ପ୍ରଧାନ କାରଣ । କେବଳ ମହାଯାତ୍ରା ନୁହେଁ, ପାର୍ବତୀକାବ୍ୟର ଅସମ୍ପୂର୍ଣ୍ଣତା ମୂଳରେ ମଧ୍ୟ ସେହି ଗୋଟିଏ କାରଣ ଥିବାର ଜଣାଯାଏ ।

କବିବର ରାଧାନାଥ ଯେତେଦିନ ପର୍ଯ୍ୟନ୍ତ ପାଠକମାନଙ୍କଠାରୁ ପ୍ରଶଂସାବାଣୀ ଶୁଣୁଥିଲେ ସେତେଦିନ ପର୍ଯ୍ୟନ୍ତ ତାଙ୍କର ଲେଖନୀ ଅବିରତ ଭାବରେ ଗତିଶୀଳ ହୋଇ ଗୋଟିକ ପରେ ଗୋଟିଏ କାବ୍ୟ ସୃଷ୍ଟି କରିଯାଉଥିଲା । କବି ଯେତେବେଳେ ପାର୍ବତୀ କାବ୍ୟ ସୃଷ୍ଟି କଲେ ସେତେବେଳେ ତାହା ଏଦେଶର ବହୁ ପାଠକଙ୍କ ଦ୍ୱାରା ଅତ୍ୟନ୍ତ ନିର୍ମମ ଭାବରେ ସମାଲୋଚିତ ହେଲା । ଏହାଦ୍ୱାରା କବିଙ୍କୁ ଅନେକ ବ୍ୟକ୍ତି ବିଜାତୀୟ ମନୋବୃତ୍ତିର ଲୋକ ବୋଲି ମଧ୍ୟ ଆକ୍ଷେପ କରିଥିଲେ । କବିବର ରାଧାନାଥ ପାଠକମାନଙ୍କର ଏହିପ୍ରକାର ଆକ୍ଷେପୋକ୍ତିରେ ଅତ୍ୟନ୍ତ ବିକ୍ଷୁବ୍ଧଚିତ୍ତ ହୋଇପଡ଼ି ପାର୍ବତୀକାବ୍ୟକୁ ସମ୍ପୂର୍ଣ୍ଣ ନକରି ଅସମ୍ପୂର୍ଣ୍ଣ ଅବସ୍ଥାରେ ଛାଡ଼ିଦେଲେ । ପାର୍ବତୀ କାବ୍ୟ

ଅସମ୍ପୂର୍ଣ୍ଣ ରହିବାର କାରଣ ସ୍ୱରୂପ ରାଧାନାଥ ଜୀବନୀରେ ଯାହା ଲେଖାଯାଇଅଛି ତହିଁରେ ଆସ୍ଥା ସ୍ଥାପନ କରାଯାଇ ନପାରେ । ଶଶିଭୂଷଣଙ୍କ ସ୍ୱାସ୍ଥ୍ୟ ଯଦି ପାର୍ବଣୀକାବ୍ୟର ଅସମ୍ପୂର୍ଣ୍ଣତାର କାରଣ ହୁଏ, ତେବେ ପୁଣି କବିଙ୍କ ଲେଖନୀରୁ ଚିଲିକା ଜନ୍ମନେଲା କିପରି ? କବି ଯେଉଁ ସମୟରେ ଚିଲିକା ରଚନା କଲେ ସେହି ସମୟରେ ତ ଅସମ୍ପୂର୍ଣ୍ଣ ପାର୍ବଣୀ କାବ୍ୟକୁ ସମ୍ପୂର୍ଣ୍ଣ କରିପାରି ଥାଆନ୍ତେ । ମାତ୍ର ତାହା ନକରିବାର କାରଣ କଣ ବା ଥାଇପାରେ ? ଏଠାରେ ଅତି ସହଜରେ ଧରିନିଆଯାଇ ପାରେ ଯେ, କବି ତାଙ୍କର ପାଠକମାନଙ୍କର ସମାଲୋଚନାକୁ ଅତ୍ୟନ୍ତ ଗୁରୁତର ମନେ କରୁଥିଲେ । ସେମାନଙ୍କର ସମାଲୋଚନା ବାଣରେ ଆହତ କବି ଭଗ୍ନମନୋରଥ ହୋଇପଡୁଥିଲେ ।

ଚିଲିକା କାବ୍ୟ ରଚନା କରିବା ସମ୍ପର୍କରେ କବିଙ୍କ ଅବଚେତନ ମସ୍ତିଷ୍କରୁ ତାଙ୍କର ଭଗ୍ନମନୋରଥ ହେବାର ଯଥେଷ୍ଟ ପରିଚୟ ମିଳିଅଛି । ଚିଲିକା କାବ୍ୟରେ କବିଙ୍କର ଜୀବନଦର୍ଶନ ହିଁ ତାଙ୍କ ମନର ଗଭୀର ଅସନ୍ତୋଷ ଓ ବିକ୍ଷିପ୍ତ ଚିନ୍ତାର ଯଥାର୍ଥ ପ୍ରକାଶ । ଚିଲିକା ରଚନା ଶେଷ କରିବା ପରେ କବି ମହାଯାତ୍ରା ରଚନା କଲେ । ମାତ୍ର ମହାଯାତ୍ରା ପୂର୍ବପରି ପାର୍ବଣୀ ଦଶା ଭୋଗିଲା । ମହାଯାତ୍ରା ଅସମ୍ପୂର୍ଣ୍ଣ ରହିବା ଯୋଗୁଁ ରାଧାନାଥ ଜୀବନୀରେ ଯେଉଁ କାରଣ ଦିଆଯାଇଅଛି ତାହା ଏକାଧିକ ହୋଇଥିବାରୁ ପାଠକ ତଥା ସମାଲୋଚକମାନଙ୍କ ମନରେ ସନ୍ଦେହ ଜାତ କରାଇଥାଏ ।

ରାଧାନାଥ ଯୁଗ ସମ୍ବନ୍ଧୀୟ ଏକ ଆଲୋଚନାରେ ଲକ୍ଷ୍ମୀନାରାୟଣ ସାହୁ ମତ ପ୍ରଦାନ କରିଛନ୍ତି, "କେହି କେହି କହନ୍ତି ମହାଯାତ୍ରାର କେତେକ ଅଂଶ ବାହାରିଲା ପରେ ସରକାର ସନ୍ଦେହ କରିବାକୁ ଲାଗିଲେ ସେଥିପାଇଁ ବାକି ଅଂଶ ଯୋଡ଼ିଦିଆଗଲା ।" (୧) ଡକ୍ଟର ହରେକୃଷ୍ଣ ମହତାବ ଲେଖିଛନ୍ତି, "ଶୁଣାଯାଏ ମହାଯାତ୍ରାର କେତେକ

(୧) ଡଗର—୧୬ଶ ବର୍ଷ, ୨ୟ ସଂଖ୍ୟା—ପୃ ୩୧

ଅଂଶ ପ୍ରକାଶିତ ହେବାକୁ ଦିଆଯାଇ ନଥିଲା ।"(୨) ପୁଣି ଐତିହାସିକ ଶ୍ରୀଯୁକ୍ତ ପରମାନନ୍ଦ ଆଚାର୍ଯ୍ୟ ଲେଖିଛନ୍ତି, "କେତେବର୍ଷ ପରେ କବିବରଙ୍କ ପୁତ୍ର ଶଶିଭୂଷଣ ରାୟଙ୍କ ଜୀବିତ ବସ୍ଥାରେ ଥରେ ତାଙ୍କୁ ମହାଯାତ୍ରାର ପାଣ୍ଡୁଲିପି ସମ୍ପର୍କରେ ପଚାରିବାରେ ସେ କହିଥିଲେ ଯେ, ସମସ୍ତ ଲେଖା ତାଙ୍କର ଆଗରେ ପୋଡ଼ା ହୋଇଥିଲା । ରାଧାନାଥ ଯେଉଁ ପ୍ରକାର ଲୋକ ଥିଲେ, ସେ ସତ୍ୟକୁ ସଦା ମୂର୍ତ୍ତିମନ୍ତ ଭାବରେ ଦେଖୁଥିଲେ । ଏଣୁ ମହାଯାତ୍ରା ପାଣ୍ଡୁଲିପି ପୋଡ଼ା ହୋଇଥିବା ସତ୍ୟ ବୋଲି ଗୃହୀତ ହେବା ଉଚିତ ।" (୩)

ମହାଯାତ୍ରାର ପାଣ୍ଡୁଲିପିକୁ ପୋଡି ଦିଆଯାଇଥିବା ବିଷୟ ରାଧାନାଥ ଜୀବନୀରେ ପ୍ରକାଶ ପାଇଥିବାରୁ ପରବର୍ତ୍ତୀକାଳରେ ଆଲୋଚକମାନେ ତାହା ଉପରେ ନିର୍ଭର କରି ନିଜ ନିଜର ମତାମତ ପ୍ରଦାନ କରିଅଛନ୍ତି । ଯେଉଁମାନେ ମହାଯାତ୍ରାର ପାଣ୍ଡୁଲିପି ପୋଡ଼ି ଦିଆଯାଇଥିବା କଥାକୁ ବିଶ୍ୱାସ କରନ୍ତି ନାହିଁ ସେମାନଙ୍କ ଉଦ୍ଦେଶ୍ୟରେ ପରମାନନ୍ଦ ଆଚାର୍ଯ୍ୟଙ୍କ ଉକ୍ତି ପ୍ରକାଶ ପାଇଅଛି ବୋଲି କୁହାଯାଇ ପାରେ । କବିବର ରାଧାନାଥ ସତ୍ୟକୁ କିପରି ଭାବରେ ନିଜ ଜୀବନରେ ପ୍ରୟୋଗ କରିଥିଲେ ତାହାର ବହୁ ଉଦାହରଣ ତାଙ୍କ ଜୀବନୀରେ ଦିଆଯାଇଅଛି । ମାତ୍ର ଅନେକ ସ୍ଥଳରେ ତାହା ଅତିରଂଜନ ଦୋଷଦୁଷ୍ଟ ହୋଇ ପଡ଼ିଥିବାର ପରିଲକ୍ଷିତ ହୋଇଅଛି । ଐତିହାସିକ ପରମାନନ୍ଦ ଆଚାର୍ଯ୍ୟ କବିବର ରାଧାନାଥଙ୍କର ସତ୍ୟବାଦିତା ଉପରେ ଆସ୍ଥା ସ୍ଥାପନ କରି ଏପ୍ରକାର ମତ ପୋଷଣ କରିଅଛନ୍ତି । କେବଳ ସେତିକି ନୁହେଁ, ମହାଯାତ୍ରାର ପାଣ୍ଡୁଲିପି ପୋଡ଼ି ଦିଆଯାଇଛି ବୋଲି ଗ୍ରହଣ କରି ସେ ଏହାର କାରଣ ଖୋଜି ବସିଛନ୍ତି । ତାଙ୍କରି ଭାଷାରେ, "ମହାଯାତ୍ରାର ୫ମ ସର୍ଗ ଓ ୬ମ ସର୍ଗରେ କେତେକ ଐତିହାସିକ ଘଟଣାକୁ ଜଘନ୍ୟତା ଭାବାପନ୍ନ କରି ଲେଖିବାରୁ ତାଙ୍କୁ କେହି ଗୋପନରେ ସାବଧାନ କରାଇ ଦେଇଥିଲେ ? ଉନବିଂଶ

(୨) ଝଙ୍କାର—୮ମ ବର୍ଷ, ୧ମ ସଂଖ୍ୟା ପୃ. ୨୩
(୩) ରାଧାନାଥଙ୍କ ଅନନ୍ୟ ପ୍ରତିଭା—ପୃ ୭୭

ଶତାବ୍ଦୀର ଶେଷ ପାଞ୍ଚବର୍ଷ ମଧ୍ୟରେ ବଙ୍ଗ-ସାହିତ୍ୟରେ କଣସବୁ ଘଟୁଥିଲା, ତାହା ବାଡ଼ପଦାରେ ରହି ଜାଣିବାର ସୁଯୋଗ ନଥିବାରୁ ବଙ୍ଗ-ସାହିତ୍ୟର ପ୍ରଭାବ ରାଧାନାଥଙ୍କ ଉପରେ କପରି ପଡ଼ୁଥିଲା, ତାହା ଜଣାପଡ଼େ ନାହିଁ । ସରକାରୀ କର୍ମଚାରୀ କବି ବୋଧହୁଏ ନିଜକୁ ସାବଧାନ କରାଇ ପରିବର୍ତ୍ତନଶୀଳ ସାହିତ୍ୟ-ଚର୍ଚ୍ଚାରୁ ନିଜକୁ ଦୂରରେ ରଖିଥିଲେ । ତାହା ନହୋଇଥିଲେ ଜଣେ ସୃଜନଶୀଳ କବି ହଠାତ୍ କାହିଁକି ସ୍କୁଲ-ପାଠ୍ୟ ଲେଖିବାରେ ନିଜକୁ ନିୟୋଜିତ କରିଥାନ୍ତେ ? ବୋଧହୁଏ, ରାଧାନାଥ ଯେଉଁ ବିପଦରୁ ନିଜକୁ ରକ୍ଷା କରିବା ପାଇଁ ନିଜର ଗତି ବଦଳାଇଥିଲେ, ୧୮୯୯ରେ ତାଙ୍କୁ ସେହି ବିପଦର ସମ୍ମୁଖୀନ ହେବାକୁ ପଡ଼ିଲା ଓ ସେ ନିଜେ ପୂର୍ବରୁ ପ୍ରସ୍ତୁତ ହୋଇଥିବାରୁ ନିଜର ଦୋଷ ସ୍ଖାଳନ ପାଇଁ ନିଜେ ପାଖରେ କୌଣସି ପାଣ୍ଡୁଲିପି ନଥିବାର ପ୍ରମାଣ ଦେବାପାଇଁ ସେଗୁଡ଼ିକୁ ପ୍ରକୃତରେ ପୋଡ଼ିଦେଇ ନିଜକୁ ସରକାରୀ ଦଣ୍ଡରୁ ରକ୍ଷା କରିଥିଲେ ।" (୧)

ମହାଯାତ୍ରାର ପାଣ୍ଡୁଲିପି ପ୍ରକୃତରେ ଯେ ପୋଡ଼ି ଦିଆଯାଇଥିଲା ସେ ବିଷୟରେ ଯଥେଷ୍ଟ ସନ୍ଦେହ କରିବାର କାରଣ ରହିଛି । ରାଧାନାଥ ଜୀବନୀରେ ମହାଯାତ୍ରା ଅସମ୍ପୂର୍ଣ୍ଣ ରହିବାର ଦୁଇଗୋଟି କାରଣ ଦିଆଯାଇଅଛି । ଗୋଟିଏ ହେଉଛି ଶଶିଭୂଷଣଙ୍କ ସ୍ୱାସ୍ଥ୍ୟହାନି ଏବଂ ଅନ୍ୟଟି ହେଉଛି ଜଣେ ଅଧସ୍ତନ କର୍ମଚାରୀଙ୍କର ସରକାରକୁ ଗୁପ୍ତପତ୍ର ପ୍ରଦାନ । ଏ ଦୁଇଗୋଟି କାରଣ ପରସ୍ପର ବିରୋଧଭାବାତ୍ମକ । ମହାଯାତ୍ରା ଅସମ୍ପୂର୍ଣ୍ଣ ରହିବାର ଏହି ଦୁଇଗୋଟି କାରଣକୁ ଅବିଶ୍ୱାସ କରାଯାଇ ନଥାନ୍ତା ଯେବେ କବିବର ରାଧାନାଥଙ୍କର ଏକ ପତ୍ରରୁ ତୃତୀୟ କାରଣଟି ମିଳି ନଥାନ୍ତା । ଅନୁଗୁଳ ପୋକଭୁଙ୍ଗା ଅପର ପ୍ରାଇମେରୀ ବିଦ୍ୟାଳୟର ଶିକ୍ଷକ ବିଶ୍ୱନାଥ ରଥଙ୍କ ନିକଟକୁ କବିବର ରାଧାନାଥ ୬।୫।୧୮୯୩ ତାରିଖରେ ଯେଉଁ ପତ୍ର ଲେଖିଥିଲେ ତହିଁରେ ଅଛି, "ମହାଯାତ୍ରାର ୫ମ ସର୍ଗ ଲେଖି ଆଜ ଅବକାଶ ମିଳିଲା ନାହିଁ । ସେହି

---

(୧) ରାଧାନାଥଙ୍କ ଅନନ୍ୟ ପ୍ରତିଭା—ପୃ. ୬୮

ହେତୁରୁ ଆଉ ଅବସର ହୋଇ ପାରୁନାହିଁ । ମୋ ବିବେଚନାରେ ଯେଉଁ-
ମାନଙ୍କୁ ଜୀବିକା ସକାଶେ ପରିଶ୍ରମ କରିବାକୁ ହୁଏ, ସେପରି ଲୋକଙ୍କର
କାବ୍ୟ ରଚନାରେ ପ୍ରବୃତ୍ତ ହେବା ଉଚିତ ନୁହେଁ । କାବ୍ୟ ରଚନା
ଅବକାଶ ଏବଂ ନିଶ୍ଚିନ୍ତତା ସାପେକ୍ଷ । ଆମ୍ଭମାନଙ୍କ ପରି ଲୋକଙ୍କର ଏଥି
ବିଷୟରେ ମନ ବଳାଇବା ବାତୁଳତା ମାତ୍ର ।" (୧)

କବିବର ରାଧାନାଥ ଏଠାରେ ମହାଯାତ୍ରାର ଅସମ୍ପୂର୍ଣ୍ଣତାର କାରଣ ରୂପେ ସମୟ ଅଭାବକୁ ଦର୍ଶାଇ ଅଛନ୍ତି । ଶଶିଭୂଷଣଙ୍କର ସ୍ୱାସ୍ଥ୍ୟହାନି ବା ତାଙ୍କର ଜଣେ ଅଧସ୍ତନ କର୍ମଚାରୀଙ୍କର ସରକାରଙ୍କୁ ଗୁପ୍ତ ଖବର ପ୍ରଦାନ ବିଷୟ ସେ ଏଠାରେ ଉଲ୍ଲେଖ କରିନାହାନ୍ତି । କବିବର ରାଧାନାଥ ମହାଯାତ୍ରାକୁ ଅସମ୍ପୂର୍ଣ୍ଣ ରଖିବାର କାରଣ ଭାବରେ ସମୟର ଅଭାବକୁ ଦର୍ଶାଇ ଥିଲେ ହେଁ ଏହା ମଧ୍ୟ ବିଶ୍ୱାସଯୋଗ୍ୟ ନୁହେଁ । କାରଣ ଏପର୍ଯ୍ୟନ୍ତ କବିବର ରାଧାନାଥ ଯେଉଁସବୁ କାବ୍ୟ ରଚନା କରିଛନ୍ତି ସେଥିପାଇଁ ସେ ଅବକାଶ ପାଇଲେ କିପରି ? ଗୋଟିକ ପରେ ଗୋଟିଏ ହୋଇ ଅନେକଗୋଟି କାରଣ ମହାଯାତ୍ରାର ଅସମ୍ପୂର୍ଣ୍ଣତା ପାଇଁ ଦିଆଯାଇ ଅଛି । ସେଗୁଡ଼ିକ ପରସ୍ପର ବିରୋଧୀ ହୋଇଥିବାରୁ ମନେହୁଏ, ପ୍ରକୃତ ସତ୍ୟକୁ ଲୁକ୍କାୟିତ ରଖିବା ଅଭିପ୍ରାୟରେ ଏପରି କାରଣମାନ ଦିଆ-ଯାଇଅଛି । ତେଣୁ ଏଠାରେ ଗ୍ରହଣ କରି ନିଆଯାଇ ପାରେ ଯେ, ମହାଯାତ୍ରାର ଯେଉଁ ଅଂଶଗୁଡ଼ିକ ପୋଡ଼ି ଦିଆଯାଇଅଛି ବୋଲି ଶୁଣାଯାଏ, ତାହା ସତ୍ୟ ନୁହେଁ । ମହାଯାତ୍ରା ଯେତିକି ରଚିତ ହୋଇଥିଲା ସେତିକି ପ୍ରକାଶ ପାଇଅଛି । ତାହାପରେ ଆଉ ରଚିତ ହୋଇନାହିଁ । ମହାଯାତ୍ରାରେ ଅମର୍ଷୀଙ୍କ ବାଣୀକୁ ଆପତ୍ତିଜନକ ବୋଲି କୁହାଯାଇଅଛି । ଶିବାଜୀଙ୍କ ଉତ୍ସାହବାକ୍ୟ ମଧ୍ୟ ସେହିପରି ଆପତ୍ତିଜନକ । ମାତ୍ର ଏଗୁଡ଼ିକୁ ପୋଡ଼ି ନଦେଇ ରାଧାନାଥ ରଖିଲେ କିପରି ? ପାର୍ବତୀ କାବ୍ୟର ଉପସଂହାର ପରବର୍ତ୍ତୀ କାଳରେ ଗଦ୍ୟାକାରରେ ପ୍ରକାଶ ପାଇଲା । କାରଣ ତାର ଅସ୍ତିତ୍ୱ ଥିଲା । ମାତ୍ର ମହାଯାତ୍ରାର କଳ୍ପିତାଂଶର ଅସ୍ତିତ୍ୱ ନଥିବାରୁ ତାହା ଲୋକଲୋଚନ ଗୋଚରକୁ ଆସିପାରି ନାହିଁ । ଏହି ସିଦ୍ଧାନ୍ତରେ ଉପନୀତ

(୧) ରାଧାନାଥ ଜୀବନୀ—ପୃ: ୨୧୮

ହେବାକୁ ସମ୍ବଲପୁର ହିତୈଷିଣୀର ଏକ ସମାଲୋଚନା ଯଥେଷ୍ଟ ସହାୟକ ହୋଇଥାଏ । ସେଥିରେ ଲେଖାଥିଲା, "ଏହିସବୁ ଅସମ୍ପୂର୍ଣ୍ଣ କାବ୍ୟ ଯେ ଏ ଅଗ୍ରାହକ ଦେଶରେ କେବେ ପୂର୍ଣ୍ଣ ହେବ, ସମ୍ଭବପର ବୋଧ ହେଉନାହିଁ । କବିଙ୍କର ଅବସ୍ଥା ଭଲଥିଲେ ଅବା କିଛି ଆଶା କରଯାଆନ୍ତା, କିନ୍ତୁ ସେ ସୁବିଧା ନାହିଁ । କବି ସମାଲୋଚ୍ୟ କାବ୍ୟରେ ନିଜର ଅବସ୍ଥା ସମ୍ବନ୍ଧରେ କହିଅଛନ୍ତି, 'ଚିର ନିରାନନ୍ଦ ମୁହିଁ ଦାରୁଣ ବିପାକେ, ଙ୍କୁରୁଅଛି ନୈରାଶ୍ୟର ଅତଳ କୁହରେ' । ଏପରି ସ୍ଥଳେ ମହାଯାତ୍ରାର ପରବର୍ତ୍ତୀ ଅଂଶ ରଚିତ ଏବଂ ପ୍ରକାଶିତ ହେବାର ଆଶା କରାଯାଇପାରେ କି ?" (୧)

କବିବର ରାଧାନାଥଙ୍କ ଜୀବନରେ ଏହି ସମୟ ଅତ୍ୟନ୍ତ ଅଶାନ୍ତି-ପୂର୍ଣ୍ଣ ଥିଲା । ତାଙ୍କର ମାନସିକ ଅଶାନ୍ତି ଯୋଗୁଁ ସେ ଏହି ସମୟଠାରୁ ତାଙ୍କର କାବ୍ୟାଦର୍ଶର ଦିଗକୁ ପରିବର୍ତ୍ତନ କରିଅଛନ୍ତି । ପାର୍ବତୀ କାବ୍ୟ ରଚନା କରିବା ପରେ ସେ ଏଦେଶର ପାଠକ ତଥା ସାହିତ୍ୟିକଙ୍କ ଦ୍ୱାରା ସମାଲୋଚିତ ହୋଇ ଯେଉଁ ମାନସିକ ଦୁଶ୍ଚିନ୍ତାର ଶିକାର ହୋଇଥିଲେ ତାହା ଯେପରି ଚିଲିକା କାବ୍ୟରେ ପ୍ରକାଶ ପାଇଅଛି, ମହାଯାତ୍ରା ରଚନା କରିବା ସମୟରେ ଏଦେଶବାସୀଙ୍କ ଆକ୍ଷେପ ଫଳରେ, ଇନ୍ଦ୍ରଧନୁ ଓ ବିଜୁଳିର ଦ୍ୱନ୍ଦ୍ୱ ଫଳରେ ସେ ଯେପରି ଭାବରେ ମାନସିକ ଅଶାନ୍ତିର ଶିକାର ହୋଇଥିଲେ ତାହା ତାଙ୍କର ଦରବାର କାବ୍ୟରେ ପ୍ରକାଶ ପାଇଅଛି । ଏହି ଦୃଷ୍ଟିରୁ ଦରବାର ହେଉଛି କବିବର ରାଧାନାଥଙ୍କର ଏକ ସାର୍ଥକ ଆତ୍ମଲିପି ।

ମଧ୍ୟାହ୍ନ ପରେ ଆସେ ଅପରାହ୍ନ । ଆକାଶର ସୂର୍ଯ୍ୟ କ୍ରମେ ଅସ୍ତାଚଳଗାମୀ ହୁଏ । ଧରିତ୍ରୀକୁ ଅବତରଣ କରେ ସନ୍ଧ୍ୟା । ସନ୍ଧ୍ୟାର ଆଗମନରେ ତୁଳସୀଚଉରା ନିକଟରେ ଜଳଉଠେ ସଞ୍ଜଦୀପ । ୧୮୯୬ ସାଲ ପରେ କବିବର ରାଧାନାଥଙ୍କର ସାହିତ୍ୟିକ ଜୀବନର ଅପରାହ୍ନର ଆରମ୍ଭ ହୋଇଛି । ଅପରାହ୍ନର ପରିଣତି ସନ୍ଧ୍ୟା । ସନ୍ଧ୍ୟାଦୀପ ଜାଳିବା ପାଇଁ ଅପରାହ୍ନରେ ଦୀପର ସଳିତା ବଳି ରଖାଯାଏ । କବିବର ରାଧାନାଥ

(୧) ସମ୍ବଲପୁର ହିତୈଷିଣୀ—ତା ୨ । ୧୨ । ୧୮୯୭ ।

୧୮୯୩ ସାଲ ପରେ ତାଙ୍କର କବିଜୀବନର ସନ୍ଧ୍ୟାଗମ କଳ୍ପନା କରି ତୁଳସୀ ଚଉରା ନିକଟରେ ଦୀପଦାନ କରିବାପାଇଁ ପ୍ରସ୍ତୁତ ହୋଇଛନ୍ତି । ସେ କଳ୍ପନା କରିଥିଲେ ଦୀପର ଆଲୋକରେ ସନ୍ଧ୍ୟାର ଅନ୍ଧକାର ମଧ୍ୟରେ ଏଦେଶର ପାଠକଗଣ ଦେଖିପାରିବେ ତୁଳସୀ ଚଉରା । ତେଣୁ ସେ ତାଙ୍କର କାବ୍ୟାଦର୍ଶର ସମଗ୍ର ଭାବନାକୁ ଦୂରେଇ ଦେଇ ଏଦେଶର ପାଠକମାନଙ୍କ ହାତକୁ ଟେକିଦେଲେ ତୁଳସୀ-ସ୍ତବକ ।

କବିବର ରାଧାନାଥ ଏଦେଶବାସୀଙ୍କ ହାତକୁ ଯେତେବେଳେ ତୁଳସୀ ସ୍ତବକ ଟେକିଦେଲେ ସେତେବେଳେ ଏଦେଶର ପାଠକ ପାଠିକା ତାହାକୁ ଯଥାର୍ଥରେ ତୁଳସୀ ଦଳର ସ୍ତବକ ଭାବରେ ଗ୍ରହଣ କରିନେଲେ । ମାତ୍ର ସମୟ କ୍ରମେ, ଯେଉଁ ତୁଳସୀ ଦୁଇପତ୍ରରୁ ବାସେ ସେ ତାର ବାସ ହରାଇ ବସିଲା । ଏଦେଶବାସୀ ଜାଣିପାରିଲେ ରାଧାନାଥଙ୍କ ଦତ୍ତ ତୁଳସୀ ସ୍ତବକ, ତୁଳସୀର ସ୍ତବକ ନୁହେଁ; ତୁଳସୀ ଦାସଙ୍କର ପଦ-ସ୍ତବକ । କବିବର ରାଧାନାଥ ଓଡ଼ିଆ ସାହିତ୍ୟାକାଶରେ ଅପରାହ୍ନର ସୂର୍ଯ୍ୟଭଳି ଯେଉଁ ଆଲୋକ ବିକୀରଣ କରିଥିଲେ ସେ ଆଲୋକର ଦୀପ୍ତି ସନ୍ଧ୍ୟା ପର୍ଯ୍ୟନ୍ତ କିପରି ଧୀରେ ଧୀରେ ମ୍ଳାନପ୍ରଭ ହୋଇଅଛି ତାହାହିଁ ପରବର୍ତ୍ତୀ ଆଲୋଚନାର ବସ୍ତୁ ।

—୦—



# ଅପରାହ୍ଣର ଆକାଶ

ମଧ୍ୟାହ୍ନ ପରେ ପରେ ସୂର୍ଯ୍ୟର କିରଣ ଧୀରେ ଧୀରେ ପଡ଼େ । ଅପରାହ୍ଣର ଆକାଶରେ ସୂର୍ଯ୍ୟ କ୍ରମେ ଅସ୍ତାଚଳମୁଖୀ ହେବା ଯୋଗୁଁ ସୂର୍ଯ୍ୟର କିରଣ କ୍ରମେ ମଳିନ ପଡ଼ିଆସେ । ସୂର୍ଯ୍ୟ ଧୀରେ ଧୀରେ ସମାଗତ କ୍ଷୟଶୀଳ କିରଣ ଦାନ କରି ଯେତେବେଳେ ପଶ୍ଚିମ ଆକାଶରେ ଉପନୀତ ହୁଏ ସେତେବେଳେ ପଶ୍ଚିମ ଆକାଶରେ ବର୍ଣ୍ଣୋତ୍ସବର ଲୀଳା ଆରମ୍ଭ ହୋଇଯାଏ । ପଶ୍ଚିମ ଆକାଶକୁ ବିଚିତ୍ର ବର୍ଣ୍ଣରେ ରଞ୍ଜିତ କରି ସୂର୍ଯ୍ୟ ପଶ୍ଚିମ ଆକାଶର ଆଢ଼ୁଆଳକୁ ଚାଲି ପଡ଼େ । ସେତେବେଳେ ଆକାଶରେ ସୂର୍ଯ୍ୟର ସତ୍ତା ଦୃଷ୍ଟିଗୋଚର ହୁଏ ନାହିଁ ସତ୍ୟ, ମାତ୍ର ତାର ଅସ୍ତରାଗ କିଛିକ୍ଷଣ ପାଇଁ ଧରିତ୍ରୀପୃଷ୍ଠକୁ ଛାୟାଲୋକର ବିଚିତ୍ର ମିଶ୍ରଣରେ ଉଦ୍ଭାସିତ କରିଥାଏ ।

୧୮୯୪ ସାଲଠାରୁ ଉତ୍କଳ ସାହିତ୍ୟାକାଶରେ କବିବର ରାଧାନାଥ ଅପରାହ୍ଣର ସୂର୍ଯ୍ୟ ଭଳି ମଳିନ ଆଲୋକ ଦାନ କରିବାକୁ ସମର୍ଥ ହୋଇଥିଲେ । ସେ ଆଲୋକର ଆଉ ପୂର୍ବପରି ଉଜ୍ଜ୍ୱଳ ନଥିଲା । ୧୮୯୪ ସାଲ ଜୁଲାଇ ମାସ ଶେଷ ବେଳକୁ ତୁଳସୀ ସ୍ତବକ, ସେହିବର୍ଷ ସେପ୍ଟେମ୍ବର ମାସରେ ଯଯାତିକେଶରୀ ଓ ଦରବାର ୧୮୯୬ ସାଲରେ ପ୍ରକାଶ ପାଇଥିଲା । ଏହି ତିନିଗୋଟିରୁ ଦୁଇଗୋଟି ସୃଷ୍ଟିରେ କବିଙ୍କର ମାନସିକ ପ୍ରତିକ୍ରିୟାର ଆଭାସ ମିଳିଥାଏ । ତୁଳସୀସ୍ତବକ ଓ ଦରବାର କବିଙ୍କର ମାନସିକ ପ୍ରତିକ୍ରିୟା ପ୍ରକାଶ କରିବାକୁ ସମର୍ଥ, ମାତ୍ର ଯଯାତିକେଶରୀ ତହିଁରୁ ମୁକ୍ତ । ଯଯାତିକେଶରୀର ରଚନା କାଳ ବିଷୟରେ ମତଦ୍ୱୈଧ ରହିଅଛି । ପ୍ରସଙ୍ଗ କ୍ରମେ ସେ ବିଷୟ ଆଲୋଚିତ ହେବ ।

ସେ ଯାହା ହେଉନା କାହିଁକି, କବିବର ରାଧାନାଥଙ୍କର ସୃଷ୍ଟି ପ୍ରତିଭା ଯେ ମହାଯାତ୍ରା ରଚନା ପରେ ବିଲୟ ଭଜିଛି ଏକଥା ମୁକ୍ତକଣ୍ଠରେ ସ୍ୱୀକାର କରିବା କଥା ।

# ତୁଳସୀ ସ୍ତବକ

୧୮୯୪ ସାଲ ଜୁଲାଇ ମାସ ଶେଷବେଳକୁ ତୁଳସୀସ୍ତବକ ପ୍ରକାଶ ପାଇଥିଲା । ତା ୨୬. ୭. ୧୮୯୪ ରିଖରେ କବି ଏହାକୁ ଆଠମଲ୍ଲିକ ରାଜାଙ୍କୁ ଉତ୍ସର୍ଗ କରି ଲେଖିଥିଲେ, "ବାଗ୍‌ଦେବୀଙ୍କ ଉଦ୍ୟାନରୁ ସୁନ୍ଦର ପୁଷ୍ପ ତୋଳି ସେହି ପୁଷ୍ପରେ ସ୍ତବକ ପ୍ରସ୍ତୁତ କରି ଉପହାର ଦେଲେ ତାହା ଶ୍ରୀଯୁକ୍ତଙ୍କ ଗୌରବାନ୍ୱିତ ନାମର କଥଞ୍ଚିତ ଉପଯୁକ୍ତ ହୁଅନ୍ତା; ମାତ୍ର ମୋହର ସେପରି ସୁବିଧା ନଥିବାରୁ ରୂପସମ୍ପର୍କ ରହିତ କେତେଗୁଡ଼ିଏ ତୁଳସୀଦଳରେ ଏହି ସ୍ତବକ ପ୍ରସ୍ତୁତ କରି ଶ୍ରୀଯୁକ୍ତରେ ଅର୍ପଣ କରିବାକୁ ସାହସୀ ହେଲି ।"

କବିବର ରାଧାନାଥ ଏହି ଉତ୍ସର୍ଗ ପତ୍ରରେ ଯେଉଁ ପ୍ରକାର ଭାଷା ବ୍ୟବହାର କରିଅଛନ୍ତି ତହିଁରୁ ଯେ କୌଣସି ପାଠକ ମନେ କରିବା ନିତାନ୍ତ ସ୍ୱାଭାବିକ ଯେ, ତୁଳସୀ ସ୍ତବକର ଅର୍ଥ ତୁଳସୀ ପତ୍ରର ସ୍ତବକ । କବିବର ରାଧାନାଥ ତାଙ୍କର ଅନ୍ୟକାବ୍ୟମାନଙ୍କରେ ଚରିତ୍ର ନିର୍ବାଚନ ତଥା କାବ୍ୟର କଥାବସ୍ତୁକୁ ଯେପରି ଭାବରେ ମିଥ୍ୟାର ମନୋଜ୍ଞ ଆବରଣ ମଧ୍ୟରେ ସ୍ଥାପନ କରିଅଛନ୍ତି, ତୁଳସୀ, ସ୍ତବକର ନାମକରଣ କରିବାରେ ସେହିପରି ମିଥ୍ୟାର ଏକ ମନୋଜ୍ଞ ଆବରଣ ସୃଷ୍ଟି କରିଅଛନ୍ତି ।

ତୁଳସୀସ୍ତବକ ବିଷୟରେ ଏଦେଶର ଆଲୋଚକଗଣ ପର୍ଯ୍ୟାପ୍ତ ଆଲୋଚନା କରି ଏହାର ଭିତ୍ତି ନିର୍ଣ୍ଣୟ କରିଅଛନ୍ତି । ସେମାନଙ୍କ

ମଧ୍ୟରୁ କବି ରାଧାମୋହନ ଗଡ଼ନାୟକ ଅନ୍ୟତମ । ସେ ଲେଖିଛନ୍ତି, "ରାଧାନାଥଙ୍କ ତୁଳସୀସ୍ତବକରେ ବାଲ୍ମୀକି, ବ୍ୟାସଦେବ, ଜଗନ୍ନାଥ ଦାସଙ୍କୁ ଅନୁସରଣ କରିଥିଲେ ସୁଦ୍ଧା ମୁଖ୍ୟତଃ ତୁଳସୀ ଦାସଙ୍କର ରଚନା ତାଙ୍କର ଅବଲମ୍ବନ । ଅଧିକାଂଶ ସ୍ଥଳରେ ସେ ତୁଳସୀ ଦାସଙ୍କର କବିତା କେବଳ ଅନୁବାଦ କରିଛନ୍ତି, ମାତ୍ର ଅନେକ ସ୍ଥଳରେ ରାମଚରିତ ମାନସର ଭାବକୁ ବିଶଦ ଓ ପୁଷ୍କଳ ଭାବରେ ପ୍ରକାଶ କରିଅଛନ୍ତି । ତୁଳସୀ ଦାସ ଯେପରି ବାଲ୍ମୀକି ଓ ବ୍ୟାସଦେବଙ୍କର ଭାବ ଗ୍ରହଣ କରିଥିଲେହେଁ ସ୍ୱୀୟ ମୌଳିକତା ଦେଖାଇବାକୁ ଭୁଲି ନାହାନ୍ତି, ସେହିପରି ରାଧାନାଥ ମଧ୍ୟ ଚମତ୍କାର ଓ ମନୋଜ୍ଞ ସ୍ୱକୀୟତା ଦେଖାଇଛନ୍ତି ।"(୧)

କବିବର ରାଧାନାଥ କିପରି ଭାବରେ ତୁଳସୀ ଦାସଙ୍କ ରଚନାର ଭିତ୍ତିରେ ନିଜ କବିତା ରଚନା କରିଅଛନ୍ତି ସେ ବିଷୟ କବି ରାଧାମୋହନ ଗଡ଼ନାୟକ ଉଦାହରଣ ସହ ତନ୍ନତନ୍ନ କରି ପରୀକ୍ଷା କରିଅଛନ୍ତି । ତାଙ୍କର ତୁଳନାତ୍ମକ ଆଲୋଚନାର ଦୁଇଟି ପଦ ଏଠାରେ ଉଦ୍ଧାର କଲେ ଅସମୀଚୀନ ହେବ ନାହିଁ ।

ତୁଳସୀ ଦାସ—

> "ଭୂମି ପରତ ଭା ଢାବର ପାନି
> ଜନୁ ଜୀବହି ମାୟା ଲପଟାନି ।
> ସିମୋଟି ସିମୋଟି ଜଲ ଭରହି ତଲାବା
> ଜୋମି ସଦ୍‌ଗୁଣ, ସଜ୍ଜନ ପାହିଁଆବା ।"

ରାଧାନାଥ —

> "ଆବିଳ ନବଜଳ ଚରଣି ମହୀ
> ମାୟାରେ ଜୀବ ଯଥା ଜଡ଼ ହୁଅଇ ।
> ନଇରେ ସରପାରେ ପୂରିଲା ସର
> ସାତ୍ତ୍ୱିକ ଗୁଣେ ଯଥା ସାଧୁଅନ୍ତର ।"

(୧) ରାଧାନାଥ ପରିଚୟ—ପୃ. ୧୧୦

ତୁଳସୀ ଦାସ—

"କବହୁଁ ଦିବସ ମହଁ ନିବିଡ଼ ତମ
ତଜହୁଁ କ ପ୍ରଗଟ ପତଙ୍ଗ
ବିନସଇ ଉପଜଇ ଜ୍ଞାନ ଜିମି
ପାଇ କୁସଙ୍ଗ ସୁସଙ୍ଗ ।"

ରାଧାନାଥ—

"କ୍ଷଣେ ନିବିଡ଼ ତମ ଗ୍ରାସଇ ଧରା,
କ୍ଷଣେ ଉଦ୍ଭୁକେ ପୁଣି ପ୍ରଚଣ୍ଡ ଖରା;
କୁସଙ୍ଗ ଏଣ୍ବିପରି ସୁଜ୍ଞାନ ନାଶେ
ସୁସଙ୍ଗ ଏଣ୍ବିପରି ଜ୍ଞାନ ପ୍ରକାଶେ ।"

କବିବର ରାଧାନାଥଙ୍କର ତୁଳସୀସ୍ତବକ ପ୍ରକାଶ ପାଇବା ପରେ ବହୁ ଆଲୋଚକ ତାହାର ସମାଲୋଚନା କରି କବିଙ୍କର ପ୍ରଶଂସାଗାନ କରିଅଛନ୍ତି । ସେ ସମୟରେ ଘଟଣାଚକ୍ରରେ କବିବର ରାଧାନାଥଙ୍କ ସହିତ ବହୁ ବଂଗ୍ଲର ଅଭୁକ୍ତ ମଣା ସୃଷ୍ଟି ହୋଇଥିବାରୁ କେତେକ ବ୍ୟକ୍ତି ମନେ କରିଥିଲେ ଯେ ରାଧାନାଥ ସେମାନଙ୍କୁ ପ୍ରକାରାନ୍ତରରେ ଆକ୍ଷେପ କରି ତୁଳସୀସ୍ତବକ ରଚନା କରିଅଛନ୍ତି ! ଏ ସଦର୍ଭରେ ୧୮୯୪ ସାଲ ସେପ୍ଟେମ୍ବର ମାସରେ ଆଶ୍ରିତାଣି ଶତପଥିଙ୍କ ଦ୍ୱାରା ଲିଖିତ ସମାଲୋଚନାର କିୟଦଂଶ ଏଠାରେ ଉଦ୍ଧାର ଯୋଗ୍ୟ ।

"ଏଇ ପ୍ରତ୍ୟେକ ମତ ଉପଦେଶକୁ ଗୋଟିଏ ଗୋଟିଏ ତୁଳସୀପତ୍ର ସହିତ ତୁଳନା କରିଯାଇପାରେ । ସୁତରାଂ ଏଇ କ୍ଷୁଦ୍ର ପୁସ୍ତକଟିକୁ ଯେ ହୃଦୟରେ ଧାରଣ କରି ପାରିବ, ଏହା ତାହାର ଚିତ୍ତର ପବିତ୍ରତା ଜନ୍ମାଇବ । × × × ଆମ୍ଭେମାନେ ଶୁଣି ବିସ୍ମିତ ହେଲୁ ଯେ, କୌଣସି ଲଘୁଚେତା ବ୍ୟକ୍ତି ଏହି ପୁସ୍ତ କବିତାର—

ଦୁଃସହ ହେଲା ଖର-ରଶ୍ମି କରଣ
ଦୁଃସହ ଗୁଣୀ ଯଶ ଖଳେ ଯେସନ ।

ସହନ୍ତି ଧାରାପାତ ଶଇଳଗଣ
ଖଳ ବଚନ ଯଥା ସହେ ସୁଜନ ।

ଏହି ଅଂଶରେ ଆପଣାର ପ୍ରତିଚ୍ଛବି ଦେଖି ମର୍ମାହତ ହୋଇ ଅନନ୍ତ ଏବଂ ଆଧୁନିକ ସାହିତ୍ୟାନ୍ଦୋଳନଠାରେ ତୁଳସୀସ୍ତବକର ଜନକଙ୍କୁ ଆକ୍ରମଣ କରନ୍ତି । ଏପରି ଲଘୁଚେତାଙ୍କୁ ଆମ୍ଭେମାନେ ଏହି ଆଶ୍ୱାସନା ଦେଇପାରୁ ଯେ ସାର୍ବଭୌମିକ ସତ୍ୟ ଲେଖିଲେ ଯଦ୍ୟପି କେହି ମର୍ମାହତ ହୁଅନ୍ତି ତାହାର ସତ୍ୟର କିମ୍ବା ଲେଖକଙ୍କର ଦୋଷ ହୋଇ ନପାରେ । ଉଲ୍ଲିଖିତ କବିତାର ଭାବ ମଧ୍ୟ କବିବରଙ୍କ ସ୍ୱ କପୋଳ—କଳ୍ପିତ ନୁହେଁ । ତାହାର ୨।୩ ପଂକ୍ତି ତୁଳସୀଦାସଙ୍କ ଗ୍ରନ୍ଥରୁ ଗୃହୀତ । ସୁତରାଂ ତାଙ୍କର ' ଆଶଙ୍କା ନିତାନ୍ତ ଅମୂଳକ । " (୧)

ତୁଳସୀସ୍ତବକ ଯେପରି ସମୟରେ ପ୍ରକାଶିତ ହୋଇଥିଲା ସେସମୟରେ କବିବର ରାଧାନାଥଙ୍କର ମନୋବୃତ୍ତିର ଅଶାନ୍ତଭାବ ଯେ କେତେକ ପରିମାଣରେ ଚହିଁରେ ପ୍ରକାଶ ପାଇନାହିଁ, ଏକଥା କୁହାଯାଇ ପାରିବ ନାହିଁ । ମନେହୁଏ, କବିବର ରାଧାନାଥ ତାଙ୍କର ନିନ୍ଦାରଟନାକାରୀମାନଙ୍କ ନିନ୍ଦାରେ ବ୍ୟଥିତ ହୋଇ ତୁଳସୀଦାସଙ୍କର ରାମଚରିତ ମାନସର କେତେକ ପଙ୍କ୍ତି ଖୋଜି ତାହାକୁ ଅନୁବାଦ କରିଅଛନ୍ତି । କବିବର ରାଧାନାଥ ଯେତେବେଳେ ମହାକବି କାଳିଦାସଙ୍କର ମେଘଦୂତ ଅନୁବାଦ କରିଥିଲେ ସେତେବେଳେ ତାଙ୍କର କବିମାନସ ଥିଲା ସୃଷ୍ଟି ପଥର ପଥିକ । ସେତେବେଳେ ତାଙ୍କର ମାନସିକ ଅବସ୍ଥା ସୁସ୍ଥିର ଥିଲା । ମାତ୍ର ତୁଳସୀସ୍ତବକ ଅନୁବାଦ କରିବା ସମୟରେ କବିବର ରାଧାନାଥଙ୍କର ମାନସିକ ଅବସ୍ଥା ଥିଲା ଅସ୍ଥିର । ଓଡ଼ିଶାର ଅଗଣିତ ପାଠକଙ୍କୁ କବି ଯାହା ଦେବାର କଥା ନେଇଗଲେ,

(୧) ଯୁଗ ପ୍ରବର୍ତ୍ତକ ସ୍ରଷ୍ଟା ରାଧାନାଥ—ପୃ. ୧୯୬

ମାତ୍ର ପାଠକମାନଙ୍କର ଚିତ୍ତରାଜ୍ୟରୁ ସେ ଯଥାର୍ଥ ଅଭିନନ୍ଦନ ଆଶାନୁରୂପ ପାଇପାରିଲେ ନାହିଁ । ତେଣୁ ଉପଦେଶ ଦେବା ଛଳରେ ହେଉ, ବା ନିଜ ମନକୁ ସନ୍ତୁଷ୍ଟ କରିବାକୁ ହେଉ ସେ ଖୋଜିବସିଛନ୍ତି ସନ୍ତକବି ତୁଳସୀଦାସଙ୍କ ଗ୍ରନ୍ଥର ଅମୂଲ୍ୟ ପଦାବଳୀ ।

ରାଧାନାଥଙ୍କର କବିପ୍ରତିଭା ଯେତେବେଳେ ଉନ୍ମେଷ ଅବସ୍ଥାରେ ଥିଲା ସେତେବେଳେ ତାଙ୍କ ଲେଖନୀ ଅନୁବାଦ କରିଥିଲା ମେଘଦୂତ, ମେଘଦୂତର ଅନୁବାଦରେ କବି ଏପରି ସ୍ୱାତନ୍ତ୍ର୍ୟ ପ୍ରଦର୍ଶନ କରିଥିଲେ ଯେ, ଅଧିକାଂଶ ପାଠକ ତାହାକୁ ଏକ ମୌଳିକ ରଚନା ଭାବରେ ଗ୍ରହଣ କରିଥିଲେ । କବିବର ରାଧାନାଥ ଯେତେବେଳେ ଅନୁଭୂତିର ଶିରପ୍ରଶିଖରେ ନିଜର କପାଳକୁ ମଣ୍ଡିତ କରିଛନ୍ତି, ସୁଦକ୍ଷ ସ୍ରଷ୍ଟାର ଗୌରବ ପାଇଛନ୍ତି ଓ କବିବର ଭାବରେ ଉତ୍କଳର ସାହିତ୍ୟ ରାଜ୍ୟରେ ଅଭିଷିକ୍ତ ହୋଇ ଯଶସ୍ୱୀ ହୋଇଛନ୍ତି ସେତେବେଳେ ତାଙ୍କ ଲେଖନୀରୁ ତୁଳସୀଦାସଙ୍କ ଗ୍ରନ୍ଥର କତିପୟ ଅଂଶର ଅନୁବାଦ କଣ କେବେହେଲେ ଦୋଷଦୁଷ୍ଟ ହୋଇପାରେ ? ତୁଳସୀଅନୁବାଦର ଅନୁବାଦରେ ଯେଉଁପରି ସ୍ୱକୀୟ ମୌଳିକତା ଯଦି ସେ ରକ୍ଷାକରି ନଥାନ୍ତେ ତେବେ ତାହାକୁ ତୁଳସୀ ଦଳର ସ୍ତବକ ଭାବରେ ପାଠକମାନଙ୍କ ସମକ୍ଷରେ ଉପସ୍ଥାପିତ କରିବାକୁ ଉଚିତ ମନେକରି ଥାଆନ୍ତେ କିପରି ?

## ଯଯାତିକେଶରୀ

୧୮୯୪ସାଲ ଜୁନ୍ ସଂଖ୍ୟା ଉତ୍କଳପ୍ରଭାରେ କବିବର ରାଧାନାଥଙ୍କର ଯଯାତିକେଶରୀ କାବ୍ୟର କେତେ ଅଂଶ ପ୍ରକାଶ ପାଇଥିଲା । ଯଯାତି କେଶରୀ ପ୍ରକାଶ ପାଇବା ପରେ କେତେକ ସମାଲୋଚକ ତାହାକୁ ସମାଲୋଚନା କରି କବିବର ରାଧାନାଥଙ୍କର ନିନ୍ଦାଗାନ କରିଥିଲେ । କବିବର ରାଧାନାଥ ଯଯାତି କେଶରୀ କାବ୍ୟ ରଚନା କରିବା ମୂଳରେ ଉପେନ୍ଦ୍ର ଭଞ୍ଜଙ୍କର ଆଦି-

ରସାତ୍ମକ କାବ୍ୟର ସମକକ୍ଷ କାବ୍ୟ ରଚନା କରିବାର ପ୍ରୟାସ ଥିଲାବୋଲି ଯେଉଁ କେତେକ ଆଲୋଚକ ମତ ପ୍ରଦାନ କରିଅଛନ୍ତି ସେମାନଙ୍କର ମତର ଯାଥାର୍ଥ୍ୟ ଆଦୌ ନାହିଁ ବୋଲି କୁହାଯାଇ ପାରେ । କବିବର ରାଧାନାଥ ଇନ୍ଦ୍ରଧନୁ ଓ ବିଜୁଳିର ଦ୍ୱନ୍ଦ୍ୱଯୁଦ୍ଧକୁ ବନ୍ଦ କରିବା ଉଦ୍ଦେଶ୍ୟରେ ଯେଉଁ ଢଙ୍ଗ ପ୍ରକାଶ କରିଥିଲେ ତହିଁରେ ସେ ନିଜକୁ ଉପେନ୍ଦ୍ର ଭଞ୍ଜଙ୍କର ଜଣେ ଅନୁକମ୍ପ ଭାବରେ ପ୍ରକାଶ କରିଥିଲେ । ଏହି ସମୟ ପରେ ପରେ ଯେତେବେଳେ ଯଯାତି କେଶରୀ ପ୍ରକାଶିତ ହେଲା ସେତେବେଳେ ସାଧାରଣ ପାଠକମାନେ ମନେ କରିବା ନିତାନ୍ତ ସ୍ୱାଭାବିକ ଯେ, କବିବର ରାଧାନାଥ ନିଜକୁ ଉପେନ୍ଦ୍ର ଭଞ୍ଜଙ୍କର ଜଣେ ଅନୁକମ୍ପ ଭାବରେ ପ୍ରକାଶ କରିଥିବାରୁ ଉପେନ୍ଦ୍ରଭଞ୍ଜଙ୍କର ଆଦି ରସାତ୍ମକ କାବ୍ୟ-ରୀତିର ଅନୁସରଣରେ ଏହି କାବ୍ୟଟି ରଚନା କରିଅଛନ୍ତି । ମାତ୍ର ପ୍ରକୃତ ପକ୍ଷରେ ଅନୁଧ୍ୟାନ କଲେ ଜଣାଯାଏ ଯେ ଯଯାତି କେଶରୀ କାବ୍ୟରେ କବିବର ରାଧାନାଥ ଏପରି କୌଣସି ପନ୍ଥା ପ୍ରଦର୍ଶନ କରିନାହାନ୍ତି, ଯେଉଁଥିରୁ କି ଯଯାତିକେଶରୀକୁ ଉପେନ୍ଦ୍ର ଭଞ୍ଜଙ୍କର କୌଣସି କାବ୍ୟ ସହିତ ତୁଳନା କରାଯାଇ ପାରିବ । ଯଯାତିକେଶରୀ କାବ୍ୟ ୧୮୯୪ ସାଲରେ ପ୍ରକାଶ ପାଇଥିଲେ ହେଁ ତାହା ଯେ ସେହି ସମୟରେ ରଚିତ ହୋଇଥିଲା, ଏ ବିଷୟରେ ମଧ୍ୟ ବହୁତ କିଛି ସନ୍ଦେହ କରିବାର ଅଛି । ଭକ୍ତକବି ମଧୁସୂଦନଙ୍କ ଉକ୍ତିରୁ ଜଣାଯାଏ, "ଯଯାତି କେଶରୀ ଆଜିକାଲି ରଚିତ ହୋଇନାହିଁ । ତାହା ସମ୍ଭବତଃ କବିଙ୍କ ଯୌବନାବସ୍ଥାରେ ରଚିତ ହୋଇଥିଲା । ଆମ୍ଭେମାନେ ଯେବେ ( ଲେଖକ ସ୍ୱୟଂ ଓ ଅନ୍ୟ କେତେକ ଭଦ୍ରବ୍ୟକ୍ତି ) କବିଙ୍କ ପାଶ୍ୱରେ ଉପବିଷ୍ଟ ଥିଲୁ । ( ବୋଧହୁଏ ସେହି ସମୟରେ ଚନ୍ଦନାରାୟଣ ବାବୁଙ୍କର ଯଯାତି କେଶରୀ ସମ୍ବନ୍ଧୀୟ ପ୍ରତିବାଦ ପ୍ରବନ୍ଧ ହିତୈଷିଣୀରେ ବାହାରି ଥିଲା ) ଏମନ୍ତ ସମୟରେ କଥା ପ୍ରସଙ୍ଗରେ ତାଙ୍କଠାରୁ ଶୁଣିଲୁଁ ଯେ ପ୍ରାୟ ୧୨।୧୩ ବର୍ଷ ପୂର୍ବେ ସେ ଉକ୍ତ ପୁସ୍ତକକୁ ରଚନା କରିଥିଲେ, କିନ୍ତୁ ତଦାନୀନ୍ତନ ସମାଜରେ ଉପସ୍ଥାପିତ କରିବାକୁ ସାହସୀ ନହୋଇ ରଖି ଦେଇଥିଲେ । କାରଣ ସମୟ ଓ ଅର୍ଥ ବ୍ୟୟ କରି ଗାଳି ଶୁଣିବାଠାରୁ ନଶୁଣିବା ହିଁ ଶ୍ରେୟସ୍କର ।" (୧)

(୧) ଯୁଗ ପ୍ରବର୍ତ୍ତକ ସ୍ରଷ୍ଟା ରାଧାନାଥ—ପୃ. ୧୧୩

ଏହି ଉକ୍ତି ଯେବେ ସତ୍ୟ ହୋଇଥାଏ ତେବେ ଯଯାତି କେଶରୀର ରଚନା କାଳ ହେଉଛି ୧୮୮୧ ବା ୧୮୮୨ ସାଲ । ଯଯାତି କେଶରୀ କାବ୍ୟକୁ ଆଲୋଚନା କରିବା ସମୟରେ ତାହାର ରଚନା କାଳ ୧୮୮୧ ବା ୧୮୮୨ ସାଲ ରୂପେ କେବେହେଲେ ଗୃହୀତ ହେବାର କଥା ନୁହେଁ । ଲେଖକ ଯେ କୌଣସି ସମୟରେ କୌଣସି ବିଷୟକୁ ଲେଖି-ଥାଆନ୍ତୁ ନା କାହିଁକି, ଆଲୋଚନା କରିବା ସମୟରେ ତାହାର ପ୍ରକାଶ କାଳହିଁ ଧରାଯାଇଥାଏ । ଏ ପ୍ରସଙ୍ଗରେ ଏଠାରେ ଗୋଟିଏ କଥା ପ୍ରକାଶ କଲେ ଅସମୀଚୀନ ହେବନାହିଁ । ଆଧୁନିକ ଓଡ଼ିଆ ସାହିତ୍ୟରେ ଯେତେ-ବେଳେ ନୂଆ ନୂଆ ବିଭବର ସୃଷ୍ଟି ହେଲା ସେତେବେଳେ ଯେଉଁମାନଙ୍କର ରଚନା ସର୍ବପ୍ରଥମେ ଲୋକଲୋଚନ ଗୋଚରକୁ ଆସିଲା ସେମାନେହିଁ ହେଲେ ନୂତନ ବିଭବର ସ୍ରଷ୍ଟା । ମାତ୍ର ତାର ପରବର୍ତ୍ତୀ କାଳରେ ଆହୁରି କେତେକ କବି ବା ଲେଖକ ନିଜ ନିଜର ଲେଖାମାନ ପ୍ରକାଶ କରି ମନ୍ତବ୍ୟ ଦେଲେ ଯେ ସେମାନେ ସେମାନଙ୍କର ଲେଖାକୁ ବହୁ ପୂର୍ବରୁ ଲେଖି ରଖିଥିଲେ, ମାତ୍ର ପ୍ରକାଶ କରିନଥିଲେ । ଏହା ସତ୍ତ୍ୱେ କୌଣସି ସମାଲୋଚକ ସେମାନଙ୍କୁ ନୂତନ ବିଭବର ସ୍ରଷ୍ଟା ଭାବରେ ଗ୍ରହଣ କରି ନାହାନ୍ତି । କାରଣ ରଚନାର ପ୍ରକାଶ କାଳ ସହିତ ସମାଲୋଚକର ସମ୍ପର୍କ ହିଁ ଯଥାର୍ଥ । ସ୍ୱର୍ଗତ ମଣିଚରଣ ମହାପାତ୍ରଙ୍କର ପୁତ୍ର ସ୍ୱର୍ଗତ ଚକ୍ରଧର ମହାପାତ୍ରଙ୍କ ସହିତ ୧୯୬୦ ସାଲରେ ଥରେ କଥାବାର୍ତ୍ତା ପ୍ରସଙ୍ଗରେ ଲେଖକ ଜାଣିବାକୁ ପାଇଲା ଯେ, ସ୍ୱର୍ଗତ ମହାପାତ୍ରଙ୍କର "ଜୟପାଳର ଅଗ୍ନି ପ୍ରବେଶ" ଓ ଆଉ କେତେଗୋଟି କାବ୍ୟ ଅମିତ୍ରାକ୍ଷର ଛନ୍ଦରେ ରଚିତ ଓ ସେଗୁଡ଼ିକ କବିବର ରାଧାନାଥଙ୍କର ମହାଯାତ୍ରା ରଚନାର ତେର ଚଉଦ ବର୍ଷ ପୂର୍ବରୁ ରଚିତ ହୋଇ ଅପ୍ରକାଶିତ ରହିଥିଲା । ତାଙ୍କର ଏହି ଉକ୍ତି ସତ୍ୟ ହୋଇପାରେ, ମାତ୍ର ତାଙ୍କ କଥା ଅନୁସାରେ ସେହି କାବ୍ୟଗୁଡ଼ିକର ରଚନାକାଳକୁ ଗ୍ରହଣ କରିବା ସମାଲୋଚକର କ୍ଷମତାର ବାହାରେ । ତେଣୁ ଏଠାରେ କବିବର ରାଧାନାଥଙ୍କର ଯଯାତିକେଶରୀର ରଚନା କାଳ ଯାହା ହେଉନା କାହିଁକି, ତାହାକୁ ୧୮୯୪ ସାଲର ସୃଷ୍ଟି ଭାବରେ ଗ୍ରହଣ କରିବାକୁ ପଡ଼ିବ । ଏହାହିଁ କବିବର ରାଧାନାଥଙ୍କର ପ୍ରତିଭା ବିଳୟର ଆଦ୍ୟ ଏବଂ ଯଥାର୍ଥ ସଙ୍କେତ । ବିଦେଶୀ କଥାବସ୍ତୁ

ଆଭରଣରେ କାବ୍ୟ ଗଠନ କୌଶଳ ପ୍ରଦର୍ଶନ କରି କବିବର ରାଧାନାଥ ଯେଉଁ ନୂତନ ରୁଚି ଏ ଦେଶରେ ପ୍ରସ୍ତୁତ କରିଥିଲେ ତାହାର ବିଳୟ ଏହିଠାରୁ ଘଟିଲା । କବିବର ରାଧାନାଥଙ୍କର ପ୍ରତିଭା ବିକାଶର ଆଦ୍ୟ ସଙ୍କେତ ଭାବରେ କେଦାରଗୌରୀ ଏ ଦେଶର ଅଗଣିତ ପାଠକ ପାଠିକାମାନଙ୍କୁ ଯେଉଁ ସନ୍ଦେଶ ଦେଇଥିଲା, ଯଯାତିକେଶରୀ ସେହି ପ୍ରତିଭା ବିଳୟର ଶେଷ ସନ୍ଦେଶ ଦେଲା । କବିବର ରାଧାନାଥଙ୍କର ଅମର ଲେଖନୀ ଏହି ସମୟଠାରୁ ଶିଥିଳ ହୋଇପଡ଼ିଲା ।

ଯଯାତି କେଶରୀ କାବ୍ୟର କଥାବସ୍ତୁ ହେଉଛି; ପ୍ରାଚୀନ କାଳରେ ମଗଧ ଦେଶରେ ଜଣେ ରାଜାଥିଲେ । ତାଙ୍କର ପ୍ରଥମା ପତ୍ନୀଙ୍କ ଗର୍ଭରୁ ଯଯାତି ନାମକ ଗୋଟିଏ ପୁତ୍ର ଓ ବିମଳା ନାମ୍ନୀ ଜଣେ କନ୍ୟା ଯମଜ ସନ୍ତାନ ଭାବରେ ଜନ୍ମଗ୍ରହଣ କରିଥିଲେ । ପ୍ରଥମା ପତ୍ନୀଙ୍କର ଏହି ପୁତ୍ର ଏବଂ କନ୍ୟାଙ୍କୁ ରାଜା ଦ୍ୱିତୀୟା ପତ୍ନୀଙ୍କ କୁପରାମର୍ଶରେ ରାଜ୍ୟରୁ ବିତାଡିତ କରିଦେଲେ । ଯଯାତି ଓ ବିମଳାଙ୍କର ରୂପରେ ଅଦ୍ଭୁତ ସାମଞ୍ଜସ୍ୟ ଥିଲା । ଯଯାତି ଓ ବିମଳା ଦୁହେଁ ବାଲ୍ୟ କାଳରେ ଶସ୍ତ୍ର ଓ ଶାସ୍ତ୍ରରେ ପାରଦର୍ଶିତା ଲାଭ କରିଥିଲେ । ଯଯାତି ଓ ବିମଳା ଦୁହେଁ ଅଶ୍ୱାରୋହଣ କରି ନିଜ ରାଜ୍ୟରୁ ଶ୍ରୀକ୍ଷେତ୍ର ଅଭିମୁଖରେ ଅଗ୍ରସର ହେବା ସମୟରେ ପଥ ମଧ୍ୟରେ ଯାଜପୁରର ବିରଜାଙ୍କ ମନ୍ଦିରରେ ବହୁଦିନ ଅବସ୍ଥାନ କରିଥିଲେ ।

ବିମଳା ସବୁବେଳେ ଯଯାତିଙ୍କ ସହିତ ପୁରୁଷ ବେଶରେ ରହୁଥିଲେ । ଦିନେ ବିମଳା ନିକଟବର୍ତ୍ତୀ ଅରଣ୍ୟକୁ ଶିକାର ଉଦ୍ଦେଶ୍ୟରେ ଯାଇଥିଲେ । ଯଯାତି ଦେବୀଙ୍କ ପାଇଁ ବସି ମାଳା ଗୁନ୍ଥୁଥିଲେ । ଏହି ସମୟରେ ଉତ୍କଳ ରାଜନନ୍ଦିନୀ ଲଳିତା ସଖୀମାନଙ୍କ ଗହଣରେ ଦର୍ଶନ ନିମନ୍ତେ ମନ୍ଦିରକୁ ଆସିଥିଲେ । ଯଯାତି ଲଳିତାଙ୍କୁ ଦେଖି ତାଙ୍କର ଅସାମାନ୍ୟ ସୌନ୍ଦର୍ଯ୍ୟରେ ମୁଗ୍ଧ ହୋଇ ପଡ଼ିଲେ । ସେ ମନ୍ଦିରର ଏକ ନିଭୃତ ସ୍ଥାନରେ ରହି ଲଳିତାଙ୍କର ସୌନ୍ଦର୍ଯ୍ୟକୁ ନିରୀକ୍ଷଣ କରିବାକୁ ଲାଗିଲେ । ଦର୍ଶନ ଶେଷକରି ରାଜଜେମା ଯେତେବେଳେ ଫେରିଲେ

ସେତେବେଳେ ତାଙ୍କର ଦୃଷ୍ଟି ଯଯାତିଙ୍କ ଉପରେ ପଡ଼ିଗଲା । ତା ପରେ ରାଜଜେମା ସଖୀମାନଙ୍କ ମେଳରେ ଅଶ୍ୱାରୋହଣ ପୂର୍ବକ ଅରଣ୍ୟ ପଥରେ ଅଦୃଶ୍ୟ ହୋଇଗଲେ ଓ ଯଯାତିଙ୍କ ମନୋରାଜ୍ୟରେ ଅପୂର୍ବ ଆଲୋଡ଼ନ ସୃଷ୍ଟି ହେଲା ।

ଲଳିତା ଅରଣ୍ୟରେ ଶିକାର କରିବା ସମୟରେ ଗୋଟିଏ ଚଞ୍ଚଳ ମୃଗର ଅନୁସରଣ କଲେ । ସଖୀମାନଙ୍କ ସଙ୍ଗରୁ ସେ ବିଚ୍ଛିନ୍ନା ହୋଇଗଲେ । କିଛିଦୂର ଅଗ୍ରସର ହେବାପରେ ଲଳିତା ସମ୍ମୁଖରେ ଏକ ସରୋବର ଦେଖିବାକୁ ପାଇଲେ । ତାପରେ ସେ ଦେଖିଲେ ଯେ ସରୋବର ତୀରରେ ଜଣେ ଯୁବକ ମୃତପ୍ରାୟ ଅବସ୍ଥାରେ ଶୟନ କରିଛନ୍ତି । ଲଳିତା ତାଙ୍କୁ ଦେଖି ଏପରି ଭାବବିହ୍ୱଳା ହୋଇପଡ଼ିଲେ ଯେ ତାହା ବର୍ଣ୍ଣନାତୀତ । ଲଳିତା ତାଙ୍କ ନିକଟକୁ ଯାଇ ଜାଣିପାରିଲେ ଯେ ସେ ଯୁବକ ନୁହନ୍ତି, ପୁରୁଷବେଶ ଧାରଣ କରିଥିବା ଜଣେ ଯୁବତୀ । ଏହାଦ୍ୱାରା ଲଳିତାଙ୍କ ମନରେ ଅନୁତାପ ଜାତହେଲା । ଲଳିତାଙ୍କର ଆଶା ନୈରାଶ୍ୟରେ ପରିଣତ ହେଲା । ତଥାପି, ଲଳିତା ଓ ସେହି ପୁରୁଷବେଶ ଧାରଣ କରିଥିବା ଯୁବତୀ କମଳା ପରସ୍ପର ବନ୍ଧୁତ୍ୱ ସୂତ୍ରରେ ଆବଦ୍ଧା ହେଲେ ।

ସଖୀମାନେ ଲଳିତାଙ୍କୁ ଖୋଜି ଖୋଜି ସେହି ସ୍ଥାନରେ ଆସି ପହଞ୍ଚିଲେ । ସେଠାରୁ ସମସ୍ତେ ବିଶ୍ରାମ ଉଦ୍ଦେଶ୍ୟରେ ନିକଟସ୍ଥ ଶିବିରକୁ ଅଗ୍ରସର ହେଲେ । ଲଳିତାଙ୍କ ଅନୁରୋଧରେ କମଳା ପୁରୁଷବେଶ ତ୍ୟାଗକରି ଯୁବତୀ ଭାବରେ ତାଙ୍କ ସଙ୍ଗରେ ରହିଲେ ଓ ତାଙ୍କ ସଙ୍ଗରେ କପାଳେଶ୍ୱର ଦୁର୍ଗକୁ ଗଲେ । ଅନ୍ତଃପୁର ବାସିନୀ ମହିଳାମାନେ କମଳାଙ୍କ ସୌନ୍ଦର୍ଯ୍ୟରେ ମୁଗ୍ଧ ହେଲେ । ଜେମାଙ୍କ ଅନ୍ତଃପୁରରେ କମଳା ଅତିଥି ହୋଇ ରହିଲେ । କମଳା ଯେତେବେଳେ ଲଳିତାଙ୍କ ସହିତ ରାଜ ଅନ୍ତଃପୁରରେ ରହିଲେ ସେତେବେଳେ କମଳା ଓ ଲଳିତା ଦୁହେଁ ସଙ୍ଗହୋଇ ଖାଇଲେ ଓ ଏକ ଶଯ୍ୟାରେ ଶୟନ କଲେ । ରାଜଅନ୍ତଃ-ପୁରରେ ଏହିପରି ଭାବରେ କିଛିକାଳ ରହିବା ପରେ କମଳା ଫେରି-

ଆସିଲେ । ଫେରିବା ସମୟରେ ବିମଳା ଆଜିଥରେ ଲଳିତାଙ୍କ ନିକଟକୁ ଆସିବାର ପ୍ରତିଶ୍ରୁତି ଦେଇ ଆସିଲେ ।

ବିମଳା ଫେରିଆସି ଯଯାତିଙ୍କ ନିକଟରେ ସମସ୍ତ ଘଟଣା ଜଣାଇଲେ । କିଛିଦିନ ପରେ ଯଯାତି ବିମଳାଙ୍କର ବସ୍ତ୍ର ଭୂଷଣରେ ସଜ୍ଜିତ ହୋଇ ଜଣେ ଯୁବତୀ ଭାବରେ ଦେବୀଙ୍କ କୃପାଭିକ୍ଷା କରି କପାଳେଶ୍ୱର ଦୁର୍ଗକୁ ଗଲେ । ଲଳିତା ଯଯାତିଙ୍କୁ ବିମଳା ଭାବି ତାଙ୍କୁ ଦେଖିବା ମାତ୍ରକେ ଅତ୍ୟନ୍ତ ଆନନ୍ଦିତା ହେଲେ ଓ ସ୍ୱ୍ତରୀ ଏକତ୍ର ଭୋଜନ ଓ ଏକତ୍ର ଶୟନ ନିମନ୍ତେ ତାଙ୍କୁ ଅନୁରୋଧ କଲେ

ରାତିରେ ଭୋଜନ ଶେଷକରି ଯଯାତି ଲଳିତାଙ୍କ ସହିତ ଏକ ଶଯ୍ୟାରେ ଶୟନ କରିବା ସମୟରେ କହିଲେ ଯେ, ପଥ ମଧ୍ୟରେ ଆସୁଥିବା ସମୟରେ ଜଣେ ଯୋଗୀଙ୍କ ସହିତ ତାଙ୍କର ସାକ୍ଷାତ ହେଲା । ଲଳିତାଙ୍କର ତାଙ୍କ ପ୍ରତି ପ୍ରୀତିର ଆତିଶଯ୍ୟ ଯୋଗୁଁ ତାଙ୍କୁ ପୁରୁଷ କରି-ଦେବାପାଇଁ ସେ ଯୋଗୀଙ୍କ ନିକଟରେ ପ୍ରାର୍ଥନା କଲେ । ଯୋଗୀ ତାଙ୍କୁ ନିକଟସ୍ଥ ସରୋବରରେ ପ୍ରବେଶ କରିବାପାଇଁ ଆଦେଶ ଦେଲେ । ଯୋଗୀଙ୍କ କଥା ଅନୁସାରେ ସେ ସରୋବରରେ ପ୍ରବେଶ କରି ଉଠି ଆସିବା ବେଳକୁ ଦେଖନ୍ତି ତ ଯୋଗୀ ଅନ୍ତର୍ହିତ ହୋଇ ଅଛନ୍ତି ଏବଂ ତାଙ୍କ ଶରୀରରୁ ନାରୀର ଲକ୍ଷଣ ସବୁ ଚାଲିଯାଇ ପୁରୁଷ ଲକ୍ଷଣ ଦେଖାଦେଇଅଛି । ଏହା କହି ସେ ପ୍ରମାଣ ସ୍ୱରୂପ ତାଙ୍କର ବକ୍ଷଦେଶକୁ ଲଳିତାଙ୍କ ସମ୍ମୁଖରେ ପ୍ରଦର୍ଶନ କଲେ । ଲଳିତା ଏହା ଦେଖିବା ମାତ୍ରକେ ସତେ ଯେପରି ମହା ମୂଲ୍ୟବାନ ଇପ୍ସିତ ବସ୍ତୁ ହାତରେ ପାଇବା ପରି ମନେକଲେ । ଲଳିତା ଏବଂ ଯଯାତି ପରସ୍ପର ଗୁପ୍ତ ପ୍ରେମପାଶରେ ଆବଦ୍ଧ ହେଲେ । ଦିନବେଳେ ଯଯାତି ଯୁବତୀ ବେଶରେ ରହନ୍ତି ଓ ରାତିରେ ନିଜରୂପ ଧାରଣ କରନ୍ତି । ଲଳିତା ଏବଂ ଯଯାତିଙ୍କର ଏ ପ୍ରକାର ଗୁପ୍ତପ୍ରେମ ବେଶୀଦିନ ଅଜଣା ରହିଲା ନାହିଁ । ରାଜାଙ୍କ କାନରେ ଏକଥା ପଡ଼ିଲା । ରାଜା ଯଯାତିଙ୍କୁ ଅନ୍ତଃ ପୁରରୁ ଧରିଆଣି ତାଙ୍କ ପ୍ରତି ପ୍ରାଣଦଣ୍ଡାଦେଶ କଲେ । ଯଯାତି କହିଲେ ଯେ ସେ ଜଣେ କ୍ଷତ୍ରିୟ ଭାବରେ ମୃତ୍ୟୁ ବରଣ କରିବାକୁ ଚାହାନ୍ତି । ତାଙ୍କ

କଥା ଅନୁସାରେ ରାଜା ତାର ପରଦିନ ଚାରିଜଣ ଘାତକଙ୍କୁ ଗୁପ୍ତ ଭାବରେ ଅସ୍ତ୍ରଶସ୍ତ୍ର ସଜ୍ଜିତ ହୋଇ ଯଯାତିଙ୍କୁ ଜଙ୍ଗଲରେ ବିନାଶ କରିବା ନିମନ୍ତେ ଆଦେଶ ଦେଲେ । ସେହିଦିନ ରାତିରେ ଦେବୀ ବିରଜା ସିଂହ ବାହନରେ ଆସି ରାଜା ଏବଂ ସେହି ଚାରିଜଣ ଘାତକଙ୍କୁ ସ୍ୱପ୍ନରେ ମହାମୂର୍ତ୍ତି ପ୍ରଦର୍ଶନ କରି କହିଲେ ଯେ ଯଯାତି ତାଙ୍କର ଏକାନ୍ତ ଅନୁରକ୍ତ ଭକ୍ତ ।

ଦେବୀ ବିରଜାଙ୍କର ସ୍ୱପ୍ନାଦେଶକୁ ରାଜା ପରଦିନ ଜନସାଧାରଣଙ୍କ ସମକ୍ଷରେ ପ୍ରକାଶ କଲେ ଏବଂ ସୁଲକ୍ଷଣାଙ୍କୁ ନିଜ କନ୍ୟାଙ୍କୁ ଆଣି ଯଯାତିଙ୍କ କରରେ ତାଙ୍କୁ ସମର୍ପଣ କଲେ । ତାପରେ ରାଜା ନିଜର କନ୍ୟା ଓ ଜାମାତାଙ୍କୁ ସିଂହାସନରେ ଅଭିଷିକ୍ତ କରାଇ ବାନପ୍ରସ୍ଥାଶ୍ରମ ଗ୍ରହଣ କଲେ ।

ବିରଜାଦେବୀଙ୍କ ବାହନ କେଶରୀଙ୍କ ଅନୁଗ୍ରହରୁ ରାଜ୍ୟଲାଭ କରିଥିବାରୁ ଯୋଗୁଁ ଯଯାତି ନିଜ ନାମ ସହିତ 'କେଶରୀ' ଯୋଗ କଲେ । ସେହିଦିନଠାରୁ ସେ ଯଯାତିକେଶରୀ ନାମରେ ଉତ୍କଳରେ ପରିଚିତ ହେଲେ । ପ୍ରସିଦ୍ଧ କେଶରୀବଂଶ ଏହିପରି ଭାବରେ ଉତ୍କଳରେ ପ୍ରତିଷ୍ଠିତ ହେଲା ।

କବିବର ରାଧାନାଥ ଏହି କାବ୍ୟପାଇଁ ଯେଉଁ କଥାବସ୍ତୁ ଗ୍ରହଣ କରିଅଛନ୍ତି ତାହା ତାଙ୍କର ସମ୍ପୂର୍ଣ୍ଣ କଳ୍ପନାର ବସ୍ତୁ ବୋଲି କୁହାଯାଇପାରେ । ଯଯାତିକେଶରୀ ନାମକୁ ଦେଖି କାବ୍ୟର ନାୟକଙ୍କୁ ଉତ୍କଳର କେଶରୀବଂଶର ପ୍ରତିଷ୍ଠାତା ଭାବରେ ଗ୍ରହଣ କରିବା ଆଦୌ ସମୀଚୀନ ନୁହେଁ । କବିବର ରାଧାନାଥ ତାଙ୍କର ଅନ୍ୟ କାଳ୍ପନିକ କାବ୍ୟମାନଙ୍କର କଥାବସ୍ତୁକୁ ଯେପରି ମିଥ୍ୟାର ମନୋଜ୍ଞ ଆବରଣରେ ଉପସ୍ଥାପିତ କରିଅଛନ୍ତି ଏହି କାବ୍ୟର କଥାବସ୍ତୁକୁ ସେହିପରି ଭାବରେ ଉପସ୍ଥାପିତ କରିଅଛନ୍ତି । ବରାଳେଶ୍ୱର ଦୁର୍ଗ ବିଷୟରେ ଜଣାଯାଏ ଯେ ଉତ୍କଳର ପ୍ରାଚୀନ ରାଜା ଜନ୍ମେଜୟ ଚଉଦ୍ୱାରରେ ବରାଳେଶ୍ୱର ଦୁର୍ଗ ନିର୍ମାଣ କରାଇଥିଲେ ଓ ଯଯାତିକେଶରୀ ତାଙ୍କର ପୁତ୍ର ଥିଲେ । ମାତ୍ର ଏହି ବିବରଣୀକୁ ସମ୍ପୂର୍ଣ୍ଣ ଭାବରେ ଐତିହାସିକ ସତ୍ୟରୂପେ ଗ୍ରହଣ

କରିବା ଅସମ୍ଭବ । କବିବର ରାଧାନାଥ କିମ୍ବଦନ୍ତୀକୁ ତାଙ୍କର କଳ୍ପନା ସହିତ ମିଶାଇ ଦେଇଅଛନ୍ତି ।

ଯଯାତିକେଶରୀ କାବ୍ୟର କଥାବସ୍ତୁ ଏବଂ ନାୟକ ନାୟିକାଙ୍କ ବିଷୟରେ ଆଲୋଚନା କରିବାକୁ ଯାଇ ପଣ୍ଡିତ କୃପାମଣି ଦାଶ ମତ ପ୍ରଦାନ କରିଅଛନ୍ତି, "ରାଧାନାଥଙ୍କ କଳ୍ପନା ଯେ କିମ୍ବଦନ୍ତୀ ବିଶେଷ ଉପରେ ପ୍ରତିଷ୍ଠିତ, ଏପରି ବିଶ୍ୱାସ କରିବା ଅସଙ୍ଗତ ନୁହେଁ । କାରଣ, ତାଙ୍କର ଅନ୍ୟ କେତେକ କାବ୍ୟ ଏହିପରି ସତ୍ୟମୂଳକ କିମ୍ବଦନ୍ତୀ ଉପରେ ପ୍ରତିଷ୍ଠିତ । ସେ ଯାହାହେଉ, ଯଯାତିକେଶରୀ ଯାଜପୁର ନଗରର ପ୍ରତିଷ୍ଠାତା ଓ ତାଙ୍କ ରାଜତ୍ୱକାଳରେ ଉତ୍ତର ଭାରତରୁ ଆର୍ଯ୍ୟବ୍ରାହ୍ମଣମାନେ ଆସି ଏ ଦେଶରେ ଆର୍ଯ୍ୟସଭ୍ୟତା ବିସ୍ତାର କରିଥିଲେ, ଏଥିରେ ସନ୍ଦେହ ନାହିଁ । ମାତ୍ର, ଯେଉଁ ଯଯାତିଙ୍କର ଯେଉଁ ଚରିତ୍ରଚିତ୍ରଣ ଏ କାବ୍ୟରେ ପ୍ରଦତ୍ତ ହୋଇଅଛି, କାବ୍ୟର ଆଦର୍ଶ ଦୃଷ୍ଟିରେ ତାହା ଉନ୍ନତ ହୋଇନାହିଁ । ଛଦ୍ମବେଶରେ ଚଣ୍ଡାନ୍ତଃପୁରରେ ପ୍ରବେଶ କରି ରାଜକନ୍ୟାର ପ୍ରଣୟଭାଜନ ହୋଇ ନାରୀଭାବରେ କାଳକ୍ଷେପଣ କରିବା କୌଣସି ନାୟକଙ୍କ ପକ୍ଷରେ ପ୍ରଶଂସନୀୟ ବ୍ୟାପାର ନୁହେଁ । ଅନ୍ୟପକ୍ଷରେ ଲଳିତାର ଚରିତ୍ର ମଧ୍ୟ ଆଦର୍ଶ ନାରୀଚରିତ୍ରର ଅନେକ ଦୂରରେ ।"(୧)

ଯଯାତିକେଶରୀ କାବ୍ୟ ପ୍ରକାଶ ପାଇବା ପରେ ଏଦେଶର ବହୁ ଆଲୋଚକ ଏହାକୁ ଅତ୍ୟନ୍ତ ନିର୍ମମ ଭାବରେ ସମାଲୋଚନା କରିଥିଲେ । ଯଯାତିକେଶରୀ କାବ୍ୟରେ କବିଙ୍କର ଯେଉଁ କଳ୍ପନା ପ୍ରବଣତା ପ୍ରକାଶ ପାଇଅଛି, ତାହା କାବ୍ୟର ମର୍ଯ୍ୟାଦାକୁ କ୍ଷୁଣ୍ଣ କରିଅଛି । ପ୍ରଣୟମୂଳକ କାବ୍ୟଭାବରେ ଏହାର ମୂଲ୍ୟକୁ ଆଦୌ ସ୍ୱୀକାର କରାଯାଇ ନପାରେ । ପ୍ରାଚୀନକାଳର କୌଣସି ଏକ ଆଇମାର ଗଳ୍ପ ଭଳି ଏହି କାବ୍ୟର କଥାବସ୍ତୁ ଗୃହୀତ । କବିବର ରାଧାନାଥଙ୍କ ଲେଖନୀରୁ ଏପ୍ରକାର କାବ୍ୟର ସୃଷ୍ଟି କଥାବସ୍ତୁ

---

(୧) ରାଧାନାଥ ଜୀବନୀ—ପୃ: ୮୦୩.

ଦୃଷ୍ଟିରୁ ପାଠକମାନଙ୍କୁ ନିବୃତ୍ତ କରିଥାଏ । ୧୮୯୪ ସାଲ ଅକ୍ଟୋବର ମାସରେ ଯଯାତିକେଶରୀ ଉପରେ ଆଲୋଚନା କରି ଜଣେ ସମାଲୋଚକ ଲେଖିଥିଲେ, "ଯେଦ୍ୟପି କବିବରଙ୍କ ରାଜଭକ୍ତି ଅତି ପ୍ରବଳ ଥିବାର ଶୁଣୁଅଛୁଁ ତାହା ଭେଦାଭେଦଶୂନ୍ୟ ନୁହେ । ତେବେଲେହେଁ ଭକ୍ତି ଚରିତ୍ର ସୂଚକ ସ୍ତୁତିସ୍ତବକ ସଙ୍ଗେ ସଙ୍ଗେ ଯଯାତିକେଶରୀ ଓ ପାର୍ଶ୍ୱ କବିତା ରୂପ ଧୂପ ଦାନରେ ଓଡ଼ିଶାର କେଶରୀବଂଶର ରାଜନ୍ୟମାନଙ୍କର ଯେଉଁ ଆରୋପ ବା ଚରିତ୍ର ବନ୍ଦନା ଦେଉଅଛି ତାହା ଅବଶ୍ୟ କବିଗୃହୀତ୍ୱ ବୋଲି ଯିବ । ଯଯାତିକେଶରୀ କବିବରଙ୍କର ସବ୍ୟସାଚୀତାକୁ ଜଣି ଯାଇଅଛି ଓ ଯେପରି ସ୍ଫୁରିତ ଓ କଳ୍ପନାଙ୍କୁରର ପ୍ରତିଭା ତହିଁରୁ ପ୍ରକାଶ ପାଉଅଛି ତାହା ସମସ୍ତ ହେଲେ ପରେ ଶାନ୍ତ ଭାବରେ ପାଠକମାନଙ୍କ ଦୃଷ୍ଟିଗୋଚରରେ ଆସିବାର ମାନସ ରହିଲା ।"(୧)

ଉକ୍ତ ଉକ୍ତିରେ ସମାଲୋଚକଙ୍କର ଆକ୍ଷେପୋକ୍ତିର ସ୍ୱର ଯେତେ ନର୍ମିମ ହେଉନା କାହିଁକି କବିବର ରାଧାନାଥଙ୍କର କବିପ୍ରତିଭାର ମୂଲ୍ୟ ଏହାଦ୍ୱାରା ହ୍ରାସପାଇବାର କାରଣ ନାହିଁ । ଆଲୋଚକ କବିଙ୍କର ରାଜଭକ୍ତିକୁ କେନ୍ଦ୍ରକରି ରାଜନ୍ୟମାନଙ୍କର ଆରୋପ ବା ଚରିତ୍ର ବିଷୟରେ କ୍ଷୁବ୍ଧମନା ହୋଇଅଛନ୍ତି । କବିବର ରାଧାନାଥ ଉତ୍କଳର ରାଜନ୍ୟମାଙ୍କ ଚରିତ୍ରକୁ କଳଙ୍କିତ କରିବା ମାନସରେ ଏପ୍ରକାର କାବ୍ୟନାୟିକା ସୃଷ୍ଟି କରି ଅଛନ୍ତି ବୋଲି ମନେକରିବା ଆଦୌ ଯୁକ୍ତିସଙ୍ଗତ ନୁହେଁ ।

ଯଯାତିକେଶରୀ କାବ୍ୟରେ କବି ଯେପରି ଭାବରେ ବର୍ଣ୍ଣନାର ସୌନ୍ଦର୍ଯ୍ୟ ପ୍ରଦର୍ଶନ କରିଅଛନ୍ତି ତାହା ଅତ୍ୟନ୍ତ ହୃଦୟଗ୍ରାହୀ ହୋଇଅଛି । ପ୍ରକୃତ ବର୍ଣ୍ଣନାରେ ସିଦ୍ଧହସ୍ତ କବି ଏହି କାବ୍ୟରେ ଉତ୍କଳ ପ୍ରକୃତିର ଅମର ଆଲେଖ୍ୟ ଅଙ୍କନ କରିଅଛନ୍ତି । ବୈତରଣୀ ନଦୀର ବର୍ଣ୍ଣନାରେ ସେ ଲେଖିଛନ୍ତି,

(୧) ଯୁଗପ୍ରବର୍ତ୍ତକ ସ୍ରଷ୍ଟା ରାଧାନାଥ—ପୃ.୧୯୧.

"ଗୋମାୟା-ପ୍ରଭବା ଶ୍ରୀବିରଜାଦେବୀ-
ଦେଉଳ ପାବଣ୍ଛ ଧୋଇ,
ଛଟା-ଘନ-ବନ- ଲକ୍ଷ୍ମୀ ଗ୍ରୀମ୍ୱରେ କି
ମଣି ଦରପଣ ଥୋଇ ?

ଭବର୍ଣ୍ଣ ଭଙ୍ଗୂର- ବିଳାସକୁ ଧରି
ଧବଳ ଫେନନିବନ୍ଧେ
ଯା! ଶାଶ୍ୱତ ସ୍ରୋତ ଶାଶ୍ୱତ ଶଇଳ୍କୁ
ଶାଶ୍ୱତ ସିନ୍ଧୁକୁ ବନ୍ଧେ,

ମାଳ ମାଳ ହୋଇ ନୀଳ ଦେହେ ଯାର
ରାଜହଂସେ କ୍ରୀଡ଼ୁ ଥାନ୍ତି,
ବ୍ୟୋମଚାରୀଙ୍କର ମନେ ଉପୁଜାଇ
ମଲ୍ଲିକା-ମାଳର ଭ୍ରାନ୍ତି,

ଯା ତୀରେ ମଧ୍ୟାହ୍ନ- ତାପେ ବନ୍ଧିହୋଇ
ରଙ୍ଗେ ଅଙ୍ଗ ଲୀଳା-ପଦ୍ମେ
ଦୋଳୁଥାନ୍ତି ସୁର- ବାଳା ଲତାଦୋଳେ
ରକ୍ତାଶୋକ-ଲତା-ସଦ୍ମେ

ବନଦେବୀଙ୍କର ଅଭିସାର ଲୀଳା
ଚଳୁଥାଇ ଅବିରତେ
ଚନ୍ଦ୍ରାଲୋକେ ଯାର ଅଭ୍ର-ତାରକିତ
ବିଶାଳ ଶୁଭ୍ର ସୈକତେ,

ତଟ୍ଟ ବୃକ୍ଷୀର ପ୍ରେମେ ବନ୍ଧାବନ୍ଧି,
ଛନ୍ଦାଛନ୍ଦ ଯେନାଯେନ-
ଯୋଗୁଁ କୁଞ୍ଜ-ପୁଞ୍ଜ ଅନ୍ଧାରିତ ଯାର
ଠାବେ ଠାବେ ନୀର ବେଣୀ,

ଦେବ ଯଜ୍ଞ ଭୂମି                ସ୍ରୋତ ଯାର ସପ୍ତ-
ମାତୃକା ମାଳଣୀ-ନୃତ୍ୟ,
ପିକଟଳ ବକ୍ଷେ                ଶ୍ରୀବରଦ ରୂପୀ
ବସନ୍ତ ଯାର ଅଚ୍ୟୁତ ।"

ଏହିପରି ଭାବରେ କବିଙ୍କ ଲେଖନୀ ପ୍ରକୃତିର କମନୀୟ ଚିତ୍ର ଅଙ୍କନ କରିଅଛି । କବିଙ୍କର ବର୍ଣ୍ଣନା ଶୈଳୀ ଏହି କାବ୍ୟରେ ଅତ୍ୟନ୍ତ ମନୋରମ ହୋଇଅଛି । ଯଯାତିକେଶରୀର ବର୍ଣ୍ଣନାଶୈଳୀ ବିଷୟରେ ଆଲୋଚନା ପ୍ରସଙ୍ଗରେ ଐତିହାସିକ ପରମାନନ୍ଦ ଆଚାର୍ଯ୍ୟ ମତ ପ୍ରଦାନ କରିଅଛନ୍ତି, "ଯଯାତିକେଶରୀ କାବ୍ୟର ବିଷୟବସ୍ତୁ ଯାହା ହେଉ ପଛକେ ଏଥିରେ କବିବର ରାଧାନାଥ ଯାଜପୁର ଓ ତନ୍ନିକଟବର୍ତ୍ତୀ ବୈତରଣୀ ତୀରବର୍ତ୍ତୀ ସ୍ଥାନର ବର୍ଣ୍ଣନାରେ ଯେଉଁ କଳ୍ପନା ବିଳାସ ଦେଖାଇ ଅଛନ୍ତି, ତାହା ଅନ୍ୟ କୌଣସି କବି ପକ୍ଷରେ ସମ୍ଭବ ନୁହେଁ । ଏହି କାବ୍ୟର ପରିସର ଅତି ସଂକୀର୍ଣ୍ଣ ଯୋଗୁଁ ଓ ବର୍ଣ୍ଣନୀୟ ସ୍ଥାନ ବୈତରଣୀ ଓ ବରୁଣାର ମଧ୍ୟସ୍ଥଳୀ ହୋଇଥିବାରୁ ଏ ଅଞ୍ଚଳରେ ଅବସ୍ଥିତ ଯାଜପୁର, ଉଦୟଗିରି, ଲଳିତଗିରି ଓ ଚୌଦ୍ୱାରର ପ୍ରାଚୀନ କୀର୍ତ୍ତିଗୁଡ଼ିକର ବର୍ଣ୍ଣନାରେ କାବ୍ୟଟି ପରିପୂରିତ । ପ୍ରାକୃତିକ ଦୃଶ୍ୟ ପ୍ରତ୍ନତାତ୍ତ୍ୱିକ ବିବରଣ ବ୍ୟତୀତ କବି ଯଯାତିକେଶରୀ କାବ୍ୟରେ ଏହି ଅଞ୍ଚଳରେ ମିଳୁଥିବା ପକ୍ଷୀକୁଳ ଓ ନାନା ଫଳପୁଷ୍ପପ୍ରସୂ ବୃକ୍ଷଲତାର ବର୍ଣ୍ଣନାରେ କାବ୍ୟର ଅଙ୍ଗ ପୁଷ୍ଟ କରିଅଛନ୍ତି । ଯଯାତିକେଶରୀ କାବ୍ୟ ପାଠ ପରେ ଏହି ଅଞ୍ଚଳର ଭୌଗୋଳିକ ଓ ଐତିହାସିକ ବର୍ଣ୍ଣନା ପାଠକମନରେ ଚିରସ୍ଥାୟୀ ଛାପ ପକାଇଥାଏ ।"(୧)

---

(୧) ରାଧାନାଥଙ୍କ ଅନନ୍ୟ ପ୍ରତିଭା—ପୃ. ୩୧

## ଦରବାର

୧୮୯୭ ସାଲରେ କବିବର ରାଧାନାଥଙ୍କର ଦରବାର କାବ୍ୟ ପ୍ରକାଶ ପାଇଥିଲା । କବିବର ରାଧାନାଥ ପ୍ରଥମେ ଏହାକୁ 'ବୈପ୍ଳବିକ ବାଣୀ' ନାମରେ ନାମିତ କରିଥିଲେ ଓ ପରେ ଏହାକୁ ପରିବର୍ତ୍ତନ କରି କାବ୍ୟର ନାମ ଦେଲେ ଦରବାର । ଏହା ୧୮୯୭ ସାଲ ଜାନୁୟାରୀ ମାସଠାରୁ କ୍ରମାନ୍ୱୟରେ 'ଉତ୍କଳ ସାହିତ୍ୟ'ରେ ପ୍ରକାଶିତ-ହୋଇଥିଲା ।

କବିବର ରାଧାନାଥଙ୍କର ଦରବାର କାବ୍ୟ ଆଲୋଚନା ପ୍ରସଙ୍ଗରେ ଏହାକୁ କେବଳ ଗୋଟିଏ ବ୍ୟଙ୍ଗରଚନା ଭାବରେ ଗ୍ରହଣ କଲେ ଆଲୋଚନା ପୂର୍ଣ୍ଣାଙ୍ଗ ପ୍ରାପ୍ତ ହୋଇପାରିବ ନାହିଁ । ଆଧୁନିକ ଓଡ଼ିଆ ସାହିତ୍ୟରେ ଦରବାରର ସ୍ଥାନ ନିରୂପଣ କରିବାକୁ ଯାଇ ସମାଲୋଚକମାନେ ସାଧାରଣତଃ ଆଧୁନିକ ଯୁଗରେ ଲିଖିତ କେତେକ ବ୍ୟଙ୍ଗ କବିତା ମଧ୍ୟରେ ତାହାର ସ୍ଥାନ ନିରୂପଣ କରିଥାଆନ୍ତି । ମାତ୍ର କେବଳ ଏତିକରେ ଦରବାରର ସ୍ଥାନ ଯଥାର୍ଥରେ ନିରୂପିତ ହେବା ସମ୍ଭବ ନୁହେଁ । ଦରବାର କବିବର ରାଧାନାଥଙ୍କ ସମସାମୟିକ ସମାଜର ଏକ ସାର୍ଥକ ସମାଲୋଚନା; କେବଳ ଏତିକି ନୁହେଁ, ଦରବାରରେ ରାଧାନାଥଙ୍କର ସମସାମୟିକ ସମାଜର ସମାଲୋଚନା ଯେତିକି ପରିମାଣରେ ଅଛି ତାହାଠାରୁ ଅଧିକ ପରିମାଣରେ ଅଛି ରାଧାନାଥଙ୍କର ବ୍ୟକ୍ତିଗତ ଜୀବନର ଅନୁଭୂତିର ଚିତ୍ର । ରାଧାନାଥଙ୍କ ଜୀବନରେ ଏକାଧିକ କାରଣ ଯୋଗୁଁ ଯେଉଁସବୁ ଅଶୋଭନୀୟ ପରିସ୍ଥିତି ସୃଷ୍ଟି ହୋଇଥିଲା ସେଥିରେ ମର୍ମାହତ ରାଧାନାଥ ତଦାନୀନ୍ତନ ବ୍ୟକ୍ତିମାନଙ୍କର ଆଚରଣ ଓ ସାମାଜିକ ଚଳଣି ବିରୁଦ୍ଧରେ ପ୍ରତିବାଦ କରିଅଛନ୍ତି ।

ଏଦେଶରେ ଇଂରେଜ ଶାସନ ପ୍ରତିଷ୍ଠିତ ହେବା ପରେ ଏଦେଶର ଭାଗ୍ୟ ନିର୍ଣ୍ଣୟକାରୀ ହେଲେ ଅଣଓଡ଼ିଆମାନେ । ସରକାରୀ

ଉଚ୍ଚପଦରେ ଥିଲେ ସାହେବମାନେ ଏବଂ ନିମ୍ନ ପଦରେ ଥିଲେ ବଙ୍ଗାଳୀ କର୍ମଚାରୀ । ସରକାରୀ କ୍ଷେତ୍ରରେ ଓଡ଼ିଆମାନଙ୍କର ସ୍ୱାର୍ଥକୁ ଦେଖିବା ପାଇଁ କେହି ନଥିଲେ ବୋଲି କହିଲେ ଚଳେ । ତାପରେ ଯେଉଁଠାବେଳେ ଓଡ଼ିଶାରେ ପାଶ୍ଚାତ୍ୟ ଶିକ୍ଷାର ପ୍ରସାର ହୁଏ, ସେତେବେଳେ ଓଡ଼ିଆମାନେ ଧୀରେ ଧୀରେ ଆଧୁନିକ ଶିକ୍ଷା ପ୍ରତି ଆକୃଷ୍ଟ ହୋଇଛନ୍ତି । କେବଳ ଓଡ଼ିଶାରେ ନୁହେଁ, ଭାରତରେ ଯେଉଁଠାବେଳେ ଇଂରେଜ ଶାସନର ଅଭ୍ୟୁଦୟ ହୁଏ, ସେତେବେଳେ ଛାତ୍ରମାନେ ନୂତନ ଶିକ୍ଷା ଲାଭ କରିବା ଫଳରେ ବିଦେଶୀ ଚାଲିଚଳନ, ବେଶଭୂଷା ପ୍ରଭୃତିର ଅନୁକରଣ କରିବାକୁ ଲାଗିଲେ । ଏହି ଅନୁକରଣ ପ୍ରବୃତ୍ତି ଭାରତର ଜାତୀୟ ଜୀବନର କଳଙ୍କ ସ୍ୱରୂପ । ଓଡ଼ିଶାରେ ସେ ସମୟରେ କବିବର ରାଧାନାଥ ଆଧୁନିକ ତଥାକଥିତ ଶିକ୍ଷିତ ସମାଜର ଆଚରଣରେ କ୍ଷୁବ୍ଧ ହୋଇଥିଲେ । ସରକାରୀ କର୍ମଚାରୀ, ରାଜା ମହାରାଜାମାନଙ୍କର ଗର୍ବ, ଦମ୍ଭ ଓ ଅହଙ୍କାରର ତୀବ୍ର ସମାଲୋଚନା କବିଙ୍କ ଲେଖନୀରୁ ପ୍ରକାଶ ପାଇଅଛି ।

୧୮୯୪ ସାଲ ଅକ୍ଟୋବର ମାସ ୨୯ ତାରିଖ ବୁଧବାର ଦିନ ଦୁଇଟା ସମୟରେ ବାରବାଟୀ କିଲ୍ଲାରେ ଗୋଟିଏ ଦରବାର ଅନୁଷ୍ଠିତ ହୋଇଥିଲା । ଏହି ଦରବାରରେ ସାମନ୍ତ ଚନ୍ଦ୍ରଶେଖରଙ୍କୁ ମହାମହୋପାଧ୍ୟାୟ ଓ କାଉପୁର ଜମିଦାର ଗୋବିନ୍ଦ ବଲ୍ଲଭ ରାୟଙ୍କୁ ରାୟ ବାହାଦୂର ଉପାଧି ଦିଆଯିବାର ଥିଲା । ଏହି ଦରବାରକୁ କଟକରେ ଥିବା ଓ କଟକ ନିକଟସ୍ଥ କେତେକ ରାଜା, ଜମିଦାର ଓ ସରକାରୀ କର୍ମଚାରୀଙ୍କୁ ନିମନ୍ତ୍ରଣ କରାଯାଇଥିଲା । ରାଜାମାନଙ୍କ ମଧ୍ୟରୁ ଦର୍ପଣି ଓ ବଳରାମପୁରର ରାଜା, ତାଳଚେର, ବଡ଼ାମ୍ବା, କନିକା ଓ ମଧୁପୁରର ନାବାଳକ ରାଜାମାନେ ଦରବାରରେ ଉପସ୍ଥିତ ଥିଲେ । ଦରବାର ନିମିତ୍ତ ମଣ୍ଡପ ବିଶେଷ ଭାବରେ ସଜ୍ଜିତ ହୋଇଥିଲା । ବଙ୍ଗଳାରୁ ସରକାରୀ ଆଦେଶ ଅନୁସାରେ ଓଡ଼ିଶାର କମିସନର ସାହେବ ଏହି ଦରବାରରେ ଉପାଧି ପ୍ରଦାନ କରିବାକୁ

ଉପସ୍ଥିତ ହୋଇଥିଲେ । ଏହି ଦରବାରକୁ କେବଳ ଗୋବିନ୍ଦ ବଲ୍ଲଭ ରାୟ ଆସିଥିଲେ, ମାତ୍ର ସାମନ୍ତ ଚନ୍ଦ୍ରଶେଖର ଆସି ପାରି ନାଥିଲେ ।

ଏହି ଦରବାରରେ ସାମନ୍ତ ଚନ୍ଦ୍ରଶେଖରଙ୍କର ଅନୁପସ୍ଥିତିର କାରଣ ତା ପରଦିନ ଜଣାପଡ଼ିଲା । ଦରବାର ଦିନ ଦୁଇଟା ସମୟରେ ଅନୁଷ୍ଠିତ ହେଲା, ମାତ୍ର ସାମନ୍ତ ଚନ୍ଦ୍ରଶେଖର ସେଦିନ ଚାରିଟା ସମୟରେ କଟକରେ ପହଞ୍ଚିଲେ । ତାଙ୍କର ଧାରଣା ଥିଲା ଯେ ଦରବାର ସେଦିନ ନହୋଇ ତାପର ଦିନ ହେବ । ସେଦିନ ସାମନ୍ତ ଚନ୍ଦ୍ରଶେଖର ଦରବାରରେ ଉପସ୍ଥିତ ହୋଇ ନପାରିବାରୁ କେବଳ ଗୋବିନ୍ଦ ବଲ୍ଲଭ ରାୟ ଉପାଧି ପାଇବା ପରେ ଚନ୍ଦ୍ରଶେଖରଙ୍କୁ ଉପାଧିଦେବା ପାଇଁ କମିଶନର କୁକ୍ ସାହେବ ସେପ୍ଟେମ୍ବର ମାସ ୩ ତାରିଖରେ ତାଙ୍କ କୋଠିରେ ଗୋଟିଏ ଅତିରିକ୍ତ ଦରବାର କରିଥିଲେ । ଏହି ଅତିରିକ୍ତ ଦରବାରରେ ନିମନ୍ତ୍ରିତ ୮୦ ଜଣ ବ୍ୟକ୍ତି ଉପସ୍ଥିତ ଥିଲେ ।

କବିବର ରାଧାନାଥ ଏହି ଦୁଇଗୋଟି ଦରବାରକୁ ତାଙ୍କ କାବ୍ୟରେ ଗ୍ରହଣ କରିଅଛନ୍ତି । ଗୋବିନ୍ଦ ବଲ୍ଲଭ ରାୟଙ୍କ ନାମ ଉଲ୍ଲେଖ ନକରି ସେ କେବଳ ସାମନ୍ତ ଚନ୍ଦ୍ରଶେଖରଙ୍କ ନାମକୁ ଉଲ୍ଲେଖ କରିଅଛନ୍ତି । କବିବର ରାଧାନାଥ ତାଙ୍କର ଭଗିନୀପତି ଗୋବିନ୍ଦ ବଲ୍ଲଭ ରାୟଙ୍କ ନାମ ଉଲ୍ଲେଖ କରି ନଥିଲେହେଁ ତାଙ୍କୁ କେନ୍ଦ୍ର କରି ଏହି କାବ୍ୟଟି ରଚନା କରିଥିଲେ ବୋଲି ଜଣାଯାଇ-ଅଛି ।

ଗୋବିନ୍ଦ ବଲ୍ଲଭ ରାୟଙ୍କୁ କେନ୍ଦ୍ର କରି କବି ଏହି କାବ୍ୟଟି ରଚନା କରିଥିଲେ ହେଁ ଏଥିରେ ତାଙ୍କର ନାମୋଲ୍ଲେଖ ନଥିବା ବିଷୟରେ ଆଲୋଚକମାନେ କୌଣସି ଆଲୋଚନା କରି ସ୍ଥିର ସିଦ୍ଧାନ୍ତରେ ଉପନୀତ ହେବାର ଦେଖାଯାଏ ନାହିଁ । କେତେକ ଆଲୋଚକ ମନେ କରନ୍ତି ଯେ, ଗୋବିନ୍ଦ ବଲ୍ଲଭ ରାୟ କବିବର

ରାଧାନାଥଙ୍କର ଭଗିନୀ ପତି ହୋଇଥିବାରୁ ତାଙ୍କୁ ପ୍ରତ୍ୟକ୍ଷ ଭାବରେ ଆକ୍ଷେପ କରିବାକୁ କବିବର ରାଧାନାଥ ଉଚିତ ମନେକରି ନାହାନ୍ତି । ଏପ୍ରକାର ମତ ଯଥାର୍ଥ ବୋଲି ମନେହୁଏ ନାହିଁ ।

ଗୋବିନ୍ଦ ବଲ୍ଲଭ ରାୟ ହୋଇପାରନ୍ତି କବିବର ରାଧାନାଥଙ୍କର ଭଗିନୀପତି, ମାତ୍ର ସେ ଥିଲେ ଜଣେ ସାଧାରଣ ସ୍ତରର ବ୍ୟକ୍ତି । ଇଂରେଜ ସରକାରଠାରୁ ଉପାଧିଟିଏ ପାଇବା ଜଣେ ସାଧାରଣ ବ୍ୟକ୍ତି ପକ୍ଷରେ ସମ୍ମାନଜନକ ବ୍ୟାପାର । ମାତ୍ର ସାମନ୍ତ ଚନ୍ଦ୍ରଶେଖର ଥିଲେ ଜଣେ ଅସାଧାରଣ ସ୍ତରର ବ୍ୟକ୍ତି । ଇଂରେଜ ସରକାରଠାରୁ ଉପାଧିଟିଏ ପାଇବା ତାଙ୍କ ପକ୍ଷରେ ଯଥାର୍ଥରେ ସମ୍ମାନଜନକ ବ୍ୟାପାର ନୁହେଁ । କବିବର ରାଧାନାଥ ଏହି ବିଷୟକୁ ମନ ମଧ୍ୟରେ ରଖି କାବ୍ୟର ପରିସର ମଧ୍ୟରେ ଗୋବିନ୍ଦ ବଲ୍ଲଭ ରାୟଙ୍କ ବିଷୟ ଉଲ୍ଲେଖ ନକରି ସାମନ୍ତ ଚନ୍ଦ୍ରଶେଖରଙ୍କ ବିଷୟ ଉଲ୍ଲେଖ କରିଅଛନ୍ତି । କବିବର ରାଧାନାଥ ଏକାଧିକ କାରଣ ଯୋଗୁ ଏଦେଶରେ ଗୁଣୀର ସମାଦର ଅଭାବକୁ ବିଶେଷ ଭାବରେ ଲକ୍ଷ୍ୟ କରିଥିଲେ । ସାମନ୍ତ ଚନ୍ଦ୍ରଶେଖରଙ୍କ ଜୀବନର ଦୁର୍ଦ୍ଦଶା ବିଷୟରେ ସେ ଅବହିତ ଥିଲେ । ତେଣୁ ତାଙ୍କୁ ଉପାଧି ଦିଆଯିବା କଥା ଶୁଣି ସେ ବ୍ୟଥିତ ହୋଇଥିଲେ । କାରଣ ସେ ଜାଣିଥିଲେ ଯେ, ଏହି ଉପାଧି ଏକାନ୍ତ ନିରର୍ଥକ । ସାମନ୍ତ ଚନ୍ଦ୍ରଶେଖରଙ୍କର ପ୍ରତିଭା ଏହି ଉପାଧିର ଯଥେଷ୍ଟ ଊର୍ଦ୍ଧ୍ୱରେ । ସମ୍ବେଦନଶୀଳ କବି ହୃଦୟ ସାମନ୍ତଚନ୍ଦ୍ରଶେଖରଙ୍କୁ ଲକ୍ଷ୍ୟ କରି କାବ୍ୟ ରଚନା କରିବାକୁ ଉଚିତ ମନେ କରିବା ନିତାନ୍ତ ସ୍ୱାଭାବିକ ।

ଦରବାର କାବ୍ୟ ୧୮୯୭ ସାଲରେ ପ୍ରକାଶ ପାଇଲେହେଁ ଏହା ବହୁପୂର୍ବରୁ ରଚିତ ହୋଇଥିବାର ଜଣାପଡ଼େ । ତା ୨୮.୯.୧୮୯୫ ରିଖରେ ରାଧାନାଥ ଲେଖିଥିବା ଏକ ପତ୍ରରେ ଅଛି, "ହିତୈଷିଣୀରେ ପଠାଣି ସାମନ୍ତ ସମ୍ବନ୍ଧୀୟ କବିତା ସମ୍ବନ୍ଧରେ ଆପଣଙ୍କର ଅନୁମାନ ଠିକ୍ ଅଟେ, ମୋହୋର ଖଣ୍ଡିଏ ଅପ୍ରକାଶିତ କାବ୍ୟରୁ ତାହା

ଉଦ୍ଧାର କରିଦେଇଥିଲ ।"(୧) ପୁଣି ତା ୨୧.୨.୧୮୯୭ ରିଖରେ ଆଉ ଗୋଟିଏ ପତ୍ରରେ ଅଛି, "ଦରବାର ପଦ୍ୟରେ କବିତାଂଶ ଅତ୍ୟଳ୍ପ ମାତ୍ର ଅଛି । ପ୍ରକୃତ ପ୍ରସ୍ତରେ ତାହା କବିତା ନୁହେଁ, ଉପଦେଶ ଅଟେ । ଚନ୍ଦ୍ରଶେଖର ସାମନ୍ତ ସମ୍ବନ୍ଧରେ ପୂର୍ବେ ଯାହା ତ୍ରୈଲୋକ୍ୟବିଣୀରେ ଦେଖିଥିଲେ ତାହା ଦରବାରର ଶେଷାଂଶ । ସମସ୍ତ କାବ୍ୟ ପାଠ ପରେ ଆପଣ ନିଜର ମନ୍ତବ୍ୟ ଲେଖି ଅନୁଗୃହୀତ କରାଇବା ହେବେ । ନବୋମ୍ମତ୍ତ ବଡ଼ଲୋକମାନଙ୍କର ଅଳୀକ ଏବଂ କ୍ଷଣିକ ଯଶଃ ଲୋଲୁପତାର ଚିତ୍ର ଦରବାରରେ ଯଥେଷ୍ଟ ପରିମାଣରେ ଦେଖିବା ହେବେ । ଲେଖକଙ୍କ ସହିତ ଆପଣ ଏକମତ କି ନା ଲେଖିବା ହେବେ ।"(୨)

ଏହି ଚିଠି ଦୁଇଟି ରାଧାନାଥ ଗଙ୍ଗାଧରଙ୍କ ନିକଟକୁ ଲେଖିଥିଲେ । ଏହି ଚିଠିର ସମସ୍ତ ଅନୁସାରେ ଜଣାଯାଏ ଯେ, କବିବର ରାଧାନାଥ ଦରବାରକୁ ବହୁ ପୂର୍ବରୁ ରଚନା କରିଥିଲେ । ପଠାଣି ସାମନ୍ତ ସମ୍ବନ୍ଧୀୟ ରାଧାନାଥଙ୍କର କବିତାଟି ତ୍ରୈଲୋକ୍ୟବିଣୀରେ ତା ୨୪.୧୦.୧୮୯୪ ରିଖରେ ପ୍ରକାଶ ପାଇଥିଲା । ତେଣୁ କବିବର ରାଧାନାଥ ଦରବାରକୁ ଯଥାର୍ଥରେ ୧୮୯୪ ସାଲରେ ରଚନା କରିଥିଲେ । ଦରବାର ବିଷୟରେ କବିବର ରାଧାନାଥ ଗଙ୍ଗାଧରଙ୍କ ନିକଟକୁ ଯାହା ଲେଖିଛନ୍ତି ତହିଁରୁ ତାଙ୍କର କାବ୍ୟ ରଚନାର ଉଦ୍ଦେଶ୍ୟ ଅତ୍ୟନ୍ତ ସ୍ପଷ୍ଟ ଭାବରେ ପ୍ରକାଶ ପାଉଅଛି ।

ଦରବାରରେ କବିବର ରାଧାନାଥ ନିଜକୁ ଜଣେ ଉପଦେଷ୍ଟା ଭାବରେ ପରିଚିତ କରାଇ ଅଛନ୍ତି । ଦରବାର କାବ୍ୟ ପାଠ କଲେ କବିଙ୍କର ମନୋଭାବ ସହିତ ଯେ କୌଣସି ପାଠକ ଅତି ସହଜରେ ପରିଚିତ ହୋଇପାରିବ । କବି ପ୍ରଚଳିତ ସଂସ୍ଥା ଓ ସମାଜର ବ୍ୟକ୍ତିମାନଙ୍କର ଆଚରଣରେ ଅତ୍ୟନ୍ତ କ୍ଷୁବ୍ଧ ହୋଇଅଛନ୍ତି । କେତେକ ଆଲୋଚକ ମତ ପ୍ରକାଶ କରିଥାଆନ୍ତି ଯେ, ରାଜାମହାରାଜାମାନଙ୍କର

---

(୧) କବିଲିପି—ଦେବୀ ପ୍ରସନ୍ନ ପଟ୍ଟନାୟକ-ପୃ. ୭୫
(୨) କବିଲିପି— ଦେବୀ ପ୍ରସନ୍ନ ପଟ୍ଟନାୟକ-ପୃ.୭୮

ମୂର୍ଖତାକୁ ଆକ୍ଷେପ କରିବା ଉଦ୍ଦେଶ୍ୟରେ କବି ଦରବାର ରଚନା କରିଅଛନ୍ତି । ଏପ୍ରକାର ମତରେ କୌଣସି ଯାଥାର୍ଥ୍ୟ ଥିବା ପରି ମନେହୁଏ ନାହିଁ । କାରଣ, କବି ଦରବାର ରଚନା ମଧ୍ୟରେ କେବଳ ରାଜାମହାରାଜାମାନଙ୍କୁ ଆକ୍ଷେପ କରି ନାହାନ୍ତି । ସେ ସରକାରୀ କର୍ମଚାରୀ, ରାଜା, ଜମିଦାର ଓ ତତ୍କାଳୀନ ପ୍ରଭାବଶାଳୀ ବ୍ୟକ୍ତିମାନଙ୍କୁ ଆକ୍ଷେପ କରିଅଛନ୍ତି ।

କବିବର ରାଧାନାଥଙ୍କୁ କେନ୍ଦ୍ରକରି ଏ ଦେଶରେ ୧୮୮୦ ସାଲରୁ ୧୮୯୪ ସାଲ ପର୍ଯ୍ୟନ୍ତ ଯେଉଁ ଅଶୋଭନୀୟ ମସୀଯୁଦ୍ଧ ଚାଲିଥିଲା ତହିଁରେ ରାଧାନାଥଙ୍କର ମାନସିକ ଅବସ୍ଥା ଯେ ଉଚ୍ଚମାତ୍ରାରେ ବିଚଳିତ ହୋଇପଡ଼ିଥିଲା, କହିବା ବାହୁଲ୍ୟ ମାତ୍ର । ଏ ବିଷୟରେ ଅଧ୍ୟାପକ ଡକ୍ଟର ନଟବର ସାମନ୍ତରାୟଙ୍କର ଆଲୋଚନାର କିୟଦଂଶ ଏଠାରେ ଉଦ୍ଧାରଯୋଗ୍ୟ ।

"ରାଧାନାଥ ଜଣେ ସର୍ବଶ୍ରେଷ୍ଠ କାବ୍ୟଶିଳ୍ପୀ । ସେ ସମୟରେ ତାଙ୍କର ସମକକ୍ଷ ହେବା ତ ଦୂରର କଥା, କେହି ତାଙ୍କ ସହିତ ତୁଳନାର ଯୋଗ୍ୟ ବୋଲି ବିବେଚିତ ହେଉ ନଥିଲେ । ତାପରେ ପୁଣି ସେ ଥିଲେ ଶିକ୍ଷାବିଭାଗର ସର୍ବୋଚ୍ଚ କର୍ତ୍ତା । ଶାସକଜୀବନର ସର୍ବଶେଷ ଓ ସର୍ବଶ୍ରେଷ୍ଠ ସମ୍ମାନ ସେ ସମସ୍ତଙ୍କଠାରୁ ଲାଭ କରୁଥିଲେ । ଏପରିକି ଯେଉଁମାନେ ଛଦ୍ମ ନାମରେ ସେ ସମୟରେ ତାଙ୍କର ଦୁର୍ନାମ ରଟନା କରୁଥିଲେ, ସେମାନେ ମଧ୍ୟ ତାଙ୍କ ନିକଟରେ ଥିଲେ ଏକାନ୍ତ ବଚସ୍କର । ପୂର୍ଣ୍ଣିମା ଚନ୍ଦ୍ର ନିକଟରେ ଜ୍ୟୋତିରିଙ୍ଗଣବୃନ୍ଦ ଯେମାନେ ନିଜନିଜକୁ ବିରାଟ ପ୍ରତିଭାର ଅଧିକାରୀ ବୋଲି ମନେ-ମନେ ବିଚାରୁଥିଲେ ସୁଦ୍ଧା ରାଧାନାଥଙ୍କ ସମୀପରେ ସେମାନେ ଥିଲେ ସମ୍ପୂର୍ଣ୍ଣଭାବେ ମ୍ଳାନପ୍ରଭ । ରାଧାନାଥଙ୍କ ବିରାଟ ବ୍ୟକ୍ତିତ୍ୱର ସ୍ୱରୂପ ଆଜି ହୁଏତ ଆମେ ଅନୁଭବ କରିପାରିବୁ ନାହିଁ, କିନ୍ତୁ ଆଧୁନିକ ଓଡ଼ିଆ ସାହିତ୍ୟ ରାଜ୍ୟରେ ସେ ଯେ ସେତେବେଳେ ଚଳନ୍ତି ବିଷ୍ଣୁ ପରି ପୂଜନୀୟ ଓ ବନ୍ଦନୀୟ ଥିଲେ ତାହା ତାଙ୍କର ଘୋର ଶତ୍ରୁ ମଧ୍ୟ ସ୍ୱୀକାର କରୁଥିଲେ । ଶିକ୍ଷାବିଭାଗର ସର୍ବୋଚ୍ଚ କର୍ତ୍ତା, ଆଧୁନିକ

ଓଡ଼ିଆ କାବ୍ୟ ସାହିତ୍ୟର ଅପ୍ରତିଦ୍ୱନ୍ଦ୍ୱୀ ସମ୍ରାଟ ଏଇ ନିରଭିମାନି କବିଙ୍କୁ ନେଇ ସେ ସମୟରେ ବହୁତ ଲୋକ ଖୁବ୍ ଗୋଟାଏ ବିତର୍କ ଟ୍ରେଗ ଆରମ୍ଭ କରିଦେଇଥିଲେ । ଯେଉଁମାନେ ତାଙ୍କୁ ଅଶ୍ରୁ ସମାଲୋଚନା କିମ୍ବା ପ୍ରଶଂସା କରୁଥିଲେ, ସେମାନଙ୍କର କାହାରି ପ୍ରକୃତ ତାଙ୍କ ପରି ବିଚକ୍ଷଣ, ଧୀଶକ୍ତିସମ୍ପନ୍ନ କବିଦୃଷ୍ଟିରୁ ଦୂରରେ ରହିପାରି ନଥିଲା । ୧୮୮୦ ସାଲରୁ ୧୮୯୪ ସାଲ ପର୍ଯ୍ୟନ୍ତ ଅର୍ଥାତ୍ ଦୀର୍ଘ ୧୫ ବର୍ଷ ଧରି ଯେଉଁ ଅପ୍ରୀତିକର ସମୀଯୁଦ୍ଧ ତାଙ୍କ ବିରୁଦ୍ଧରେ ଚାଲୁରହିଥିଲା, ତା ବିରୁଦ୍ଧରେ ସେ କେଉଁଠି ହେଲେ ପଦେ ନିଜର ଅଭିମତ ଦେଇ ନଥିଲେ; କେବଳ ଦାୟରେ ପଡ଼ି ସେ ଦୁଇଟି ମାତ୍ର ପଦ ଲେଖିଥିଲେ । ରାଧାନାଥ ଦେବତା ନୁହନ୍ତି, ମନୁଷ୍ୟ ମାତ୍ର । ଭିତରେ କିଛି ନକହିଲେହେଁ ଏ ମସୀଯୁଦ୍ଧ ଯେ ତାଙ୍କ ହୃଦୟକୁ ଅତିଶୟ ମଥିତ ଓ ବିଚଳିତ କରିଦେଇଥିଲା, ଏଥିରେ କୌଣସି ସନ୍ଦେହ ନାହିଁ । ଏହାକୁ ସମ୍ମୁଖରେ ରଖି 'ଦରବାର'ର ପଦଟିମାନ ପାଠ କରନ୍ତୁ:—

"ମଣନାହିଁ ମୁହିଁ ନେଇଛୁ ଆସନ,
ଜ୍ଞାନ ଦର୍ପେ ଜ୍ଞାନଦାତାର ଆସନ ।
ଥୋଇ ଏ ମୁକୁର ତୁମ୍ଭ ଆଗେ ହୀଇ
ନିଜ ମୁଖ ମୁଁ କି ନିଜେ ଦେଖୁନାହିଁ ?

× × ×

ପାଶୋରି ନାହିଁ ମୁଁ ସ୍ୱପ୍ନେ କଦାଚିତେ
ସର୍ବେ ଅଛୁ ଏକ ଦଦର ବୋଇତେ ।
ଆଗେ ପଛେ ତୋଳି ଭୀମ ଊର୍ମିମାନ
ଭବ-ଜଳଧିରେ ଗଜ୍ଜଇ ତୋଫାନ ।
ଯେଣେ ମନ ତେଣେ ଚାଲୁଅଛୁ ନାହା
ନାହିଁ କାହୁଆଳ ଦେଖାଇବ ରାହା ।

× × ×

ଜାଣେ ମୁହିଁ ଏହି ସଂସାରିକ ଦଳେ
ହୀନଠାରୁ ହୀନ ମୁହିଁ ଜ୍ଞାନ ବଳେ ।
ଅଜ୍ଞାନ ଅଟେ ମୁଁ ଏଜ୍ଞାନୁ ବଞ୍ଚିତ
ଜାଣ ନାହିଁ, ଭାଇ, ମୋତେ କଦାଚିତ ।
ପ୍ରଭେଦ ମଧ୍ୟରେ ଏତିକି କେବଳ
ସହିଁ ତୋଫାନର ସବୁଠାରୁ ବଳ ।
ଗୁଣ ବୃକ୍ଷ ଚୂଳେ, କେଜାଣି କପାଇଁ
ଭାଗ୍ୟ ଭାଇ, ମୋତେ ଦେଇଛି ବସାଇ ।
ହେଉ ଅଛି ତାହା କେତେ ଟଳମଳ
ତୋଫାନ କଷର ହେଉଛି ପ୍ରବଳ,
ସବୁଠାରୁ ମୁହିଁ କଳୁଛି ଅଧିକ
ସବୁଠାରୁ ଯେଣୁ ହଲୁଛି ଅଧିକ ।
ତେଣୁ ଆରେଁ ସିନା ପକାଉଛି ହୁର
ନୋହେ ଏହା ଜ୍ଞାନଗୁମାନ ଗୃହୁର ।"

'ଭାଗ୍ୟ' ରାଧାନାଥଙ୍କୁ 'ଗୁଣ-ବୃକ୍ଷ-ଚୂଳ'ରେ ବସାଇ ଦେଇଛି— ସେ ହୋଇଛନ୍ତି ଏହାଧାରରେ ଶିକ୍ଷା ବିଭାଗର ସର୍ବୋଚ୍ଚ କର୍ତ୍ତା ଓ ଆଧୁନିକ ଓଡ଼ିଆ ସାହିତ୍ୟର ଅପ୍ରତିଦ୍ୱନ୍ଦ୍ୱୀ ସମ୍ରାଟ । ତେଣୁ ପ୍ରବଳ ତୋଫାନ (ଇନ୍ଦ୍ରଧନୁ ବିଜୁଳିକୁ ଲକ୍ଷ୍ୟ କରିବା କଥା) ହେତୁ ତାହା ଟଳମଳ ହେଲାବେଳେ ରାଧାନାଥ ହିଁ ଅଧିକ ହଲିଛନ୍ତି ଓ ଏହାକୁ କଳନା କରିବାକୁ ସେ ସମସ୍ତଙ୍କଠାରୁ ଅଧିକ ସମର୍ଥ ହୋଇଛନ୍ତି ।" (୧)

ଅଧ୍ୟାପକ ସାମନ୍ତରାୟଙ୍କର ଅନୁଶୀଳନ ଏଠାରେ ଏପରି ସନ୍ତୋଷିଜ ହୋଇଅଛି ଯେ ଏହାକୁ ନିର୍ବିଘ୍ନରେ ଗ୍ରହଣ କରିବାର କଥା । କବିବର ରାଧାନାଥଙ୍କର କବିମାନସର ଉତ୍କ୍ଷିପ୍ତ ଭାବନା ସମ୍ପୃକ୍ତ ଗୁଚ୍ଛିକ ଅନୁସାରେ, ଅନୁଭୂତିର ବାସ୍ତବ ପରିପ୍ରେକ୍ଷୀରେ ଅତ୍ୟନ୍ତ ସାର୍ଥକ ରୂପ

(୧) ଯୁଗ ପ୍ରବର୍ତ୍ତକ ସ୍ରଷ୍ଟା ରାଧାନାଥ—ପୃ. ୧୧୯—୧୨୨

ଗ୍ରହଣ କରିଅଛନ୍ତି ଦରବାରରେ । କବି ଦରବାର ରଚନା କରିବା ପୂର୍ବରୁ ତାଙ୍କର ଚିଲିକା ଓ ମହାଯାତ୍ରାରେ ମୟୂରଭଞ୍ଜ ଓ ବାମଣ୍ଡା ରାଜାଙ୍କର ପ୍ରଶସ୍ତି ଗାନ କରିଅଛନ୍ତି । ମାତ୍ର ଦରବାରରେ ଉତ୍କଳର ରାଜନ୍ୟମଣ୍ଡଳୀକୁ ଆକ୍ଷେପ କରିଅଛନ୍ତି । ଏଥିପାଇଁ କବିଙ୍କର ଚିନ୍ତାଧାରାର ଆଦର୍ଶହୀନତା ବିଷୟରେ ଆଲୋଚକମାନେ ମତ ପ୍ରଦାନ କରିଥିଲେହେଁ ତାହା ଯଥାର୍ଥ ନୁହେଁ । ୧୮୮୦ ସାଲଠାରୁ ୧୮୯୦ ସାଲ ପର୍ଯ୍ୟନ୍ତ ରାଧାନାଥଙ୍କ ବିରୁଦ୍ଧରେ ହୋଇଥିବା ଅଶୋଭନୀୟ ଆନ୍ଦୋଳନରେ ବାମଣ୍ଡା ରଜା-ରାଧାନାଥଙ୍କର ପକ୍ଷ ଗ୍ରହଣ କରିଥିଲେ । ବାମଣ୍ଡା ରାଜାଙ୍କ ଅନୁଗ୍ରହବଶତଃ ବିଜୁଳି ପ୍ରକାଶ ପାଇଥିଲା ଏବଂ ତହିଁରେ ରାଧାନାଥଙ୍କର ସପକ୍ଷବାଦୀମାନେ ଆଲୋଚନା କରିଥିଲେ । ରାଧାନାଥ ବଡ଼ କି ଉପେନ୍ଦ୍ର ଭଞ୍ଜ ବଡ଼ ଏ ବିଷୟରେ ସେ ସମୟରେ କୌଣସି ସିଦ୍ଧାନ୍ତ ଗୃହୀତ ହୋଇପାରି ନଥିଲା । ରାଧାନାଥଙ୍କ ପକ୍ଷ ସମର୍ଥନ କରି ବିଜୁଳି ସେ ସମୟରେ ଦ୍ୱନ୍ଦ୍ୱ-ଯୁଦ୍ଧକୁ ଉତ୍ତେଜିତ କରାଇ ଦେଇ ଏକବର୍ଷ ପରେ ତିରୋହିତ ହୋଇଗଲା; ଅଥଚ ଇନ୍ଦ୍ରଧନୁ ୧୮୯୫ ସାଲର ପରବର୍ତ୍ତୀକାଳ ପର୍ଯ୍ୟନ୍ତ ତା ପଥରେ ଚାଲିଥିଲା । ବିଜୁଳି ଯେତେବେଳେ ଏପରି ଏକ ଅସ୍ୱାଭାବିକ ପରିସ୍ଥିତି ସୃଷ୍ଟି କରିଦେଇ ବନ୍ଦ ହୋଇଗଲା ସେତେବେଳେ କବିବର ରାଧାନାଥଙ୍କ ମନ ଉପରେ କମ୍ ପ୍ରଭାବ ପଡ଼ି ନଥିବ । ଯୁଦ୍ଧର ପରିସମାପ୍ତି ପୂର୍ବରୁ କୌଣସି ପକ୍ଷର ସୈନ୍ୟବାହିନୀ ପଛଘୁଞ୍ଚା ଦେଲେ ଯେପରି ସେହି ପକ୍ଷର ସେନାଧ୍ୟକ୍ଷଙ୍କର ଦୁର୍ବଳତା ବା ଅସାମର୍ଥ୍ୟ ପ୍ରକାଶ ପାଇଥାଏ, ବିଜୁଳିର ଅନ୍ତର୍ଦ୍ଧାନରେ ସେହିପରି ବାମଣ୍ଡା ରାଜାଙ୍କର ଅସାମର୍ଥ୍ୟକୁ କବିବର ରାଧାନାଥ ଲକ୍ଷ୍ୟ କରିଥିଲେ । ଏଥିପାଇଁ ତାଙ୍କ ମନରେ ବାମଣ୍ଡା ରାଜାଙ୍କ ପ୍ରତି ଯେ କ୍ରୋଧ ବା ଅଭିମାନ ଜାତହୋଇ ନଥିବ ଏକଥା କୁହାଯାଇ ନପାରେ । କବିବର ରାଧାନାଥ ଓଡ଼ିଆ ସାହିତ୍ୟର ଉନ୍ନତି ଲାଗି ଯେଉଁ ରାଜାମାନଙ୍କର ପ୍ରଶସ୍ତି ଗାନ କରିଥିଲେ ସେମାନଙ୍କ ଜୀବିତାବସ୍ଥାରେ ପୁଣି ମତ ପ୍ରଦାନ କଲେ ଯେ ଓଡ଼ିଆ ସାହିତ୍ୟର ଉନ୍ନତି ଲାଗି ଚେଷ୍ଟା କଲାଭଳି ରାଜା ଓଡ଼ିଶାରେ ଅଭାବ । ଯେଉଁ ରାଜାଙ୍କ ଉଦ୍ୟମରେ କିଛି ହୋଇଅଛି ବୋଲି ମନେ କରାଯାଏ ତାହା ନିତାନ୍ତ ଅଳ୍ପ ।

କବିବର ରାଧାନାଥ ତାଙ୍କର କର୍ତ୍ତବ୍ୟାନୁରୋଧରେ ଓଡ଼ିଶାର ବିଭିନ୍ନ ଗଡ଼ଜାତ ବୁଲି ରଜାମାନଙ୍କର ପ୍ରକୃତିକୁ ଲକ୍ଷ୍ୟ କରିଥିଲେ । ସେମାନଙ୍କର ଉଦାସୀନତାରେ କବି ଅତ୍ୟନ୍ତ ମର୍ମାହତ ହୋଇଥିଲେ । ଏ ଦେଶରେ ବହୁ ପରିମାଣରେ ରଜା ଜମିଦାର ଥିଲେ ସୁଦ୍ଧା ଏ ଦେଶର ସାହିତ୍ୟକୁ ଉନ୍ନତ ସୋପାନରେ ଉପନୀତ କରାଇବା ପାଇଁ ସେମାନେ କେବେହେଲେ ଯତ୍ନଶୀଳ ନଥିଲେ । ସେମାନେ ନିଜ ନିଜର ଜୀବନକୁ ଭୋଗ ବିଳାସରେ କଟାଇ ସେ ସମୟରେ ଇଂରେଜ ସରକାରଠାରୁ ଅନୁଗ୍ରହ ପାଇବା ପାଇଁ ବହୁ ହୀନଚେଷ୍ଟା ଗ୍ରହଣ କରୁଥିଲେ । କବିଙ୍କର ଏହି ପ୍ରକାର ଦୃଷ୍ଟିକୋଣ ଦରବାରରେ ଅଭିବ୍ୟକ୍ତ ଲାଭ କରିଥିବାର ଦେଖାଯାଏ ।

"ଦେଇଅଛ କେତେ କୋଠି ଉଡ଼ା ଝୁଡ଼ି,
ଦେଇଅଛ କେତେଥର ଘୋଡ଼ାଗାଡ଼ି,

କେତେଥର ଯାଇ ବିଦେଶୁ ନିଲାମେ,
କିଣିଅଛ ଦ୍ରବ୍ୟ ଚତୁର୍ଗୁଣ ଦାମେ,

ବାଣ ପ୍ରଦର୍ଶନ, ତୋରଣ ଗଠନ,
ସ୍ୱର୍ଣ୍ଣାକ୍ଷରେ ଅଭିନନ୍ଦନ-ମୁଦ୍ରଣ–

ଆଦି ଶୁଭକାର୍ଯ୍ୟେ ନେତୃପଣ ନେଇ
ଅକାତରେ କେତେ ମୁଦ୍ରା ଅଛ ଦେଇ

ଦେଇଅଛ ଭୋଜେ କେତେ ମାଂସ ସୁରା,
ତାପାଇଁ କଡ଼ାଏ ନୋହିବ ମଜୁରା ।"

କବିବର ରାଧାନାଥ ଏହି କାବ୍ୟାଂଶରେ ଯାହା ବର୍ଣ୍ଣନା କରିଅଛନ୍ତି ତାହା ତାଙ୍କର ପ୍ରତ୍ୟକ୍ଷ ଜ୍ଞାନରୂପେ ମନେହୁଏ । ଏ ବିଷୟରେ ରାଧାନାଥ ଜୀବନୀରେ ଲେଖାଅଛି—"ରାଧାନାଥଙ୍କର ଦରବାର କବିତାର ଅନେକାଂଶ ଶ୍ଳେଷୋକ୍ତି, ବ୍ୟଙ୍ଗୋକ୍ତି ଓ ଆକ୍ଷେପୋକ୍ତିରେ ପୂର୍ଣ୍ଣ । ବାଲେଶ୍ୱରର ସ୍ୱର୍ଗୀୟ ମହାରଜା ବୈକୁଣ୍ଠନାଥ ରାଧାନାଥଙ୍କର ଜଣେ ବନ୍ଧୁ କସାରେ ଅନେକଥର ଅନେକ ଦିନ ଅତିଥି ରୂପେ ରହନ୍ତି । ଥରେ

ଅବସ୍ଥାନ ସମୟରେ ବାହାର ଘରେ ଶଶିଭୂଷଣଙ୍କୁ କହିଲେ, 'ତୁମ ବାବା ଦରବାର ଲେଖିଦେଇ ମୋ ନାମରେ ସ୍ଥାୟୀ ନଥି ( Permanent record ) ରଖି ଦେଇଗଲେ' । ଏହି ସମୟରେ ହଠାତ୍ ରାଧାନାଥ ଆସି ସେଠାରେ ପହଞ୍ଚିଗଲେ । ସେ କହିଲେ 'ମୁଁ କଣ ମିଛ ଲେଖିଛି' ? ମହାରାଜା କହିଲେ, 'ମିଛ ଲେଖିନାହିଁ, ମାତ୍ର ଆମ୍ଭେମାନେ କଅଣ କରିବୁ ? ତୁମର ଗୁଣ ଅଛି, ସେଇ ଗୁଣରେ ପୂଜା ପାଇବ । ଆମ୍ଭମାନଙ୍କର କୋଠିଭଡ଼ା ଛାଡ଼ିଦେବା, ହାକିମ ହୁକୁମାଙ୍କୁ ଘୋଡ଼ାଗାଡ଼ି ଦେବା, ନିଲାମକୁ ଯାଇ ଚତୁର୍ଗୁଣ ମୂଲ୍ୟରେ ହାକିମ ହୁକୁମାଙ୍କ ଦ୍ରବ୍ୟାଦି କିଣିବା, ବାଣ ପୂଟାଇବା, ତୋରଣ ତୋଳି କମ୍ବା ସ୍ୱର୍ଣ୍ଣାକ୍ଷରରେ ଅଭିନନ୍ଦନ ପ୍ରକାଶ ନକଲେ ଆମ୍ଭମାନଙ୍କୁ ପଚାରିବ କିଏ ? ଜମିଦାର ବୋଲି ସିନା ଆମ ଇଲାକାର ପ୍ରଜାମାନେ ମାନ୍ୟ କରିବେ, ଆଉ ସମସ୍ତେ ପଚାରିବେ କାହିଁକି ?" (୧)

କବିବର ରାଧାନାଥ ଦରବାରରେ ଯାହା ବର୍ଣ୍ଣନା କରିଅଛନ୍ତି, ରାଜା ବୈକୁଣ୍ଠ ନାଥଙ୍କ ଉକ୍ତି ତାହା ସହିତ ଏକାବେଳକେ ମିଳିଯାଉଅଛି । ସେ ସମୟରେ କେବଳ ଯେ ବୈକୁଣ୍ଠନାଥ ଇଂରେଜ ସରକାରଙ୍କୁ ସନ୍ତୁଷ୍ଟ କରିବା ପାଇଁ ଏପରି କାର୍ଯ୍ୟସବୁ କରୁଥିଲେ, ତାହା ନୁହେଁ । ଓଡ଼ିଶାର ପ୍ରାୟ ସମସ୍ତ ରାଜା ଓ ଜମିଦାରମାନେ ଏ ପ୍ରକାର କାର୍ଯ୍ୟ କରୁଥିବାର ଶୁଣାଯାଇଥାଏ । ମାତ୍ର ରାଜା ବୈକୁଣ୍ଠ ନାଥ ଏହାକୁ କେବଳ ନିଜ ଉପରକୁ ଏପରି ଭାବରେ ଟାଣିନେଲେ କାହିଁକି ? ମନେହୁଏ, କବିବର ରାଧାନାଥ ଏପରି କେତେକ ଘଟଣା ରାଜା ବୈକୁଣ୍ଠ ନାଥଙ୍କ ସାହଚର୍ଯ୍ୟରେ ଆସି ପ୍ରତ୍ୟକ୍ଷ କରିଥିଲେ । ତେଣୁ ସେ ସମୟରେ ଓଡ଼ିଶାର ରାଜା ମହାରାଜା ବା ଜମିଦାରମାନଙ୍କ ପକ୍ଷରେ ଯାହା ଏକ ଅବିସମ୍ବାଦିତ ସତ୍ୟ, ତାହାକୁ ରାଜା ବୈକୁଣ୍ଠ ନାଥ ନିକଟରେ ଗ୍ରହଣ କରିଅଛନ୍ତି । ଦରବାରରେ କବି ବହୁ ସ୍ଥଳରେ ରାଜା ମହାରାଜାମାନଙ୍କର ଏ ପ୍ରକାର ଅପକର୍ମକୁ ତୀବ୍ର ସ୍ୱରରେ ନିନ୍ଦା କରିଅଛନ୍ତି । ସେ ସମୟରେ ଓଡ଼ିଶାର ଗଡ଼ଜାତମାନଙ୍କରେ ରାଜାମାନେ କିପରି ଭାବରେ ଜୀବନ ଅତିବାହିତ କରୁଥିଲେ ତାହା

(୧) ରାଧାନାଥ ଜୀବନୀ—ପୃ. ୨୫୪

ବ୍ୟାସକବି ଫକୀର ମୋହନ ସେନାପତିଙ୍କ ଆତ୍ମଚରିତରେ ବିଶଦ ଭାବରେ ବର୍ଣ୍ଣିତ ହୋଇଅଛି । ସେ ସମୟରେ ସମାଜରେ ବିଭିନ୍ନ ଶ୍ରେଣୀର ରାଜକର୍ମଚାରୀମାନେ କପରି ଭାବରେ ନିଜ ନିଜର ପଦବୀ ବିଷୟରେ ସଚେତନ ଥିଲେ କବି ତାହା ଅତ୍ୟନ୍ତ ପ୍ରାଞ୍ଜଳ ଭାବରେ ବର୍ଣ୍ଣନା କରିଅଛନ୍ତି । ବିଶେଷତଃ ପୋଲିସ କର୍ମଚାରୀ ଏବଂ ଦିପୋଟିଙ୍କର ଅହମିକାକୁ ଲକ୍ଷ୍ୟ କରିବାର କଥା । ଇଂରେଜ ରାଜତ୍ୱ ସମୟରେ ପୋଲିସ ବିଭାଗ ଶାସନ ବିଭାଗରେ ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ ସ୍ଥାନ ଗ୍ରହଣ କରିଥିଲା । ବିଦେଶୀ ସରକାର ଏ ଦେଶବାସୀଙ୍କୁ ଶତ୍ରୁ ଚକ୍ଷୁରେ ଦେଖିବା ସମୟରେ ପୋଲିସ ବିଭାଗର କର୍ମଚାରୀମାନଙ୍କ ସହାୟତା ବିଦେଶୀ ସରକାର ପକ୍ଷରେ ଅତ୍ୟନ୍ତ ମୂଲ୍ୟବାନ ଥିଲା (ରାଜଭକ୍ତିର ଆଳ ଦେଖାଇ ବହୁ ପୋଲିସ୍ କର୍ମଚାରୀ ସେ ସମୟରେ ନିଜ ଦେଶ ତଥା ଦେଶବାସୀଙ୍କୁ ବିପନ୍ନ କରିବାର ବହୁ ଉଦାହରଣ ରହିଛି । କବିବର ରାଧାନାଥ ଜଣେ ସରକାରୀ କର୍ମଚାରୀ ଥିଲେ ହେଁ ପୋଲିସ ବିଭାଗର କର୍ମଚାରୀଙ୍କର ଅହମିକାକୁ ଆକ୍ଷେପ କରି ଲେଖିଛନ୍ତି,

> "ଆନବୋଲେ, ମୁହିଁ ଅଟଇ ପୁଲିସ,
> କିନାମେରେ ସୃଜି ପାରଇଁ କୁଳିଶ,
> ନିଦୋଷୀ, କିଅବା ଦୋଷହୀନ ନର
> ମୋ ପ୍ରତାପେ ଭିଜେ ସର୍ବେ ଥରହର ।
> କିବା ଦୁଃଖୀ, ରଙ୍କୀ, କି କୋଟିପତିଏ
> ଲାଲ-ପଗଡ଼ିକୁ ନ ଡରନ୍ତି କିଏ ?
> ମୋତେ ଦେଖି କିଏ ନଭଜେ କମ୍ପକୁ ?
> କିଏ ନଡରଇ ଉତ୍ପୀଡ଼ଣ ଚମ୍ପକୁ ?
> ରାଜାଙ୍କ ଅଟଳ ବିଶ୍ୱାସ ମୋଠାରେ,
> ମୋହଠାରୁ କିଏ ବଡ଼ ଦରବାରେ ?"

ସେ ସମୟରେ ଡିପୋଟି ଚାକିରି ଥିଲା କଳା ଲୋକମାନଙ୍କର ସବୁଠାରୁ ବଡ଼ ଚାକିରି । ଯଦି ଜଣେ କେହି ଡିପୋଟି ଚାକିରି ପାଉଥିଲା

ତେବେ ଲୋକମାନେ ତାଙ୍କୁ ଦେବତୁଲ୍ୟ ମନେ କରୁଥିଲେ । ଲୋକ-ମାନଙ୍କର ବିବେଚନା ଯାହା ହେଉନା କାହିଁକି ଯେଉଁ ବ୍ୟକ୍ତି ବିପୋଟି ଗୃହିଣୀ ଖାଉଥିଲା ସେ ମଧ୍ୟ ନିଜକୁ କମ୍ ଗୌରବର ଅଧିକାରୀ ମନେକରୁ ନଥିଲା । ତେଣୁ କବି ଲେଖିଛନ୍ତି,

"କେହିବୋଲେ, ମୁହିଁ ଅଟଇ ବିପୋଟୀ
ରଜାଲୋକଙ୍କର ଉନ୍ନତର କୋଠୀ
ଲଭିଅଛି ମୁହିଁ ବଳେ କଉଶଳେ,
ମୋତେ ପୃଷ୍ଠି କିଏ ବସାଇବ ତଳେ ?"

'ଆସନ କଜିଆ' ପ୍ରସଙ୍ଗରେ କବି ସେଠାରେ ଉପସ୍ଥିତ ଥିବା ବ୍ୟକ୍ତିମାନଙ୍କର ମନୋଭାବକୁ ପ୍ରକାଶ କରିଅଛନ୍ତି । ଏହି ଅବସରରେ ସେ ପଦ ମର୍ଯ୍ୟାଦାର ତୁଳନାତ୍ମକ ଚିତ୍ର ଅଙ୍କନ କରିଅଛନ୍ତି । ନିଜ ନିଜକୁ ଅନ୍ୟଠାରୁ ବଡ଼ ମନେକରୁଥିବା ବ୍ୟକ୍ତିମାନେ ନିଜ ନିଜର ଆସନ ନିର୍ଦ୍ଦିଷ୍ଟ କରାଯାଇଥିବା ସ୍ଥାନକୁ ଦେଖି ଅସନ୍ତୋଷ ପ୍ରକାଶ କରିଛନ୍ତି । ସେମାନେ ପ୍ରତ୍ୟକ୍ଷ ଭାବରେ ନିଜ ନିଜର ଅସନ୍ତୋଷ ପ୍ରକାଶ ନକରି ଅନ୍ୟର ଆଳରେ ପ୍ରକାଶ କରିଛନ୍ତି । କବି ଏହି ବିଷୟକୁ ଅତ୍ୟନ୍ତ ଚତୁରତା ସହକାରେ ବର୍ଣ୍ଣନା କରିଅଛନ୍ତି ।

"ଲୋଭି ଭୋଜେ ଯଥା ସ୍ୱମର୍ଯ୍ୟଦା ଲାଗି,
ପ୍ରତିବାସୀ ପକ୍ଷେ କହେ ଦେବାଲାଗି,
କେହି ଅବା ନିଜ ଦୁଃଖକୁ ଘୋଡ଼ାଇ
ପ୍ରତିବାସୀ ଦୁଃଖ ଗାଇ ହେଉଥାଇ,
କହେ, 'ନ୍ୟାୟ୍ୟ ନାହିଁ ଏହି ଦରବାରେ,
ତା ଆସନ ଭୂମି ଆଗେ କି ବିଚାରେ ?"

ସେ ସମୟର ସମାଜରେ ଲୋକମାନେ ଅଯଥା ଉପାଧି ଲାଗି କିପରି ଲାଳାୟିତ ଥିଲେ ତାହା କବି ପ୍ରାଞ୍ଜଳ ଭାବରେ ବର୍ଣ୍ଣନା କରିଅଛନ୍ତି । ବହୁ ରଜା ମହାରଜା ବା ଜମିଦାର ଇଂରେଜ ସରକାରକୁ

ନେଷ୍ଟ କରିବା ପାଇଁ ଏବଂ ବସୁବାହୁ ଦୂର ବା ରାୟସାହେବ ଉପାଧିଟିଏ ପାଇବା ପାଇଁ ଅକାତରେ ଧନ ଖର୍ଚ୍ଚ କରିବାର ଜଣାଯାଏ । ସମାଜରେ ନିଜର ଉପାଧିକୁ ନେଇ ଏମିତି ପ୍ରକାଶ କରିବାର ମନୋବୃତ୍ତି ଲୋକମାନଙ୍କୁ ପାଗଳ କରିଦେଇଥିଲା ବୋଲି କୁହାଯାଇପାରେ । କେବଳ ଏତିକି ନୁହେଁ, ଯେଉଁମାନେ ସେ ସମୟରେ ଇଂରେଜ ସରକାର ଅଧୀନରେ କାର୍ଯ୍ୟ କରୁଥିଲେ ସେମାନେ ଉପାଧିଟିଏ ପାଇବାପାଇଁ ବା ଗୃହରେ ସୁନାମ ଅର୍ଜନ କରିବାପାଇଁ ଦେଶ ବା ଜାତିର ସ୍ୱାର୍ଥ ବିରୁଦ୍ଧରେ କାର୍ଯ୍ୟ-ନୀତି ଗ୍ରହଣ କରିଥିବାର ବହୁ ଦୃଷ୍ଟାନ୍ତ ରହିଛି । ଉପାଧିଟିଏ ପାଇବାପାଇଁ ମନୁଷ୍ୟର ବ୍ୟଗ୍ରତା ପ୍ରତି ଆକ୍ଷେପ କରି କବି ଲେଖିଛନ୍ତି,

"ଏହି ଘର ଏହି ଅକିଞ୍ଚିତକର
ସମ୍ମାନ ସକାଶେ ଏତେ ବ୍ୟସ୍ତ ନର
ହା ଧିକ୍ ! ଏ ଭିକସାର ପଦପାଇଁ
ଦେଉଛନ୍ତି ଲୋକେ ସମ୍ପଦ ଉଡ଼ାଇ !
ଏଥିପାଇଁ ଲୋକେ ହେଉଛନ୍ତି କାଙ୍ଗାଳ
ମନୁଷ୍ୟତା:ହୀନ—ସେବାପାଇଁ ବଳ
ଉପାଧି-ଲାଳସା-ରୂପୀ ମହାବ୍ୟାଧି
ହୋଇଛି ସାର୍ବିକ ଧରମର ବାଧା
ଅସାର ଝଟକ ହୋଇଅଛି ସାର,
ଭଣ୍ଡତାର ବଢିଯାଉଛି ପ୍ରସାର !
କରୁଛନ୍ତି ଲୋକେ ଉପାଧି-ଆଶାରେ
ମନୁଷ୍ୟର ପୂଜା ଷୋଡ଼ଶୋପଚାରେ,
ମନୁଷ୍ୟ ତୋଷିବା ପାଇଁ ସହି କଷ୍ଟ
ମନୁଷ୍ୟ ପଣରୁ ହେଉଛନ୍ତି ଭ୍ରଷ୍ଟ
ପଦପାଇଁ ଲୋକେ ହୋଇ ଲାଳାୟିତ
ତୋଷିବାକୁ ବ୍ୟସ୍ତ ମନୁଷ୍ୟର ଚିତ୍ତ,

ଭ୍ରମନ୍ତି ମନୁଷ୍ୟ-ପାଦ ଅନୁସରି
ସେହି ମନୁଷ୍ୟର ସେବା ଶ୍ୱାନପରି,

ମନୁଷ୍ୟର ସିଂହ, ମନୁଷ୍ୟ-ଭ୍ରୂକୁଟୀ
ହୋଇଛନ୍ତି ଜୀବନ ମରଣର ବୃଟୀ,

ମାନୁଷୀ ଅର୍ଚ୍ଚନା ଲାଗି ଅଗଣନ
ରଚନ୍ତି ଯତନେ ପୁଷ୍ପ-ଉପବନ,

ଦେଖାଇଁ ତହୁଁ ପୁଷ୍ପ ନେଇଲେ କେହି,
ମାଳୀଏ ମରନ୍ତି ଜଂଘମାନ ଦେଇ;

ପବନ ଶ୍ରୋତିସ୍ୱେ ନକରି ଗୋଦାନ
ଇତରେ ଦଅନ୍ତି କାଣି ଦବ୍ୟ ଶ୍ୱାନ,

ତସ୍ତ ବୈତରଣୀ ହେବେ ସବ ପାରି
ସେହି କୁକୁରର ହୋଇ ପୁଚ୍ଛଧାରୀ?"

କବି ଏହିପରି ଭାବରେ ତତ୍‌କାଳୀନ ମାନବ ସମାଜର ଉପାଧି ଲାଳସାକୁ ତୀବ୍ର ସ୍ୱରରେ ନିନ୍ଦା କରିଅଛନ୍ତି । କବି ରାଜାମାନଙ୍କୁ ସମ୍ବୋଧନ କରି ସେମାନଙ୍କର ଆଚରଣକୁ ଅତ୍ୟନ୍ତ ସ୍ପଷ୍ଟ ଭାବରେ ଆକ୍ଷେପ କରିବା ପରେ ସେମାନଙ୍କୁ ଧର୍ମ ମାର୍ଗରେ ଅଗ୍ରସର ହେବାଲାଗି ଉପଦେଶ ଦେଇ-ଅଛନ୍ତି । ତାପରେ କବି ସାମନ୍ତ ଚନ୍ଦ୍ରଶେଖରଙ୍କୁ ଲକ୍ଷ୍ୟକରି ତାଙ୍କର ଉପାଧି ପ୍ରାପ୍ତି ନିମିତ୍ତ ଦରବାରରେ ଉପସ୍ଥିତିକୁ ଉଚିତ ମନେକରି ନାହାନ୍ତି । ସାମନ୍ତ ଚନ୍ଦ୍ରଶେଖର କପଟ ଭାବରେ ଅବହେଳିତ ହୋଇଥିଲେ ସେ ବିଷୟ ବର୍ଣ୍ଣନା କରି କବି ମର୍ମାହତ ହୋଇଅଛନ୍ତି ।

ଉତ୍କଳର ସମସ୍ତ ରାଜା ବା ଜମିଦାର ଯେ ଗୁଣଗ୍ରାହୀ ନଥିଲେ ସେକଥା କବିବର ରାଧାନାଥ ପ୍ରକାଶ କରିନାହାନ୍ତି । ସାମନ୍ତ ଚନ୍ଦ୍ରଶେଖରଙ୍କର ପ୍ରତିଭାକୁ ଯଥାଯଥ ସମ୍ମାନ ଦେବାପାଇଁ ସେ ସମୟରେ ମଧ୍ୟ ଉତ୍କଳର ନରପତି ଥିଲେ । ତଥାପି ସେ ଯାହା ପାଇବାର କଥା ତାହା ପାଇପାରିଲେ ନାହିଁ । ତେଣୁ କବି ଲେଖିଛନ୍ତି,

"ଥାଉଁକି ଶ୍ରୀରାମଚନ୍ଦ୍ର ନରମଣି
ବୟସେ କିଶୋର, ଜ୍ଞାନେ ବର୍ଷୀୟାନ,
ଥାଉଁ ଥାଉଁ ବାସୁଦେବ ନୃପବର
ବିଦ୍ୱାନ-ମରାଳ-କୁଳ ପଦ୍ମାକର,
ନରେଶ ମହେନ୍ଦ୍ର ସ୍ୱଦେଶ ଗୌରବ,
ଗୁଣିଗଣ-ଅନବଚ୍ଛିନ୍ନ-ବାନ୍ଧବ,
ତୁମ୍ଭପରି ଜ୍ଞାନତରୁ ମଉଳିଲା
ଏହା ଦେଖିବାକୁ ବିଧି ଲେଖିଥିଲା !"

ଏହି ବର୍ଣ୍ଣନା ପାଠକଲେ ମନେହୁଏ, ସତେ ଯେପରି କବିବର ରାଧାନାଥ ନିଜକଥା କହିବାକୁ ଯାଇ ସାମନ୍ତ ଚନ୍ଦ୍ରଶେଖରଙ୍କ ଆଳରେ ତାହାକୁ ପ୍ରକାଶ କରିଅଛନ୍ତି । ଏହି କେତୋଟି ପଦ ମଧ୍ୟରେ କବିଙ୍କର ମନର ଭାବ ଅତ୍ୟନ୍ତ ସ୍ପଷ୍ଟ ହୋଇ ଉଠିଛି ।

ଦରବାର କାବ୍ୟରେ କବି ମୁଖ୍ୟତଃ ପାଞ୍ଚଗୋଟି ବିଷୟ ଉପରେ ବର୍ଣ୍ଣନା କରିଅଛନ୍ତି । ପ୍ରଥମଟି ହେଉଛି, ବାରବାଟୀ ଦୁର୍ଗ ପ୍ରାଙ୍ଗଣରେ ଦରବାର ଅନୁଷ୍ଠାନ, ଅତୀତ ଓ ବର୍ତ୍ତମାନର ତୁଳନା, ରାଜାମାନଙ୍କର ଆସିବାର ବର୍ଣ୍ଣନା ଓ ଉପାଧି ବିଷୟରେ କବିଙ୍କର ଅଭିମତ ।

ଦରବାରରେ କବି ସାମନ୍ତ ଚନ୍ଦ୍ରଶେଖରଙ୍କର ଉପସ୍ଥିତି ବିଷୟ ବର୍ଣ୍ଣନା କରିଅଛନ୍ତି ଏବଂ ଏହି ଦରବାର ବାରବାଟୀ ଦୁର୍ଗ ମଧ୍ୟରେ ଅନୁଷ୍ଠିତ ହୋଇଥିବାର ମଧ୍ୟ ବର୍ଣ୍ଣନା କରିଅଛନ୍ତି । ମାତ୍ର ସାମନ୍ତ ଚନ୍ଦ୍ରଶେଖର ଯେଉଁ ଦରବାରରେ ଉପାଧି ଗ୍ରହଣ କରିଥିଲେ ତାହା ବାରବାଟୀ ଦୁର୍ଗରେ ଅନୁଷ୍ଠିତ ନହୋଇ କମିସନର୍ ସାହେବଙ୍କର ଲାଲବାଗସ୍ଥିତ କୋଠିରେ ଅନୁଷ୍ଠିତ ହୋଇଥିଲା । ବାରବାଟୀ ଦୁର୍ଗରେ ଯେଉଁ ଦରବାର ଅନୁଷ୍ଠିତ ହୋଇଥିଲା ତହିଁରେ ଗୋବିନ୍ଦ ବଲ୍ଲଭ ରାୟ ଉପାଧି ଗ୍ରହଣ କରିଥିଲେ । ରାଧାନାଥଙ୍କର ଏହି ବର୍ଣ୍ଣନାରୁ ଜଣାଯାଏ ଯେ, ସେ ଦୁଇଗୋଟିଯାକ ଦରବାରକୁ ଏକତ୍ର କରି ବର୍ଣ୍ଣନା କରିଅଛନ୍ତି ।

ଦ୍ୱିତୀୟ ବିମତି ହେଉଛି ଆସନ ବିବାଦର ବର୍ଣ୍ଣନା । ଏହା ଅତ୍ୟନ୍ତ ବାସ୍ତବ ହୋଇଅଛି ଏବଂ କବି ଏହି ଆସନ ବିବାଦ ବିଷୟକୁ ଯେପରି ଭାବରେ ବର୍ଣ୍ଣନା କରିଅଛନ୍ତି, ତହିଁରୁ ଜଣାଯାଏ ଯେ ଏହା କେବଳ ଏହି ନିର୍ଦ୍ଦିଷ୍ଟ ଦରବାରର କଥା ନୁହେଁ । କବିଙ୍କର ଏହି ଅନୁଭୂତି ତତ୍କାଳୀନ ଓଡ଼ିଶାର ରାଜାମହାରାଜାଙ୍କର ରାଜସଭା-ମାନଙ୍କରୁ ମିଳିଥିବା ଅଭିଜ୍ଞତା ଏବଂ ପୂର୍ବରୁ ଅନୁଷ୍ଠିତ ହୋଇଥିବା ଏକାଧିକ ଦରବାରରୁ ମିଳିଥିବା ଅଭିଜ୍ଞତା ଉପରେ ପର୍ଯ୍ୟବସିତ ।

ତୃତୀୟ ବିମତି ହେଉଛି, ଅକିଞ୍ଚନର ନିବେଦନ । ଏଠାରେ କବିବର ରାଧାନାଥ ନିଜେ ହିଁ ଅକିଞ୍ଚନର ଭୂମିକାରେ ଅବତୀର୍ଣ୍ଣ ହୋଇଅଛନ୍ତି । ତେଣୁ ତାଙ୍କର ନିଜ ଜୀବନର ତିକ୍ତ ଅନୁଭୂତି ସମ୍ବଳିତ ଉପଦେଶ ଏହି ଅଂଶରେ ପ୍ରକାଶ ପାଇଅଛି । କବିବର ରାଧାନାଥ ମନୁଷ୍ୟର ଜୀବନ ଓ ଚରିତ୍ର ବିଷୟରେ କେତେଦୂର ସଚେତନ ଥିଲେ ତାହା ଏହି ବର୍ଣ୍ଣନାରୁ ମିଳିଥାଏ ।

ଚତୁର୍ଥ ବିମତି ହେଉଛି, ରାଜାମାନଙ୍କର ବିଷୟ ବର୍ଣ୍ଣନା । ସେ ସମୟରେ ରାଜାମାନେ କିପରି ଭୋଗବିଳାସପୂର୍ଣ୍ଣ ଜୀବନ ଯାପନ କରୁଥିଲେ ତାହା ରାଧାନାଥ ଅତ୍ୟନ୍ତ ସ୍ପଷ୍ଟ ଭାବରେ ପ୍ରକାଶ କରିଅଛନ୍ତି । ମନେହୁଏ, କବିବର ରାଧାନାଥ ଯେତେବେଳେ ଶିକ୍ଷା-ବିଭାଗର ଜଣେ ପରିଦର୍ଶକ କର୍ମଚାରୀ ଭାବରେ ସମଗ୍ର ଓଡ଼ିଶା ଭ୍ରମଣ କରୁଥିଲେ ସେତେବେଳେ ସେ ଓଡ଼ିଶାର ବିଭିନ୍ନ ରାଜସଭାମାନଙ୍କ ବିଷୟରେ ଅନୁଭୂତି ଲାଭ କରିଥିଲେ । ରାଜାମାନଙ୍କ ଜୀବନ ବିଷୟରେ ସେତେବେଳେ ସେ ବହୁ ବିଷୟ ଜାଣିପାରିଥିଲେ । ସମଗ୍ର ଜୀବନକାଳ ମଧ୍ୟରେ ପାଇଥିବା ଅନୁଭୂତିକୁ କବି ଏଠାରେ ପ୍ରକାଶ କରିଛନ୍ତି । କବି ଅନୁଭବ କରିଛନ୍ତି ଯେ, ରାଜାମାନେ ଅସଂଯତ ଆଚରଣ ପୂର୍ବକ ଜୀବନଯାପନ କରୁଅଛନ୍ତି । ତେଣୁ ସେ ସେମାନଙ୍କୁ ସଂଯମ ଜୀବନ ଯାପନ ପାଇଁ ଆହ୍ୱାନ କରି ଯଥାର୍ଥରେ ରାଜଧର୍ମ ପ୍ରତିଷ୍ଠା ପାଇଁ ଉପଦେଶ ପ୍ରଦାନ କରିଅଛନ୍ତି ।

ପଞ୍ଚମ ଏମନ୍ତି ହେଉଛି ସାମନ୍ତ ଚନ୍ଦ୍ରଶେଖରଙ୍କ ବିଷୟ । ଏଥିରେ କବି ସାମନ୍ତ ଚନ୍ଦ୍ରଶେଖରଙ୍କ ଜୀବନର ମହତ୍ତ୍ୱକୁ ପ୍ରକାଶ କରିବା ସଙ୍ଗେ ସଙ୍ଗେ ତାଙ୍କର ଦୁର୍ଦ୍ଦଶା ଲାଗି କ୍ଷୋଭ ପ୍ରକାଶ କରିଅଛନ୍ତି ।

ଦରବାରକୁ କେବଳ ଗୋଟିଏ ବ୍ୟଙ୍ଗକବିତା ଭାବରେ ଯେଉଁମାନେ ଗ୍ରହଣ କରନ୍ତି, ସେମାନେ କବିଙ୍କର କାବ୍ୟ ରଚନାର ଅନ୍ତଃସ୍ୱରର କୌଣସି ପରିଚୟ ପାଇପାରନ୍ତି ନାହିଁ ବୋଲି କୁହାଯାଇପାରେ । ଦରବାର ରଚନାର ପୃଷ୍ଠଭୂମି ହେଉଛି କବିବର ରାଧାନାଥଙ୍କର ତତ୍କାଳୀନ ମାନସିକ ପ୍ରତିକ୍ରିୟା । ଏହି ପ୍ରତିକ୍ରିୟାର ଯଥାର୍ଥ ବିଶ୍ଳେଷଣ କରି ନପାରିଲେ କବିବର ରାଧାନାଥଙ୍କର କବି ମାନସ ବିଷୟରେ ନିର୍ଭୁଲ ଧାରଣାରେ ଉପନୀତ ହେବା ସହଜ ନୁହେଁ । ତେଣୁ ଅଧ୍ୟାପକ ନଟବର ସାମନ୍ତରାୟ ଯଥାର୍ଥରେ ମତ ପ୍ରଦାନ କରିଛନ୍ତି, "ଏଠାରେ କବିଙ୍କ ଚିତ୍ତବୃତ୍ତିର ତୀବ୍ରତର ପ୍ରତିକ୍ରିୟା ହିଁ ହୋଇଛି କାବ୍ୟସୃଷ୍ଟିର ପ୍ରଧାନ ଉତ୍ସ । ଏ ଚିତ୍ତବୃତ୍ତି କାବ୍ୟର ସର୍ବତ୍ର ପ୍ରତିଫଳିତ, କିନ୍ତୁ ଏହା କେଉଁଠି ସ୍ପଷ୍ଟତଃ ବ୍ୟକ୍ତ ନୁହେଁ । ଏ ଚିତ୍ତବୃତ୍ତିର ପଶ୍ଚାତ୍ ଭାଗରେ ଅଛି ସମସାମୟିକ ସାମାଜିକ ପରିବେଶର ଏକ ଦୁର୍ବିଷହମୟ ପ୍ରଭାବ । ଏ ପରିବେଶର ଯଥାର୍ଥ ରୂପ ହେଉଛି ନବୋନ୍ମେଷିତ ନୂତନ ସୃଷ୍ଟ ଏକ ଶିକ୍ଷିତ ମଧ୍ୟବିତ୍ତ ଶ୍ରେଣୀ । ତେଣୁ ଦରବାର କାବ୍ୟ ରାଧାନାଥ ଜୀବନର ଏକ ନିର୍ଭୁଲ ଆତ୍ମଲିପି ବ୍ୟତୀତ ଅନ୍ୟ କିଛି ନୁହେଁ ।"(୧)

---

(୧) ଯୁଗ ପ୍ରବର୍ତ୍ତକ ସ୍ରଷ୍ଟା ରାଧାନାଥ—ପୃ. ୧୭୩

# ଉର୍ବଶୀ

୧୮୯୫୦ ସାଲ ମାର୍ଚ୍ଚ ମାସରେ ଉର୍ବଶୀ ପ୍ରକାଶ ପାଇଥିଲା । କବିବର ରାଧାନାଥ ଏହି କାବ୍ୟର ଗୋଟିଏ ସର୍ଗ ରଚନା କରିଥିଲେ ଓ ଏହାର ପରବର୍ତ୍ତୀ ଅଂଶକୁ ଗଦ୍ୟାକାରରେ ଟିପାଖାତାରେ ଲେଖି ରଖିଥିଲେ । ଗଦ୍ୟାଂଶ ଦ୍ୱିତୀୟ ସର୍ଗଠାରୁ ଆରମ୍ଭ କରି ଷଷ୍ଠସର୍ଗ ପର୍ଯ୍ୟନ୍ତ ଲିଖିତ । ଏହି ଗଦ୍ୟାଂଶ ରାଧାନାଥ ଗ୍ରନ୍ଥାବଳୀରେ ସନ୍ନିବେଶିତ ହୋଇଅଛି ।

ଉର୍ବଶୀ କାବ୍ୟର ପ୍ରଥମ ସର୍ଗରେ କାବ୍ୟର କଥାବସ୍ତୁର କେବଳ ଉନ୍ମୋଚନ ମାତ୍ର ଘଟିଅଛି । ପରବର୍ତ୍ତୀ ସର୍ଗଗୁଡ଼ିକ ରଚିତ ହୋଇଥିଲେ ଏହା ଯେ ଏକ ଅନବଦ୍ୟ କାବ୍ୟରୂପ ଗ୍ରହଣ କରିଥାଆନ୍ତା, ଏଥିରେ ସନ୍ଦେହ ନାହିଁ ।

କାବ୍ୟର ଆରମ୍ଭରେ କବି ସ୍ୱଭାବସୁଲଭ ବର୍ଣ୍ଣନାଭଙ୍ଗୀରେ ପ୍ରକୃତିର ସୁରୁଚିର ଅଙ୍କନ କରିଅଛନ୍ତି । ଶୀତଋତୁ ଧରାପୃଷ୍ଠରୁ ବିଦାୟ ନେଇନାହିଁ ବା ବସନ୍ତଋତୁ ଧରାପୃଷ୍ଠକୁ ଆସିନାହିଁ— ଏହିପରି ଏକ ସମୟରେ ନରପତି ପୁରୁରବା ଅରଣ୍ୟରେ ଶିକାର ଉଦ୍ଦେଶ୍ୟରେ ବିଚରଣ କରୁଥିଲେ । ଅରଣ୍ୟ ମଧ୍ୟରେ ସେ ଦେଖିବାକୁ ପାଇଲେ ଯେ ଜଣେ ଅନିନ୍ଦ୍ୟାସୁନ୍ଦରୀ ଯୁବତୀ ଭୂପୃଷ୍ଠରେ ଅଚେତନ ଅବସ୍ଥାରେ ପଡ଼ିଛନ୍ତି ଓ ତାଙ୍କ ନିକଟରେ ଆଉଜଣେ ସୁନ୍ଦରୀ ଯୁବତୀ ବସିଛନ୍ତି । ରାଜା ସେମାନଙ୍କ ନିକଟକୁ ଗଲେ ଓ ବସିଥିବା ଯୁବତୀଙ୍କଠାରୁ ଜାଣିବାକୁ ପାଇଲେ ଯେ ଅଚେତନ ଅବସ୍ଥାରେ ପଡ଼ିଥିବା ଯୁବତୀଟି ହେଉଛନ୍ତି ସ୍ୱର୍ଗର ଅପ୍ସରା ଉର୍ବଶୀ । ଦିନିଶେଷରେ ସୂର୍ଯ୍ୟ ଯେତେବେଳେ ତାଙ୍କ ରଥ ଆରୋହଣ କରି ଆକାଶ ମାର୍ଗରେ ଅଗ୍ରସର ହୁଅନ୍ତି, ସେତେବେଳେ ତାଙ୍କ ରଥ ସମ୍ମୁଖରେ ଅପ୍ସରାମାନେ ନୃତ୍ୟ କରି ଆସନ୍ତି । ସେଦିନ ସୂର୍ଯ୍ୟଙ୍କ

ରଥ ସମ୍ମୁଖରେ ନୃତ୍ୟ ଶେଷକରିବା ପରେ ଉର୍ବଶୀ ତାଙ୍କର ସଖୀ ଚିତ୍ରଲେଖାଙ୍କ ସହିତ ସେହି ଅରଣ୍ୟକୁ ବିଚରଣ କରିବା ଉଦ୍ଦେଶ୍ୟରେ ଆସିଥିଲେ । ଅରଣ୍ୟରେ ଜଣେ ଦାନବ ତାଙ୍କୁ ଧରି ନେଇ-ଯାଉଥିବା ସମୟରେ ପୁରୁରବାଙ୍କୁ ଦେଖି ତାଙ୍କୁ ଛାଡ଼ି ଚାଲିଗଲା । ଭୟରେ ଉର୍ବଶୀ ସଂଜ୍ଞାଶୂନ୍ୟ ହୋଇପଡ଼ିଲେ । ଏକଥା ଶୁଣି, ରାଜା ଅତ୍ୟନ୍ତ ଦୁଃଖିତ ହେଲେ ଏବଂ ନିକଟସ୍ଥ ଜଳାଶୟରୁ ଜଳ ଆଣି ଚିତ୍ରଲେଖାଙ୍କୁ ଦେଲେ । ଚିତ୍ରଲେଖା ଉର୍ବଶୀଙ୍କ ମୁଖରେ ଜଳ ସିଞ୍ଚନ କଲେ ଓ ଉର୍ବଶୀ ସଂଜ୍ଞାଲାଭ କଲେ । ଉର୍ବଶୀ ପୁରୁରବାଙ୍କୁ ଦେଖି ତାଙ୍କ ପ୍ରତି ଆକୃଷ୍ଟ ହୋଇପଡ଼ିଲେ । ସନ୍ଧ୍ୟାର ଆଗମନ ଦେଖି ସାରଥି ରାଜାଙ୍କ ନିକଟରେ ରଥ ଆଣି ଉପସ୍ଥିତ ହେଲା । ରାଜା ଉର୍ବଶୀ ଏବଂ ଚିତ୍ରଲେଖାଙ୍କୁ ରଥରେ ବସାଇ ହେମକୂଟ ଗିରିକୁ ନେଇଗଲେ । ପଥମଧ୍ୟରେ ଉର୍ବଶୀଙ୍କ ଶରୀର ସହିତ ପୁରୁରବାଙ୍କ ଶରୀର ଦୈବାତ୍ ସ୍ପର୍ଶ ହେବାରୁ ଦୁହିଁଙ୍କ ଶରୀରରେ ଅପୂର୍ବ ଅନୁଭୂତି ସଞ୍ଚାର ହେଲା । ରାଜାଙ୍କଠାରୁ ମେଲାଣି ନେଇ ସଖୀଦୁହେଁ ହେମକୂଟ ଗିରି ଉପରକୁ ଗଲେ । ରାଜା ସେମାନଙ୍କୁ ବିଦାୟ ଦେଲେହେଁ ଅନୁଭବ କଲେ ଯେପରି ତାଙ୍କର ମନକୁ ଉର୍ବଶୀ ଆକର୍ଷଣ କରି ନେଇଯାଇଅଛନ୍ତି ।

ଏହିଠାରେ ଉର୍ବଶୀ କାବ୍ୟର ରଚନା ଅସମାପ୍ତ ରହିଅଛି । କବି ଟେବ୍ୟାକାରରେ ଆଉ ପାଞ୍ଚଗୋଟି ସର୍ଗଲାଗି କଥାବସ୍ତୁ ଲେଖି ରଖିଥିଲେ । ତହିଁରେ ବର୍ଣ୍ଣିତ ଅଛି ଯେ ପୁରୁରବା ପ୍ରୟାଗରେ ବସି ଉର୍ବଶୀଙ୍କ ଚିନ୍ତାରେ ଅସ୍ଥିର ହୋଇପଡ଼ିଥିଲେ । ଉର୍ବଶୀ ଓ ଚିତ୍ରଲେଖା ସୁବର୍ଣ୍ଣମେଘ ବିମାନରେ ସ୍ୱର୍ଗଲୋକରୁ ପ୍ରୟାଗ ଅଭିମୁଖରେ ମର୍ତ୍ତ୍ୟଧାମକୁ ଆସିଲେ । ପୁରୁରବା ଚିନ୍ତିତ ଥିବା ସମୟରେ ଉର୍ବଶୀ ପଛରୁ ଆସି ପୁରୁରବାଙ୍କ ଚକ୍ଷୁକୁ ବୁଜି ଧରିଲେ ଏବଂ ତାପରେ ତାଙ୍କ ସମ୍ମୁଖରେ ଆବିର୍ଭୂତା ହେଲେ । ଉର୍ବଶୀ ଓ ପୁରୁରବା କଥାବାର୍ତ୍ତା ହେବାକୁ ଆରମ୍ଭ କରିବା ମାତ୍ରେ ଦେବଦୂତଙ୍କର ଆଦେଶ ହେଲା ଯେ ଉର୍ବଶୀ ଶୀଘ୍ର ସ୍ୱର୍ଗପୁରକୁ ଯିବେ । ସ୍ୱର୍ଗପୁରରେ ଦେବନାଟ୍ୟଶାଳାରେ ଲକ୍ଷ୍ମୀସ୍ୱୟମ୍ବର ନାଟକ ଅଭିନୀତ ହେବ ।

ସ୍ୱର୍ଗପୁରରେ ଦେବନାଟ୍ୟଶାଳାରେ ଉର୍ବଶୀ ଲକ୍ଷ୍ମୀଭୂମିକାରେ ଅବତୀର୍ଣ୍ଣା ହେଲେ । ତାହାକୁ ବରଣ କରିବାକୁ ଲକ୍ଷ୍ମୀ ଇଚ୍ଛା କରନ୍ତି ବୋଲି ଯେତେବେଳେ ମେନକା ପଚାରିଲେ ସେତେବେଳେ ଲକ୍ଷ୍ମୀରୂପିଣୀ ଉର୍ବଶୀଙ୍କ କଣ୍ଠରୁ ଅସାବଧାନତା ବଶତଃ ପୁରୁରବାଙ୍କ ନାମ ବାହାରି ପଡ଼ିଲା । ଦେବସଭାରେ ହାସ୍ୟରୋଳ ଖେଳିଗଲା । ଏ ଭଙ୍ଗ ଦୋଷରୁ ଭରତ ମହର୍ଷି ଅଭିଶାପ ଦେଲେ ଯେ ଉର୍ବଶୀ ମର୍ତ୍ତ୍ୟଲୋକକୁ ଯାଆନ୍ତୁ । ଇନ୍ଦ୍ର ଉର୍ବଶୀଙ୍କୁ ବୁଝାଇ ଦେଲେ ଯେ ପୁରୁରବା ଦେବୋପମ ବୀର । ସେ ପୁତ୍ରମୁଖ ଦର୍ଶନ କରିବା ପର୍ଯ୍ୟନ୍ତ ଉର୍ବଶୀ ଯାଇ ତାଙ୍କ ସେବାରେ ରହନ୍ତୁ । ତାପରେ ଉର୍ବଶୀ ମର୍ତ୍ତ୍ୟଭୂମିକୁ ଆସିଲେ ଏବଂ ପୁରୁରବାଙ୍କ ସହିତ ପ୍ରଣୟରେ ମଜ୍ଜିତ ହେଲେ । ଉର୍ବଶୀ ଓ ପୁରୁରବାଙ୍କର ପ୍ରଣୟର ବର୍ଣ୍ଣନା ଅସମ୍ଭବ । କେତେଦିନ ପରେ ଉର୍ବଶୀଙ୍କଠାରେ ଗର୍ଭୋଦୟର ଲକ୍ଷଣ ଦେଖାଦେଲା । ମାତ୍ର ସ୍ୱର୍ଗର ନାରୀଙ୍କର ଗର୍ଭୋଦୟର ଲକ୍ଷଣ ଭିନ୍ନ ଥିବାରୁ ପୁରୁରବା ତାହା ଜାଣିପାରିଲେ ନାହିଁ । ଏହିପରି ଅବସ୍ଥାରେ ଉର୍ବଶୀ ପୁରୁରବାଙ୍କର ଅନୁମତି ନେଇ କିଛିଦିନ ପାଇଁ ନୈମିଷାରଣ୍ୟକୁ ଯାଇ ଫେରିଆସିଲେ । ଉର୍ବଶୀଙ୍କ ଶରୀରର ପୂର୍ବାବସ୍ଥା ଦେଖି ରାଜା ତାହାକୁ ଶାରୀରିକ ବିକୃତି ବୋଲି ଧରିନେଲେ ।

ଗ୍ରୀଷ୍ମକାଳ ଶେଷରେ ପୁରୁରବା ନୈମିଷାରଣ୍ୟ ନିକଟସ୍ଥ ଗନ୍ଧମାଦନ କାନ୍ତାରକୁ ଶିକାର ଉଦ୍ଦେଶ୍ୟରେ ଉର୍ବଶୀଙ୍କ ସହିତ ଗଲେ । ସେଠାରେ ବର୍ଷାକାଳ ଆସିଗଲା । ଦିନେ ରାଜା ଗିରିନଦୀତଟରେ କେତେଗୁଡ଼ିଏ ଯକ୍ଷଯୁବତୀଙ୍କ କ୍ରୀଡ଼ାକୁ ସତୃଷ୍ଣ ନୟନରେ ନିରୀକ୍ଷଣ କରିବାର ଦେଖି ଉର୍ବଶୀ ଅତ୍ୟନ୍ତ କୁପିତା ହୋଇ ତାଙ୍କ ନିକଟରୁ ଚାଲିଗଲେ । ଉର୍ବଶୀଙ୍କୁ ଖୋଜି ଖୋଜି ପୁରୁରବା ଅତ୍ୟନ୍ତ ବ୍ୟଥିତ ହୋଇପଡ଼ିଲେ । ସେ ଅରଣ୍ୟର ପଶୁ ପକ୍ଷୀମାନଙ୍କୁ ଉର୍ବଶୀଙ୍କ ବିଷୟରେ ପ୍ରଶ୍ନ କଲେ । ମାତ୍ର କାହାଠାରୁ ସମ୍ବାଦ ପାଇ ପାରିଲେ ନାହିଁ । ଗୋଟିଏ ପର୍ବତ କନ୍ଦରରେ ଖଣ୍ଡିଏ ଲୋହିତବର୍ଣ୍ଣର ମଣି ରାଜା ଦେଖିଲେ ଓ ଜଣେ ଯୋଗୀଙ୍କ ଉପଦେଶ ଅନୁସାରେ ତାହାକୁ ଗ୍ରହଣ କଲେ । ମଣିଟିକୁ ନେଇ ରାଜା ଅରଣ୍ୟର ବୃକ୍ଷଲତାମାନଙ୍କୁ ଦେଖିବା ସମୟରେ ଗୋଟିଏ

ଲତା ନିକଟରେ ନିରାନ୍ତ ଆସକ୍ତି ପ୍ରକାଶ କଲେ ଏବଂ ସେହି ଲତାକୁ ସ୍ପର୍ଶ କରିବା ମାତ୍ରେ ତାହା ଉର୍ବଶୀରେ ପରିଣତ ହେଲା । ଉର୍ବଶୀଙ୍କଠାରୁ ରାଜା ଜାଣିପାରିଲେ ଯେ ସେହି ବନ କାର୍ତ୍ତିକେୟଙ୍କର ଏବଂ ସେଠାକୁ କୌଣସି ନାରୀ ଗଲେ ଲତାରେ ପରିଣତ ହୋଇଯାଏ । ପୁରୁରବାଙ୍କ ଉପରେ ରାଗକରି ଆସି ଉର୍ବଶୀ ଲତାରେ ପରିଣତ ହେବାପରେ ପୁରୁରବାଙ୍କର ବୈକଲ୍ୟ ଦେଖି ମଧ୍ୟ କଷ୍ଟ ପ୍ରକାଶ କରି ପାରୁନଥିଲେ । ସେହି ମଣିକୁ ଧାରଣ କରିବାରୁ ପୁଣି ଦୁହିଁଙ୍କର ମିଳନ ହେଲା ।

ଉର୍ବଶୀଙ୍କ ସହିତ ରାଜା ବ୍ୟାସତୀର୍ଥକୁ ଅବଗାହନ କରିବା ନିମନ୍ତେ ଗଲେ । ସେଠାରେ ମଣିଟିକୁ ରଖି ତୀର୍ଥରେ ଅବଗାହନ କରିବା ସମୟରେ ଗୋଟିଏ ପକ୍ଷୀ ମଣିଟିକୁ ଥଣ୍ଟରେ ନେଇ ଉଡ଼ିଗଲା । ପକ୍ଷୀଟି କ୍ରମେ କ୍ରମେ ଉପରକୁ ଉଡ଼ିଯିବାର ଦେଖି ସମସ୍ତେ କାତର ହୋଇପଡ଼ିଲେ । ହଠାତ୍ ପକ୍ଷୀଟି ଶରାଘାତରେ ଭୂଲୁଣ୍ଠିତ ହେଲା । ପକ୍ଷୀଦେହରୁ ଶରଟି କାଢ଼ିଆଣି ପୁରୁରବା ଦେଖିଲେ ଯେ ତହିଁରେ ତାଙ୍କ ପୁତ୍ର ଆୟୁଷ ଲିଖିତ ହୋଇଅଛି । ରାଜା ବିସ୍ମିତ ହେଲେ, ତାପରେ ଜଣେ ବୃଦ୍ଧା ତପସ୍ୱିନୀ ଜଣେ ଧନୁଶରଧାରୀ ବାଳକକୁ ଆଣି ସେଠାରେ ପହଞ୍ଚିଲେ । ଉର୍ବଶୀ ପ୍ରକୃତ କଥା ଫିଟାଇ କହିଲେ । ଇନ୍ଦ୍ରଙ୍କ କଥା ଅନୁସାରେ ଯେଉଁଦିନ ପୁରୁରବା ତାଙ୍କର ପୁତ୍ରମୁଖ ଦର୍ଶନ କରିବେ ସେଦିନ ଉର୍ବଶୀଙ୍କଠାରୁ ତାଙ୍କର ବିଚ୍ଛେଦ ଘଟିବ । ଏହି ବିଚ୍ଛେଦର ସମୟକୁ ଗଡ଼ାଇ ଦେବାପାଇଁ ଉର୍ବଶୀ ନୈମିଷାରଣ୍ୟକୁ ଯାଇ ସେଠାରେ ପୁତ୍ର ଜନ୍ମକରି ମୁନିଙ୍କ ଆଶ୍ରମରେ ତାକୁ ଛାଡ଼ି ଆସିଥିଲେ । ଇନ୍ଦ୍ରଙ୍କ ଆଦେଶ ଅନୁସାରେ ଉର୍ବଶୀ ମର୍ତ୍ତ୍ୟଲୋକ ଛାଡ଼ି ସ୍ୱର୍ଗକୁ ଯିବାପାଇଁ ପୁରୁରବାଙ୍କଠାରୁ ଓ ପୁତ୍ରଠାରୁ ବିଦାୟ ନେଲେ । ପୁରୁରବା ପୁତ୍ରକୁ ଅଭିଷେକ କରି ବାନପ୍ରସ୍ଥ ଗ୍ରହଣ କଲେ ।

କବିବର ରାଧାନାଥ ଉର୍ବଶୀ ଓ ପୁରୁରବା ପ୍ରସଙ୍ଗକୁ କାବ୍ୟରୂପ ଦେବା ଇଚ୍ଛାରେ ଯେପରି ଭାବରେ ଗ୍ରହଣ କରିଅଛନ୍ତି ତାହା ତାଙ୍କର

ବର୍ଣ୍ଣନା ଭଙ୍ଗୀର ପରିଚୟ ଦେଇଥାଏ । ଏହି କାବ୍ୟର କଥାବସ୍ତୁ ଏକାନ୍ତ ଭାବରେ ସ୍ୱଦେଶୀ । କବି ପାଷାଣ କାବ୍ୟ ରଚନା କରିବା ପରେ ଆଉ ପାଶ୍ଚାତ୍ୟ ସାହିତ୍ୟର କଥାବସ୍ତୁକୁ ଗ୍ରହଣ କରି ଅଯଥାରେ ଦେଶବାସୀଙ୍କ ଦ୍ୱାରା ନିନ୍ଦିତ ହେବାକୁ ଉଚିତ ମନେ କରିନାହାନ୍ତି । ତେଣୁ ଏ ପ୍ରକାର କଥାବସ୍ତୁକୁ କାବ୍ୟରୂପ ଦେବାପାଇଁ କବି ଚେଷ୍ଟା କରିଥିବା ବିଶ୍ୱାସ କରାଯାଇପାରେ । ଉର୍ବଶୀ କାବ୍ୟକୁ ଆଲୋଚନା କରିବା ନିମନ୍ତେ ଉପାଦାନର ଅଭାବ ରହିଛି । କାବ୍ୟଟି ସମ୍ପୂର୍ଣ୍ଣ ହୋଇଥିଲେ ତାହା ବିଷୟରେ ଆଲୋଚନା ସମ୍ଭବ ହୋଇଥାଆନ୍ତା । କେବଳ କବିବର ରାଧାନାଥଙ୍କର ପ୍ରକୃତି ପ୍ରେମପ୍ରବଣତାର ପରିଚୟ ବ୍ୟତୀତ ଏହି କାବ୍ୟରୁ ତାଙ୍କର ଅନ୍ୟ କୌଣସି ବୈଶିଷ୍ଟ୍ୟ ପ୍ରକାଶ ପାଇନାହିଁ ।

## ତିନିବନ୍ଧୁ

୧୮୯୮ ସାଲ ଅପ୍ରେଲ ମାସରେ କବିବର ରାଧାନାଥଙ୍କର ତିନିବନ୍ଧୁ କବିତାଟି ପ୍ରକାଶ ପାଇଥିଲା । କବିବର ରାଧାନାଥଙ୍କର ରଚନା କହିଲେ ଯାହା ବୁଝାଯାଏ, ଏହି କବିତାଟି ତାହା ନୁହେଁ । କବିଙ୍କର ସାମୟିକ ମନୋଭାବର ଏହା ଏକ ଅଭିବ୍ୟକ୍ତି ହୋଇପାରେ । ଦରବାର କାବ୍ୟରେ କବି ଯେପରି ଭାବରେ ଉପଦେଶ ଦେଇଅଛନ୍ତି, ଏହି କବିତାରେ ସେହିପରି ଭାବରେ ଅଳ୍ପ ପରିସରରେ କଥାବସ୍ତୁ ବର୍ଣ୍ଣିତ ହୋଇଅଛି । ଦରବାର କାବ୍ୟର ଉପଦେଶ ଏବଂ ଏହି କବିତାର ଉପଦେଶ ମଧ୍ୟରେ ପାର୍ଥକ୍ୟ ନଥିଲେ ହେଁ ଦରବାର କାବ୍ୟର ଗୁରୁତ୍ୱ ଏଠାରେ ନାହିଁ । କବି ଧର୍ମର ମହତ୍ତ୍ୱ ପ୍ରତିପାଦନ କରିବାକୁ ଯାଇ ଧନ, ଜନ ଓ ଧର୍ମକୁ ମନୁଷ୍ୟର ତିନିଜଣ ବନ୍ଧୁ ଭାବରେ ଉପସ୍ଥାପିତ କରିଅଛନ୍ତି । ଧନ ଏବଂ ଜନର ବଳ ମନୁଷ୍ୟର

ପରକାଳରେ କେବେହେଲେ ସହାୟକ ନୁହେଁ । ଧର୍ମହିଁ ମନୁଷ୍ୟର ପରକାଳର ଏକମାତ୍ର ସହାୟକ । ଧର୍ମକୁ ଭଲଭାବରେ ଚିହ୍ନିବା ପାଇଁ କବି ମାନବ ସମାଜକୁ ଆହ୍ୱାନ କରିଅଛନ୍ତି । କବିଙ୍କ ଭାଷାରେ,

"ଆତ୍ମୀୟବନ୍ଧୁ ଘରେ
ରହିବେ, ପ୍ରେତଭୂମି ଯାଏ
ଦ୍ୱିତୀୟ ବନ୍ଧୁ ସେ
ଶବ ସଙ୍ଗେ ସଙ୍ଗେ ଯାଏ;

ପ୍ରେତଭୂମି ପରେ
ଚେତଣେ ଯେ ବିଷମ ଗାହା,
ପ୍ରେତର ତହୁଁ ସେ
ତୃତୀୟ ବନ୍ଧୁଟି ସାହା ।

'ଧନଦାସ', 'ଜନ—
ଦାସ' 'ଧର୍ମଦାସ' ଜ୍ଞାନ-
ଜନେ, ଏତନଙ୍କି
କର୍ମୁ ନେଇଥିବ ଜାଣି ।"

କବିବର ରାଧାନାଥଙ୍କ ଜୀବନରେ ଧର୍ମର ବୈଶିଷ୍ଟ୍ୟ ହୃଦୟଙ୍ଗମ କରିବା ବିଷୟ ବହୁସ୍ଥଳରେ ପ୍ରକାଶ ପାଇଅଛି । ମନେହୁଏ, କବି ସାଧାରଣ ପାଠକମାନଙ୍କୁ ଉପଦେଶ ଦେବା ନିମନ୍ତେ ଏପରି ଏକ କବିତା ରଚନା କରିଅଛନ୍ତି ।

୧୮୯୨ ସାଲରେ କବିବର ରାଧାନାଥଙ୍କର "ବାମଣ୍ଡା" ଓଡ଼ିଆ ଓ ନବସମ୍ବାଦରେ ପ୍ରକାଶ ପାଇଥିଲା । କବିବର ରାଧାନାଥ ଏଥିରେ ତାଙ୍କର ବାମଣ୍ଡା ଭ୍ରମଣ ବୃତ୍ତାନ୍ତ ବର୍ଣ୍ଣନା କରିଅଛନ୍ତି । ଏହି ଥରକୁ ମିଶାଇ କବି ତିନଥର ବାମଣ୍ଡା ଭ୍ରମଣରେ ଯାଇଥିଲେହେଁ

ଏଥରର ଭ୍ରମଣ ତାଙ୍କ ପ୍ରତି ବିଶେଷ ଉଲ୍ଲେଖଯୋଗ୍ୟ ଥିଲା । କାରଣ ଏଥର ସେ ବଲମଠାରେ ଥିବା ବାମଣ୍ଡାରାଜାଙ୍କର ନିର୍ମିତ ପ୍ରାସାଦ ଦେଖି ଅତ୍ୟନ୍ତ ପ୍ରୀତ ହୋଇଥିଲେ । ବାମଣ୍ଡାର ଆତିଥ୍ୟ ବିଷୟରେ କବି ଅତ୍ୟନ୍ତ ଉଚ୍ଚମତ ପୋଷଣ କରିଅଛନ୍ତି । କବିଙ୍କର ବର୍ଣ୍ଣନା ଅତ୍ୟନ୍ତ ପ୍ରାଞ୍ଜଳ ହୋଇଅଛି ।

୧୮୯୬ ସାଲରେ ମହାଯାତ୍ରା ପୁସ୍ତକାକାରରେ ପ୍ରକାଶ ପାଇଥିଲା । ୧୮୯୭-୯୮ ସାଲରେ କବିବର ରାଧାନାଥ ବ୍ୟାକରଣ ପ୍ରବେଶ, ବ୍ୟାକରଣ ପଦ୍ୟରତ୍ନ ଓ ପଣକିଆ ବୋଧିନୀ ରଚନା କରିଥିଲେ । ୧୮୯୯ ସାଲରେ କବିବର ରାଧାନାଥଙ୍କ ସହିତ ସରକାରର ଗୁପ୍ତପତ୍ର ଆଦାନ ପ୍ରଦାନ ଚାଲିଥିଲା ।

# ଦଶରଥ ବିୟୋଗ

୧୯୦୧ ସାଲ ଫେବ୍ରୁୟାରୀ ମାସରେ କବିବର ରାଧାନାଥଙ୍କର ଦଶରଥ ବିୟୋଗ ପ୍ରକାଶ ପାଇଥିଲା । କବି ଏହାକୁ ଖଡ଼ିଆଳର ତତ୍କାଳୀନ ଯୁବରାଜ ବୀରବିକ୍ରମ ଦେବଙ୍କ ନାମରେ ଉତ୍ସର୍ଗ କରିଥିଲେ ।

ରାମଚନ୍ଦ୍ରଙ୍କର ବନବାସ ଜନିତ ଖେଦ ଦଶରଥଙ୍କ ପକ୍ଷରେ ଅତ୍ୟନ୍ତ ଦୁଃସହ ହୋଇପଡ଼ିଛି । ଦଶରଥ କୌଶଲ୍ୟାଙ୍କ ନିକଟରେ ନିଜର ଦୋଷ ସ୍ୱୀକାର କରିଛନ୍ତି । କୈକେୟୀଙ୍କ ରୂପଜ ମୋହ ଦଶରଥଙ୍କୁ ଅନ୍ଧ କରିଦେଇଥିଲା । କୈକେୟୀଙ୍କ ରୂପଜ ମୋହ ବିଷୟରେ ଦଶରଥଙ୍କ ମୁଖରେ କବି ଯେଉଁ ଭାଷା ଦେଇଛନ୍ତି ତାହା କପରି ତାଙ୍କ ନିଜର ଆତ୍ମାର ଚିତ୍କାର ସେକଥା ଅନ୍ୟ ଏକ ଆଲୋଚନାରେ ପ୍ରସଙ୍ଗ କ୍ରମେ ଦେଖାଇଦିଆଯିବ । ଦଶରଥ ପୁଣି

ବର୍ଣ୍ଣନା କରିଛନ୍ତି ମୁନିକୁମାରଙ୍କର ହତ୍ୟା ବିଷୟ । ଶବ୍ଦଭେଦୀ ଶର ପ୍ରୟୋଗ କରି ସେ ଅନ୍ଧମୁନିଙ୍କର ପୁତ୍ରକୁ ହତ୍ୟା କରିବାର ପ୍ରାଞ୍ଜଳ ବର୍ଣ୍ଣନା କବି ଦେଇଛନ୍ତି । ସେହି ମୁନି ଦଶରଥଙ୍କୁ ଅଭିଶାପ ଦେଇଥିଲେ,

"× × 'ହେ ରାଜନ ଦେଲ୍ ହେଣୁ ମୋତେ
ଏ ମହାଦାରୁଣ ଶୋକ ଏ ବୃଦ୍ଧ ବୟସେ,
ନିଦାରୁଣ ପୁତ୍ର ଶୋକ ମର୍ମେ ଧାରି ହୋଇ
ତେଜିବ ଜୀବନ ତୁମ୍ଭେ ହିନେ ଏହିପରି ।"

ଏହି ଅଭିଶାପର ଫଳରେ ରାମଚନ୍ଦ୍ରଙ୍କ ବନବାସ କାଳରେହିଁ ଦଶରଥଙ୍କର ମୃତ୍ୟୁ ଘଟିବାର କଥା । ଦଶରଥଙ୍କର ଅନୁଶୋଚନା ବିଶେଷ ଭାବରେ ଏହି କବିତାରେ ଲକ୍ଷ୍ୟ କରିବାର କଥା । ଦଶରଥଙ୍କର ମୃତ୍ୟୁରେ କବିତାଟି ଶେଷ ହୋଇଛି । ଯେଉଁଠାରେ କବି ପ୍ରକୃତି ବର୍ଣ୍ଣନା ଲାଗି ସାମାନ୍ୟମାତ୍ର ଅବସର ପାଇଛନ୍ତି ସେଠାରେ ସେ ପ୍ରକୃତି ବର୍ଣ୍ଣନା କରିବାକୁ ଭୁଲି ନାହାନ୍ତି ।

## କାଳିଦାସ ସୂକ୍ତ୍ୟଃ ଓ ଲେଖାବଳୀ:—

୧୯୦୨ ସାଲରେ କବିବର ରାଧାନାଥଙ୍କର ବଙ୍ଗଳା ଲେଖାବଳୀ ଓ କାଳିଦାସ ସୂକ୍ତ୍ୟଃ ଦୁଇଖଣ୍ଡି ଗ୍ରନ୍ଥ ପ୍ରକାଶ ପାଇଥିଲା । ଲେଖାବଳୀ ଏହାପୂର୍ବରୁ Education Gazetteରେ ପ୍ରକାଶ ପାଇଥିଲା । ସେତେବେଳେ ଭୂଦେବ ମୁଖୋପାଧ୍ୟାୟ ଏହାର କବିତାଗୁଡ଼ିକ ପାଠ କରି ରାଧାନାଥଙ୍କୁ ଉଚ୍ଛ୍ୱସିତ ପ୍ରଶଂସା କରିଥିଲେ । ଲେଖାବଳୀ ନାମରେ ପ୍ରକାଶ ପାଇଥିବା ବିଭିନ୍ନ କବିତାଗୁଡ଼ିକୁ ବାମଣ୍ଡାର ରାଜକୁମାର ବଳଭଦ୍ରଦେବ ଏକତ୍ର କରି ପୁସ୍ତକାକାରରେ ପ୍ରକାଶ କରିଥିଲେ । ଲେଖାବଳୀ ଓ କାଳିଦାସ ସୂକ୍ତ୍ୟଃ ବିଷୟରେ ସେସମୟରେ ଓଡ଼ିଆ, ବଙ୍ଗଳା ଓ ଇଂରାଜୀ ସମ୍ବାଦପତ୍ରମାନଙ୍କରେ ବହୁ ଉଚ୍ଚମତ ପ୍ରକାଶ ପାଇଥିଲା ।

କାଳିଦାସ ସୂକ୍ତୟଃରେ କବି ମହାକବି କାଳିଦାସଙ୍କର ରଘୁବଂଶ, କୁମାର ସମ୍ଭବ, ମେଘଦୂତ, ମାଳବିକାଗ୍ନି ମିତ୍ରମ୍, ବିକ୍ରମୋର୍ବଶୀ ଓ ଅଭିଜ୍ଞାନ ଶକୁନ୍ତଳମ୍ କାବ୍ୟସମୂହର ସାରବାକ୍ୟଗୁଡ଼ିକ ସଂଗ୍ରହ କରିଅଛନ୍ତି । ଏହି ବାକ୍ୟଗୁଡ଼ିକର ଇଂରେଜୀ ଅନୁବାଦ ଓ ବଙ୍ଗଳା ଅନୁବାଦ ଦିଆଯାଇଅଛି । କେତେକ ସ୍ଥଳରେ ଉପଯୁକ୍ତ ବ୍ୟାଖ୍ୟା ମଧ୍ୟ ଦିଆଯାଇଅଛି । କବିବର ରାଧାନାଥ କପରି ଭାବରେ ମହାକବି କାଳିଦାସଙ୍କ ଭାଷାକୁ ବଙ୍ଗଳା ଭାଷାରେ ଅନୁବାଦ କରିଅଛନ୍ତି ତାହାର କେତେଗୋଟି ଉଦାହରଣ ଏଠାରେ ଦିଆଯାଇପାରେ ।

(୧) "ରାଜା କାଳସ୍ୟ କାରଣମ୍ ।"
"ରାଜାଇ କାଲେର କାରଣ ।"

(୨) "କାମଃ ସ୍ୱତାଂ ପଶ୍ୟନ୍ତି ।"
"କାମୀ ବ୍ୟକ୍ତି ସମସ୍ତଇ ସ୍ୱାଭିପ୍ରାୟାନୁକୂଲ ବଲିୟା ମନେ କରେ ।"

(୩ "ପୂର୍ବାଧୀରତଂ ଶ୍ରେୟୋ ଦୁଃଖଂ ହି ପରିବର୍ତ୍ତତେ ।"
"ପୂର୍ବ ପରିଚ୍ୟକ୍ତ ଶ୍ରେୟଃ ଦୁଃଖେର ପରିଣତ ହଇୟା ଥାକେ ।"

(୪) "ଶରୀରମାଦ୍ୟଂ ଖଳୁ ଧର୍ମସାଧନମ୍ ।"
"ଶରୀରଇ ଧର୍ମସାଧନେର ମୂଲ ।"

(୫) "ରିକ୍ତଃ ସର୍ବୋଭବତି ହି ଲଘୁ ପୂର୍ଣ୍ଣତା ଗୌରବାୟ ।"
"ଅନ୍ତଃସାର ବିହୀନ ଲୋକଇ ଲଘୁ ଓ ଗୌରବହୀନ ସାରବତ୍ତାଇ ଗୌରବେର ହେତୁ ।"

କାଳିଦାସ ସୂକ୍ତୟଃ ବିଷୟରେ ବାଲେଶ୍ୱର ସଂବାଦ ବାହିକା ତା୩.୯.୧୯୦୩ରେ, ବସୁମତୀ ତା୮.୮.୧୯୦୩ରେ, ଅମୃତ ବଜାର ପତ୍ରିକା ତା୨୫.୭.୧୯୦୩ରେ, ଓ ଆନନ୍ଦ ବଜାର ପତ୍ରିକା ୧୭ ଆଷାଢ ୧୩୧୦ ସାଲରେ ଆଲୋଚନା କରି କବିବର ରାଧାନାଥଙ୍କର ପ୍ରଶଂସା ଗାନ କରିଅଛନ୍ତି । ଏହି ପୁସ୍ତକକୁ ପ୍ରକାଶ କରିଥିଲେ ସୁଶୀଲ କୁମାର ଗୃହଠାକୁର୍ତ୍ତା ଓ ଏହାର ମୂଲ୍ୟ ଥିଲା ଆଠଅଣା ।

ଲେଖାବଳୀ ବିଷୟରେ ସେସମୟରେ ବଙ୍ଗଳା ପତ୍ରିକା ମେଦିନୀ ବାନ୍ଧବରେ ତା ୨୪.୩.୧୯୦୨ରେ ଏକ ପ୍ରକୃଷ୍ଟ ଆଲୋଚନା ପ୍ରକାଶ ପାଇଥିଲା । ଏଥିରେ କବିବର ରାଧାନାଥଙ୍କର କବିତ୍ୱର ଉଚ୍ଚ ପ୍ରଶଂସା କରାଯାଇଥିଲା । ବଙ୍ଗଳା ସାହିତ୍ୟରେ ଲେଖାବଳୀ ଉଚ୍ଚ ଆସନ ପାଇବାର ଯୋଗ୍ୟ ବୋଲି ଏହି ପତ୍ରିକାରେ ମତ ପ୍ରକାଶ କରାଯାଇଥିଲା ।

ଲେଖାବଳୀରେ ସନ୍ନିବେଶିତ କବିତାଗୁଡ଼ିକ ଆଦି ଓ କରୁଣରସ ପ୍ରଧାନ । କବିତାଗୁଡ଼ିକର ବିଷୟବସ୍ତୁର ଗୁରୁତ୍ୱ ଏବଂ ଭାବବୈଚିତ୍ର୍ୟ ନଥିଲେହେଁ କବିଙ୍କର ବର୍ଣ୍ଣନାଶୈଳୀର ଚମତ୍କାରିତା ଓ କଳ୍ପନାଶକ୍ତିର ବୈଶିଷ୍ଟ୍ୟ ପ୍ରକାଶ ପାଇଅଛି । ଏହି କବିତାଗୁଡ଼ିକ ରଚନା କରିବାରେ କବିଙ୍କ ଉପରେ ମାଇକେଲ୍ ମଧୁସୂଦନଙ୍କର ପ୍ରଭାବ ସ୍ପଷ୍ଟ ହେଲେହେଁ ଭାଷା ଉପରେ କବିଙ୍କର ବିଶେଷ ଦଖଲ ଥିବାରୁ ତାହା ଅତ୍ୟନ୍ତ ହୃଦ୍ୟ ହୋଇଅଛି । କବିଙ୍କର ପ୍ରକୃତି ପ୍ରେମପ୍ରବଣତା ଅଧିକାଂଶ କବିତାରେ ପ୍ରକାଶ ପାଇଅଛି । ଗୋଟିଏ କବିତାରୁ ତାଙ୍କର ପ୍ରକୃତି ବର୍ଣ୍ଣନାର କିୟଦଂଶ ଏଠାରେ ଉଦ୍ଧାର କରାଯାଇ ପାରେ ।

"ଏକଦା ତୋମାର ସଙ୍ଗେ ଶାରଦ ପ୍ରଦୋଷେ,<br>
କାନନେ ଆସିଚେଛିନୁ ଗୋଧନ ଲଇୟା,<br>
ସଦ୍ୟ ବରଷାର ଜଲେ ସିକ୍ତ ବନସ୍ଥଲୀ<br>
ଛିଲ ଶ୍ୟାମଲ ରଙ୍ଗେ, ତରୁରାଜ ଶିରେ<br>
ଶୋଭିଲ ସବୁଜ-ବନ୍ଧୁ-ହେମୋଜ୍ଜ୍ୱଲ ଛଟା<br>
ଇନ୍ଦ୍ରଧନୁ ଅନୁମତ ପାଦପ ପଲ୍ଲବେ<br>
ଛିଲ ଆଶାର ଛନ୍ଦ, ଛିଲ ହୃଦୁରେ<br>
ବାରୁଣୀ ଗଗନ-ମୂଲେ ନୀଲଗିରିମାଲା<br>
ସ୍ତରେ ସ୍ତରେ ତରଙ୍ଗିତ ଉନ୍ନତ ଆନତ<br>
କୁଞ୍ଚିତ ସୁନୀଲ କେଶ ଧରଣୀର ଯେନ;<br>
ନବୀନ ପଲ୍ଲବେ ନବ କଳିକାର ମତ,<br>
କୈଶୋର ଫୁଟିୟାଛିଲ ଦାସୀର ଶୈଶବେ<br>
ସେ କାଲେ ।"

ଲେଖାବଳୀରେ କବିବର ରାଧାନାଥଙ୍କର କବି ପ୍ରତିଭାର ପରିଚୟ ବଙ୍ଗଳାର ସାହିତ୍ୟିକଗଣ ପାଇ ପାରିଥିଲେ । କବିବର ରାଧାନାଥଙ୍କର ବଙ୍ଗଳା ରଚନା ଭାବରେ ଲେଖାବଳୀର କବିତା-ଗୁଡ଼ିକ ଉଲ୍ଲେଖଯୋଗ୍ୟ ସୃଷ୍ଟି ଭାବରେ ଗୃହୀତ ହେବା କମ୍ ଗୌରବର କଥା ନୁହେଁ । କବିବର ରାଧାନାଥଙ୍କର କବି ପ୍ରତିଭାର ମୂଲ୍ୟ ଏହି ଦୃଷ୍ଟିରୁ କଳନା କରିବାର କଥା ।

୧୯୦୨ ସାଲରେ କବିବର ରାଧାନାଥଙ୍କର ଚିଲିକା ଓ ମହାଯାତ୍ରାର କେତେକ ଅଂଶ ବଙ୍ଗଳାରେ ଅନୂଦିତ ହୋଇ ପୂର୍ଣ୍ଣିମା ମାସିକ ପତ୍ରିକାରେ ପ୍ରକାଶିତ ହୋଇଥିଲା । ମନେହୁଏ, କବିବର ରାଧାନାଥଙ୍କର ଲେଖାବଳୀର କବିତାଗୁଡ଼ିକ ବଙ୍ଗଳାରେ ପ୍ରଚାରିତ ହେବାପରେ ତାଙ୍କ ରଚନାର ବଙ୍ଗଳା ଅନୁବାଦ କରିବା ନିମନ୍ତେ ପ୍ରୟାସ କରାଯାଇଥିଲା ।

୧୯୦୩ ସାଲରେ ଓଡ଼ିଆ ସାହିତ୍ୟ ରାଜ୍ୟରେ ରାଧାନାଥ ଗ୍ରନ୍ଥାବଳୀର ଆତ୍ମପ୍ରକାଶ ଏକ ବିଶିଷ୍ଟ ଘଟଣା ।

୧୯୦୩ ସାଲ ଉତ୍କଳ ସାହିତ୍ୟ ୭ମ ଭାଗ, ୭ମ ସଂଖ୍ୟାରେ କବିବର ରାଧାନାଥଙ୍କର ଧବଳେଶ୍ୱର ସ୍ତୋତ୍ରମ୍ ପ୍ରକାଶ ପାଇଥିଲା । ଏହା ଏକ ସଂସ୍କୃତ ରଚନା । ଏଥିରେ ଧବଳେଶ୍ୱରଙ୍କର ସ୍ତୁତି ଗାନ କରାଯାଇଅଛି ।

୧୯୦୩ସାଲ ପୌଷ ୭ମ ଭାଗ ଅଷ୍ଟମ ସଂଖ୍ୟା ଉତ୍କଳ ସାହିତ୍ୟରେ କବିବର ରାଧାନାଥଙ୍କର ସାର୍ ରାଜା ବାସୁଦେବ ସୁଢ଼ଳଦେବ K.C.I.E ପ୍ରକାଶ ପାଇଥିଲା । ସୁଢ଼ଳଦେବଙ୍କର ମୃତ୍ୟୁରେ ବ୍ୟଥିତ ରାଧାନାଥ ଏଥିରେ ତାଙ୍କର ଅମର ଗୁଣାବଳୀର ପ୍ରଶଂସା କରିଅଛନ୍ତି ।

୧୯୦୪ ସାଲ ମଇ ମାସରେ ଉତ୍କଳ ସାହିତ୍ୟ ଜ୍ୟେଷ୍ଠ, ୮ମ ଭାଗ ୧ମ ସଂଖ୍ୟାରେ କବିବର ରାଧାନାଥ ରାୟଙ୍କର ବାଣହରଣ ,, ପ୍ରକାଶ ପାଇଥିଲା । ବାଣହରଣର କଥାବସ୍ତୁ ବିଷୟରେ ସୂଚନା ଦେବାକୁ ଯାଇ

କବିବର ରାଧାନାଥ ପାଦଟୀକାରେ ଲେଖିଛନ୍ତି, "ଆମ୍ଭମାନଙ୍କ ପୂର୍ବ ପୁରୁଷ ମୃତ ଉଦୟ ନାରାୟଣ ରାୟ—ଲିଖିତ ବଙ୍ଗଳା କାଶୀରାମ ଦାସୀୟ ମହାଭାରତର ଖଣ୍ଡିଏ ଅତି ପ୍ରାଚୀନ ପାଣ୍ଡୁଲେଖ୍ୟର ଆଖ୍ୟାନ ଅବଲମ୍ବନରେ ଏହି ବାଣହରଣ ପ୍ରସଙ୍ଗ ମତ୍କର୍ତ୍ତୃକ ସଙ୍କଳିତ ହୋଇଥିଲା।" ଏହା ଦୁଇଗୋଟି ସର୍ଗରେ ରଚିତ।

୧୯୦୪ ସାଲ ଜୁନ୍ ମାସରେ ଉତ୍କଳ ସାହିତ୍ୟ ଆଷାଢ଼ ୮ମ ଭାଗ ୩ୟ ସଂଖ୍ୟାରେ କବିବର ରାଧାନାଥଙ୍କର 'ଦୁର୍ଯ୍ୟୋଧନଙ୍କର ରକ୍ତନଦୀ ସନ୍ତରଣ' କବିତା ପ୍ରକାଶ ପାଇଥିଲା। ଏହି କବିତାର ବିଷୟବସ୍ତୁ ବିଷୟରେ ସୂଚନା ଦେବାକୁ ଯାଇ କବିବର ରାଧାନାଥ ପାଦଟୀକାରେ ଲେଖିଛନ୍ତି, "ମହାକବି ଶୂଦ୍ରମୁନି ଶାରଳାଦାସଙ୍କ ମହାଭାରତର ଶଲ୍ୟ ପର୍ବରେ ଦୁର୍ଯ୍ୟୋଧନଙ୍କର ବ୍ୟାସ ସରୋବରରେ ପ୍ରବେଶ ସମୟରେ କୌରବ ପକ୍ଷୀୟ ଭିନ୍ନ ଭିନ୍ନ ବୀରମାନଙ୍କର ଶବ ଉପରେ ଏବଂ ସର୍ବଶେଷରେ କୁମାର ଲକ୍ଷ୍ମଣଙ୍କ ଶବ ଉପରେ ରକ୍ତନଦୀ ପାରହେବାର ଦୃଶ୍ୟ ଅତି କରୁଣ। ସମଗ୍ର ଉତ୍କଳ ସାହିତ୍ୟରେ, କେବଳ ଉତ୍କଳ ସାହିତ୍ୟ କାହିଁକି, ଯେ କୌଣସି ସାହିତ୍ୟରେ ଏହା ଅତୁଳନୀୟ ବିବେଚିତ ହେବ। ଶାରଳା ଦାସଙ୍କର ଏହି ଆଖ୍ୟାନ ଅବଲମ୍ବନ କରି ଏହି ପ୍ରସଙ୍ଗ ଲିଖିତ।"

କବିବର ରାଧାନାଥଙ୍କର ଲେଖନୀରୁ ଏହି କବିତାର କରୁଣସ୍ୱର ଅତ୍ୟନ୍ତ ମର୍ମସ୍ପର୍ଶୀ ଭାବରେ ପ୍ରକାଶ ପାଇଅଛି। ଲକ୍ଷ୍ମଣ କୁମାରର ଶବ ଦେଖି ଦୁର୍ଯ୍ୟୋଧନ ଯେପରି ଭାବରେ କ୍ରନ୍ଦନ କରି ମନର ଭାବ ପ୍ରକାଶ କରିଅଛନ୍ତି ତାହା ଅନନ୍ୟସାଧାରଣ। ଶେଷରେ ଦୁର୍ଯ୍ୟୋଧନ ପଲାଶ କୁଞ୍ଜରେ ଲକ୍ଷ୍ମଣ କୁମାରଙ୍କ ଶବକୁ ମାଟିଖୋଳି ପୋତିଦେଇ ବ୍ୟାସ ସରୋବର ଅଭିମୁଖରେ ଅଗ୍ରସର ହୋଇଛନ୍ତି। କବିଙ୍କ ଭାଷାରେ,

"କେବେହେଁ ନହେଉ ତୋର ମୋହପରି ପିତା।
ତୋହପରି ପୁତ୍ର ହେଉ ଜନମେ ଜନମେ ;
ଏହାକହି ସେହି ଘୋର ରଜନୀ ଅନ୍ଧାରେ
ନିବିଡ଼ ପଲାଶକୁଞ୍ଜେ ଏକ ଗାତ ଖୋଳି

କୁରୁପତି ଲକ୍ଷ୍ମଣଙ୍କୁ ଶୁଆଇ ସେ ଖାଟେ,
ସାଗ୍ର ନେଜେ ତା ଉପରେ ପକାଇଲେ ମାଟି ;
ଖରଗତି ଚନ୍ଦନରେ ପକାଇ ଗୁପତେ
ସେ ପଳାଶ କୁଞ୍ଜେ କୁଞ୍ଜେ ମହାଷ୍ଟ ଭଗରେ
ଭଜଲେ ଆଶ୍ରମୁ ବ୍ୟାସ-ସରୋବରେ ଯାଇଁ ।"

ଅଧୁନିକ ଓଡ଼ିଆ ସାହିତ୍ୟରେ ଏ ପ୍ରକାର କରୁଣରସାତ୍ମକ ବର୍ଣ୍ଣନା ବିରଳ ବୋଲି କୁହାଯାଇ ପାରେ ।

୧୯୦୪ ସାଲ ଜୁଲାଇ ମାସରେ ଉତ୍କଳ ସାହିତ୍ୟ ଶ୍ରାବଣ ୮ମ ଭାଗ ୪ର୍ଥ ସଂଖ୍ୟାରେ କବିବର ରାଧାନାଥଙ୍କର ଶ୍ମଶାନଦୃଶ୍ୟ କବିତା ପ୍ରକାଶ ପାଇଥିଲା । ସଂସ୍କୃତ ଚଣ୍ଡକୌଶିକ ନାଟକର ଛାୟା ଅବଲମ୍ବନରେ ଏହି କବିତାଟି ରଚିତ ହୋଇଥିଲା ବୋଲି କବି ସୂଚିତ କରିଅଛନ୍ତି । ମହାରାଜ ହରିଶ୍ଚନ୍ଦ୍ର ଚଣ୍ଡାଳର ଭୃତ୍ୟ ଭାବରେ ଶ୍ମଶାନ ଜଗି ରହିଥିବା ସମୟରେ ଶ୍ମଶାନର ଦୃଶ୍ୟ ଅବଲୋକନ କରିବା ବିଷୟ ଏହି କବିତାରେ ବର୍ଣ୍ଣିତ । କବିଙ୍କ ଲେଖନୀରେ ଶ୍ମଶାନ ବିଷୟରେ ପ୍ରକାଶ ପାଇଛି,

"ଏହି ର ବିକଟାଳ କାଳ ଅସ୍ଥି-ମାଳାଧାରୀ,
ସାମ୍ୟ ଘୋଷା ପ୍ରଚୁରଇ ଏହି ପୀଠସ୍ଥଳୀ,
ସମାନ ସରବେ ଏଥି, କି ରାଜା କି ପ୍ରଜା,
କିବା ଅଟ୍ଟାଳିକାବାସୀ, କି କୁଟୀରବାସୀ
କି ରତ୍ନ ପର୍ଯ୍ୟଙ୍କଶାୟୀ, କିବା ଭୂମିଶାୟୀ,
କୌଷେୟ ବସନଧାରୀ, କିବା ଚୀରଧାରୀ,
କି ସୁନ୍ଦର କି କୁତ୍ସିତ, କି ଜ୍ଞାନୀ ଅଜ୍ଞାନ
ସମଦଶା ସଭିଙ୍କର, ସମ ପରିଣତି ।"

ଗୋଟିଏ ଶବକୁ ଦେଖି ହରିଶ୍ଚନ୍ଦ୍ରଙ୍କର ମନରେ ଯେଉଁ ବିଷାଦ-ବାଦ ସୃଷ୍ଟି ହୋଇଛି, ତାହା କବିଙ୍କ ଲେଖନୀରେ ଅତ୍ୟନ୍ତ ମର୍ମସ୍ପର୍ଶୀ ହୋଇଅଛି ।

"ଏହି ସେହି ସୂକ୍ଷ୍ମକଣ୍ଠୀ, ଏହି ସେହି ଉରଃ,
ତୋର ସୁବଶାଳ ସ୍ୱର୍ଣ୍ଣ କପାଟ ଫଗପ୍ରେ,
ଏହି ସେ ସୁନ୍ଦର ମୁଖ' ଚନ୍ଦ୍ର ଶତଦଳେ
ଘଟୁଥିଲା ପଟାନ୍ତର ଯାର ଗୁରୁପଣେ,
ଏହି ସେ ଅଧର, ଯାର ରମ୍ୟ ଅରୁଣିମା
ଗଞ୍ଜୁଥାଇ ପକ୍ୱବିମ୍ବେ ଫୁଲ୍ଲ ବନ୍ଧୁଜୀବେ,
ଲୀଳା ବିଳାସର ଥିଲେ ଉପାଦାନ ଯେତେ
ଏହିମାନେ ଭଜିଛନ୍ତି, ଆହା କି ବିକୃତି !
ରକ୍ତ-ମେଦ-ମାଂସ-ଅସ୍ଥି ଲୀଳାକାରେ ଏବେ
ଉପୁଜାନ୍ତି ଏ ସବୁ ବେ ହାସ ଖାରୁ ଜନେ,
ବୈରାଗ୍ୟ କରନ୍ତି ଦୃଢ଼ ଜ୍ଞାନୀଙ୍କର ମନଃ,
ଆହା, ଏହାଦେଖି ଲୋକେ ହୁଅନ୍ତି କେସନେ
ମତ୍ତ ବିଷୟୁରି ମଦେ ଏହି ଦେହ ବହି ?"

କବିବର ରାଧାନାଥଙ୍କର ପଶ୍ଚିମ ଜୀବନରେ ଏହି ପ୍ରକାର କବିତା ରଚନା କରିବାରେ ଯଥେଷ୍ଟ ତାତ୍ପର୍ଯ୍ୟ ରହିଛି ।

୧୯୦୬ ସାଲ ଜୁଲାଇ ମାସରେ ଉତ୍କଳ ସାହିତ୍ୟ ଶ୍ରାବଣ ୮ମ ଭାଗ ୪ର୍ଥ ସଂଖ୍ୟାରେ କବିବର ରାଧାନାଥଙ୍କର ଏକାଗ୍ରତା କବିତା ପ୍ରକାଶ ପାଇଥିଲା । ମହାଭାରତର ଦ୍ରୌପଦୀଙ୍କ ବସ୍ତ୍ରହରଣ ପ୍ରସଙ୍ଗ ଏହି କବିତାରେ ବର୍ଣ୍ଣିତ ହୋଇଅଛି । ଶ୍ରୀକୃଷ୍ଣ ଦ୍ୱାରକାରେ ରୁକ୍ମିଣୀ ଆଦି ମହିଷୀଙ୍କ ସହିତ ପଶାଖେଳିବା ସମୟରେ ଶ୍ରୀକୃଷ୍ଣଙ୍କର ଅନ୍ୟମନସ୍କତା ଦେଖାଗଲା । ତାଙ୍କୁ ପଚାରିବାରୁ ଜଣାଗଲା ଯେ କୁରୁସଭାରେ ଦ୍ରୌପଦୀଙ୍କୁ ବିବସ୍ତ୍ରା କରିବାର ଚେଷ୍ଟା ଚାଲିଅଛି । ମହିଷୀମାନେ ଶ୍ରୀକୃଷ୍ଣଙ୍କୁ ଅନୁରୋଧ କଲେ ଦ୍ରୌପଦୀଙ୍କର ଲଜ୍ଜା ନିବାରଣ କରିବାକୁ । ମାତ୍ର ଶ୍ରୀକୃଷ୍ଣ ଯେପର୍ଯ୍ୟନ୍ତ ଦ୍ରୌପଦୀଙ୍କ ଆର୍ତ୍ତପ୍ରାର୍ଥନା ଶୁଣିନାହାନ୍ତି ସେପର୍ଯ୍ୟନ୍ତ ଦ୍ରୌପଦୀ ବସ୍ତ୍ରରୁ ହାତଛାଡ଼ି ସମ୍ପୂର୍ଣ୍ଣ ଭାବରେ ଶ୍ରୀକୃଷ୍ଣଙ୍କ ଉପରେ ନିର୍ଭର କରିନାହାନ୍ତି । ପରିଶେଷରେ

ଯେତେବେଳେ ଦ୍ରୌପଦୀ ବସ୍ତ୍ରରୁ ହାତ ଛାଡ଼ି, ଦୁଇବାହୁ ଉପରକୁ ଟେକି ଶ୍ରୀକୃଷ୍ଣଙ୍କୁ 'ରକ୍ଷାକର' ବୋଲି ଡ଼ାକିଲେ ସେତେବେଳେ ଶ୍ରୀକୃଷ୍ଣଙ୍କର ଆସନ ଟଳିଗଲା । ସେ ହସ୍ତିନାପୁରକୁ ଯାଇ ଦ୍ରୌପଦୀଙ୍କର ଲଜ୍ଜ୍ୟା ନିବାରଣ କଲେ ।

କବି ଏହି କବିତାରେ ଦ୍ରୌପଦୀଙ୍କର ଏକାଗ୍ରତା ସୂଚିତ କରିଅଛନ୍ତି । ଏକାଗ୍ରତା ନ ଆସିଲେ ଭଗବାନଙ୍କ କାନରେ ପ୍ରାଣୀର ଡ଼ାକ ପଡ଼େ ନାହିଁ । କବିତାଟି ନିତାନ୍ତ ଶିକ୍ଷଣୀୟ ହୋଇଅଛି ।

୧୯୦୬ ସାଲ ନଭେମ୍ବର ମାସରେ ଉତ୍କଳ ସାହିତ୍ୟ ମାର୍ଗଶୀର ୧୦ମ ଭାଗ, ୮ମ ସଂଖ୍ୟାରେ କବିବର ରାଧାନାଥଙ୍କର ସାବିତ୍ରୀ ଚରିତ ପ୍ରକାଶ ପାଇଥିଲା । ସାବିତ୍ରୀ ସତ୍ୟବାନ ପ୍ରସଙ୍ଗକୁ ନେଇ ଏହା ରଚିତ । ବିଷୟବସ୍ତୁ ବା ଉପସ୍ଥାପନା ରୀତି ଦୃଷ୍ଟିରୁ ଏହାର କୌଣସି ନୂତନତ୍ୱ ନାହିଁ ବୋଲି କୁହାଯାଇପାରେ ।

ମହେନ୍ଦ୍ର ଗିରି କବିଙ୍କର ଏକ ଅସଂପୂର୍ଣ୍ଣ କାବ୍ୟ । କବି ନିଜର କଳ୍ପନା ନେତ୍ରରେ ମହେନ୍ଦ୍ର ଗିରିକୁ ଦେଖିଛନ୍ତି ଓ ତଦନୁସାରେ କାବ୍ୟ ରଚନା କରିଅଛନ୍ତି । ମହେନ୍ଦ୍ର ଗିରିକୁ କେନ୍ଦ୍ରକରି ପ୍ରଚଳିତ ଥିବା କେତେକ ଜନଶ୍ରୁତିକୁ କବି କାବ୍ୟରେ ବର୍ଣ୍ଣନା କରିଅଛନ୍ତି । କବିଙ୍କର ପ୍ରକୃତିବର୍ଣ୍ଣନା ଏହି କାବ୍ୟରେ କେତେକାଂଶରେ ଚିଲିକା କାବ୍ୟର ଅନୁରୂପ ହୋଇଥିବାର ଦେଖାଯାଏ ।

ସଖିପ୍ରତି ସଖିହୋଇଥିବା ପତ୍ରର ଉକ୍ତ କବିଙ୍କର ଏକ ସଂମ୍ପୃକ୍ତ ଭାବନାକୈନ୍ଦ୍ରିକ କବିତା । କବି ଏହି କବିତାରେ ଯେପରି ଭାବରେ ବର୍ଣ୍ଣନା କରିଅଛନ୍ତି, ତହିଁରେ ତାଙ୍କର ବ୍ୟକ୍ତିଗତ ଜୀବନର ଅନୁଭୂତି ଜଡ଼ିତ ବୋଲି କୁହାଯାଇ ପାରେ । କବିତାଟିର ବର୍ଣ୍ଣନାଶୈଳୀ ବା ଭାବରେ କୌଣସି ନୂତନତ୍ୱ ଥିଲାପରି ମନେହୁଏ ନାହିଁ ।

କବିବର ରାଧାନାଥଙ୍କର ଟିପାଖାତାରେ ଥିବା କେତେକ କବିତା ତାଙ୍କର ଦେହାନ୍ତ ପରେ ଉତ୍କଳ ସାହିତ୍ୟରେ ପ୍ରକାଶ ପାଇଥିଲା ।

୧୯୧୧ ସାଲ ଫେବୃୟାରି ମାସରେ ଉତ୍କଳ ସାହିତ୍ୟ ୧୪ଶ ଭାଗ ୧୧ଶ ସଂଖ୍ୟାରେ 'ବନ୍ଦନା', 'ସତ୍ୟବାଣୀ, 'ସାହିତ୍ୟ ସମ୍ବନ୍ଧରେ ଏଣ୍ଟୁ ଟେଣ୍ଟୁ' ଓ 'ଖଣ୍ଡିଏ ପତ୍ର' ପ୍ରକାଶ ପାଇଥିଲା । ୧୯୧୧ ସାଲ ମାର୍ଚ୍ଚ ମାସରେ ଉତ୍କଳ ସାହିତ୍ୟ ୧୪ଶ ଭାଗ ୧୨ଶ ସଂଖ୍ୟାରେ, କେତୋଟି ଉପଦେଶ ବାକ୍ୟ 'ନିବେଦନ' ଓ 'ପ୍ରତାପରୁଦ୍ର' ପ୍ରକାଶ ପାଇଥିଲା । ୧୯୧୧ ସାଲ ଜୁଲାଇ ମାସରେ ଉତ୍କଳ ସାହିତ୍ୟ ୧୫ଶ ଭାଗ ୪ର୍ଥ ସଂଖ୍ୟାରେ 'ପାଦଂଶ କାବ୍ୟର ଉପସଂହାର' ପ୍ରକାଶ ପାଇଥିଲା । କବିବର ରାଧାନାଥଙ୍କର ଦେହାନ୍ତ ପରେ ଯେଉଁ କବିତା ବା ଗଦ୍ୟରଚନା ପ୍ରକାଶ ପାଇଥିଲା ସେଗୁଡ଼ିକ କବିବର ରାଧାନାଥଙ୍କର କବିପ୍ରତିଭାର ଯଥାର୍ଥ ପରିଚୟ ଦେବାକୁ ସମର୍ଥ ନୁହେଁ ବୋଲି କୁହାଯାଇପାରେ ।

ଏହି କେତେଗୋଟି କବିତା ଏବଂ ଗଦ୍ୟରଚନା ବ୍ୟତୀତ ଆଉ କେତେଗୁଡ଼ିଏ କବିତା କବିବର ରାଧାନାଥଙ୍କର ଟିପାଖାତାରୁ ଉଦ୍ଧାର କରି ତାଙ୍କ ଗ୍ରନ୍ଥାବଳୀରେ ଗର୍ଭିତ କରାଯାଇଅଛି । ସେହି କବିତାଗୁଡ଼ିକ ହେଉଛି, ଶ୍ରୀକାଳିକା ସ୍ତୁତି, ପଞ୍ଚାଶତମ ଜୁବୁଲି ସଙ୍ଗୀତ, ଷଷ୍ଟିତମ ଜୁବୁଲି ସଙ୍ଗୀତ, ଯୁଧିଷ୍ଠିରଙ୍କ ପ୍ରତି ବ୍ୟାସ, ହଂସଦୂତ, ଫୁଲବଣୀ ପ୍ରଭୃତି । ରାଧାନାଥ ଗ୍ରନ୍ଥାବଳୀର ଦ୍ୱିତୀୟ ସଂସ୍କରଣ ପ୍ରକାଶ ପାଇଥିଲା ୧୯୧୮ ସାଲରେ । ତାହାର ମୁଖବନ୍ଧରେ କୁହାଯାଇଅଛି ଯେ, କବିବର ରାଧାନାଥ ସାମୟିକ ଭାବରେ ରଚନା କରିଥିବା ଆହୁରି ଅନେକ କବିତା ନଷ୍ଟହୋଇ ଯାଇଥିବାରୁ ସେଗୁଡ଼ିକ ଗ୍ରନ୍ଥାବଳୀର କଳେବର ମଣ୍ଡନ କରିପାରିଲା ନାହିଁ ।

କବିବର ରାଧାନାଥଙ୍କ ରଚିତ ଭାରତଗୀତିକା ରାଧାନାଥ ଗ୍ରନ୍ଥାବଳୀର ପ୍ରଥମପୃଷ୍ଠା ମଣ୍ଡନ କରିଅଛି । ଏହା ୧୯୦୩ ସାଲ ଡିସେମ୍ବର ମାସ ୩୦ ତାରିଖରେ ଉତ୍କଳ ସମ୍ମିଳନୀ ମଣ୍ଡପରେ ଗୀତ ହୋଇଥିଲା ।

ଉତ୍କଳ ସାହିତ୍ୟ ସମାଜର ପ୍ରଥମ ବାର୍ଷିକ ଅଧିବେଶନରେ ରାଧାନାଥ ଯେଉଁ ଲିଖିତ ଭାଷଣ ପାଠ କରିଥିଲେ ତାହା ୧୯୦୩ ସାଲ ଡିସେମ୍ବର ମାସ ୨୯ ତାରିଖରେ 'ଉତ୍କଳ ସାହିତ୍ୟର ଉନ୍ନତି' ନାମରେ ପ୍ରକାଶ ପାଇଥିଲା

'ଶିବାଜୀଙ୍କ ଉତ୍ସାହ ବାକ୍ୟ' କବିବର ରାଧାନାଥଙ୍କର କବିତାବଳୀର ପ୍ରଥମ ସଂସ୍କରଣରେ ପ୍ରକାଶ ପାଇଥିଲା । ଯେତେବେଳେ କବିବର ରାଧାନାଥଙ୍କ ବିରୁଦ୍ଧରେ ଇଂରେଜ ସରକାରଙ୍କୁ ତାଙ୍କର ଜଣେ ଅଧସ୍ତନ କର୍ମଚାରୀ ଜଣାଇଦେଲେ ଓ ସେହି ବିଷୟରେ ସରକାର ଏବଂ କବିଙ୍କ ମଧ୍ୟରେ ଗୋପନ ପତ୍ର ବିନିମୟ ଚାଲିଲା, ସେତେବେଳେ କବିବର ରାଧାନାଥ ସ୍ୱଇଚ୍ଛାରେ କବିତାବଳୀରୁ ଏହି କବିତାଟି ଉଠାଇଦେଇ ପୁସ୍ତକର ଦ୍ୱିତୀୟ ସଂସ୍କରଣ ପ୍ରକାଶ କରିଥିଲେ । ପରବର୍ତ୍ତୀକାଳରେ ଏହି କବିତାଟି ରାଧାନାଥ ଗ୍ରନ୍ଥାବଳୀରେ ସ୍ଥାନ ପାଇଅଛି ।

ଏହା ଏକ ଉଦ୍‌ବୋଧନମୂଳକ କବିତା ଭାବରେ ଗୃହୀତ ହୋଇଥାଏ । ଏହି କବିତାରେ କବିବର ରାଧାନାଥଙ୍କର ଦେଶପ୍ରେମର ସାର୍ଥକ ପରିଚୟ ମିଳିଅଛି । ମୋଗଲ ସୈନ୍ୟମାନଙ୍କ ବିରୁଦ୍ଧରେ ଯୁଦ୍ଧକରିବା ନିମନ୍ତେ ଶିବାଜୀ ଭାରତୀୟ ସୈନ୍ୟମାନଙ୍କୁ ଉଦ୍‌ବୋଧନ ବାଣୀ ଶୁଣାଇଅଛନ୍ତି । ଏହି ବାଣୀରେ କବି ଭାରତ ଇତିହାସର କେତେକ ଗୌରବମୟ ଘଟଣାର ଉଦାହରଣ ଦେଇଅଛନ୍ତି ।

କବିବର ରାଧାନାଥଙ୍କର କବିପ୍ରତିଭାର ଆଲୋଚନା କରିବା ସମୟରେ ତାଙ୍କର ସ୍ରଷ୍ଟାରୂପର ବୈଶିଷ୍ଟ୍ୟ ସର୍ବାଦୌ ଅନୁଭୂତ ହୋଇଥାଏ । କବିଙ୍କର ପାଣ୍ଡିତ୍ୟ ତଥା ବହୁଶାସ୍ତ୍ରଦର୍ଶିତା ତାଙ୍କୁ ଓଡ଼ିଆ ସାହିତ୍ୟରେ ଯଶସ୍ୱୀ କରାଇଥିଲା କହିଲେ ଅନ୍ୟଥା ହେବ ନାହିଁ । କେଦାରଗୌରୀଠାରୁ ପାର୍ବତୀ ରଚନା ପର୍ଯ୍ୟନ୍ତ କବି ପ୍ରାଚ୍ୟପାଶ୍ଚାତ୍ୟ ଚିନ୍ତାଧାରାର ସମନ୍ୱୟ ସମ୍ପାଦନ କରିବାରେ ଯେଉଁ ପରୀକ୍ଷା କରିଥିଲେ ତାହା କବିଙ୍କୁ ଯଥାର୍ଥରେ ଅମରତ୍ୱ ପ୍ରଦାନ କରିଅଛି ।

ମହାଯାତ୍ରା ରଚନା କରିବା ସମୟକୁ କବିଙ୍କର ସୃଷ୍ଟିଶକ୍ତି ତୁଙ୍ଗ ସୋପାନରେ ଉପନୀତ ହୋଇଥିଲେହେଁ ମହାଯାତ୍ରା ରଚନା କରିବା ସମୟରେ ତାଙ୍କର ସୃଷ୍ଟିମାନସ କକ୍ଷଚ୍ୟୁତ ହୋଇଅଛି । ମହାଯାତ୍ରା ପରେ କବି ନିଜ ଜୀବନର ତିକ୍ତ ଅନୁଭୂତିକୁ ତାଙ୍କର କାବ୍ୟକବିତାରେ ପ୍ରକାଶ କରିଛନ୍ତି । ଏହି ସମୟରେ କବିଙ୍କର ପ୍ରତିଭା ବିଳୟ ପରିଲକ୍ଷିତ ହୋଇଅଛି ।

ଆଧୁନିକ ଓଡ଼ିଆ ସାହିତ୍ୟାକାଶରେ କବିବର ରାଧାନାଥ ଥିଲେ ଯଥାର୍ଥରେ ତେଜୋଦୀପ୍ତ ସୂର୍ଯ୍ୟ । ତାଙ୍କର ଉଜ୍ଜ୍ୱଳ କିରଣରେ ସେ ସମୟରେ ଅନ୍ୟ ଅନେକ ତାରା ମଳିନ ପଡ଼ିଗଲେ । ପୁଣି ସେହି ସୂର୍ଯ୍ୟରଶ୍ମି ଅପରାହ୍ନର ଆକାଶରେ କ୍ରମେ କ୍ରମେ ମଳିନତା ଭଜିଲା । ଅସ୍ତାଚଳରେ ପହଞ୍ଚିଲା ସୂର୍ଯ୍ୟ । ଅସ୍ତ ପୂର୍ବରୁ ପଶ୍ଚିମାକାଶକୁ ସୂର୍ଯ୍ୟ ରାଗରଞ୍ଜିତ କରିଦେଲା । ତାପରେ ଧରିତ୍ରୀ ଉପରକୁ ଓହ୍ଲାଇ ଆସିଲା ଛାୟା ଓ ଆଲୋକର ବିଚିତ୍ର ମିଶ୍ରିତ ରୂପ । ଏତିକିବେଳେ ଅସ୍ତାଚଳରେ ଥାଇ ଅସ୍ତ-ସୂର୍ଯ୍ୟ ଅବସନ୍ନ ହୋଇପଡ଼ିଥିଲା ।



# ଅସ୍ତ-ସୂର୍ଯ୍ୟର ଅବସାଦ

ଅସ୍ତାଚଳରେ ପହଞ୍ଚିଛି ସୂର୍ଯ୍ୟ ପୂର୍ବାକାଶରେ ଉଦିତ ହୋଇ ଦିନସାରା ଆକାଶ ପଥକୁ ଆଲୋକ ଓ ଉତ୍ତାପରେ ଭରିଦେଇଥିଲା ଯେଉଁ ସୂର୍ଯ୍ୟ, ସେହି ସୂର୍ଯ୍ୟ ବର୍ତ୍ତମାନ ଅସ୍ତାଚଳରେ—ଆଉ ବା କେତେ ସମୟ—ଢଳିପଡ଼ିବ ସେ ଆରପଟକୁ—ଢଳି ପଡ଼ିବା ପୂର୍ବରୁ ସେ ଯେମିତି ନିଜର ମନର କଥା କହିବାକୁ ଚେଷ୍ଟାକରୁଛି—ସେ ଯେମିତି ପ୍ରଚଣ୍ଡ ସେମିତି ଲଳିତ—ଯେଉଁମାନେ ତାର ପ୍ରଚଣ୍ଡ ରୂପ ଦେଖିଛନ୍ତି, ସେମାନେହିଁ ଦେଖନ୍ତୁ ତାର କୋମଳ ରୂପ—ଦିନବେଳେ ନିଜର ରୁଦ୍ର ପ୍ରଚଣ୍ଡ କିରଣରେ ଯେଉଁମାନଙ୍କୁ ଉତ୍ତପ୍ତ କରିଥିଲା, ସେମାନଙ୍କୁ ପୁଣି ସେ ବର୍ତ୍ତମାନ ଶୀତଳ କରିଦେଉଛି—ତଥାପି ସେ ଭାବୁଛି, ତାକୁ କେହି ଭୁଲ୍ ନବୁଝନ୍ତୁ—ସମୟ ଅନୁସାରେ ସେ ଯାହା କରିବାର କଥା କରିଯାଇଛି—ସେସମୟ ବର୍ତ୍ତମାନ ଉତ୍ତୀର୍ଣ୍ଣ ହେବାକୁ ବସିଛି—ତେଣୁ ଏତିକିବେଳେ ତାର ମନର କଥା ସ୍ୱେ ଫିଟାଇ କହିବାକୁ ତତ୍ପର ହୋଇପଡ଼ିଛି—ତାର ସେଇ ଭାଷାକୁ ଶୁଣିବ କିଏ ? ତାହା ଅତ୍ୟନ୍ତ କରୁଣ, ଅତ୍ୟନ୍ତ ମର୍ମଭୁଦ—ତଥାପି ସେ ଭାଷାକୁ ନବୁଝିଲେହେଁ ବହୁତ ଦର୍ଶକହିଁ ବାହାରି ଆସିବେ—ସେମାନେ ନଦୀକୂଳରେ ବା ଖୋଲା ପଡ଼ିଆରେ ଠିଆ ହୋଇ ଦେଖିବେ ଅସ୍ତସୂର୍ଯ୍ୟର ରୂପ—ସେହି ରୂପଟିକୁ ସେମାନେ ପାଇବେ ସୌନ୍ଦର୍ଯ୍ୟାନୁଭୂତି—ଯେଉଁମାନେ ଏହିପରି ଭାବରେ ସୌନ୍ଦର୍ଯ୍ୟାନୁଭୂତି ପାଇବାକୁ ଆଗ୍ରହୀ କେବଳ ସେମାନେହିଁ ଲକ୍ଷ୍ୟ କରିବେ ଅସ୍ତସୂର୍ଯ୍ୟର କ୍ଷୀଣ, ଅବସନ୍ନ, ବିଲୟମୁଖୀ ରୂପ । ତା ମନର ଅବସାଦକୁ ବୁଝିବାକୁ ଚେଷ୍ଟା କରିବେ କେତେଜଣ ?

ଠିକ୍ ସେହିପରି, ଆଧୁନିକ ଓଡ଼ିଆ ସାହିତ୍ୟାକାଶର ତେଜୋଦୀପ୍ତ ସୂର୍ଯ୍ୟ କବିବର ରାଧାନାଥଙ୍କର ପଶ୍ଚିମ ଜୀବନର ଅବସାଦ ପ୍ରତି ଲକ୍ଷ୍ୟ

ନରଖିଲେ, ହୃଦୟପୂର୍ବକ ଭାବରେ ତାହାଙ୍କୁ ବର୍ଣ୍ଣନା ନକଲେ ତାଙ୍କ ଜୀବନକୁ, ତାଙ୍କ ଜୀବପ୍ରାଣକୁ ଏବଂ ସେହି ପ୍ରାଣରେ ଥିବା ଏକ ଅବ୍ୟକ୍ତ ସ୍ପନ୍ଦନକୁ ଅନୁଭବ କରିହେବ ନାହିଁ । ଜୀବବର ସାଧାନାଥଙ୍କ ଜୀବନର ଏହି ଦୁର୍ଦ୍ଦିନ କେବେହେଲେ ଭୁଲିବାର ନୁହେଁ । ସେ ଦୁର୍ଦ୍ଦିନର ଇତିହାସ ସେ ନିଜେ ତାଙ୍କର ଅସଂଖ୍ୟ ପାଠକମାନଙ୍କ ସମ୍ମୁଖରେ ଉନ୍ମୋଚିତ କରିଯାଇଅଛନ୍ତି ।

✓"ମୁଁ ମହାପାପୀ; କୌଣସି ପ୍ରକାର ରାଜଦଣ୍ଡ୍ୟ ଦୋଷରେ ଦୋଷୀ ନହେଲେହେଁ ମୁଁ ମହାପାପୀ । ଜଗତ୍‌ନିୟମରେ ପରିଗୃହୀତ, ନିୟମରୂପୀ ଭଗବାନଙ୍କ ନିୟମ ଲଙ୍ଘନ କରି ମୁଁ ମୋହୋର ଆତ୍ମା, ମନ ଏବଂ ଦେହ କଳୁଷିତ କରିଥିଲି । ଯେମନ୍ତ ତୀବ୍ର ଯନ୍ତ୍ରଣାରେ ମୁଁ ନିରନ୍ତର ଦାରି ହେଉଅଛି, ତେଥିରୁ ବୋଧହୁଏ, ପ୍ରାଣ ଏ ଅପବିତ୍ର ଦେହକୋଷରେ ରହିବାକୁ ଅନିଚ୍ଛୁକ ।

ମୋହୋର ଜୀବନର ୫୬ ବର୍ଷ ପର୍ଯ୍ୟନ୍ତ ମୋହୋର କୌଣସି ପ୍ରକାର ଗୁରୁତର ସ୍ଖଳନ ଘଟିନଥିଲା । ୫୬ ବର୍ଷ ବୟସରେ ମୁଁ ବିଦେଶରେ କୌଣସି ବିଦୁଷୀ ମହିଳା ସହିତ ପରିଚିତ ହେଲି । ତାହାଙ୍କର ଅସାଧାରଣ ସାହିତ୍ୟିକ ଉତ୍କର୍ଷରେ ଏବଂ ରଚନାର ପାରିପାଟ୍ୟରେ ଆକୃଷ୍ଟ ହେଲି ଏବଂ ତାହାଙ୍କ ସହିତ ଘନିଷ୍ଠତା ହେଲି । ଏ ସମସ୍ତ ସଦ୍‌ଗୁଣ ସତ୍ତ୍ୱେ ତାହାଙ୍କ ଚରିତ୍ର ଅତ୍ୟନ୍ତ ବିକୃତ ଥିଲି, ଏହା ମୁଁ ସେତେବେଳେ ଜାଣି ନଥିଲି । ତାହାଙ୍କ ବିକୃତ ଚରିତ୍ର ପ୍ରଭାବରେ ମୋହୋର ଚିରସଂଯମ ବ୍ରତ ନଷ୍ଟ ହେଲା । ସମୟ ସମୟରେ ବିବେକ ଜାଗରିତ ହେଉଥିଲା ସତ୍ୟ, ମାତ୍ର ସେହି କୁହୁକମାନଙ୍କର କୁହୁକ ଏବଂ ମାୟାଜାଲ ପ୍ରଭାବରେ ବିବେକବାଣୀ ନିଷ୍ଫଳ ହେଉଥିଲା । ଏଣେ ପ୍ରଲୋଭନ ଏବଂ ବାଧ୍ୟବାଧକତା, ପୁଣି ତେଣେ ସମ୍ଭ୍ରମହାନି ଭୟ; ଏହିପରି ଉଭୟ ସଙ୍କଟରେ ପଡ଼ି ମୋହୋର ଆତ୍ମରକ୍ଷାର ଚେଷ୍ଟା ଅନେକ ସମୟରେ ବିଫଳ ହୋଇଥିଲା । ଏହାବୋଲି ମୁଁ ମୋହୋର ପାପକୁ ଲଘୁ କହୁନାହିଁ । ମୋହୋର

ପାପର ଇୟତ୍ତା ନାହିଁ । ପ୍ରଲୋଭନ ଯେତେ କଠିନ ହେଉ, ଜାଲ ଯେତେ ଶକ୍ତ ଏବଂ ଜଟିଳ ହେଉ, ଦୁର୍ବାସନା ମୋହୃଦୟରେ ଅନ୍ତର୍ନିହିତ ଥିଲା ବୋଲି ମୁଁ ସେଥିରେ ପଡ଼ି ଚରିତ୍ର ଏବଂ ମନୁଷ୍ୟତା ହରାଇଲି । ଏଥି ପାଇଁ ମୁଁ ସ୍ୱୟଂ ଦାୟୀ । ହୃଦୟର ଦୌର୍ବଲ୍ୟ ଏବଂ ପାପପ୍ରବୃତ୍ତି ମୋହୃଦୟର ଅଧଃପତନର ଏକମାତ୍ର କାରଣ ନ ହେଲେହେଁ ଅନ୍ୟତଃ ପ୍ରଧାନ କାରଣ ଅଟେ ।

ଉଲ୍ଲିଖିତ ମହିଳାଙ୍କର ଦୁଇଖଣ୍ଡ ପୁସ୍ତକର ଭୂମିକା ଅନୁରୋଧରେ ପଡ଼ି ଏବଂ ଅପରବ୍ୟକ୍ତିପ୍ରଦତ୍ତ ନୋଟ ଅବଲମ୍ବନ କରି ମୁଁ ଲେଖିଥିଲି । ମୋହୃଦୟର ଅଜ୍ଞତା ଆଉ ବିଶ୍ୱାସିତା ଏବଂ ଅନ୍ୟାନ୍ୟ କାରଣ ବଶତଃ ସେହି ଭୂମିକାରେ କୌଣସି କୌଣସି ସ୍ଥଳେ ଅଳୀକ କଥା ଲେଖିଅଛୁ ଏବଂ କୌଣସି କୌଣସି କଥା ଅତିରଞ୍ଜିତ କରି ଲେଖିଅଛୁ । ସେହି ପୁସ୍ତକଦ୍ୱୟର ଭାବି ସଂସ୍କରଣରୁ ସେହି ଭୂମିକା ପରିତ୍ୟାଗ କରିବା ସକାଶେ ପୁନଃ ପୁନଃ ଅନୁରୋଧ କରି କୃତକାର୍ଯ୍ୟ ହୋଇନାହିଁ ।

ମୋ ଦ୍ୱାରା ଖଣ୍ଡିଏ ଓଡ଼ିଆ ପୁସ୍ତକର ମୁଖବନ୍ଧରେ ଅନ୍ୟାନ୍ୟ କବିତା ସହିତ ସେହି ମହିଳାଙ୍କର ଗୋଟିଏ କବିତା ସନ୍ନିବିଷ୍ଟ ହୋଇଅଛି । ସେହି କବିତା ସେ ଯେଉଁ ସମୟରେ ଲେଖିଥିଲେ, ସେସମୟରେ ମୋହୃଦୟ ସମ୍ବନ୍ଧରେ ତାହାଙ୍କ ମନରେ କୌଣସି ପ୍ରକାର କୁଭାବ ନଥିଲା; ମାତ୍ର ଆମ୍ଭମାନଙ୍କର ପରସ୍ପର ସମ୍ବନ୍ଧ ଯେଉଁ ସମୟରେ ଦୋଷସ୍ପୃଷ୍ଟ ହୋଇଥିଲା, ସେହି ସମୟରେ ତାହା ସେହି ପୁସ୍ତକରେ ସନ୍ନିବିଷ୍ଟ ହୋଇଥିଲା; ସୁତରାଂ ତାହାଦ୍ୱାରା ମଧ୍ୟ ସେହି ପୁସ୍ତକ କଳୁଷିତ ହୋଇଅଛି । ତେଣୁ ହରାଇ ମୁଁ ମୋହୃଦୟର ନିଷ୍ପାପ ପରିବାର ବର୍ଗର କି ଭୟଙ୍କର ଅନିଷ୍ଟ ସାଧନ କଲି ଏବଂ ସେମାନଙ୍କର ମନସ୍ତାପର କାରଣ ହେଲି, ଏହା ସ୍ମରଣ କରି ମୁଁ ନିରନ୍ତର ଆତ୍ମଗ୍ଲାନିରେ ଦହ୍ୟମାନ ହେଉଅଛି । ମୋହୃଦୟର ଆତ୍ମଗ୍ଲାନିର ବିଶେଷ କାରଣ ଏହି ଯେ ମୋହୃଦୟର ଚରିତ୍ର ବିମଳା ସହଧର୍ମିଣୀ ଏବଂ ସ୍ନେହଶୀଳ ଆଜ୍ଞାବହ ପୁତ୍ରଦ୍ୱୟ ମୋହୃଦୟର ଏହି ଅଧଃପତନରେ ମୋହୃଦୟ ପ୍ରତି ବିରକ୍ତ ନହୋଇ ବରଂ

ଅଧିକତର ଆସ୍ଥା ଏବଂ ସହାନୁଭୂତି ପ୍ରଦର୍ଶନ କରି କ୍ଷମାଶୀଳତାର ପରାକାଷ୍ଠା ଦେଖାଇଅଛନ୍ତି ।”

ଉପର୍ଯ୍ୟୁକ୍ତ ଉଦ୍ଧୃତାଂଶଟି ରାଧାନାଥ ଗ୍ରନ୍ଥାବଳୀରେ ୪୬୩ ଠାରୁ ୪୬୮ ପୃଷ୍ଠା ମଧ୍ୟରେ ପ୍ରକାଶ ପାଇଥିବା ରାଧାନାଥଙ୍କର ସ୍ୱୀକାରୋକ୍ତିର ଅଂଶବିଶେଷ । କବିବର ରାଧାନାଥ ଏହାକୁ ତା ୨୫।୭।୧୯୦୭ ରିଖରେ ଲେଖି 'ଉତ୍କଳ ପତ୍ର' ପତ୍ରିକାରେ ପ୍ରକାଶ ନିମିତ୍ତ ପ୍ରେରଣ କରିଥିଲେ । ନିଜର ଚରିତ୍ରସ୍ଖଳନ ବିଷୟ ସ୍ୱୀକାର କରି ସେ ବଙ୍ଗଳାର ଲେଫ୍‌ଟେନାଣ୍ଟ ଗଭର୍ଣ୍ଣରଙ୍କ ନିକଟକୁ ଏକ ନିବେଦନ ପତ୍ର ପଠାଇଥିଲେ । କବିବର ରାଧାନାଥଙ୍କର ସ୍ୱୀକାରୋକ୍ତି ପାଠକରି ସେ ସମୟର ବହୁ ମାନ୍ୟଗଣ୍ୟ ବ୍ୟକ୍ତି ତାଙ୍କ ନିକଟକୁ ଆଶ୍ୱାସନା ବାଣୀ ପ୍ରେରଣ କରିଥିଲେ । କବିବର ରାଧାନାଥ ଏହି ସମୟଠାରୁ ତାଙ୍କର ମାନସିକ ଭାରସାମ୍ୟ ହରାଇ ବସିଲେ ବୋଲି କୁହାଯାଇ ପାରେ । ସେ ଏଥିପାଇଁ କପଟ ଭାବରେ ଅନୁତାପାନଳରେ ଦଗ୍ଧ ହୋଇଥିଲେ ତାହା ତାଙ୍କର ଶେଷ ଜୀବନର ବିବରଣୀ ନିରୀକ୍ଷିଲେ ବୁଝିହେବ ନାହିଁ ।

କବିବର ରାଧାନାଥଙ୍କୁ ବୟସ ଯେତେବେଳେ ୫୨ ବର୍ଷ ସେତେବେଳେ ଅର୍ଥାତ୍ ୧୯୦୦ ସାଲରେ ସେ ବର୍ଦ୍ଧମାନ ଜିଲ୍ଲାକୁ ବଦଳି ହୋଇଥିଲେ । ତାଙ୍କର ବର୍ଦ୍ଧମାନରେ ଅର୍ଥାତ୍ ହୁଗୁଳୀ ଅବସ୍ଥାନ କାଳରେ ସେହି ବିଦୁଷୀ ମହିଳାଙ୍କ ସହିତ ସମ୍ପର୍କ ସ୍ଥାପିତ ହୋଇଥିଲା । ସେହି ସମ୍ପର୍କ ପ୍ରାୟ ୧୯୦୪ ସାଲ ପର୍ଯ୍ୟନ୍ତ ରହିଥିଲା ବୋଲି ଧରାଯାଇପାରେ । ୧୯୦୪ ସାଲଠାରୁ କବିବର ରାଧାନାଥଙ୍କ ମନରେ ପ୍ରବଳ ଅନୁତାପ ଓ ଦୁଶ୍ଚିନ୍ତା ଜାତ ହୋଇଥିଲା ।

କବିବର ରାଧାନାଥଙ୍କ ଉକ୍ତି ଅନୁସାରେ ତାଙ୍କର ଖଣ୍ଡିଏ ଓଡ଼ିଆ ପୁସ୍ତକର ମୁଖବନ୍ଧରେ ଅନ୍ୟାନ୍ୟ କବିତା ସହିତ ସେହି ମହିଳାଙ୍କର ଗୋଟିଏ କବିତା ସନ୍ନିବେଶିତ ହୋଇଥିଲା । କବିବର ରାଧାନାଥଙ୍କର ସେହି ଓଡ଼ିଆ ପୁସ୍ତକ ହେଉଛି ତାଙ୍କର ଗ୍ରନ୍ଥାବଳୀ । 'ରାଧାନାଥ ଗ୍ରନ୍ଥାବଳୀ ପ୍ରକାଶ ପାଏ ୧୯୦୩ ସାଲରେ । ଏହାର ମୁଖବନ୍ଧରେ ଜୀବନୀ ଲେଖିଥିଲେ

ଆର୍ତ୍ତତ୍ରାଣ ଶତପଥୀ ୧୯୦୨ ସାଲରେ । "ରାଧାନାଥଙ୍କର ସ୍ୱୀକାରୋକ୍ତି ପ୍ରକାଶ ପାଇଥିଲା ୧୯୧୬ ସାଲରେ । ରାଧାନାଥ ଗ୍ରନ୍ଥାବଳୀ ପ୍ରଥମ ସଂସ୍କରଣର ମୁଖବନ୍ଧରେ ଯେଉଁ କବିତାଗୁଡ଼ିକ ସନ୍ନିବେଶିତ ହୋଇଥିଲା ତହିଁରେ କେବଳ ଜଣେ ନାୟିକାର ନଗେନ୍ଦ୍ରବାଳାଙ୍କର କବିତା ଥିଲା । ସେହି କବିତାଟିର ନାମ ଥିଲା "ଭୂତଳେ ସ୍ୱର୍ଗ" । ଏହି କବିତା ବିଷୟରେ ଆର୍ତ୍ତତ୍ରାଣ ଶତପଥୀ ଲେଖିଥିଲେ, "ରାଧାନାଥ ବଙ୍ଗଦେଶକୁ ଯାଇ ଅନେକ କବି ଏବଂ ସାହିତ୍ୟସେବକଙ୍କ ସହିତ ପରିଚିତ ହୋଇ ସେମାନଙ୍କର ପ୍ରୀତିଭାଜନ ହୋଇଛନ୍ତି । ବଙ୍ଗୀୟ ନାୟିକାବି ଶିରୋମଣି ନଗେନ୍ଦ୍ରବାଳା ସରସ୍ୱତୀ ତାହାଙ୍କ ସହିତ ପରିଚିତା ହୋଇ, ତାହାଙ୍କ ପ୍ରତି କପରି ଶ୍ରଦ୍ଧାବତୀ ହୋଇଛନ୍ତି, ତାହା ସେହି ନଗେନ୍ଦ୍ରବାଳାଙ୍କ ରଚିତ ନିମ୍ନ କବିତାରୁ ହୃଦୟଙ୍ଗମ ହେବ ।

"ଆମିତ ଦେଖେଛି ସ୍ୱର୍ଗ ଭୂତଲେ ଏବାର୍,
ସେହି ମହାଶନ୍ୟ ସ୍ତର୍
ସ୍ୱର୍ଗ ରାଜ୍ୟ ମନୋହର୍—
ନହେଗୋ ଏବାର ଭୁଲ୍ ଭେଙ୍ଗେଛେ ଆମାର୍ ।

× × × ×

ଆମି ଯା ଦେଖେଛି ତାହା ଅତୁଲ ଧରାୟ—
ସ୍ୱାର୍ଥପରୀ ଧରା ମାଝେ,
ପବିତ୍ର ଦେବତା ସାଜେ,
ଭୂତଲେ ସ୍ୱର୍ଗେର ଛବି—'ରାଧାନାଥ ରାୟ୍' ।

× × × ×

ଲଲିତ କଲାର ସ୍ୱାମୀ
ତୁମି ଗୁରୁ ଶିଷ୍ୟା ଆମି
ପରଶ ପରଶେ ଲୋହା ସୋନା ହୟେ ଯାୟ୍
ଏ ମହା ସ୍ୱରଗ ତୋରା କେ ଦେଖିବି ଆୟ୍ ।

ସ୍ନେହାକାଙ୍କ୍ଷିଣୀ
ନଗେନ୍ଦ୍ର ବାଲା ।"

ରାଧାନାଥ ଗ୍ରନ୍ଥାବଳୀର ପ୍ରଥମ ସଂସ୍କରଣରେ ସ୍ୱ . କବିଚାନ୍ଦ ଆର୍ତ୍ତତ୍ରାଣ ଶତପଥୀଙ୍କ ମନ୍ତବ୍ୟ ସହିତ ପ୍ରକାଶ ପାଇଥିଲା । ମାତ୍ର ୧୯୧୩ ସାଲରେ ରାଧାନାଥ ଗ୍ରନ୍ଥାବଳୀର ଦ୍ୱିତୀୟ ସଂସ୍କରଣ ପ୍ରକାଶିତ ହେବା ସମୟରେ ସମ୍ପାଦକ ଏହି ମୁଖବନ୍ଧର ଏହି ଅଂଶଟି ଉଠାଇ ଦିଆଯାଇଅଛି । ୧୯୦୭ ସାଲରେ ରାଧାନାଥଙ୍କର ସ୍ୱୀକାରୋକ୍ତି ପ୍ରକାଶ ପାଇବା ପରେ , ତାଙ୍କର ଉକ୍ତି ଅନୁସାରେ ପୁସ୍ତକଟି କଳୁଷିତ ହୋଇଥିବାରୁ ସେ ତାଙ୍କର ପୁତ୍ର ଶଶିଭୂଷଣ ମୁଖବନ୍ଧରୁ ଏହି ଅଂଶକୁ ବାଦ ଦେଇଥିବା ସମ୍ଭବ । ବୋଧହୁଏ ରାଧାନାଥଙ୍କର ଆତ୍ମୀୟଗଣ ସେହି ବିଦୁଷୀ ମହିଳାଙ୍କ ନାମ ପ୍ରକାଶ ନ କରିବାକୁ ଚେଷ୍ଟା କରିଥିଲେ । ମାତ୍ର ସମୟ କ୍ରମେ ତାଙ୍କର ନାମ ଓ ପରିଚୟ ଯଥାର୍ଥ ଭାବରେ ପ୍ରକାଶ ପାଇଅଛି । ନଗେନ୍ଦ୍ର-ବାଳାଙ୍କର 'ଅମିୟ ଗାଥା' ଓ 'ନାରୀ ଧର୍ମ' ନାମକ ଦୁଇଗୋଟି ପୁସ୍ତକରେ କବିବର ରାଧାନାଥ ଯେଉଁ ମନ୍ତବ୍ୟ ଦେଇଥିଲେ ତାହାର ଆଶ୍ରୟରେ ଦେବେନ୍ଦ୍ର ତଥା ସମାଲୋଚକ ଦେବୀପ୍ରସନ୍ନ ପଟ୍ଟନାୟକ ନଗେନ୍ଦ୍ରବାଳାଙ୍କର ପରିଚୟକୁ ସ୍ପଷ୍ଟତର କରିଅଛନ୍ତି । ସେ ଲେଖିଛନ୍ତି, "ଏଠାରେ ବଙ୍ଗୀୟ ପ୍ରସିଦ୍ଧ ନାରୀକବି ଶ୍ରୀମତୀ ନଗେନ୍ଦ୍ରବାଳା ସର ଙ୍କର ପରିଚୟ ପ୍ରାସଙ୍ଗିକ ଭାବରେ ଦିଆଯାଇ ପାରେ । ତାଙ୍କର 'ଅମିୟ ଗାଥା' ପୁସ୍ତକରେ କବିବର ରାଧାନାଥ ଚନ୍ଦ୍ରଙ୍କର ସଂକ୍ଷିପ୍ତ ଜୀବନୀ ଲେଖିଛନ୍ତି । ସେ ଲେଖିଛନ୍ତି ଯେ, 'ବଙ୍ଗଳା ୧୨୮୪ ସାଲ ୧୮୭୮ ଖ୍ରୀ ରେ ହୁଗୁଳି ଜିଲ୍ଲାନ୍ତର୍ଗତ ଭଦ୍ରେଶ୍ୱର ଷ୍ଟେସନର ପଶ୍ଚିମ ଭାଗରେ ଅବସ୍ଥିତ ପାଲ୍‌ଡ଼ା ନାମକ ଗ୍ରାମରେ ଶ୍ରୀମତୀ ନଗେନ୍ଦ୍ରବାଳା ତାଙ୍କର ମାତୁଳାଳୟରେ ଜନ୍ମ ଗ୍ରହଣ କରିଥିଲେ । ତାଙ୍କର ପିତା ନୃତ୍ୟଗୋପାଳ ସରକାର ଓ ମାତା ଶ୍ରୀମତୀ କୁସୁମ କାମିନୀ ଦାସୀ । X X ଏମାନେ ହେଉଛନ୍ତି ଦକ୍ଷିଣ ରାଢ଼ୀୟ କାୟସ୍ଥ । ଅଢ଼େଇ ବର୍ଷ ବୟସରେ ନଗେନ୍ଦ୍ରବାଳା ପିତାଙ୍କ ସହ ଚଟ୍ଟଗ୍ରାମ ଯାଇ-ଥିଲେ । ଦଶବର୍ଷ ବୟଃକ୍ରମ ସମୟରେ ହୁଗୁଳୀ ଜିଲ୍ଲାର ସୁଖାଡ଼ିଆ ଗ୍ରାମସ୍ଥ ଶ୍ରୀଯୁକ୍ତ ଖଗେନ୍ଦ୍ର ନାଥ ମିତ୍ର ( ମୁସ୍ତୋଫି ) ଙ୍କ ସହିତ ତାଙ୍କର ପରିଣୟ କାର୍ଯ୍ୟ ସମ୍ପାଦିତ ହୋଇଥିଲା ।" ( )

(୧) କବିଲିପି— ପୃ: ୧୩୩

ପୁଣି ସେ ଲେଖିଛନ୍ତି, "ଜଣାଯାଏ ଯେ ନଗେନ୍ଦ୍ର ବାଳା ୧୩ ବର୍ଷ ବୟସରେ ସ୍ୱାମୀ ଗୃହକୁ ଆସିଲେ ଓ ଦୁର୍ଭାଗ୍ୟ ବ୍ୟାଧିଗ୍ରସ୍ତ ହୋଇ ବାୟୁ ପରିବର୍ତ୍ତନ ନିମିତ୍ତ ନାନାସ୍ଥାନରେ ଯାତାୟାତ କରିଥିଲେ । ୧୮୨୩ ସାଲ ବୈଶାଖ ମାସରେ ଏହାଙ୍କର ମୃତ୍ୟୁ ହୋଇଥିଲା ।"(୧)

ନଗେନ୍ଦ୍ର ବାଳା ଯେଉଁଠାରୁ ସମସ୍ତ ବିଦୁଷୀ ମହିଳା ଯହାଙ୍କ ବିଷୟ କବିବର ରାଧାନାଥ ତାଙ୍କର ସ୍ତ୍ରୀଜାତିରତ୍ନରେ ଉଲ୍ଲେଖ କରିଅଛନ୍ତି । ୧୯୦୨ ସାଲରେ କବିବର ରାଧାନାଥଙ୍କର ସନ୍ଧର୍ମିଣୀ ପରଶମଣି ଦାସୀଙ୍କ ଦ୍ୱାରା ନିମନ୍ତ୍ରିତା ହୋଇ ନଗେନ୍ଦ୍ରବାଳା ଧବଳେଶ୍ୱର ଠୋସ୍ଥିତ କବିଙ୍କର ନିଭୃତ ନିଳୟରେ କିଛିକାଳ ଅବସ୍ଥାନ କରିଥିଲେ । ଧବଳେଶ୍ୱର କାବ୍ୟ ନାମକ ଏକ ବର୍ଣ୍ଣନାତ୍ମକ କାବ୍ୟ ଲେଖି ସେ ପରଶମଣିଙ୍କୁ ଉତ୍ସର୍ଗ କରିଥିଲେ । କବିବର ରାଧାନାଥ ଯେଉଁବେଳେ ହୁଗୁଳୀରେ ଅବସ୍ଥାନ କରୁଥିଲେ ସେତେବେଳେ କବି ଗଙ୍ଗାଧର ମେହେର ତାଙ୍କର କେତେକ କାବ୍ୟ ରଚନା କରି ପାଣ୍ଡୁଲିପିକୁ ରାଧାନାଥଙ୍କ ନିକଟକୁ ପଠାଉଥିଲେ । ଗଙ୍ଗାଧର କୀଚକବଧର ପାଣ୍ଡୁଲିପି ପଠାଇବା ପରେ କବିବର ରାଧାନାଥ ତାଙ୍କୁ ତା ୨୭।୭।୧୯୦୩ ରିଖରେ ଯେଉଁ ପତ୍ର ଲେଖିଥିଲେ ତହିଁରେ ଅଛି, "ମୋହୋ ହସ୍ତରେ ଆପଣଙ୍କର ପାଣ୍ଡୁଲେଖ୍ୟ ଦେଖି ବଙ୍ଗୀୟ ପ୍ରସିଦ୍ଧ ନାୟିକାବ ଶ୍ରୀମତୀ ନଗେନ୍ଦ୍ରବାଳା ସରସ୍ୱତୀ ତାହା ମୋହୋଠାରୁ ନେଇ ପାଠକରି ଯତ୍ପରୋନାସ୍ତି ପ୍ରୀତି ପ୍ରକାଶ କରିଅଛନ୍ତି । ଆପଣଙ୍କର 'ଇନ୍ଦୁମତୀ' ପଢି ପୂର୍ବରୁ ସେ ଆପଣଙ୍କ ରଚନାର ପକ୍ଷପାତିନୀ ହୋଇଥିଲେ ।"(୨)

୧୯୦୦ ସାଲଠାରୁ କବିବର ରାଧାନାଥଙ୍କ ସହିତ ନଗେନ୍ଦ୍ର-ବାଳାଙ୍କର ସମ୍ପର୍କ ସ୍ଥାପିତ ହୋଇଥିଲା ଏବଂ ଏହି ସମ୍ପର୍କ ଅତ୍ୟନ୍ତ

---

(୧) କବିଲିପି—ପୃ· ୧୩୪
(୨) କବିଲିପି—ପୃ· ୯୪

ଚ୍ୟୁତ ମଧ୍ୟ ହୋଇଥିଲା । ମାତ୍ର ରାଧାନାଥ ଜୀବନୀର ବହୁତ କଲେବର ମଧ୍ୟରେ କେଉଁଠାରେ ଥରେ ହେଲେ ତାଙ୍କର ନାମୋଲ୍ଲେଖ ଦେଖିବାକୁ ମିଳେ ନାହିଁ । କବିବର ରାଧାନାଥଙ୍କ ଦ୍ୱାରା ଲିଖିତ ଏବଂ ତାଙ୍କ ନିକଟକୁ ପ୍ରେରିତ ବହୁ ପତ୍ର ରାଧାନାଥ ଜୀବନୀରେ ସନ୍ନିବେଶିତ ହୋଇଥିଲେହେଁ ନଗେନ୍ଦ୍ରବାଳାଙ୍କର କୌଣସି ଖଣ୍ଡିଏ ପତ୍ର ଏଥିରେ ସ୍ଥାନ ପାଇନାହିଁ । କେବଳ ସେତିକି ନୁହେଁ, କବିବର ରାଧାନାଥ ଗଙ୍ଗାଧର ବା ଅନ୍ୟମାନଙ୍କ ନିକଟକୁ ଲେଖିଥିବା ପତ୍ର, ଯେଉଁଥିରେକି ନଗେନ୍ଦ୍ରବାଳାଙ୍କ କଥା ଲେଖା ଯାଇଥିଲା ସେ ପତ୍ରମଧ୍ୟରୁ ଗୋଟିଏ ହେଲେ ରାଧାନାଥ ଜୀବନୀରେ ସ୍ଥାନ ପାଇ ନାହିଁ । ଏହା ଜୀବନୀ ଲେଖକଙ୍କର ଉଦ୍ଦେଶ୍ୟମୂଳକ କାର୍ଯ୍ୟ ବୋଲି କୁହାଯାଇପାରେ ।

କବିବର ରାଧାନାଥ ଯେପରି ଅବସ୍ଥାରେ ପଡ଼ି ନଗେନ୍ଦ୍ରବାଳାଙ୍କ ସହିତ ସମ୍ପର୍କ ସ୍ଥାପନ କରି ଚରିତ୍ରହୀନ ହୋଇଥିଲେ ତାହା ସେ ତାଙ୍କର 'ସ୍ୱୀକାରୋକ୍ତି'ରେ ଏବଂ 'ଆତ୍ମଜୀବନ ଚରିତର କିୟଦଂଶ'ରେ ପ୍ରକାଶ କରିଛନ୍ତି । ପରବର୍ତ୍ତୀକାଳରେ ଏଥିପାଇଁ ତାଙ୍କ ମନରେ ଅନୁତାପ ହୋଇଅଛି । ସେ ଯେତେବେଳେ ନିଜର କୃତକର୍ମ ଲାଗି ଅନୁତାପାନଳରେ ଦଗ୍‌ଧୀଭୂତ ହୋଇଛନ୍ତି ସେତେବେଳେ ସେଥିପାଇଁ ନଗେନ୍ଦ୍ରବାଳାଙ୍କ ଉପରେ ଦୋଷାରୋପ କରିଥିବା ସମ୍ଭବପର । ମାତ୍ର ନଗେନ୍ଦ୍ରବାଳା ଏଥିପାଇଁ କେବଳ ନିଜକୁ ଦୋଷୀ ବୋଲି କେବେହେଲେ ଭାବି ନାହାନ୍ତି । ତେଣୁ ତାଙ୍କର ମନର କଥା ପ୍ରକାଶ କରିବାକୁ ସେ 'ବୈର' ନାମକ ଗୋଟିଏ ବଙ୍ଗଳା କବିତା ରଚନା କରିଥିଲେ । ସେହି କବିତାଟି ତାଙ୍କର 'ଅମିୟଗାଥା' ପୁସ୍ତକରେ ସ୍ଥାନ ପାଇଅଛି । ମନେହୁଏ, ସେହି କବିତାଟି କବିବର ରାଧାନାଥଙ୍କ ଦୋଷାରୋପର ଉତ୍ତର ସ୍ୱରୂପରେ ରଚିତ ହୋଇଥିଲା । ଡକ୍ଟର ଦେବୀ ପ୍ରସନ୍ନ ପଟ୍ଟନାୟକ ସେହି କବିତାଟିକୁ ତାଙ୍କର କବିଲିପି ପୁସ୍ତକରେ ସ୍ଥାନ ଦେଇଅଛନ୍ତି । କବିତାଟିକୁ ଏଠାରେ ଉଦ୍ଧାର କରାଯାଇପାରେ ।

“ଆମିଯେ ବେସେଛି ଭାଲ — ଆମାର କି ଦୋଷ୍ ?
ପ୍ରାଣଭରି ପ୍ରେମ ଲଭିୟେ
ତୃଷାୟ ଆକୁଲ୍ ହୟେ
ତୁମିକି ବୁଝନି ସଖା — ମୋର ପରିତୋଷ୍ ?

ଆମି ବାସିୟାଛି ଭାଲ — ଏଇ ଦୋଷ ମମ !
ହାନିୟା ସ୍ନେହର୍ ବାଣ୍
ତୁମିକି ଦାଓନି ଟାନ୍,
ଏକ୍ଷୁଦ୍ର ପରାଣେ,— ସତ୍ୟ ବଲ ପ୍ରିୟତମ !

ଆମି ବାସିୟାଛି ଭାଲ — ଦୋଷ ଏ ଆମାର୍ !
ତୁମି ନବଘନ ରୂପେ
ଢାଲନି କି ଚୁପେ ଚୁପେ
ପିୟାସୀ ଚାତକୀ ମୁଖେ — ଅମିୟା ଅପାର୍ !

ଭାଲ ବାସିୟାଛି ବଲେ — ଦୋଷ୍ ଦାଓଛାଇ,
ଶୁନାଇୟା ତତ୍ତ୍ୱ କଥା,
ରୁଦ୍ଧ ଏ ବୁକେର ବ୍ୟଥା,
ମୁଛେ ଫେଲେ-ଛିଛି ସଖା — ଲାଜେ ମରେ ଯାଇ ।

ଆମିକି ଏକାଇ ଭାଲ — ବେସେଛି କେବଲ୍ ?
ଆମିଇ କି ଶୁଧୁ ହାୟ-
ଆପନା ଢେଲେଛି ଗାୟ,
ଢାଲନି ଗୋପନେ ତୁମି — ନୟନେର ଜଲ୍ ?

ଆମିଇ ସମାଧି ଶୁଧୁ — ଲଭେଛି କି ପାୟ ?
ଏକଟି ମୁହୂର୍ତ୍ତ ତରେ
ତୁମି କି ଗୋ ସ୍ନେହଭରେ,
ନୀରବ ନିସ୍ତବ୍‌ଧେ ବସି — ଭାବନି ଆମାୟ୍ ?

ଆମିଇ କି ଶୁଧୁ ତୋମା     କରେଛି ପାଗଲ୍ ?
ତୁମି ଏ ହୃଦୟେ ଏସେ,
ମଧୁର-ମଧୁର ହେସେ
କରନି କି କ୍ଷୁଦ୍ର ପ୍ରାଣ     ଉନ୍ମତ ବିଭୋଲ୍ ?

ତୁମିଇ ମରଳ ସାଧୁ     ଆମିଇ କି ଚୋର୍ ?
ପ୍ରାଣେର କବାଟ ହାନି,
ହୃଦୟ ସିନ୍ଧୁକ ଟାନି,
ତୁମି କି ସର୍ବସ୍ୱ ଚୋର !     ଲୁଠନାଇ ମୋର୍ ?

ତୋମାରେ ଦେଖିୟା ଶୁଧୁ     ଆମାର କି ସୁଖ୍ ?
ନିକଟେ ବସିଲେ ତବ
ତୁମି କି ହେଲନା ଭବ
ବହେନା ଅମିୟା ସ୍ରୋତ     ଭରି ତବ ବୁକେ ?

ଆମିଇ କି ଚାଇ ଶୁଧୁ     ଦେଖିତେ ତୋମାୟ ।
ବଲ ଦେଖି ପ୍ରାଣମୟ୍ !
ଚାହେନା କି ଓ ହୃଦୟ,
ସଭଲେ ହେରିତେ ତବ     ପ୍ରେମ ପ୍ରତିମାୟ ?

ତୁମି ଓ ଯା କର ସଖା     ଆମି କରି ତାଇ-
ତବୁ ଭାଲବାସି ବଲେ
ଦୋଷ ଦାଓ ନାନା ଛଲେ
ଚୋର୍ ହୟେ ସାଧୁ ତୁମି     ବଲି ହାରିଯାଇ ।

ଭାଲ ବାସିୟାଛି ପେୟେ     ଏଇ ଦୋଷ ମୋର୍
ରାଜା ହୟେ ହୃଦାସନେ,
ବସିୟାଛ ପୁଲ୍କ ମନେ,
ଚୋର୍ ହୟେ ରାଜା ହଲେ-     ଧନ୍ୟ ପାକା ଚୋର୍ ।”

ଏହି କବିତାଟି ନଗେନ୍ଦ୍ରବାଳାଙ୍କର ରାଧାନାଥଙ୍କ ପ୍ରତି ଆସକ୍ତିର ମାତ୍ରା ସୂଚିତ କରିଥାଏ । ଚରିତ୍ରଗତ ସ୍ଖଳନ ପାଇଁ କେବଳ ଯେ ନଗେନ୍ଦ୍ରବାଳା ଦାୟୀ ନୁହନ୍ତି ସେ କଥା ସେ ବାରମ୍ବାର ପ୍ରକାଶ କରିଛନ୍ତି । ଏହି ସ୍ଖଳନ ପାଇଁ ନଗେନ୍ଦ୍ରବାଳା ଯେତିକ ପରିମାଣରେ ଦାୟୀ ରାଧାନାଥ ତଦପେକ୍ଷା କମ ପରିମାଣରେ ଦାୟୀ ନୁହନ୍ତି ।

ନଗେନ୍ଦ୍ରବାଳାଙ୍କ ସହିତ କବିବର ରାଧାନାଥଙ୍କର ସମ୍ପର୍କ ବହୁ ପୂର୍ବରୁ ପ୍ରତିଷ୍ଠିତ ହୋଇଥିଲା ବୋଲି ଅଧ୍ୟାପକ କ୍ଷେତ୍ରବାସୀ ନାୟକ 'ପ୍ରଣୟ ତାପସ କବି ଓ କବି ପ୍ରିୟା' ନାମକ ପ୍ରବନ୍ଧରେ ଆଲୋଚନା କରିଛନ୍ତି । ତାଙ୍କ ମତରେ, "ପରିଣତ ବୟସରେ ପ୍ରଣୟାସକ୍ତି, ଏଇ ଉକ୍ତିରେ ସତ୍ୟତା ଖୁବ କମ୍, ସୂକ୍ଷ୍ମ ବିଶ୍ଲେଷଣରୁ ମନେହୁଏ, ନଗେନ୍ଦ୍ର-ବାଳାଙ୍କ ସହ ରାଧାନାଥଙ୍କର ସମ୍ପୃକ୍ତି ତାଙ୍କ ରଚନାକାଳର ପ୍ରଥମ ପର୍ଯ୍ୟାୟରୁ ହିଁ ଆରମ୍ଭ ହୋଇଥିଲା । ଯେତେବେଳେ (୧୮୬୮-୭୧) ସେ ମୁଖ୍ୟତଃ ବଙ୍ଗଳାରେ ହିଁ ଲେଖାଲେଖି କରୁଥିଲେ ଏବଂ ତାଙ୍କର ବଙ୍ଗଳା କବିତାବଳୀର ପ୍ରଥମ ଓ ଦ୍ୱିତୀୟ ଭାଗ ଯଥାକ୍ରମେ ୧୮୬୮ ଓ ୧୮୭୨ରେ ସେବେ ପ୍ରକାଶିତ ହୋଇଥିଲା, ଏତେବେଳେ ନଗେନ୍ଦ୍ର-ବାଳାଙ୍କ ସହ ତାଙ୍କର ପରିଚୟ ସାନ୍ନିଧ୍ୟକୁ କେନ୍ଦ୍ରକରି ସ୍ଥାପିତ ହୋଇଛି ଏବଂ ପ୍ରତିଷ୍ଠିତ ପ୍ରଣୟର ପ୍ରଚ୍ଛନ୍ନ ପ୍ରକାଶ ଦେଖାଦେଇଛି ବିଭିନ୍ନ କାବ୍ୟକବିତା ମାନଙ୍କରେ, ଯାହାକି ତାଙ୍କର ପରବର୍ତ୍ତୀ କାଳର ରଚନା ।

'ମେଘଦୂତ' କବିଙ୍କର ପ୍ରଥମ ଓଡ଼ିଆ ଅନୁବାଦ କବିତା, ପ୍ରଣୟ ଏହାର ଆଦିମ ଉତ୍ସ । 'ଉତ୍କଳ ଦର୍ପଣ'ର ୧୮୭୩ ସାଲ ଜୁଲାଇ ସଂଖ୍ୟାରେ ଏହା ପ୍ରଥମେ ପ୍ରକାଶିତ ହୋଇଥିଲା । ତାକୁ ଅନୁଧ୍ୟାନ କଲେ ସେଥିରେ ଏଇ ନଗେନ୍ଦ୍ରବାଳାଙ୍କର ସାମାନ୍ୟ ସ୍ଫୁରଣ ଥିଲା ପରି ମନେହୁଏ ।

ନଗେନ୍ଦ୍ରବାଳା ପଦ୍ମ ପାଦ ଯୁଗଳ<br>
ଛୁଇଁ ଦେହ ଧାରଣ ହେବ ସଫଳ ।

ତହିଁ ସୁରଯୁବତୀ ନିତ୍ୟ ଚପଳା
ଘେନି ତୋ ଦେହ ସ୍ପର୍ଶରୁ ହୀରକ ବଳା।

ତୋ ଶରୀରୁ ନିଃସୃତ ନୀର ଲଭିବେ
ଜଳଯନ୍ତ୍ର ପରାଏ ତୋତେ ମଣିବେ।" (୧)

ଆଲୋଚକ ଅଧ୍ୟାପକ ନାୟକ କବିବର ରାଧାନାଥଙ୍କର ମେଘଦୂତ ଅନୁବାଦରେ ନଗେନ୍ଦ୍ରବାଳା ଶବ୍ଦଟି ଦେଖି ଯେଉଁ ପ୍ରକାର ସିଦ୍ଧାନ୍ତରେ ଉପନୀତ ହୋଇଅଛନ୍ତି ତାହା ତାଙ୍କର ସକ୍ଷ୍ମଦୃଷ୍ଟିକୋଣର ଆଲୋଚନାର ଫଳ ହୋଇପାରେ। ମାତ୍ର ନଗେନ୍ଦ୍ରବାଳା ଶବ୍ଦକୁ ଦେଖି ଏପରି ଏକ ସିଦ୍ଧାନ୍ତରେ ଉପନୀତ ହେବାର କୌଣସି କାରଣ ନାହିଁ। କବି ବା ଲେଖକର କୌଣସି ସୃଷ୍ଟିକୁ ଆଲୋଚନା କରିବା ସମୟରେ କାଳଗତ ଔଚିତ୍ୟବୋଧକୁ ଭୁଲିଗଲେ ଚଳିବ ନାହିଁ। କବିବର ରାଧାନାଥଙ୍କର ମେଘଦୂତର ଅନୁବାଦ ଉତ୍କଳ ଦର୍ପଣରେ ୧୮୭୩ ସାଲରେ ପ୍ରକାଶ ପାଇଥିଲା। ସେତେବେଳକୁ ନଗେନ୍ଦ୍ରବାଳା ଏ ସୃଷ୍ଟିକୁ ଆସି ନଥିଲେ। ନଗେନ୍ଦ୍ରବାଳାଙ୍କର ଜନ୍ମ ସମୟ ହେଉଛି, ବଙ୍ଗଳା ୨୨୮୪ ସାଲ ବା ଇଂରାଜୀ ୧୮୭୮ ଖ୍ରୀଷ୍ଟାବ୍ଦ। କବିବର ରାଧାନାଥଙ୍କର ମେଘଦୂତ ପ୍ରକାଶ ପାଇବାର ପାଞ୍ଚବର୍ଷ ପରେ ନଗେନ୍ଦ୍ରବାଳାଙ୍କର ଜନ୍ମ। ତେଣୁ ଆଲୋଚକ ଯାହା ମତ ପ୍ରକାଶ କରିଅଛନ୍ତି ଯେ କବିବର ରାଧାନାଥଙ୍କର କବିଜୀବନର ଆଦ୍ୟ ଅବସ୍ଥାରେ ନଗେନ୍ଦ୍ରବାଳାଙ୍କ ସହିତ ତାଙ୍କର ସମ୍ପର୍କ ସ୍ଥାପିତ ହୋଇଥିଲା ତାହା ଯଥାର୍ଥ ନୁହେଁ।

କବିବର ରାଧାନାଥଙ୍କର ବିଭିନ୍ନ ରଚନା ଉପରେ ସାମୟିକ ପ୍ରଭାବ କପରି ଭାବରେ ପଡ଼ିଅଛି ତାହା ପୂର୍ବରୁ ଆଲୋଚିତ ହୋଇଅଛି। ବର୍ତ୍ତମାନ ଆମର ଦେଖିବାର କଥା, ଯେ ୧୯୦୦ ସାଲଠାରୁ କବିବର ରାଧାନାଥଙ୍କର ନଗେନ୍ଦ୍ରବାଳା ସମ୍ପର୍କିତ ଦ୍ୱନ୍ଦ୍ୱ ବ୍ୟାପାର ଜନିତ ରାଧାନାଥଙ୍କର ଅନ୍ତର୍ଦାହ କପରି ଭାବରେ ତାଙ୍କର

(୧) ସାହିତ୍ୟିକ ଶିକ୍ଷା ଓ ନିରୀକ୍ଷା ପୃ ୮୮—୮୯

ସୃଷ୍ଟି ପର୍ଯ୍ୟାପ୍ତ ମଧ୍ୟରେ ପ୍ରକାଶ ପାଇଅଛି । ରାଧାନାଥଙ୍କର ନିବେଦନ, ଦଶରଥ ବିୟୋଗ, ଏକାଗ୍ରତା, ଶ୍ମଶାନ ଦୃଶ୍ୟ, ଦୁର୍ଯ୍ୟୋଧନଙ୍କର ରକ୍ତନଦୀ ସନ୍ତରଣ, ସାବିତ୍ରୀ ଚରିତ, ବାଣହରଣ, ସପ୍ତପ୍ରଶ୍ନ ସପ୍ତଦ୍ରୋହୀ ପତିର ଉକ୍ତି କବିତାଗୁଡ଼ିକରେ କବିବର ରାଧାନାଥଙ୍କର ଅନ୍ତର୍ଦାହର ଚିତ୍ର ଅତ୍ୟନ୍ତ ସ୍ପଷ୍ଟ ଭାବରେ ପ୍ରକାଶ ପାଇଅଛି । କେବଳ ସେତିକି ନୁହେଁ, କବିବର ରାଧାନାଥ ଯେତେବେଳେ ମନେକରିଛନ୍ତି ଯେ ପାପର ଘୋର ଆବର୍ତ୍ତରେ ସେ ପତିତ ସେତେବେଳେ ପୁଣ୍ୟକ୍ଷୀଣ ଉଦ୍ଦେଶ୍ୟରେ ଦେବଦେବୀଙ୍କୁ ପ୍ରାର୍ଥନା କରିବାକୁ ଯାଇ କାଳିକାସ୍ତୁତିଃ ଓ ଧବଳେଶ୍ୱର ସ୍ତୋତ୍ରମ୍ ଭଳି ସ୍ତୁତି ରଚନା କରିଅଛନ୍ତି । ୧୯୦୩ ସାଲପରେ କବିଙ୍କର ରଚନାଗୁଡ଼ିକ ଯେପରି ଭାବରେ ଆଦର୍ଶମୁଖୀ ହୋଇଅଛି, ସମସ୍ତର ଗୂଢ଼ ଅନ୍ତରର ଦହନଜ୍ୱାଳା ନପାଇଥିଲେ କବିଙ୍କର ଲେଖନୀରୁ ସେ ପ୍ରକାର ସୃଷ୍ଟି ସମ୍ଭବ ହୋଇ ଥାଆନ୍ତା କି ନାହିଁ କହିବା କଷ୍ଟକର ।

କବିଙ୍କର ନିବେଦନ କବିତାଟି କେବଳ ତାଙ୍କର ଅନୁଶୋଚନାର ପ୍ରକାଶ । ଏହି କବିତାଟିର ଶେଷାଂଶରେ କବି ଲେଖିଛନ୍ତି ।

"କଳୁଷିତ ଦେହ ମନେ ସେବାବ୍ରତ
ତେଜିବାକୁ କିବା ହେଉଛି ଉଦ୍ୟତ !

ପାପସ୍ପୃଷ୍ଟ — ବିଷ ଶିରା, ପ୍ରଶିରାରେ
ପ୍ରବାହିତ ହୋଇ ଦେହଯାକ ଧାରେ

ଶ୍ୟାମଳ ହୃଦୟ କେଦାର ମୋହର
ଦଗ୍ଧ, ଦଗ୍ଧ ଯଥା ହିଙ୍ଗୁଳା ପ୍ରାନ୍ତର ।"

ସପ୍ତପ୍ରଶ୍ନ ସପ୍ତଦ୍ରୋହୀ ପତିର ଉକ୍ତିରେ କବି ଯେଉଁ ମର୍ମବାଣୀ ପ୍ରକାଶ କରିଅଛନ୍ତି ତାହା ଅନେକାଂଶରେ ତାଙ୍କର ଆତ୍ମଲିପିରେ ଥିବା ଅନୁତାପର ଅନୁରୂପ । କବି ନିଜର କୁକର୍ମକୁ ସ୍ପଷ୍ଟଭାବରେ, ପ୍ରାଞ୍ଜଳଭାବରେ ପ୍ରକାଶ କରିଅଛନ୍ତି । ତାଙ୍କର ଦୁର୍ବଳତା ଓ ସ୍ଖଳନକୁ ପ୍ରକାଶ କରିବାକୁ ଯାଇ ସେ ଲେଖିଛନ୍ତି,

"ଉଦ୍ଦେଶକୁ ଲକ୍ଷ୍ୟ ମୋର ଥିଲା ସବୁବେଳେ,
କି ଯୁବା, କି ପ୍ରୌଢକାଳେ, କି ବୃଦ୍ଧବୟସେ
ରହିବି ଜୀବନେ ଏକପତ୍ନୀବ୍ରତ ହୋଇ,
ଏହାହିଁ ମୋହର ଲକ୍ଷ୍ୟ ଥିଲା ସବୁଦିନେ,
ଆଦର୍ଶ ସୁଚରିତ ହେବାକୁ ସମାଜେ
ପୋଷିଥିଲି ଆଶା ଦେବି, ହୃଦୟେ ନିରତେ,

ଲକ୍ଷ୍ୟ ଅନୁରୂପେ ଥିଲି ରତ ଅନୁଷ୍ଠାନେ,
କୁକ୍ଷଣେ ବିଦେଶେ ଯାଇ, ଦୁଃସଙ୍ଗ ଦୋଷରେ,
ପଡ଼ିଲି କୁଭାଗ୍ୟ-ଚକ୍ରେ ରାକ୍ଷସୀ ହାବୋଡ଼େ,
ଖସରି ଗଲା ଏପାଦ ଅମାନ୍ତର ପଥେ;
କୁଟିଳ ପିଚ୍ଛିଳ ପୁଣି ପାପର କର୍ଦ୍ଦମେ;
ଖସି ଆସିବାକୁ ଚେଷ୍ଟା କରିଥିଲି କେତେ,
ବିଫଳ ପ୍ରୟାସ ହେଲା ସେ ରାକ୍ଷସୀ-କୂଟେ,
ହୃଦୟ-ଦୌର୍ବଲ୍ୟ ମୋର ଯୋଗଦେଲା ତହିଁ,
ସ୍ୱାର୍ଥସିଦ୍ଧି ଲାଗି ମୋତେ ସେହି ପାପୀୟସୀ
ଦେଖାଇଣ ବିଭୀଷିକା ରଖିଲା ଆଟକେ,

ଦୁର୍ବଳ ମୁଁ ଯେଣୁ ସଦା କି ମନେ, ଶରୀରେ,
ମାୟାବିନୀ ମାୟାଜାଲ ନପାରିଲି ଛେଦି ।"

କବିତାଟି ଯେପରି ଭାବରେ ଆତ୍ମକୈଫିୟତ ହୋଇଅଛି ତାହା ବିଷୟରେ ଆଉ ଅଧିକ କିଛି କହିବା ନିଷ୍ପ୍ରୟୋଜନ ।

ଦଶରଥ ବିୟୋଗ କବିତାରେ କୌଶଲ୍ୟାଙ୍କୁ ପ୍ରଶଂସା କରି ଓ କୈକେୟୀଙ୍କୁ ନିନ୍ଦାକରି ଦଶରଥ ଯେତେବେଳେ ନିଜର ଦୋଷ ବର୍ଣ୍ଣନା କରିଛନ୍ତି ସେତେବେଳେ ମନେହୁଏ କବିବର ରାଧାନାଥ ତାରିଣୀଦାସୀଙ୍କ ସମ୍ମୁଖରେ ନଗେନ୍ଦ୍ରବାଳାଙ୍କର ଅପଖ୍ୟାତି ବର୍ଣ୍ଣନା କରି ନିଜର ଦୋଷ ସ୍ୱୀକାର କରିଅଛନ୍ତି । କୈକେୟୀଙ୍କର ରୂପଜ ମୋହରେ ଦଶରଥ ଏଠାରେ

ଅନ୍ଧ ହୋଇ ନାହାନ୍ତି, ପ୍ରକୃତ ପକ୍ଷରେ ନଗେନ୍ଦ୍ରବାଳାଙ୍କର ରୂପଜ ମୋହରେ ଅନ୍ଧ ହୋଇଛନ୍ତି କବିବର ରାଧାନାଥ । ତେଣୁ କବିଙ୍କ ଲେଖନୀରୁ ବାହାରିଛି,

"ପଳାଶର ରମ୍ୟକାନ୍ତି ଦେଖି କେହି ଯେବେ
ସନ୍ନିହିତ ମୁକୁଳିତ ଚୂତତରୁ ତେଜି,
ସିଞ୍ଚଇ ସୁଫଳ ଆଶେ ପଳାଶ ମୂଳେ
ନୋହିବ ନିରାଶ କିସେ ଫଳଲାଭ ବେଳେ ?

ରୂପଜ ମୋହରେ ମୁହିଁ ମାତି ପଡ଼ି ବନେ
ବରିଲି କୈକେୟୀ ମୋର ନିୟତି-ରୂପିଣୀ,
ରୂପଜ ମୋହରେ ଯଥା ପତଙ୍ଗ ଏପରି
ପଡ଼େ ମହୋଲ୍ଲାସେ ଯାଇଁ ଦୀପଶିଖାନଳେ

ରୂପଜ ମୋହରେ ମୁହିଁ ପୁଷ୍ପମାଳା ଭ୍ରମେ
ଗଳାମାଳା କଲି ଏହି କାଳ-ଭୁଜଙ୍ଗିନୀ,
ଯମଦଣ୍ଡରୂପି-ନକ୍ର ଗର୍ଭେ ଗୁପତ ବସି
ପ୍ରଲୋଭଇ, ଆହା ଅବଗାହନେ ଯେସନେ

ସ୍ୱଚ୍ଛହ୍ରଦ ସୁମଞ୍ଜୁଳ ଫୁଲ୍ଲ କୋକନଦେ;
ମାୟାବିନୀ ମାୟା ପ୍ରେମ-କୁହୁକ ଲଗାଇ
ସାଧିଲା କାମନା ମୋତେ ସଂହାରି ଜୀବନେ,
ଜାଣି ନଥିଲି ପୁଷ୍ପରାଶି ତଳେ ଅହି,

ଭସ୍ମରାଶି ତଳେ ଥିଲା ଅନଳ ଗୁପତେ,
ଦୃଢ଼ ତୃଣାଚ୍ଛନ୍ନ ଗାତେ ପଡ଼ଇ ଯେସନେ
ମାତଙ୍ଗ, ପଡ଼ିଲି ମୁହିଁ କୈକେୟୀର ଜାଲେ ।"

କବି ଯେତେବେଳେ ନଗେନ୍ଦ୍ରବାଳାଙ୍କୁ ଅଯଥା ଭାବରେ ଘୃଣା କରିଛନ୍ତି ସେତେବେଳେ ତାଙ୍କର ପତ୍ନୀ ତାରିଣୀଦାସୀଙ୍କୁ ସମ୍ମାନାସ୍ପଦ ଭାବରେ ଗ୍ରହଣ କରି ସତୀତ୍ୱର ମହତ୍ତ୍ୱ ଉପଲବ୍ଧି କରିଛନ୍ତି ।

ଏହି ସଙ୍ଗତିର ମହତ୍ତ୍ୱ ଉପଲବ୍ଧି ଫଳରେ ତାଙ୍କ ଲେଖନୀରୁ ଜନ୍ମନେଇଛି ସାବିତ୍ରୀ ଚରିତ । ଏହି ସମୟରେ କବିଙ୍କ ଲେଖନୀରୁ ବିଷାଦବାଦୀ କବିତା ଜନ୍ମନେବା ନିତାନ୍ତ ସ୍ୱାଭାବିକ । ଦୁଃଶାସନତୃଷ୍ଣା ଏବଂ ଦୁର୍ଯ୍ୟୋଧନଙ୍କର ରକ୍ତନଦୀ ସନ୍ତରଣ ଏହାର ପ୍ରକୃଷ୍ଟ ଉଦାହରଣ ।

କବିବର ରାଧାନାଥଙ୍କର ଅନ୍ତିମ ଜୀବନରେ ଏହି ଅନୁତାପର ଦହନଜ୍ୱାଳା ତାଙ୍କୁ ଅସ୍ଥିର କରି ପକାଇଥିଲା । ଓଡ଼ିଶାର ଏବଂ ଓଡ଼ିଶା ବାହାରର ବହୁ ମାନ୍ୟଗଣ୍ୟବ୍ୟକ୍ତି ତାଙ୍କୁ ଏ ବିଷୟରେ ଆଶ୍ୱାସନା ଦେଇଥିଲେ ଏବଂ କବିବର ରାଧାନାଥଙ୍କର ଗୁଣ ତୁଳନାରେ ଏହି ଦୋଷ କିଛିନୁହେଁ ବୋଲି କହିଲେହେଁ ତାହା ରାଧାନାଥଙ୍କ ଚିତ୍ତକୁ ଶାନ୍ତ କରିପାରି ନଥିଲା । ତାଙ୍କର ପୁତ୍ର ଶଶିଭୂଷଣ ବହୁଚେଷ୍ଟା କରି ମଧ୍ୟ ତାଙ୍କୁ ଶାନ୍ତ କରିପାରି ନଥିଲେ ।

ଅସ୍ତପୂର୍ବରୁ ପଶ୍ଚିମାକାଶରେ ମ୍ଳାନପ୍ରଭ ସୂର୍ଯ୍ୟତୁଲ୍ୟ କବିବର ରାଧାନାଥ ତାଙ୍କର ପଶ୍ଚିମଜୀବନରେ କେବଳ ପାଇଛନ୍ତି ଅନ୍ତର୍ଦ୍ଦାହ ଏବଂ ଅବସାଦ । ଏ ଅବସାଦକୁ ଯଥାର୍ଥରେ ଅସ୍ତସୂର୍ଯ୍ୟର ଅବସାଦ ଭାବରେ ଗ୍ରହଣ କରିଯାଇ ପାରେ ।

—×—

# ସୂର୍ଯ୍ୟାସ୍ତ

ଅନୁତାପାନଳରେ ଦଗ୍ଧୀଭୂତ କବିବର ରାଧାନାଥଙ୍କୁ ଉତ୍କଳ ତଥା ଉତ୍କଳ ବାହାରର ବହୁ ମାନ୍ୟଗଣ୍ୟ ବ୍ୟକ୍ତି ଆଶ୍ୱାସନା ଦେଲେହେଁ ତହିଁରେ ସେ ସମ୍ପୂର୍ଣ୍ଣ ଭାବରେ ତାଙ୍କର ପୂର୍ବ ମାନସିକ ଅବସ୍ଥା ଫେରି ପାଇ ପାରିଲେ ନାହିଁ । ଆଦର୍ଶବାଦୀ କବିଙ୍କର ବ୍ୟକ୍ତିତ୍ୱ ଏତେବଡ଼ ଅନାଦର୍ଶକୁ ସହଜରେ ମାନିନେଇ ପାରିଲା ନାହିଁ । ତାଙ୍କର ମାନସିକ ଅବସ୍ଥାକୁ ପରିବର୍ତ୍ତିତ କରାଇବା ନିମନ୍ତେ ଶଶିଭୂଷଣ ଯଥାପରୋନାସ୍ତି ଚେଷ୍ଟା କରିଥିଲେ । ସମସ୍ତଙ୍କର ଚେଷ୍ଟା ସତ୍ତ୍ୱେ କବିଙ୍କର ଅନ୍ତର କେବଳ ହାହାକାରରେ ପୂର୍ଣ୍ଣ ହୋଇଥିଲା ବୋଲି କୁହାଯାଇପାରେ ।

୧୯୦୮ ସାଲ ଜାନୁଆରୀ ମାସ ୧୯ ତାରିଖ ଦିନ ପ୍ରକୃତିର ଲଳିତଭୀଷଣ ରୂପ ସନ୍ଦର୍ଶନ କରିବା ମାନସରେ କବିବର ରାଧାନାଥ ଶଶିଭୂଷଣଙ୍କ ସହିତ ଧବଳେଶ୍ୱରଠାରୁ ଯାତ୍ରାରମ୍ଭ କଲେ । କର୍ମ ପ୍ରବଣ ରାଧାନାଥ ତାଙ୍କର ଜୀବନରେ କର୍ମବହୁଳତା ମଧ୍ୟରେ ଉତ୍କଳ ପ୍ରକୃତିକୁ କେବେହେଲେ ବିସ୍ମୃତ ହୋଇ ନଥିଲେ । ଏହି ସମୟରେ କବିବର ରାଧାନାଥ ତାଙ୍କର ମାନସିକ ଦୁଶ୍ଚିନ୍ତାର ଶିକାର ହୋଇଥିଲେହେଁ ଉତ୍କଳ ପ୍ରକୃତିର ରୂପଶୋଭା ପ୍ରତି ତାଙ୍କର ଆକର୍ଷଣ ଲକ୍ଷ୍ୟ କରିବାର କଥା । କବି ଶଶିଭୂଷଣଙ୍କ ସହିତ ତାଳଚେରରେ ଦେଢ଼ମାସ ସମୟ ଅତିବାହିତ କରିଥିଲେ । କବି ତାଳଚେରରେ ଅବସ୍ଥାନ କରିବା ସମୟରେ ପାଲଲହଡ଼ାର ରାଜା ଗଣେଶ୍ୱର ପାଳ ଏବଂ ବାମଣ୍ଡାର ରାଜା ସଚ୍ଚିଦାନନ୍ଦଙ୍କଠାରୁ ସେମାନଙ୍କର ଆତିଥ୍ୟ ଗ୍ରହଣ କରିବା ନିମନ୍ତେ ସାଦର ନିମନ୍ତ୍ରଣ ପାଇଥିଲେ । ତାପରେ

କବି ଠିକ୍ କଲେ ଯେ ପାଲଲହଡ଼ା ଯାଇ ମାଲ୍ଲିଗିରି ଉପରେ କିଛିକାଳ ଅବସ୍ଥାନ କରି ବାମଣ୍ଡା ବାଟଦେଇ କଟକ ଫେରିବେ ।

୧୯୦୮ ସାଲ ମାର୍ଚ୍ଚମାସ ୨୪ ତାରିଖରେ କବିବର ରାଧାନାଥଙ୍କୁ ପାଲଲହଡ଼ା ରାଜସଭାରେ ସମ୍ବର୍ଦ୍ଧନା ଜ୍ଞାପନ କରାଯାଇଥିଲା । ଏହି ସମ୍ବର୍ଦ୍ଧନା ସଭାରେ ପାଲଲହଡ଼ା ରାଜା ଗଣେଶ୍ୱର ପାଳ କବିବର ରାଧାନାଥଙ୍କୁ ସୁନା ଗିଲ୍ଟିର ଦୁଆତ ଏବଂ କଲମ ପ୍ରୀତ୍ୟୁପହାର ଭାବରେ ଅର୍ପଣ କରିଥିଲେ । ରାଜା ଗଣେଶ୍ୱର ପାଳଙ୍କର ଅଭ୍ୟର୍ଥନା ଭାଷଣ ଏବଂ ରାଜସଭାପଣ୍ଡିତ ତିନିଗୋଟି ଭକ୍ତ୍ୟୁପହାର କବିତାରେ କବିଙ୍କୁ ଉଚ୍ଛ୍ୱସିତ ପ୍ରଶଂସା କରାଯାଇଥିଲା ।

ପାଲଲହଡ଼ାରୁ କବି ବାମଣ୍ଡା ଯାତ୍ରା କଲେ । ବାମଣ୍ଡାର ବରକୋଟଠାରେ କବି ଦୁଇଦିନ ଅବସ୍ଥାନ କରିଥିଲେ । ଏହି ସମୟ ମଧ୍ୟରେ କବି ବ୍ରାହ୍ମଣୀ ନଦୀଶଯ୍ୟାରେ ବିଚରଣ କରି ଆନନ୍ଦ ଲାଭ କରିଥିଲେ । ତାପରେ କବି ବାମଣ୍ଡାର ପୁରୁକୁଣ୍ଡା ନାମକ ସ୍ଥାନରେ ତିନିଦିନ ଅବସ୍ଥାନ କରିଥିଲେ । କବିଙ୍କର ପୁରୁକୁଣ୍ଡା ଅବସ୍ଥାନ କାଳରେ ରାଜା ସଚ୍ଚିଦାନନ୍ଦ ଏବଂ ଜଳନ୍ଧର ଦେବ ତାଙ୍କୁ ଦେଖିବା ନିମନ୍ତେ ପୁରୁକୁଣ୍ଡା ଆସିଥିଲେ । ତାପରେ କବି ବାମଣ୍ଡାର ଦେବଗଡ଼ରେ ପହଞ୍ଚିଲେ । କବିବର ରାଧାନାଥ ଓ ଶଶିଭୂଷଣ ଦେବଗଡ଼ଠାରେ ଏକ ସପ୍ତାହ ଅବସ୍ଥାନ କରିଥିଲେ । ଦେବଗଡ଼ରେ ଅବସ୍ଥାନ କାଳରେ କବି ପ୍ରତିଦିନ ରାଜସଭାରେ ଦୁଇତିନି ଘଣ୍ଟା ସମୟ ସାହିତ୍ୟ ଚର୍ଚ୍ଚାରେ ଅତିବାହିତ କରିଥିଲେ । ପ୍ରଧାନପାଟର ଅନୁପମ ସୌନ୍ଦର୍ଯ୍ୟ କବିଙ୍କୁ ଏପରି ମୁଗ୍ଧ କରିଥିଲା ଯେ କବି ଦେବଗଡ଼ରେ ଏକ ସପ୍ତାହ କାଳ ଅବସ୍ଥାନ କରିବା ସମୟ ମଧ୍ୟରେ ଛଅଥର ପ୍ରଧାନପାଟ ଯାଇଥିଲେ ।

ଦେବଗଡ଼ଠାରୁ ବାମଣ୍ଡା ଗୋବିନ୍ଦପୁର ମାର୍ଗରେ ରେଳପଥରେ କବିବର ରାଧାନାଥଙ୍କର କଟକ ଫେରିବାର ସ୍ଥିରୀକୃତ ହେଲା । ଗୋବିନ୍ଦପୁରରେ ପହଞ୍ଚିବା ଲାଗି ୬୦ ମାଇଲ ପଥ

ଅତିକ୍ରମ କରିବାପାଇଁ ବାମଣ୍ଡାର ରାଜାଙ୍କର ଏକ ସ୍ୱତନ୍ତ୍ର ବଡ଼ ଧରଣର ବଳଦଗାଡ଼ି ବନ୍ଦୋବସ୍ତ ହେଲା । ଗୋବିନ୍ଦପୁରରେ ପହଞ୍ଚିବା ପୂର୍ବରୁ ପଥ ମଧ୍ୟରେ କବି ଆମାଶୟ ରୋଗରେ ପୀଡ଼ିତ ହୋଇ-ପଡ଼ିଲେ । ତେଣୁ ଗୋବିନ୍ଦପୁରରେ ତାଙ୍କୁ ଗୋଟିଏ ଦିନ ଅଧିକ ରହିବାକୁ ପଡ଼ିଲା । ଗୋବିନ୍ଦପୁରରୁ ରେଲଗାଡ଼ି ଯୋଗେ କବି ଏବଂ କବିପୁତ୍ର ଆସି କଟକରେ ଦୁଇଦିନ ମଧ୍ୟରେ ପହଞ୍ଚିଲେ ।

୧୯୦୮ ସାଲ ଅପ୍ରେଲ ମାସ ୭ ତାରିଖରେ କବିବର ରାଧାନାଥ କଟକରେ ପହଞ୍ଚିଲେ । କଟକରେ ଦୁଇତିନିଦିନ କଟାଇବା ପରେ ସେ ଜ୍ୱରରେ ପୀଡ଼ିତ ହେଲେ । ଜ୍ୱର ଛାଡ଼ିଗଲା, କିନ୍ତୁ ତାଙ୍କର ଶରୀରର ଦୁର୍ବଳତା କମିଲା ନାହିଁ । ଯେତେ ଚେଷ୍ଟା କଲେହେଁ କବିଙ୍କର ଶରୀରର ଦୁର୍ବଳତା କ୍ରମେ କ୍ରମେ ବଢ଼ିଚାଲିଲା । ଶରୀରରୁ ଯଥେଷ୍ଟ ପରିମାଣରେ ସ୍ୱେଦ ନିର୍ଗତ ହେଲା । ଧୀରେ ଧୀରେ ଜୀବନ ଧାରର ଦୀପ୍ତି ନିସ୍ତେଜ ହୋଇ ଆସୁଥିବାର ପରିଲକ୍ଷିତ ହେଲା । ରାତି ୯ ପ୍ରହର ସମୟକୁ ପ୍ରାଣଶିଖାଟି ନିଭିଗଲା ।

୧୯୦୮ ସାଲ ଅପ୍ରେଲ ମାସ ୧୭ ତାରିଖର ରାତି—ସେହି ରାତିରେ ଯୁଗଜ୍ୟୋତି ରାଧାନାଥଙ୍କର ଦୀର୍ଘ କର୍ମମୟ ଜୀବନର ଅବସାନ; କେବେହେଲେ ଏ ଜାତିର ସ୍ମୃତିପଟରୁ ବିସ୍ମୃତ ହେବାର ନୁହେଁ ।

ଏହି ଦାରୁଣ ଦୁଃସମ୍ବାଦ ପାଇ କଟକ ସହରର ବହୁବ୍ୟକ୍ତି ତାଙ୍କର ଶେଷ ଦର୍ଶନ ନିମନ୍ତେ ସେହି ରାତିର ଶେଷଭାଗରୁ ତାଙ୍କ ବାସଭବନରେ ସମବେତ ହେଲେ । ଉତ୍କଳ ଏବଂ ବଙ୍ଗଳାର ବହୁ ବ୍ୟକ୍ତି, ସମ୍ପାଦକ ଶଶିଭୂଷଣଙ୍କ ନିକଟକୁ ଶୋକବାର୍ତ୍ତା ପ୍ରେରଣ କରିଥିଲେ । କବିବର ରାଧାନାଥଙ୍କର ଗୁଣ ବର୍ଣ୍ଣନା କରି ସେସମୟରେ ବହୁ ଆଲୋଚନା ଓ କବିତାଦି ପତ୍ର ପତ୍ରିକାମାନଙ୍କରେ ପ୍ରକାଶ ପାଇଥିଲା । କବିବର ରାଧାନାଥଙ୍କର ଦେହାନ୍ତ ବାର୍ତ୍ତା

ଉତ୍କଳକବି ମଧୁସୂଦନ ପୁସ୍ତିକାରେ ପାଉଥିଲେ । ସେ ଏହି ବାର୍ତ୍ତା ପାଇବା ପରେ ସମସ୍ତ ଦିନଟି ଗୋଟିଏ କୋଠରୀ ମଧ୍ୟରେ ଦ୍ୱାର ବନ୍ଦ କରି ପଡ଼ିରହିଥିଲେ । ସେଦିନ ସେ ଯେଉଁ କବିତାଟି ରଚନା କରିଥିଲେ ତାହା ଏଠାରେ ଉଦ୍ଧାରଯୋଗ୍ୟ ।

"ଜାଣୁ ମାଗେ ବାଣୀ-ରାଣି, ଏହି ଭବଧାମେ
ପରିଚିତ ଥିଲେ କବି ରାଧାନାଥ ନାମେ,
ସେହିନାମେ ବରଷିତ ହେଉ ଅନୁକ୍ଷଣ
ଉତ୍କଳର ଭକ୍ତି ପ୍ରୀତି କୁସୁମ ଚନ୍ଦନ ।
କବି ମାତ୍ର ରାଧାନାଥ ସାଧାରଣଙ୍କର,
କିନ୍ତୁ ଦେବି, ଜାଣୁ ତୁହି କି ଥିଲେ ମୋହର ।
କୈଶୋରର ଶିକ୍ଷାଗୁରୁ ସଦାସୁବତ୍ସଳ
ଯୌବନର ପ୍ରାଣବନ୍ଧୁ ଏକାନ୍ତ ସରଳ,
ସାହିତ୍ୟସାଧନା କ୍ଷେତ୍ରେ ଶିକ୍ଷାଦାତା ସଖା
ଯା ବିନା ନଥିଲା ବାଟ ଆଦର୍ଶର ଧକ୍କା
ଜୀବନେ ସଂସାର ଧାମେ ନିଃସ୍ୱାର୍ଥ ଚରିତ
ମହୋତ୍ତମ ଦୃଷ୍ଟାନ୍ତ ଥିଲେ ସେ ମୋହର ।
ପିତାମାତା ଗୁରୁ ସଖା ଯେହ୍ନେ ଏକାଧାରେ
ଲଭିଥିଲି ମାଗୋ ତାଙ୍କୁ ପାଇ ତୋ କୃପାରେ ।"

—o—

# ସାଗର ସେପାରିର ତରଙ୍ଗ

ଅସ୍ତଗାମୀ ସୂର୍ଯ୍ୟର ସ୍ୱର୍ଣ୍ଣ କିରଣ ଲିଙ୍ଗରାଜ ମନ୍ଦିର ଚୂଡ଼ାର ତ୍ରିଶୂଳକୁ ଛୁଇଁ ଦେଇଗଲା - ଗର୍ଭଗୃହ ଭିତରୁ ହଂସବାଣୀ ଉଡ଼ିଗଲେ ଖଣ୍ଡଗିରି ଚୂଳ ଆଡକୁ—ବିନ୍ଦୁ ସରୋବରରେ ମନ୍ଦସମୀରରେ ସିନ୍ଦୁର ଲହରୀ ଖେଳିଗଲା - ପାପନାଶିନୀ କୁଣ୍ଡ ଉଆଁ ଦାମ୍ଭ ବରଗଛ ଢ଼ିଗରେ ଗୁଳିଗଲେ—ଆକାଶରେ ବ୍ୟାପିଗଲା ଅନ୍ଧକାର—ଫୁଟିଉଠିଲେ ଅସଂଖ୍ୟ ତାରା - ବନ ଉପବନରୁ କୁସୁମର ସୁରଭି ପବନରେ ଭାସି ଆସିଲା—ଅନ୍ଧକାର ମଧ୍ୟରେ ପଦ୍ମମୁଖୀ ଗୌରୀ ଗୁଳିଲା ପୂର୍ବ ନିର୍ଦ୍ଧାରିତ ସଙ୍କେତ ସ୍ଥଳକୁ—ସେଠାରେ ସେ ଅପେକ୍ଷା କଲା ତାର ପ୍ରିୟକୁ - ଏମେ ଆକାଶରେ ଚନ୍ଦ୍ର ଦେଖାଦେଲେ—ଏତିକିବେଳେ ସେହି ବାଟରେ ଆସିଲା ଏକ ଭୀଷଣକାୟ ଶାର୍ଦ୍ଦୁଳ—ତାକୁ ଦେଖି ଗୌରୀ ଲୁଚିଗଲା ଗହ୍ୱର ମଧ୍ୟରେ—ତାପରେ ସଙ୍କେତ ସ୍ଥଳକୁ ଆସିଲା କେଦାର—ନାୟିକା ସହିତ ମିଳନର କାମନା ତାର ମନକୁ ଟାଣିନେଇଥିଲା କେଉଁ କଳ୍ପଲୋକକୁ—ପରିଣାମରେ ଘଟିଲା କଣ ?

ସ୍ୱର୍ଣ୍ଣ କିରଣ ବୋଳା ମଧୁର ପ୍ରଦୋଷ ସମୟ—ଗଗନ ବକ୍ଷରେ କାଦମ୍ବିନୀର କ୍ରୀଡ଼ା—ଧୀର ସମୀର ଢଗ ବଢଗ ଛୁଇଁ ଛୁଇଁ ଯାଉଛି—ଶତବର୍ଣ୍ଣ ବିଭାରେ ଗୋଧୂଳି ଗଗନ ସୁଚର୍ଚ୍ଚିତ—କର୍ଣ୍ଣିକାରିଲତା ଶ୍ୟାମଳ ବାଲୁକ୍ତ ପରି ସ୍ଥପ୍ତ । ଦିବା ଅବସାନ ଦେଖି ତାର କାୟାକୁ ବିସ୍ତାରିତ କରିଦେଲଣି—ସ୍ଥିରସଲିଳ ବାରୁଣୀ ଦର୍ପଣସମ ଝଲ ଝଲ—ମନ୍ଦ ଅନିଳ ଚହିଁରେ ସୁବର୍ଣ୍ଣ ତରଙ୍ଗ ସୃଷ୍ଟି କରୁଛି—ଅଦୂରରେ ନୀଳ ପାରାବାର ଅମର ସଙ୍ଗୀତର ମୂର୍ଚ୍ଛନା ତୋଳୁଛି—ଶୁଭ୍ର ତାରକିତ ଫେନିଳତାରେ ଫେନଚୂଡ଼ ଲହରୀ ଚନ୍ଦ୍ରଚୂଡ଼ ବେଲେଶ୍ୱରଙ୍କର ଚରଣ ଚୁମ୍ବିଯାଉଛି—ନାନାଜାତି ପୁଷ୍ପର ପରାଗ ଧୀର ସମୀର ହରଣ କରି ଆଣୁଛି—

ସମୀର ପୁଣି ଗୁଞ୍ଜନଙ୍କ ଦ୍ୱାରା କନ୍ଦୁକ କ୍ରୀଡ଼ାରତ—ଯୂଥ ଯୂଥ ହୋଇ ନାନାରଙ୍ଗରେ ବିହଙ୍ଗମାନେ ଭ୍ରମଣ କରୁଛନ୍ତି—ସେମାନେ ଗୁରୁଗ୍ରୀବା ତୋଳି ତରଙ୍ଗ ଗୃହାଣୀରେ କେବଳ ଗୁହାଁ ରହୁଛନ୍ତି · ଏଇ ପରିବେଶରେ ଅନନ୍ୟା ସୁନ୍ଦରୀ ଚନ୍ଦ୍ରଭାଗା କନ୍ଦୁକ କ୍ରୀଡ଼ାରେ ମାତିଛନ୍ତି—ତାଙ୍କର ଏହି ରୂପକାନ୍ତି ଆକର୍ଷଣ କରିଛି ସୂର୍ଯ୍ୟଙ୍କୁ—ଧରାବକ୍ଷକୁ ଓହ୍ଲାଇ ଆସିଛନ୍ତି ସୂର୍ଯ୍ୟ—ଚନ୍ଦ୍ରଭାଗାଙ୍କ ସମକ୍ଷରେ ଦେଉଛନ୍ତି ନିଜର ପରିଚୟ ଓ କାମନା କରିଛନ୍ତି ମିଳନ—ମାତ୍ର ପରିଣାମ ?

ଗାଢ଼ ନିଦ୍ରାରେ ରାଜପୁରବାସୀ ଅଚେତନ—ପିତାଙ୍କ ମସ୍ତକରୁ ଜୈବମଣି ଅପହରଣ କରି ରାଜବାଳା ନନ୍ଦିକା ସୁଡ଼ଙ୍ଗଦ୍ୱାର ଦେଇ ଶ୍ୱେରଗଙ୍କ ଶିଖର ଉଦ୍ଦେଶ୍ୟରେ ଯାତ୍ରା କଲେ—ଯେଉଁ ରାଜବାଳା ଶରୀରରେ ଫୁଲର ଭାର ସହିବାକୁ ଅକ୍ଷମ ସେ ପୁଣି ଆଜି କଣ୍ଟକିତ ପଥରେ ଆଗେଇ ଚାଲିଛନ୍ତି—ମନରେ ନାହିଁ ଭୟ, ନାହିଁ ଅନୁଶୋଚନା —ରାତିର ଶେଷ ପ୍ରହରରେ ଶ୍ୱେରଙ୍କ ଶିଖରରେ ତାଙ୍କ ସମ୍ମୁଖରେ ଆବିର୍ଭୂତା ହେଲେ ନନ୍ଦିକା । ଆଶାଥିଲା, ସବୁକଥା କହି, ତାଙ୍କ ହାତରେ ଜୈବମଣିଟି ଦେଇ ସେ ପାଇବେ ତାଙ୍କର ଇପ୍ସିତ ପ୍ରାଣପ୍ରିୟ —ମାତ୍ର ସେ ପାଇଲେ କଣ ?

ଅରଣ୍ୟର ସେଇ ମଞ୍ଜୁଳ ପରିବେଶରେ ଜୟନ୍ତ ଦେଖିଲେ ଉଷାଙ୍କର ଅନନ୍ୟ ସୁନ୍ଦର ରୂପ—ମନ ତାଙ୍କର ବନେବନେ ବୁଲିଗଲା — ଯେତେ ଆତ୍ମତ୍ୟାଗ ସ୍ୱୀକାର କରିବାକୁ ପଡ଼ୁନା କାହିଁକି, ସେ ଲାଭ କରିବେ ଉଷାଙ୍କୁ— ସେଥିପାଇଁ ନିଜର ଜୀବନକୁ ପଣକରି ସେ ଯୋଗଦେଲେ ଦୌଡ଼ ପ୍ରତିଯୋଗିତାରେ—ସେଥିରେ ସେ ହେଲେ ବିଜୟୀ—ମାତ୍ର ଉଷାଙ୍କୁ ପାଇ ମଧ୍ୟ ସେ ପାଇପାରିଲେ ନାହିଁ—କାହିଁକି ?

ରାଜବାଳା କୌଶଲ୍ୟାଙ୍କ ଜୀବନରେ ଯାହା ଘଟିଗଲା ତାହା କେବେହେଲେ କୌଣସି ବ୍ୟକ୍ତି ପକ୍ଷରେ ସ୍ପୃହଣୀୟ ନୁହେଁ— କୌଶଲ୍ୟାଙ୍କର ବିକଳ କ୍ରନ୍ଦନରେ ଗଙ୍ଗେଶ୍ୱରଙ୍କର ଜୀବନ ଦୀପ ନିର୍ବାପିତ—ମାତ୍ର ସତୀ ସାଧ୍ୱୀ ପାର୍ବତୀ ପାଇଲେ କଣ ?

ପତିହନ୍ତା କେବେହେଲେ ପତ୍ନୀ ପକ୍ଷରେ ଗ୍ରହଣୀୟ ହୋଇ ପାରେ ନା — ତଥାପି ପାବଣ୍ଡ ତାହା କରିଛନ୍ତି—କାହିଁକି ?

ଏହିସବୁ କାବ୍ୟନାୟକ ଏବଂ କାବ୍ୟନାୟିକାମାନଙ୍କ ପ୍ରେମ ବିରହ ମିଳନର ଚିତ୍ର କବିବର ରାଧାନାଥଙ୍କର କାବ୍ୟଗୁଡ଼ିକରେ ଉନ୍ମୋଚିତ ହୋଇଅଛି । କବି ଯେତେବେଳେ କେଦାର, ଗୌରୀ, କୌଶଲ୍ୟା, ଚନ୍ଦ୍ରଭାଗା, ଗଙ୍ଗେଶ୍ୱର, ପାବଣ୍ଡ ପ୍ରଭୃତିଙ୍କୁ ଏ ଦେଶବାସୀଙ୍କ ସମକ୍ଷରେ ଉପସ୍ଥାପିତ କଲେ ସେତେବେଳେ ଏ ଦେଶବାସୀ କବିଙ୍କର ସୃଷ୍ଟି ସମ୍ଭାରକୁ ଶତମୁଖରେ ନିନ୍ଦା କରିବାରେ ତତ୍ପର ହୋଇ ପଡ଼ିଥିଲେ । କାରଣ କବିଙ୍କର କାବ୍ୟବର୍ଣ୍ଣିତ କଥାବସ୍ତୁକୁ କେବେହେଲେ ଏହି ଦେଶର ବା ଏହି ଜାତିର ପରମ୍ପରାରେ ଆଦର୍ଶ ଭାବରେ ଗ୍ରହଣ କରାଯାଇ ନପାରେ । କେଦାର ଏବଂ ଗୌରୀ, ଜଣେ ପ୍ରେମିକ ଏବଂ ଜଣେ ପ୍ରେମିକା—ସେମାନଙ୍କର ଜୀବନର ପରିଣତିକୁ ନେଇ କେଦାର ଗୌରୀ ପୀଠର କଳ୍ପନା ସତ୍ୟ ନହେଲେହେଁ କବିଙ୍କର କାବ୍ୟର ଆକର୍ଷଣ ଶକ୍ତି ଏପରି ପ୍ରବଳ ଥିଲା ଯେ, ଲୋକେ ତାହାକୁ ବିଶ୍ୱାସ କରିଯାଇଥିଲେ । ଏହି କାବ୍ୟର କଥାବସ୍ତୁରେ ଏ ଜାତିର ଏପରି କୌଣସି ଗୁରୁତର ଅପଖ୍ୟାତି ପ୍ରକାଶ ପାଇନଥିଲା, ଯାହା ଫଳରେ କି କବିଙ୍କୁ ପାଠକମାନେ ଯଥେଷ୍ଟ ନିନ୍ଦା କରିଥାଆନ୍ତେ ।

ସୁନ୍ଦରୀ ଚନ୍ଦ୍ରଭାଗାଙ୍କ ପ୍ରତି ଆକୃଷ୍ଟ ହୋଇ ସୂର୍ଯ୍ୟଦେବ ଯେପରି ଭାବରେ ତାଙ୍କର ପ୍ରୀତି ନିବେଦନ କରିଛନ୍ତି ତାହା କେତେକ ପାଠକଙ୍କ ଚକ୍ଷୁରେ ସମୀଚୀନ ମନେ ହୋଇନାହିଁ । କେବଳ ସେତିକି ନୁହେଁ, ଯେତେବେଳେ ପାଠକମାନେ ପାଠ କରିଛନ୍ତି ଯେ ସୁମନ୍ତ୍ୟ ମହର୍ଷିଙ୍କ ଅଭିଶାପ ଫଳରେ କୋଣାର୍କ ମନ୍ଦିର ଭଳି ଏଜାତିର ଏକ ଅମର ଶିଳ୍ପକଳା ଭାଙ୍ଗି ପଡ଼ିଲା ସେତେବେଳେ ଏଜାତିର ବହୁ ପାଠକ କବିଙ୍କ ବିବେଚନା ବିରୁଦ୍ଧରେ ସ୍ୱର ଉତ୍ତୋଳନ କରିଛନ୍ତି ।

ପିତାଙ୍କ ମସ୍ତକରୁ ଜୈବମଣି ଅପହରଣ କରି ରାଜବାଳା ନନ୍ଦକା ମ୍ଲେଚ୍ଛରାଜଙ୍କ ପ୍ରଣୟ ପ୍ରାର୍ଥନା କରିବା ଉତ୍କଳର ରାଜବଂଶ ପ୍ରତି ଏକ ନିନ୍ଦାର କଥା । ପାଠକମାନଙ୍କର ଆପତ୍ତି ଏ ବିଷୟରେ ମଧ୍ୟ କମ୍ ହୋଇନାହିଁ । ନନ୍ଦକାଙ୍କୁ ଉତ୍କଳର ରାଜକନ୍ୟା ଭାବରେ ଗ୍ରହଣ କରିବା ପାଠକମାନଙ୍କ ପକ୍ଷରେ ଏକ ଗୁରୁତର ବିଭ୍ରାଟ ।

କବିବର ରାଧାନାଥଙ୍କର କାବ୍ୟଗ୍ରନ୍ଥକୁ ପାଠ କରି ପାଠକମାନେ ସେମାନଙ୍କର ରୁଚି ଅନୁସାରେ ଯେଉଁ ପ୍ରକାର ମତ ପ୍ରକାଶ କରିଥିଲେ ତାହା କବିଙ୍କର ନିନ୍ଦାଗାନ ବ୍ୟତୀତ ଅନ୍ୟ କିଛି ନୁହେଁ । ପାଠକମାନଙ୍କର ଏହି ନିନ୍ଦାଗାନ ଚରମସୀମାରେ ଉପନୀତ ହୋଇଛି ଯେତେବେଳେ କବିଙ୍କ ଲେଖନୀରୁ ପାର୍ବତୀ କାବ୍ୟର ପ୍ରଥମ ଅଂଶ ପ୍ରକାଶ ପାଇଛି । ପିତା ଏବଂ କନ୍ୟାର ପ୍ରଣୟ କାହାଣୀ, ତାହା ପୁଣି ଉତ୍କଳର ପବିତ୍ର ରାଜବଂଶରେ ଘଟିଛି—ଏ ବିଷୟକୁ ଏ ଦେଶରେ ଏକଦେଶଦର୍ଶୀ ସମାଲୋଚକମାନେ ସହନ୍ତେ କିପରି ? ସେମାନେ କବିଙ୍କୁ ଯଥେଚ୍ଛା ନିନ୍ଦା କରିବାକୁ ପଶ୍ଚାତ୍ପଦ ହୋଇ ନାହାନ୍ତି ।

କେବଳ ଏତିକି ନୁହେଁ, କବିବର ରାଧାନାଥଙ୍କର ଅନ୍ୟାନ୍ୟ ଅନେକ କାବ୍ୟ କବିତାରେ ମଧ୍ୟ ପାଠକ ତଥା ସମାଲୋଚକମାନେ ତ୍ରୁଟି ବାଛୁଛନ୍ତି । କବିବର ରାଧାନାଥ ଏଥିପାଇଁ ପ୍ରକୃତ ପକ୍ଷରେ ନିନ୍ଦିତ ହେବାର କଥା କି ନୁହେଁ ସେ ବିଷୟରେ ତାଙ୍କର ପରବର୍ତ୍ତୀକାଳର ବହୁ ଆଲୋଚକ ଆଲୋଚନା କରିଅଛନ୍ତି । ତାଙ୍କ କାବ୍ୟରଚନା କୌଶଳର ସାରମର୍ମ ନଜାଣି ଯେଉଁମାନେ ତାଙ୍କ ପ୍ରତି ଆକ୍ଷେପ କରିଅଛନ୍ତି ସେମାନେ ଯଥାର୍ଥରେ ତାଙ୍କ ପ୍ରତି ଅନ୍ୟାୟ କରିଛନ୍ତି ବୋଲି କୁହାଯାଇ ପାରେ ।

ଓଡ଼ିଆ ସାହିତ୍ୟରେ ସାରଳାଦାସଙ୍କ ଲେଖନୀରୁ ଯେଉଁ ଅମର ସୃଷ୍ଟି ଜନ୍ମନେଇଥିଲା ତାହା ମୁଖ୍ୟତଃ ପୌରାଣିକ ପରଂପରାଶ୍ରୟୀ । ସାରଳାଦାସଙ୍କର ମହାଭାରତ, ଚଣ୍ଡୀପୁରାଣ ଓ ବିଲଙ୍କା ରାମାୟଣ

ଓଡ଼ିଆ ସାହିତ୍ୟର ଆଦ୍ୟ ଅବସ୍ଥାର ଯଥାର୍ଥ ରୂପ ପ୍ରକଟନ କଲେହେଁ ତହିଁରେ ଆପତ୍ତି କରିବାର ବିଷୟ ନାହିଁ ବୋଲି କୁହାଯାଇ ପାରିବ ନାହିଁ । ଏଥିରେ ପୌରାଣିକ ଚରିତ୍ରଗୁଡ଼ିକୁ ଯେପରି ଭାବରେ ଚିତ୍ରିତ କରାଯାଇଅଛି ତାହା କେବେହେଲେ ଉନ୍ନତ ରୁଚିର ପରିପୂରକ ବୋଲି କୁହାଯାଇ ପାରିବ ନାହିଁ । ତଥାପି ଏଥିପାଇଁ ଏ ଦେଶର ପାଠକମାନେ ଆପତ୍ତି କରି ନାହାନ୍ତି । କାରଣ ସାରଳା ଦାସଙ୍କ ସୃଷ୍ଟି ପୁରାଣ ପର୍ଯ୍ୟାୟଭୁକ୍ତ । ସେଥିରେ ଲୌକିକତାର ପରିସର ସବୁବେଳେ ଅଲୌକିକତା ଦ୍ୱାରା ପ୍ରଭାବିତ ।

ସାରଳାଦାସଙ୍କ ପରେ ବୈଷ୍ଣବ ସାହିତ୍ୟରେ ସେହିପରି ଅଲୌକିକ ଘଟଣା ବର୍ଣ୍ଣନା ତଥ ପ୍ରେମଚରିତ୍ର ଉଦ୍‌ଭଟ ବର୍ଣ୍ଣନା ପାଠକମାନଙ୍କ ଶାନ୍ତିକୁ ବିକ୍ଷୁବ୍ଧ କରିନାହିଁ । କାରଣ ଭକ୍ତିସାହିତ୍ୟ ନାମରେ ତାହା ଅଲୌକିକ ପରିସରରେ ବ୍ୟାପ୍ତ ।

ମଧ୍ୟଯୁଗୀୟ କାବ୍ୟରେ କାଳ୍ପନିକତା ଏତେ ସ୍ତରକୁ ଉନ୍ନୀତ ହୋଇଥିଲା ଯେ ତହିଁରେ ପାଠକମାନେ ରସଗ୍ରାହିର୍ଯ୍ୟ ଅନୁଭବ କରି ଆନନ୍ଦ ଲାଭ କରିଥିଲେ । ମଧ୍ୟଯୁଗୀୟ କାବ୍ୟସାହିତ୍ୟରେ ଥିବା କେଳିଗୃହ ବର୍ଣ୍ଣନା ବହୁ ପାଠକଙ୍କର ରୁଚି ଅନୁସାରେ ଅଶ୍ଳୀଳ ହେଲେହେଁ ତାହା କାବ୍ୟାଦର୍ଶ ଅନୁସାରେ ଗର୍ହିତ ନୁହେଁ ବୋଲି ମତ ପ୍ରକାଶ ପାଇଲା ।

କବିବର ରାଧାନାଥ ଯେତେବେଳେ କାବ୍ୟ ରଚନା କରିବାକୁ ଲେଖନୀ ଧାରଣ କଲେ ସେତେବେଳେ ସେ ଯେ ଓଡ଼ିଆ ସାହିତ୍ୟର ପରମ୍ପରା ବିଷୟରେ ଅଜ୍ଞ ଥିଲେ, ଏକଥା କୁହାଯାଇ ନପାରେ । ତାଙ୍କର ପଠନ ସ୍ପୃହା ଏପରି ପ୍ରବଳ ଥିଲା ଯେ, ସେ ବହୁଭାଷାରେ ଥିବା ବହୁଗ୍ରନ୍ଥ ପାଠ କରି ପ୍ରଭୂତ ଜ୍ଞାନ ଅର୍ଜନ କରିଥିଲେ । ଆଧୁନିକ ଶିକ୍ଷାରେ ଶିକ୍ଷିତ ରାଧାନାଥ ପୁରାତନ ରୀତିକୁ ପରିହାର କରି ଓଡ଼ିଆରେ ନୂତନ ସାହିତ୍ୟ ସୃଷ୍ଟି କରି ଏକ ନୂତନ ଯୁଗର ସୂତ୍ରପାତ କରିବା ଲାଗି ମନପ୍ରାଣ ଢାଳି ଦେଇଥିଲେ ।

ଓଡ଼ିଆ ସାହିତ୍ୟରେ ଏହି ନୂତନ ଯୁଗର ଆବାହନ ଭାବରେ କବିବର ରାଧାନାଥ ଯେତେବେଳେ ସାହିତ୍ୟ ସାଧନା କରିବାକୁ ଆରମ୍ଭ କରିଥିଲେ ସେତେବେଳେ ଭୂଦେବ ମୁଖୋପାଧ୍ୟାୟଙ୍କ ସହିତ ତାଙ୍କର ସାକ୍ଷାତ ଓ ସାହିତ୍ୟ ଆଲୋଚନା ତାଙ୍କୁ ଯଥେଷ୍ଟ ଅନୁପ୍ରାଣିତ କରିଥିଲା । ଭୂଦେବ ମୁଖୋପାଧ୍ୟାୟ ତାଙ୍କୁ "ପୁରୁଣା ସ୍ଥାନରେ ନୂଆ" ସୃଷ୍ଟି କରିବାକୁ ଯେଉଁ ଉପଦେଶ ଦେଲେ ତାହା କବିବର ରାଧାନାଥଙ୍କର ଚିନ୍ତାବୃତ୍ତିକୁ ଦେଶ କାଳ ଓ ପାତ୍ର ବିବେଚନାରେ ସୁଦୂର ପ୍ରସାରି କରିଦେଲା । ତେଣୁ ସେ ଚେଷ୍ଟାକଲେ ଏ ଦେଶର ସାହିତ୍ୟକୁ ଯେତେଦୂର ସମ୍ଭବ ପାଶ୍ଚାତ୍ୟ ଭିତ୍ତିରେ ଉପସ୍ଥାପିତ କରିବା ପାଇଁ । ପାଶ୍ଚାତ୍ୟ ସାହିତ୍ୟର ବହୁ ବିଖ୍ୟାତ କଥାବସ୍ତୁକୁ ସେ ଆପଣାର କରିନେବା ପାଇଁ ଚେଷ୍ଟା କଲେ । ସେ ଦେଶର ନାୟକନାୟିକାଙ୍କୁ ଆଣି ଏଦେଶର ମାଟି ଉପରେ ସେମାନଙ୍କର ଜୀବନ—ନାଟକ ଅଭିନୀତ କରିବାଲାଗି କବି ସ୍ଥାନଗତ ବୈଶିଷ୍ଟ୍ୟକୁ ଦେଶର ଛନ୍ଦାର ସହିତ ନିର୍ଣ୍ଣିତ କରିଥିଲେ । କେଦାର ଏବଂ ଗୌରୀ ନାମ ତାଙ୍କୁ ପିରାମସ୍ ଏବଂ ଥିସ୍‌ବୀ ନାମକୁ ରୋପଣ କରିବା ଲାଗି ସୁଯୋଗ ଦେଇଥିଲା । ତାଙ୍କର କାବ୍ୟବର୍ଣ୍ଣିତ କଥାବସ୍ତୁ ଏ ଦେଶର ପାଠକମାନଙ୍କୁ ଏପରି ଭାବରେ ଆକୃଷ୍ଟ କରିଥିଲା ଯେ, ସେହି ଅନୁସାରେ କେଦାରଗୌରୀ ପୀଠର ଏକ ନୂତନ ପରମ୍ପରା ସୃଷ୍ଟି ହେଲା । ଏଦେଶର ଲୋକମାନେ ରାଧାନାଥଙ୍କ ବର୍ଣ୍ଣିତ କାହାଣୀକୁ କେଦାରଗୌରୀ ପୀଠର କାହାଣୀ ଭାବରେ ଗ୍ରହଣ କରିନେଲେ । ପାଶ୍ଚାତ୍ୟ କଥାବସ୍ତୁକୁ କବିବର ରାଧାନାଥ ଯେପରି ଭାବରେ ଏଠାରେ ସମନ୍ୱିତ କରିଅଛନ୍ତି ତାହା ଯଥାର୍ଥରେ ତାଙ୍କର ଅନନ୍ୟ ସାଧାରଣ କବି ପ୍ରତିଭାର ଯଥାର୍ଥ ଉଦାହରଣ ।

କବି କିପରି ଭାବରେ ବିଦେଶୀ କଥାବସ୍ତୁ ଗ୍ରହଣ କରି ତାଙ୍କର କାବ୍ୟଗୁଡ଼ିକ ରଚନା କରିଅଛନ୍ତି ତାହା କାବ୍ୟଗୁଡ଼ିକର ଆଲୋଚନା ପ୍ରସଙ୍ଗରେ ଦେଖାଇ ଦିଆଯାଇଅଛି । ସେ ବିଷୟରେ ଏଠାରେ ଆଲୋଚନା ନିଷ୍ପ୍ରୟୋଜନ ।

କବି ଯେଉଁ ବିଦେଶୀ କଥାବସ୍ତୁଗୁଡ଼ିକ ତାଙ୍କର କାବ୍ୟନିର୍ମିତି ଗ୍ରହଣ କରିଅଛନ୍ତି ସେଗୁଡ଼ିକୁ ଯଦି ସେ [illegible] ସେହିପରି କାବ୍ୟରେ ସ୍ଥାନ ଦେଇଥାଆନ୍ତେ ତେବେ କବିବର ରାଧାନାଥଙ୍କୁ ଜଣେ ଅନୁବାଦକ ଭାବରେ ଗ୍ରହଣ କରାଯାଇଥାଆନ୍ତା । ମାତ୍ର ସେ ସେହି କଥାବସ୍ତୁଗୁଡ଼ିକୁ ଉପସ୍ଥାପିତ କରିବା ସମୟରେ ଯେପରି ଭାବରେ ବିଚାରଶକ୍ତି ପ୍ରଦର୍ଶନ କରିଅଛନ୍ତି ତହିଁରୁ ତାଙ୍କର ମୌଳିକ ଚିନ୍ତାଧାରାର ଯଥେଷ୍ଟ ପରିଚୟ ମିଳିଅଛି । ଗ୍ରୀକ୍ ପୁରାଣର କଥାବସ୍ତୁକୁ ଅବଲମ୍ବନ କରି ଯେଉଁ କେତେକ ଇଂରେଜ କବି କବିତା ରଚନା କରିଅଛନ୍ତି ସେମାନଙ୍କର ରଚନା ଅପେକ୍ଷା କବିବର ରାଧାନାଥଙ୍କର ରଚନା ଅନେକାଂଶରେ ବୈଶିଷ୍ଟ୍ୟ ପ୍ରକାଶ କରିଅଛି । ଆଟଲାଣ୍ଟାରେସ୍ କଥାବସ୍ତୁକୁ ଅବଲମ୍ବନ କରି ଇଂରେଜ କବି ଉଇଲିୟମ୍ ମରିସ୍ ଯେଉଁ କବିତା ରଚନା କରିଛନ୍ତି ତାହା ଅପେକ୍ଷା ରାଧାନାଥଙ୍କର ଊଷା ଯଥେଷ୍ଟ ଉଚ୍ଚସ୍ତରୀୟ ହୋଇଅଛି ବୋଲି କୁହାଯାଇ ପାରେ ।

ପାଶ୍ଚାତ୍ୟ ସାହିତ୍ୟର କଥାବସ୍ତୁକୁ ଆହରଣ କରି ଏ ଦେଶର ପରଂପରା ସହିତ ତାହାକୁ ଜଡ଼ିତ କରି କାବ୍ୟ ରଚନା କରିବା ହେଉଛି କବିବର ରାଧାନାଥଙ୍କର ଅନ୍ୟ ଏକ ବିଶେଷତ୍ୱ । ଊଷା କାବ୍ୟର କଥାବସ୍ତୁକୁ ଊଷାମେଘ ଉପରେ ରୋପଣ କରି କାବ୍ୟର କଥାବସ୍ତୁର ପରିଣତିରେ ଅଭିଶପ୍ତା ତିଳୋତ୍ତମା ଉପାଖ୍ୟାନକୁ ମିଶାଇଦେବା ସାମାନ୍ୟ କବିପ୍ରତିଭାର ନିଦର୍ଶନ ନୁହେଁ । ପାର୍ବତୀ କାବ୍ୟରେ କବି ନିଜର ଚିନ୍ତାଧାରାକୁ ଏହି ଦୃଷ୍ଟିରୁ ଯଥେଷ୍ଟ ବ୍ୟାପକ କ୍ଷେତ୍ରରେ ପ୍ରସାରିତ କରିଅଛନ୍ତି । ଗ୍ରୀକ୍ ପୁରାଣର କଥାବସ୍ତୁରେ ବା ଆଗାମେମନନ୍ ନାଟକର କଥାବସ୍ତୁରେ ଆଗାମେମନନ୍‌ଙ୍କର ମୃତ୍ୟୁ ଯେପରି ଭାବରେ ବର୍ଣ୍ଣିତ ହୋଇଅଛି ପାର୍ବତୀ କାବ୍ୟରେ ଗଙ୍ଗେଶ୍ୱରଙ୍କର ମୃତ୍ୟୁ ସେପରି ଭାବରେ ଘଟିନାହିଁ । କବିବର ରାଧାନାଥ ମାଦଳା ପାଞ୍ଜିରେ ଥିବା ବିବରଣୀକୁ ପାଶ୍ଚାତ୍ୟ କଥାବସ୍ତୁ ସହିତ ଯେପରି ଭାବରେ ସମନ୍ୱିତ କରିଅଛନ୍ତି ତାହା ତାଙ୍କର ବୈଶିଷ୍ଟ୍ୟ ।

ମହାଯାତ୍ରାରେ କବି ମୁଖ୍ୟତଃ ଭାରତୀୟ ପରଂପରାର କଥାବସ୍ତୁ ଗ୍ରହଣ କରିଥିଲେହେଁ ପ୍ରସଙ୍ଗକ୍ରମରେ ପାଶ୍ଚାତ୍ୟ ସାହିତ୍ୟର ବହୁ ବିଷୟ ଏପରି ଭାବରେ ସମନ୍ୱିତ କରିଅଛନ୍ତି ଯେ, ତାହା କାବ୍ୟର ମର୍ଯ୍ୟାଦା ବୃଦ୍ଧିରେ ସହାୟକ ହୋଇଅଛି ।

ଏଦେଶରେ ଇଂରେଜ ରାଜତ୍ୱ ପ୍ରତିଷ୍ଠିତ ହେବା ପରେ ଏ ଦେଶବାସୀ ପାଶ୍ଚାତ୍ୟ ଶିକ୍ଷା ଓ ସଂସ୍କୃତି ପ୍ରତି ବିଶେଷ ଆକୃଷ୍ଟ ହୋଇଥିଲେ । ଦେଶ ବିଦେଶ ମଧ୍ୟରେ ଭାବର ଆଦାନ ପ୍ରଦାନ ନିମନ୍ତେ ଅନୁକୂଳ ପରିସ୍ଥିତି ସୃଷ୍ଟି ହୋଇଥିଲା । ପାଶ୍ଚାତ୍ୟ ଚିନ୍ତାଧାରାକୁ ଏଦେଶର ଚିନ୍ତାଧାରା ସହିତ ସମନ୍ୱିତ କରିବାର ପ୍ରଚେଷ୍ଟା ଏହି ସମୟରେ ବିଶେଷ ଭାବରେ ଦେଖାଦେଇଥିଲା । କବିବର ରାଧାନାଥ ସାହିତ୍ୟ କ୍ଷେତ୍ରରେ ପାଶ୍ଚାତ୍ୟ ଚିନ୍ତାଧାରା ସହିତ ପ୍ରାଚ୍ୟ ଚିନ୍ତାଧାରାର ଅପୂର୍ବ ସମନ୍ୱୟ ସ୍ଥାପନ କରି ହେଥିପାଇଁ ଯଶସ୍ୱୀ ହୋଇଅଛନ୍ତି ।

ଯେଉଁମାନେ କବିବର ରାଧାନାଥଙ୍କର କାବ୍ୟ ପାଠ କରି ରାଧାନାଥ ଏକାନ୍ତର ପରଂପରାକୁ ନିନ୍ଦା କରିଥିଲେ ବୋଲି ମତ ପ୍ରଦାନ କରିଥିଲେ ସେମାନେ ରାଧାନାଥଙ୍କ ସାହିତ୍ୟର ଯଥାର୍ଥ ପ୍ରାଣକେନ୍ଦ୍ର ବିଷୟରେ ଅନଭିଜ୍ଞ ଥିଲେ । ସେମାନେ ଯଦି ରାଧାନାଥଙ୍କର କାବ୍ୟଗଠନ କୌଶଳକୁ ଧରି ପାରିଥାଆନ୍ତେ ତେବେ ସେମାନେ କେବେହେଲେ ତାଙ୍କୁ ନିନ୍ଦା କରିବାକୁ ଉଚିତ ମନେକରି ନଥାନ୍ତେ ।

କବିବର ରାଧାନାଥଙ୍କ ସାହିତ୍ୟରେ ଯେଉଁ ନୂତନତ୍ୱ ପରିଲକ୍ଷିତ ହୋଇଥାଏ, ତାହା ବହୁପରିମାଣରେ ପ୍ରାଚ୍ୟ-ପାଶ୍ଚାତ୍ୟ ଚିନ୍ତାଧାରାର ଅପୂର୍ବ ସମ୍ମିଶ୍ରଣର ଫଳ ବୋଲି କୁହାଯାଇପାରେ । କବିବର ରାଧାନାଥ ଓଡ଼ିଆ ସାହିତ୍ୟସିନ୍ଧୁରେ ଯେଉଁ ନବତରଙ୍ଗର ଆଲୋଡ଼ନ ସୃଷ୍ଟି କରିଥିଲେ ତାହା ବାସ୍ତବରେ ଆସିଥିଲା ସାତସମୁଦ୍ର ଆରପାରିରୁ ସେ ତରଙ୍ଗ ଯେତେବେଳେ ଏ ଦେଶର ବେଳାଭୂମିରେ ଆସି ମଥା ପିଟିଲା ସେତେବେଳେ ଦର୍ଶକମାନେ ତାର ସୌନ୍ଦର୍ଯ୍ୟରେ ଯେତିକି

ମୁଗ୍ଧ ହୋଇଥିଲେ ସେତିକ ଆତ୍ମଗ୍ଲାନି ଅନୁଭବ କରିଥିଲେ । ଯେଉଁମାନେ ସେ ତରଙ୍ଗର ସୌନ୍ଦର୍ଯ୍ୟରେ ମୁଗ୍ଧ ହୋଇଥିଲେ ସେମାନଙ୍କ ସୌନ୍ଦର୍ଯ୍ୟାନୁଭୂତି ଯଥେଷ୍ଟ ଥିଲା; ମାତ୍ର ଯେଉଁମାନେ ଆତ୍ମଗ୍ଲାନି ଅନୁଭବ କରିଥିଲେ ସେମାନଙ୍କର ସୌନ୍ଦର୍ଯ୍ୟାନୁଭୂତି ଯଥେଷ୍ଟ ଭାବରେ ଥିଲା ବୋଲି କୁହାଯାଇ ନପାରେ ।



# ପ୍ରକୃତିର ରୁଚିରୁ ଆଲେଖ୍ୟ-ଶାଳିକା

କବିବର ରାଧାନାଥ ତାଙ୍କ କାବ୍ୟରେ ଉତ୍କଳକୁ ପ୍ରକୃତିର ରୁଚିରୁ ଆଲେଖ୍ୟ-ଶାଳିକା ଭାବରେ ବର୍ଣ୍ଣନା କରିଅଛନ୍ତି । ଉତ୍କଳ ଯେପରି ପ୍ରକୃତିର ରୁଚିରୁ ଆଲେଖ୍ୟ-ଶାଳିକା, କବିବର ରାଧାନାଥଙ୍କର କାବ୍ୟସମୂହ ସେହିପରି ଉତ୍କଳ ତଥା ଭାରତର ପ୍ରକୃତିବର୍ଣ୍ଣନାର ଆଲେଖ୍ୟ-ଶାଳିକା ବୋଲି କହିଲେ ଅତ୍ୟୁକ୍ତି ହେବ ନାହିଁ ।

କବିବର ରାଧାନାଥଙ୍କ ପୂର୍ବରୁ ଓଡ଼ିଆ ସାହିତ୍ୟରେ ପ୍ରକୃତି ଚିତ୍ରର ଯେ ଅଭାବ ଥିଲା ଏକଥା କୁହାଯାଇନାହିଁ । ମାତ୍ର କବିବର ରାଧାନାଥ ଯେପରି ଭାବରେ ପ୍ରକୃତିକୁ ରୂପଦାନ କଲେ ତାହା ସମ୍ପୂର୍ଣ୍ଣ ନୂତନ ଏବଂ ଆଧୁନିକ ଓଡ଼ିଆ ସାହିତ୍ୟରେ ଏହା କବିବର ରାଧାନାଥଙ୍କର ଅନ୍ୟଏକ ବିଶେଷତ୍ୱ । ସାରଳାଦାସଙ୍କଠାରୁ ଆରମ୍ଭ-କରି କବିସୂର୍ଯ୍ୟଙ୍କ ପର୍ଯ୍ୟନ୍ତ କବିମାନେ ଓଡ଼ିଆ ସାହିତ୍ୟରେ ପ୍ରକୃତିକୁ ଯେପରି ଭାବରେ ଚିତ୍ରଣ କରିଅଛନ୍ତି ତହିଁରେ କେବଳ ପ୍ରକୃତିର ବାହାର ରୂପଟି ପ୍ରକାଶ ପାଇଥାଏ । ପ୍ରକୃତିର ଭିତର ରୂପଟି ଆଧୁନିକ ଓଡ଼ିଆ ସାହିତ୍ୟର ଉନ୍ମେଷକାଳ ପର୍ଯ୍ୟନ୍ତ ପ୍ରକୃଷ୍ଟ ଭାବରେ ପ୍ରକାଶ ପାଇ ନଥିଲା । କାବ୍ୟଯୁଗରେ କବିମାନେ ବହୁସ୍ଥଳରେ ପ୍ରଭାତ, ସନ୍ଧ୍ୟା, ଋତୁ, ରାତି, ବର୍ଷା, ଶୀତ ପ୍ରଭୃତି ବର୍ଣ୍ଣନା କରିଅଛନ୍ତି । ସେହି ବର୍ଣ୍ଣନାଗୁଡ଼ିକ କାବ୍ୟର କଥାବସ୍ତୁରେ ପରିବେଶ ସୃଷ୍ଟି କରିବା ନିମନ୍ତେ ଉଦ୍ଦିଷ୍ଟ । ଭକ୍ତକବି ଦୀନକୃଷ୍ଣ ଦାସ ବା ଭକ୍ତଚରଣ ଦାସଙ୍କର କାବ୍ୟରେ ପ୍ରଭାତ ବର୍ଣ୍ଣନାର ଏକରୂପତା ପରିଦୃଷ୍ଟ ହୋଇଥାଏ । କବିସମ୍ରାଟ ଉପେନ୍ଦ୍ରଭଞ୍ଜଙ୍କର କାବ୍ୟରେ ଉଦ୍ୟାନ ବର୍ଣ୍ଣନା, ସରୋବର ବର୍ଣ୍ଣନା, ସନ୍ଧ୍ୟା ବା ନଗରବର୍ଣ୍ଣନା ଆଡ଼ମ୍ବରପୂର୍ଣ୍ଣ ଭାବରେ ହୋଇଥିବାର ଦେଖାଯାଏ । କବିବର ରାଧାନାଥ ଯେତେବେଳେ ଓଡ଼ିଆ କାବ୍ୟଧାରାକୁ ଏକ ନୂତନ ରୂପ

ଭୂଦାନ କରିବା ପାଇଁ ନୈତିକ ସୂଚନା ଦେଲେ, ସେତେବେଳେ ସେ ବହିଃପ୍ରକୃତି ସହିତ ଅନ୍ତଃପ୍ରକୃତିର ସମ୍ବନ୍ଧ ସମ୍ପାଦନରେ ବ୍ୟସ୍ତ ହେଲେ । ତାଙ୍କର ପ୍ରଦର୍ଶିତ ମାର୍ଗରେ ତାଙ୍କର ସମସାମୟିକ ବହୁ କବି ଅଗ୍ରସର ହୋଇ ନିଜ ନିଜର ଦାର୍ଶନିକ ରୁଚିରୁ ପ୍ରଦର୍ଶନ କରିବା ସୁଯୋଗ ଲାଭ କଲେ

ଉକ୍ତ ଦିଗରେ କବିବର ରାଧାନାଥଙ୍କର ଦକ୍ଷତା ତାଙ୍କର ପ୍ରକୃତି ପ୍ରତି ଗଭୀର ମମତାର ପ୍ରମାଣ ଦେଇଥାଏ । ରାଧାନାଥଙ୍କର ଜୀବନ ଚରିତ ଅନୁଧ୍ୟାନ କଲେ ଜଣାଯାଏ ଯେ, ବାଲ୍ୟକାଳରୁ ତାଙ୍କ ଜୀବନର ଶେଷଦଶା ପର୍ଯ୍ୟନ୍ତ ତାଙ୍କ ଅନ୍ତରରେ ପ୍ରକୃତି ପ୍ରତି ଗଭୀର ଆସକ୍ତି ରହିଥିଲା । ତାଙ୍କ ଅନ୍ତରରେ ପ୍ରକୃତି ପ୍ରେମପ୍ରବଣତା ଜାତ ହେବା ଲାଗି ତାଙ୍କର ବାଲ୍ୟକାଳରେ ଅନୁକୂଳ ପରିସ୍ଥିତି ସୃଷ୍ଟି ହୋଇଥିଲା ବୋଲି କୁହାଯାଇପାରେ । ତାଙ୍କ ଜୀବନର ଗୋଟିଏ ଘଟଣା ଏଠାରେ ଉଦ୍ଧାର କଲେ ତାଙ୍କର ଏହି ଆସକ୍ତି ବିଷୟରେ ଧାରଣା ମିଳିପାରିବ ।

"୫/୬ ବର୍ଷ ବୟସରୁ ବାଳକ ରାଧାନାଥଙ୍କ ହୃଦୟରେ ଅସାଧାରଣ ମାତୃଭକ୍ତିର ସଞ୍ଚାର ହୋଇଥିଲା । ଏତେ ଅଳ୍ପ ବୟସରେ ତାଙ୍କରି ଗତପ୍ରାଣା ଜନନୀଙ୍କ ଶବକୁ ପ୍ରତିବାସୀମାନେ ଯେତେବେଳେ 'ରାମନାମ ସତ୍ୟ ହେ' ଘୋଷଣା ପୂର୍ବକ ଶ୍ମଶାନଭୂମିକୁ ନେଇ ଯାଉଥିଲେ, ସେତେବେଳେ ମାତୃଭକ୍ତ ବାଳକ ବ୍ୟାକୁଳ ଭାବରେ କ୍ରନ୍ଦନ କରି ଶବବାହୀ-ଶିବିକାର ପଛେ ପଛେ ଗୋଡ଼ାଇଲେ । ବାଳକର ଏପରି ଅବସ୍ଥା ଦେଖି ବୃଦ୍ଧା ପିତାମହୀ ବୁଝାଇ ଦେଲେ ଯେ ଆଜ ମାସକ ପରେ ମା ଫେରି ଆସିବେ । ଅମାୟିକ ଶିଶୁ ସରଳ ବିଶ୍ୱାସରେ ତାହା ବୁଝିଯାଇ ପ୍ରୋକ୍ତ ଲମ୍ବ ପୋଖରୀର ହୁଡ଼ାରେ ଭୂଇଁ ବରକୋଳି ଖାଇବାକୁ ଚାଲିଗଲେ । ଅଳ୍ପକ୍ଷଣ ପରେ ଶ୍ମଶାନରେ ସମୁଦ୍ଭୂତ ଚିତାଧୂମ ଏବଂ ଜ୍ୱଳନ୍ତ ଶିଖା ଦେଖି ଭୀତ ହୋଇ ଘରକୁ ଚାଲିଆସିଲେ । ମାସକ ପରେ ଆଉ ମାତାଙ୍କୁ ଫେରିବା ନଦେଖି ତାଙ୍କ ହୃଦୟରେ ଗଭୀର ଚିନ୍ତା ଓ ସନ୍ଦେହ ଉଦୟ ହେଲା ।

ଆଜ କାହିଁରେ ତାଙ୍କର ଶାନ୍ତି ହେଲା ନାହିଁ; କେବଳ ସେହି ଶବଦାହ ସ୍ଥାନକୁ ପୁନଃ ପୁନଃ ଯାଇ ସନ୍ନିହିତ ବଟବୃକ୍ଷ ମୂଳରେ ବସି ସ୍ନେହମୟୀ ଜନନୀଙ୍କ ଶରୀରର ଭସ୍ମରାଶି ଦର୍ଶନ କରି ନୀରବରେ ଅଶ୍ରୁ ବିସର୍ଜନ କରୁଥିଲେ । ସେହିଦିନଠାରୁ ତାହାଙ୍କ ଜୀବନରେ ଯେଉଁ ଉଦାସୀନ୍ୟ ଦେଖାଦେଲା, ତାହା ତାହାଙ୍କ ଜୀବନର ସହଚର ହେଲା ।" (୧)

କବିବର ରାଧାନାଥଙ୍କର ବାଲ୍ୟକାଳର ଏହି ଘଟଣାଟି ତାଙ୍କୁ ପ୍ରକୃତି ପ୍ରତି ବିଶେଷ ଭାବରେ ଆକୃଷ୍ଟ କରିବାରେ ସହାୟକ ହୋଇଅଛି । ବାଳକ ରାଧାନାଥ ଯେତେବେଳେ ସେହି ଶ୍ମଶାନର ବଟବୃକ୍ଷ ତଳେ ବସି ମାତୃସ୍ମୃତିରେ ଦୁଃଖିତ ଥାଆନ୍ତି ସେତେବେଳେ ସେସ୍ଥାନର ପ୍ରାକୃତିକ ଦୃଶ୍ୟ ତାଙ୍କ ଅନ୍ତର ଉପରେ ପ୍ରଭାବ ବିସ୍ତାର କରିବା ନିତାନ୍ତ ସ୍ୱାଭାବିକ । ଦିନ ଦିନ ଧରି ସେ ଏହିପରି ଭାବରେ ନିର୍ଜନ ଶ୍ମଶାନ ଭୂମିରେ ବସି ପ୍ରକୃତି ସହିତ ବିଶେଷ ଭାବରେ ପରିଚିତ ହେବାର ସୁଯୋଗ ପାଇଥିଲେ । କେବଳ ସେତିକ ନୁହେଁ, ତାଙ୍କର ଜନ୍ମଭୂମିର ପ୍ରାକୃତିକ ସୌନ୍ଦର୍ଯ୍ୟ ତାଙ୍କୁ କମ୍ ପରିମାଣରେ ପ୍ରଭାବିତ କରିନଥିଲା ।

ବାଲ୍ୟକାଳରୁ କବି କପରି ଭାବରେ ପ୍ରକୃତିର ସୌନ୍ଦର୍ଯ୍ୟ ପ୍ରତି ଆକୃଷ୍ଟ ହୋଇଥିଲେ ସେ ବିଷୟରେ ଜୀବନୀ ଲେଖକ ମଧ୍ୟ ଯଥେଷ୍ଟ ସୂଚନା ଦେଇଅଛନ୍ତି । ତାଙ୍କର ସୂଚନାର କେତେକାଂଶ ଏଠାରେ ଉଦ୍ଧାର କରାଯାଇପାରେ ।

"ପୂର୍ବଦିଗରୁ ଉଷାର କୁଙ୍କୁମରାଗ ଏବଂ ପଶ୍ଚିମଦିଗରୁ ସନ୍ଧ୍ୟାର ଆରକ୍ତ ରାଗରେ ରଞ୍ଜିତ ହୋଇ କେଦାରପୁର ଯେଉଁ ଉଦାର ଛବି ଧାରଣ କରେ, ତାହା ଭବୁକର ଅନୁଭବନୀୟ । ଏକଆଡ଼େ ଦିଗ୍‌ବଳୟ ବ୍ୟାପୀ କେଦାରିକା ସାଗର ଉପରେ ସୂର୍ଯ୍ୟୋଦୟ,

(୧) ରାଧାନାଥ ଜୀବନୀ—ପୃ. ୧୨-୧୩

ଅନ୍ୟଆଡ଼େ ସୁନୀଳ ଶୈଳପ୍ରାନ୍ତ ଉପରେ ସୂର୍ଯ୍ୟାସ୍ତ, ଏ ଦୃଶ୍ୟଟିରୁ କେଉଁଟି ଅବା କମନୀୟ ନୁହେଁ ? ସନ୍ଧ୍ୟାବେଳେ ଜଳାଶୟ କୂଳରେ ପକ୍ଷୀମାନଙ୍କର ଏମାଗମ ଆହୁରି ମନୋରମ । X X X ଟିକଏ ଦୂରକୁ ଗଲେ କାଂଶବାଂଶ ନଦୀ କୂଳରେ ମଧ୍ୟ ଏହି ଶୋଭା ଦେଖି ଦର୍ଶକର ହୃଦୟ ସରସ ହୁଏ । ଏହାର ଉଭୟ ପାର୍ଶ୍ୱସ୍ଥିତ ପୁଷ୍ପିତ ପଲାଶବନ ବସନ୍ତରେ ଦୂରରୁ ନୟନମନ ହରଣ କରେ । ବାଲ୍ୟକାଳରୁ ଏ ଦୃଶ୍ୟ ସନ୍ଦର୍ଶିତ ରାଧାନାଥ ସୁପରିଚିତ ହୋଇ ପ୍ରକୃତି ପ୍ରେମିକ ହୋଇଥିଲେ ।"(୧)

କବିବର ରାଧାନାଥଙ୍କର କାବ୍ୟ କବିତାରେ ଉତ୍କଳ ପ୍ରକୃତିର ରୂପ ଯେପରି ଭାବରେ ଉନ୍ମୋଚିତ ହୋଇଅଛି ତାହା ଅନନ୍ୟ-ସାଧାରଣ ବୋଲି କୁହାଯାଇପାରେ । କବିବର ରାଧାନାଥ ଯେତେବେଳେ ତାଙ୍କର କାବ୍ୟକବିତା ରଚନା କଲେ, ସେତେବେଳେ ଉତ୍କଳ ପ୍ରକୃତି ବିଷୟକ ପ୍ରତ୍ୟକ୍ଷଜ୍ଞାନ ତାଙ୍କର ବିଶେଷ ସହାୟକ ହୋଇଥିଲା । ସେ ଯେତେବେଳେ ଓଡ଼ିଶାର ଶିକ୍ଷାବିଭାଗରେ ପରିଦର୍ଶକ କର୍ମଚାରୀ ପଦକୁ ଉନ୍ନୀତ ହେଲେ ସେତେବେଳେ ସମଗ୍ର ଓଡ଼ିଶା ଗସ୍ତ କରିବାର ସୁଯୋଗ ପାଇଥିଲେ । ସେ ସମୟରେ ବର୍ତ୍ତମାନ ସମୟ ପରି ଯାନବାହନର ବିଶେଷ ସୁବିଧା ନଥିବାରୁ ଅଧିକାଂଶ ସ୍ଥାନକୁ ସେ ବଳଦଗାଡ଼ିରେ ବସି ଗସ୍ତ କରୁଥିଲେ । ସେ ଗସ୍ତରେ ଯିବା ସମୟରେ ସବୁବେଳେ ସଙ୍ଗରେ ଗୋଟିଏ ଟିପାଖାତା ରଖିଥିଲେ । ଯେଉଁ ଖାତାରେ ଗୋଟିଏ ପେନ୍‌ସିଲ୍ ଗୋଟିଏ ସୂତାରେ ବନ୍ଧା ହୋଇଥାଏ । ରାଧାନାଥ ବଳଦଗାଡ଼ିରେ ବସି ଯାଉଥିବା ସମୟରେ ବଳଦଗାଡ଼ିର ଗୃଳକକୁ ପ୍ରତ୍ୟେକ ସ୍ଥାନ, ବୃକ୍ଷ, ନଦୀ ବା ପାହାଡ଼ ପର୍ବତ ବିଷୟରେ ପ୍ରଶ୍ନ କରୁଥିଲେ । ସେସବୁ ବିଷୟକ ସବିଶେଷ ବିବରଣୀ ଏବଂ ପ୍ରଚଳିତ କିମ୍ବଦନ୍ତୀ ଯାହା ଶଗଡ଼ ଗୃଳକଠାରୁ ରାଧାନାଥ ଶୁଣୁଥିଲେ ତାହାକୁ ସଙ୍ଗେ ସଙ୍ଗେ ଟିପାଖାତାରେ ଲେଖି ରଖିଥିଲେ । କାବ୍ୟ କବିତା ରଚନା କରିବା ସମୟରେ

(୧) ରାଧାନାଥ ଜୀବନୀ—ପୃ. ୧୭

ସେହି ଟିପାଖାତାର ବିବରଣୀ ଅନୁସାରେ ସେ ପ୍ରକୃତ ଚିତ୍ରଣ ଲାଗି ଯଥେଷ୍ଟ ସୁଯୋଗ ପାଉଥିଲେ । ତାହା ନହେଲେ ଓଡ଼ିଶାର କେଉଁ ଅଞ୍ଚଳରେ ପୁନ୍ନାଗ ଗଛ ବେଶୀ ଦେଖାଯାଏ, କେଉଁ ଅଞ୍ଚଳରେ ନାଗେଶ୍ୱର, ମୁଚୁକୁନ୍ଦ ପ୍ରଭୃତି ଗଛ ଅଧିକ ପରିମାଣରେ ଦେଖାଯାଏ, କେଉଁ ଅଞ୍ଚଳରେ ଗୁଆଗଛରେ ପାନଲତା ମାଡ଼ିଥାଏ ଏବଂ କେଉଁ ଅଞ୍ଚଳରେ କେଉଁ ସମୟରେ କି କି ଫୁଲ ବା ଫଳ ଦେଖାଯାଏ ସେ ବିଷୟରେ ରାଧାନାଥ ଏତେ ପ୍ରାଞ୍ଜଳ ବର୍ଣ୍ଣନା ଦେଇପାରିନଥାନ୍ତେ । ତାଙ୍କର ପ୍ରକୃତି ବର୍ଣ୍ଣନା ପାଠକଲେ ମନେହୁଏ, ଯେପରି କବିବର ରାଧାନାଥ ସମଗ୍ର ଓଡ଼ିଶାର ଭୌଗୋଳିକ ଚିତ୍ର ଅଙ୍କନ କରିଅଛନ୍ତି ।

ଚନ୍ଦ୍ରଭାଗା କାବ୍ୟରେ କବି ପୁଷ୍ୟାଭିଷେକ ଉପଲକ୍ଷେ ଜଗନ୍ନାଥଙ୍କ ଦର୍ଶନକୁ ଆସିଥିବା ଦେବଦେବୀମାନଙ୍କର ବର୍ଣ୍ଣନା କରିଅଛନ୍ତି । ଓଡ଼ିଶାର ବିଭିନ୍ନ ସ୍ଥାନରୁ ଆସିଥିବା ଦେବଦେବୀମାନଙ୍କର ଅଧିଷ୍ଠାନ ସ୍ଥଳୀର ପ୍ରାକୃତିକ ଦୃଶ୍ୟର ବୈଶିଷ୍ଟ୍ୟ ସେ ପ୍ରକାଶ କରିଅଛନ୍ତି । ନନ୍ଦିକେଶ୍ୱରୀ କାବ୍ୟରେ କବି ଉତ୍କଳ ନରେଶଙ୍କ ପକ୍ଷରେ ଯୁଦ୍ଧ କରିବା ନିମନ୍ତେ ଉତ୍କଳର ବିଭିନ୍ନ ସ୍ଥାନରୁ ଆସିଥିବା ବୀରମାନଙ୍କ ବିଷୟ ବର୍ଣ୍ଣନା କରିଅଛନ୍ତି । ଏହି ପ୍ରସଙ୍ଗରେ ସେ ଉତ୍କଳର ବିଭିନ୍ନ ଅଞ୍ଚଳର ପ୍ରାକୃତିକ ଦୃଶ୍ୟର ବିଶେଷତ୍ୱ ସୂଚିତ କରିଅଛନ୍ତି । କବିଙ୍କର ଦୃଷ୍ଟି କେତେଦୂର ସୂକ୍ଷ୍ମ ତାହା ପ୍ରତ୍ୟେକ ସ୍ଥାନର ବର୍ଣ୍ଣନାରୁ ଜଣାଯାଇଥାଏ ।

"ନଆଳୀ ଯାକୁଞ୍ଜେ ପାଟଳି ପ୍ରସୂନ
କାମିଙ୍କି ତରଙ୍ଗେ ଯେସନ୍ତ କାମତୂଣ,
କୋଠଦେଶ ମଞ୍ଜୁ ପୁନ୍ନାଗ-କେଟରେ,
ମଠେ ଗତ ଯହିଁ କୁଶଭଦ୍ରା କରେ,
କୋଠଗଙ୍ଗ ଯହିଁ ବଦନ ବିଜନେ
ଧଉଳୀ ଦେଖଇ ଦୟା-ଦରପଣେ

ରଥାଙ୍ଗ ଉଡନ୍ତି ଯହିଁ କେଳିକଳା
ଚନ୍ଦନ ନିକୁଞ୍ଜେ କଜ୍ଜଳ କୁନ୍ତଳା,
ଅନ୍ଧାର ସିକତା କୂଳେ ତରଙ୍ଗିଳ
ସୁନ୍ଦର ରଙ୍ଗଣେ ସଦା ନିନ୍ଦୁଛ ।"

ଏହିପରି କେତେଗୋଟି ସ୍ଥାନ ବିଷୟରେ କବି ଯେଉଁ ପ୍ରାକୃତିକ ବୈଶିଷ୍ଟ୍ୟ ପ୍ରକାଶ କରିଅଛନ୍ତି, ତହିଁରେ ବିଶେଷ ଭାବରେ କବି ସୌନ୍ଦର୍ଯ୍ୟର ସନ୍ଧାନ କରିଅଛନ୍ତି । କବି ସୌନ୍ଦର୍ଯ୍ୟର ପୂଜାରୀ । ତେଣୁ ତାଙ୍କ କଳ୍ପନାରେ କାମୀ, କାମତନ୍ତ୍ର, କେଳିକଳା, କଜ୍ଜଳ କୁନ୍ତଳା ପ୍ରଭୃତି ବର୍ଣ୍ଣନା ସ୍ଥାନ ପାଇବାରେ ଅସ୍ୱାଭାବିକତା ନଥାଇପାରେ । ନନ୍ଦିକେଶ୍ୱରୀ କାବ୍ୟର କଳେବର ମଧ୍ୟରେ ଥିବା ପ୍ରକୃତିବର୍ଣ୍ଣନା କବିଙ୍କର ସ୍ୱାତନ୍ତ୍ର୍ୟର ଯଥାର୍ଥ ପରିଚୟ ଦେଇଅଛି ।

ସନ୍ଧ୍ୟାର ରୂପକାର ଭାବରେ କବିବର ରାଧାନାଥଙ୍କର ବୈଶିଷ୍ଟ୍ୟ ସ୍ୱୀକୃତି ଲାଭ କରିଅଛି । ନନ୍ଦିକେଶ୍ୱରୀ କାବ୍ୟରେ କବି ସନ୍ଧ୍ୟାବର୍ଣ୍ଣନାକୁ କେତେଦୂର ବାସ୍ତବ ଏବଂ ପ୍ରାଣସ୍ପର୍ଶୀ କରି-ଅଛନ୍ତି ତାହା ନିମ୍ନୋକ୍ତ ଉଦ୍ଧୃତିରୁ ସ୍ପଷ୍ଟଭାବରେ ଜଣାଯାଇଥାଏ ।

"ସ୍ୱଚ୍ଛ ସ୍ରୋତଜଳେ ପୀତ ରବି-ରୁଚି
ପଡ଼ି, ବୀଚିମାଳା ହଲୁଚି ଝଲୁଚି;
ଧୂମାକାରେ ଦୂରର ପର୍ବତର ଗ୍ରୁଣ୍ଡି,
ମାଡ଼ି ଆସୁଅଛି ଜଳସ୍ଥଳ ଗ୍ରାସି,
ରଥାଙ୍ଗୀ ଭାସଇ କାଠଯୋଡ଼ୀ-ପରେ
ଥରେ କାନ୍ଦେ, ଥରେ ଅନାଇ ମିତ୍ରରେ,
ପଟିଆ ଦହରୁ ପକ୍ଷୀ ଦଳେ ଦଳେ
ଉଡ଼ି ଆସୁଛନ୍ତି ନଭେ କୋଳାହଳେ;
ଗଉଡ଼େ ମଧୁରେ ମୁରଲୀ ବଜାଇ
ଟଠାରୁ ଗୋଠକୁ ଆଣୁଛନ୍ତି ଗାଈ,

ଗୃହ୍ମଁ ଗୃହ୍ମଁ ରବ ହେଲେ ଅସ୍ତମିତ
ଚଞ୍ଚୁ ମାଣା ହେଲ କୁଳୁମେ ଲୁଚିତ;
କେତେ ରୂପ ଧରୁଅଛୁ ଚକ୍ରବାଳ,
ଯୋଜାଉଛୁ ନାବ ନାବ ଇନ୍ଦ୍ରଜାଲ;
ରକ୍ତ, ପୀତ, ନୀଳେ ଚିତ୍ରକର ନଭ
ଭରିଅଛୁ ନାନାବର୍ଣ୍ଣେ ବର୍ଣ୍ଣୋତ୍ସବ;
ତ ଦନ୍ତେ ଏ ଫୁଟି ଗୋଧୂଳି-କୁନ୍ତଳେ
ଦେଖୁଅଛୁ ମୁଖ କାଠଯୋଡ଼-ଜଳେ,
ପର୍ବତ କନ୍ଦରୁ ବାହାରି ଅନ୍ଧାର
କ୍ରମେ ହରୁ କରୁଅଛୁ ଏକାକାର;
ଚଞ୍ଚଳେ ଘୋଟି ତମିର କାଳିମା
ଲିଭିଗଲ ଜଳସ୍ଥଳ ବ୍ୟୋମସୀମା ।"

କବିବର ରାଧାନାଥଙ୍କର ରଚନା ମଧ୍ୟରେ ଚିଲିକା କାବ୍ୟରେ ସନ୍ଧ୍ୟାବର୍ଣ୍ଣନା ସବୁଠାରୁ ଅଧିକ ଚିତ୍ତାକର୍ଷକ ହୋଇଅଛି । ଚିଲିକା କାବ୍ୟ କେବଳ ପ୍ରକୃତି ଉପରେ ଆଧାରିତ ହୋଇଥିବାରୁ ତହିଁରେ କବିଙ୍କର ବର୍ଣ୍ଣନାଶୈଳୀ ଅତ୍ୟନ୍ତ ମନୋମୁଗ୍ଧକର ହୋଇଥିବାର ପରିଲକ୍ଷିତ ହୋଇଅଛି ।

ପାର୍ବତୀ କାବ୍ୟରେ କବିଙ୍କର ପ୍ରକୃତି ବର୍ଣ୍ଣନା ଅତ୍ୟନ୍ତ ପ୍ରାଞ୍ଜଳ ଓ ମନୋରମ ହୋଇଥିବାର ଦେଖାଯାଏ । ଏହି କାବ୍ୟର ପ୍ରକୃତି ବର୍ଣ୍ଣନା କବିବର ରାଧାନାଥଙ୍କର ରୋମାଣ୍ଟିକ ଭାବଧାରାକୁ ଅତ୍ୟନ୍ତ ସୁନ୍ଦର ଭାବରେ ପ୍ରକାଶ କରିଅଛି । ଆଲୋଚକ ଅଧ୍ୟାପକ ନରେନ୍ଦ୍ରନାଥ ମିଶ୍ରଙ୍କ ଭାଷାରେ, "ସମଗ୍ର ଦେହର ରଜତ ଆସ୍ତରଣ ପୃଷ୍ଠପଟରେ ଦୂର ଦିଗ୍‌ବଳୟର ରେଖାଙ୍କିତ ତରୁଶ୍ରେଣୀ, ତାରକାଗୁମ୍ଫିତ ଆକାଶ, ତରଳ ଜ୍ୟୋତ୍ସ୍ନାର ଉଦାର ପରିବେଶ ଭିତରେ ଗୋଟିଏ ଚଟକ୍ଷେଇର କଳସଙ୍ଗୀତ ଶୁଣାଇବା ଅଥବା ଶ୍ରୀଖଣ୍ଡ ଶୈଳର

ପାରାବାରବାହୀ ମୃଦୁସମୀରଣରେ ଶ୍ରୀକ୍ଷେତ୍ର ଲଳନାର କପୋଳ ଅଳକର ମୃଦୁକମ୍ପନ ଦେଖାଇବା, ଅଥବା ଗାଢ଼ ଅନ୍ଧକାର ଭିତରେ ପ୍ରକୃତି ଦେହରୁ ଯବନିକାଟି ଗୁଡ଼ିପିବାର ଅନୁଭୂତି ବର୍ଣ୍ଣନା ଜଣେ ଶ୍ରେଷ୍ଠ ରୋମାଣ୍ଟିକ କବିଙ୍କ ବିନା ଆଉ କାହାପକ୍ଷରେ ସମ୍ଭବ ନୁହେଁ ।"(୧) ନୀଳାଚଳରେ ଦୋଳ ମହୋତ୍ସବ ବର୍ଣ୍ଣନା ପ୍ରସଙ୍ଗରେ କବି ବାସନ୍ତୀ ପ୍ରକୃତିର ଅମର ଆଲେଖ୍ୟ ଅଙ୍କନ କରିଅଛନ୍ତି । ବସନ୍ତର ମାଦକତା କବିଙ୍କ ଲେଖନୀରେ ଅତ୍ୟନ୍ତ ହୃଦ୍ୟ ହୋଇଅଛି । ଏହି ବର୍ଣ୍ଣନା ଶେଷାଂଶରେ କବି ଲେଖିଛନ୍ତି,

"ସମଗନ୍ଧି ପାଟେ — ହଂସ ହଂସୀ ପଦ୍ମ-
ଦଳରେ ଶଯ୍ୟାର ବୋଳ
କରୁଛନ୍ତି କଳ- — ନାଦେ ପ୍ରେମାଳାପ
ଲହରୀ-ଦୋଳାରେ ଦୋଳ ।
ଲଙ୍କା ଆମ୍ରକୁଞ୍ଜେ — ବିହରନ୍ତି ମୃଗୀ
କୃଷ୍ଣସାର ପ୍ରେମ ହେଳେ,
ପ୍ରଭୁ ଲୋକନାଥ- — ଅର୍ଦ୍ଧବୃତ ଶୁଭ୍ର-
ବାଳ ସ୍ତୂପାବଳୀ ଖୋଲେ ।
କପୋତ ଦମ୍ପତି — ପ୍ରେମ କି ସମ୍ପତ୍ତି
ରଟୁଛନ୍ତି ଚାଳବନ୍ଧୁ,
ଉଲ୍ଲାସେ କମ୍ପାଇ — ବସନ୍ତ-ରଚିତ
ଗଳେ ନବ ଇନ୍ଦ୍ରଧନୁ ।"

କଞ୍ଚୁକୀ ରାଜପ୍ରାସାଦ ଚୂଳରେ ଅପେକ୍ଷା କରି କରି ପରିଶେଷରେ ଯେତେବେଳେ ସେ ଆକାଶମାର୍ଗରେ ଆଗ୍ନେୟ ସଙ୍କେତ ଲକ୍ଷ କରିପାରୁଛି, ସେତେବେଳେ ସେ ଆନନ୍ଦରେ ଗଦ୍‌ଗଦ ହୋଇପଡ଼ୁଛି ଏବଂ ଆଗ୍ନେୟ ସଙ୍କେତ କେଉଁ ପଥଦେଇ ଆସିଅଛି ସେ ବିଷୟରେ ତାର ମନମଧ୍ୟରେ ଏକ ମାନଚିତ୍ର ଅଙ୍କିତ ହୋଇଯାଇଅଛି । କଞ୍ଚୁକୀର ଏହି ବର୍ଣ୍ଣନା

(୧) ଆଧୁନିକ ଓଡ଼ିଆ କାବ୍ୟଧାରା — ପୃ ୧୬୯

କବିବର ରାଧାନାଥଙ୍କର ‘ଚିଲିକା ଭୂଗୋଳ ଓ ଓଡ଼ିଶା-ପ୍ରକୃତି ଜ୍ଞାନର ଯଥାର୍ଥ ପରିଚାୟକ । କବି ଏହି ବର୍ଣ୍ଣନାକୁ ଏପରି ରସସିକ୍ତ କରିଅଛନ୍ତି ଯେ ଏହା ପାଠକର ଚିତ୍ତକୁ ଯଥେଷ୍ଟ ପ୍ରଭାବିତ କରିଥାଏ ।

ପ୍ରକୃତି ପ୍ରେମପ୍ରବଣ କବିଙ୍କର ଯଥାର୍ଥ ପରିଚୟ ମିଳିଅଛି ଚିଲିକା କାବ୍ୟରେ । କବି ଚିଲିକାର ସୌନ୍ଦର୍ଯ୍ୟ ବର୍ଣ୍ଣନା କରିବାକୁ ଯାଇ ସମଗ୍ର ଭାରତର ପ୍ରାକୃତିକ ଦୃଶ୍ୟବିଜ ସହିତ ଚିଲିକାର ପ୍ରାକୃତିକ ଦୃଶ୍ୟକୁ ତୁଳନା କରି ଚିଲିକାର ଉତ୍କର୍ଷ ପ୍ରତିପାଦନ କରିଅଛନ୍ତି । ଚିଲିକାହ୍ରଦ ଓ ତାର ପାର୍ଶ୍ୱବର୍ତ୍ତୀ ଅଞ୍ଚଳର ଶୋଭା ବର୍ଣ୍ଣନା କରିବାରେ କବି ଶତମୁଖ ହୋଇପଡ଼ିଛନ୍ତି । ଚିଲିକାର ଟଷ୍ଟି ମଧ୍ୟରେ ସନ୍ଧ୍ୟା ବର୍ଣ୍ଣନା କବିଙ୍କର ପ୍ରକୃତି ପ୍ରେମିକତା ତଥା ସୌନ୍ଦର୍ଯ୍ୟ ଗ୍ରାହକତାର ଏକ ସାର୍ଥକ ଉଦାହରଣ । ଭାଲେରି ପର୍ବତର ଶିଖର ଦେଶରେ ସ୍ୱର୍ଣ୍ଣସିଂହାସନ ସୃଷ୍ଟି କରି ସୂର୍ଯ୍ୟ ଯେତେବେଳେ ଢଳି ପଡ଼ିଲେ ସେତେବେଳେ ଚିଲିକା ବକ୍ଷରେ ଓ ତାର ପାର୍ଶ୍ୱଦେଶରେ ଯେଉଁ ଦୃଶ୍ୟ ସୃଷ୍ଟି ହେଲା ତାହା କବିବର ରାଧାନାଥଙ୍କ ଦୃଷ୍ଟିରେ ଅତ୍ୟନ୍ତ ପ୍ରାଞ୍ଜଳ ଭାବରେ ଦେଖାଦେଇଥିଲା । ସୂର୍ଯ୍ୟ ଅସ୍ତମିତ ହେବା ପରେ ପୂର୍ବାକାଶରେ ଚନ୍ଦ୍ର ଉଦିତ ହେବାର ବର୍ଣ୍ଣନା କବିଙ୍କ ସୌନ୍ଦର୍ଯ୍ୟପ୍ରେମୀ ଦୃଷ୍ଟିରେ ଅତ୍ୟନ୍ତ ହୃଦ୍ୟ ହୋଇଅଛି ।

“ଏଣେ କରେ ବୋଲି ଅମର ସରଣୀ,
ବିରାଜନ୍ତି ଚନ୍ଦ୍ରଚୂଡ଼-ଚୂଡ଼ାମଣି,
ତାରକିଏ ଦ୍ୱିଜ ତାରାପତି ପାଖେ,
ବେନଏ କରନ୍ତି ବିଜ୍ୟ ଅର୍ଦ୍ଧାକାଶେ,
ବାଳ-ଜ୍ୟୋତ୍ସ୍ନା ଯୋଗେ ଧୌତ ଗୌରଦଣ୍ଡ
ଭ୍ରମରଜ ମୁଖେ ବୋଲି ହେଲା ପରି,
ଯେଝା ରୂପ ଶୋଭା ବିପକ୍ଷଟେ ବସି
ଦେଖାନ୍ତି ଗରବେ ପ୍ରାଚୀ ପ୍ରାଚେତସୀ,

ତଥି ଲେଖେ ନୀଳ ପୂର୍ବାକାଶ, ପୁନଃ
ବାରୁଣୀ ଆକାଶ କୁଙ୍କୁମେ ଅରୁଣ,
ଅର୍ଦ୍ଧାଙ୍ଗ ଈଶ୍ୱର ଅର୍ଦ୍ଧାଙ୍ଗ ପାର୍ବତୀ
ପ୍ରାପ୍ତେ ଯେସନେ ଶିବ ବ୍ୟୋମର ମୂରତି
ଦିଗ୍‌ବିକାଶବ୍ୟାପି-ନୀଳ-ଜଳାରଣ୍ୟ
ରଞ୍ଜିଲା ଚନ୍ଦ୍ରମା ନିଜ ଶୁଭ୍ର ବର୍ଣ୍ଣେ ।”

କବିବର ରାଧାନାଥଙ୍କ ରଚନାର ଅନେକସ୍ଥଳରେ ଆକାଶର ଶୋଭା ବର୍ଣ୍ଣିତ ହୋଇଥିବାର ଦେଖାଯାଏ । କବି ବହୁସମୟରେ ଆକାଶରେ ତାରାମାନଙ୍କୁ ନିରୀକ୍ଷଣ କରି ଭାବନାରେ ମଗ୍ନ ହେଉଥିବାର ଜଣାଯାଏ । ସନ୍ଧ୍ୟାସମୟରେ କବି ଆକାଶର ଶୋଭାକୁ ତନ୍ନ ତନ୍ନ କରି ନିରୀକ୍ଷଣ କରିବା ତାଙ୍କ ପ୍ରକୃତି ବର୍ଣ୍ଣନାରୁ ଜଣାଯାଇଥାଏ । ତେଣୁ ତାଙ୍କ ଲେଖନୀରୁ “ତାରାଟିଏ ଫୁଟି ଗୋଧୂଳି-କୁନ୍ତଳେ, ଦେଖୁଅଛି ମୁଖ କାଠଯୋଡ଼ିଜଳେ” ବା “ତାରାଟିଏ ରାଜି ତାରା ପତି ପାଶେ ବେନିଏ କରନ୍ତି ରାଜ୍ୟ ଅର୍ଦ୍ଧାକାଶେ” ଭଳି ବର୍ଣ୍ଣନା ସହଜରେ ପ୍ରକାଶ ପାଇଅଛି । କବିବର ରାଧାନାଥ ରାତିରେ କିପରି ଆକାଶରେ ଥିବା ତାରା ପ୍ରତି ଲକ୍ଷ୍ୟ ରଖୁଥିଲେ ତାହାର ଏକ ବିବରଣୀ ରାଧାନାଥ-ଜୀବନୀରୁ ମିଳିଥାଏ । “ଦିନେ ମୁଁ ଉଦ୍ୟାନ ମଧ୍ୟସ୍ଥିତ ଗୋଟିଏ ସ୍ଥାନରେ ରାତିକାଳରେ ଭୂଦେବ ବାବୁଙ୍କ ଅଦୂରରେ ବସି ନିମଗ୍ନଭାବରେ ତାରାମଣ୍ଡିତ ଆକାଶ ଦେଖୁଥିଲି । ସେ ସେତେବେଳେ କିଛି କହିଲେ ନାହିଁ । କିଛିକ୍ଷଣ ଉତ୍ତାରୁ କଥା ପ୍ରସଙ୍ଗରେ କହିଲେ, ଦେଖ ! ତୁମେ ଏତେ ନିମଗ୍ନ ହୋଇ ଆକାଶ ଆଡ଼କୁ ଗୃହିଁରହିଥିଲ କାହିଁକି ? ସର୍ବଦା ଏପରି କରିବା ଭଲ ନୁହେଁ । ଏଥିରେ ନିଜର ଅକିଞ୍ଚିତ୍କରତା ନିତାନ୍ତ ପରିସ୍ଫୁଟ ହୋଇଥାଏ, ଅସ୍ତିତ୍ୱ ପ୍ରାୟ ଲୁପ୍ତ ହୋଇଥାଏ; କର୍ମକ୍ଷେତ୍ରରେ ଲୋକେ ଉଦାସୀନ ହୋଇଯାଆନ୍ତି । ବିରାଟର ଧ୍ୟାନ ଯୋଗୀ ପକ୍ଷରେ ଶୋଭାପାଏ ।” (୧)

(୧) ରାଧାନାଥ ଜୀବନୀ—ପୃ. ୧୦୩-୧୦୪.

କବିବର ରାଧାନାଥଙ୍କୁ ଭୂଦେବ ମୁଖୋପାଧ୍ୟାୟ ଯେଉଁ ଉପଦେଶ ଦେଇଥିଲେ ତାହା ତାଙ୍କର ଚିଲିକା କାବ୍ୟରେ ସ୍ପଷ୍ଟ ଭାବରେ ପ୍ରକାଶ ପାଇଅଛି । କବି ଯେତେବେଳେ ହିମାଳୟ ନିକଟକୁ ଯାଇଥିଲେ ସେତେବେଳେ ସେ ହିମାଳୟର ବିରାଟତ୍ୱରେ ଆତ୍ମବିସ୍ମୃତ ହୋଇଥିଲେ । ତେଣୁ ସେ ବର୍ଣ୍ଣନା କରିଛନ୍ତି, "ଇତର ଜନର ଅବସାଦ କର, ଯୋଗୀ ଋଷିଙ୍କ ସେ ସ୍ଥାନ ମନୋହର ।" ଭୂଦେବ ମୁଖୋପାଧ୍ୟାୟଙ୍କର ଉକ୍ତିଥିଲା, "ବିରାଟରେ ଧ୍ୟାନ ଯୋଗୀ ପକ୍ଷରେ ଶୋଭନୀୟ ।" କବିବର ରାଧାନାଥ ଯୋଗୀ ନଥିଲେ ସେ ଥିଲେ ସୌନ୍ଦର୍ଯ୍ୟପ୍ରେମୀ କବି । ତେଣୁ ହିମାଳୟର ବିରାଟତାରେ ସେ ତାଙ୍କର ରସାନୁଭୂତି ନପାଇ ପାଇଛନ୍ତି ଚିଲିକାର ସୁନ୍ଦରତାରେ । ସେଦିନ ଭୂଦେବ ମୁଖୋପାଧ୍ୟାୟ ତାଙ୍କୁ ଯେଉଁ ଉପଦେଶ ଦେଇଥିଲେ ତାହାକୁ ସେ ଅକ୍ଷରେ ଅକ୍ଷରେ ମନେ ରଖିଥିବା ପରି ଜଣାଯାଏ । ତା ନହୋଇଥିଲେ ସେ ଲେଖି ନଥାନ୍ତେ, "ସଂସାରେ ଥାଇ ମୁଁ ସଦା ଉଦାସୀନ, ଉଦାସୀନ ପ୍ରାୟେ କଟାଇଲି ଦିନ ।" ଭୂଦେବ ମୁଖୋପାଧ୍ୟାୟ ତାଙ୍କୁ ଉଦାସୀନ ନହେବା ଲାଗି ଉପଦେଶ ଦେଇଥିଲେ, ମାତ୍ର କବି ଉଦାସୀନ ହୋଇଥିଲେ । କବିଙ୍କର ଏହି ଉଦାସୀନତା ଯାଥାର୍ଥରେ ସଂସାରର ବିଷୟ ବାସନା ପ୍ରତି ଉଦାସୀନତା । କବି ଯଦି ସଂସାରର ବିଷୟ ବାସନା ପ୍ରତି ଉଦାସୀନ ହୋଇ ନଥାନ୍ତେ, ତେବେ ସେ ଜଣେ ଅମର ସ୍ରଷ୍ଟାର ଗୌରବ ସହଜରେ ପାଇପାରି ନଥାନ୍ତେ । କବିଙ୍କର ଏହି ଉଦାସୀନତା ତାଙ୍କୁ ପ୍ରକୃତି ଆଡ଼କୁ ଟାଣି ନେବାପାଇଁ ସମର୍ଥ ହୋଇଥିଲା । ସଂସାରର ତୁଚ୍ଛ କ୍ଷଣିକ ସୌନ୍ଦର୍ଯ୍ୟରେ କବି ନିଜକୁ ଆହ୍ଲାଦିତ ନକରି ପ୍ରକୃତିର ଚିରନ୍ତନ ସୌନ୍ଦର୍ଯ୍ୟ ପ୍ରତି ଆକୃଷ୍ଟ ହୋଇଥିଲେ । ତେଣୁ କବିବର ରାଧାନାଥଙ୍କ ଜୀବନରେ ତାଙ୍କର ମାତୃ ବିୟୋଗ ପରେ ଗ୍ରାମର ଶ୍ମଶାନ ବକ୍ଷରେ ବସି ମାତୃସ୍ମୃତିରେ ବିଭୋର ହେବା ସମୟଠାରୁ ଯେଉଁ ଉଦାସୀନତା ଦେଖା ଦେଇଥିଲା ତାହା ତାଙ୍କୁ ପ୍ରକୃତିର ଚିରନ୍ତନ ସୌନ୍ଦର୍ଯ୍ୟ ପ୍ରତି ଆକୃଷ୍ଟ ହେବାରେ ସହାୟକ ହୋଇଥିଲା ।

ମହାଯାତ୍ରାରେ କବିଙ୍କର ପ୍ରକୃତି ବର୍ଣ୍ଣନା ମଧ୍ୟ କମ୍ ଗୁରୁତ୍ୱପୂର୍ଣ୍ଣ ନୁହେଁ । ଉତ୍କଳର ଅରଣ୍ୟ ଭୂମିରେ ପାଣ୍ଡବମାନେ ଅଗ୍ନିଦେବଙ୍କ ସହିତ

ଭ୍ରମଣ କରିବା ସମୟରେ ପ୍ରସିଦ୍ଧ ସ୍ଥାନଗୁଡ଼ିକର ବର୍ଣ୍ଣନା କବିଙ୍କର ସୂକ୍ଷ୍ମ ଦୃଷ୍ଟିକୋଣର ଯଥାର୍ଥ ପରିଚୟସୂଚକ । ଏହିସବୁ ବର୍ଣ୍ଣନାରେ କବିଙ୍କ ଉପରେ ଅନ୍ୟ କବିମାନଙ୍କର ପ୍ରଭାବ ପରିଲକ୍ଷିତ ହେଲେହେଁ, କବିଙ୍କର ସ୍ବକୀୟ ଚିନ୍ତାଧାରା ବହୁସ୍ଥଳରେ ବର୍ଣ୍ଣନାଗୁଡ଼ିକୁ ହୃଦୟସ୍ପର୍ଶୀ କରିଅଛି ।

କବିବର ରାଧାନାଥଙ୍କର ପ୍ରକୃତି ଚିତ୍ରଣର ଆଉ ଗୋଟିଏ ବୈଶିଷ୍ଟ୍ୟ ହେଉଛି ପ୍ରକୃତିର ଜୀବନାପୂର୍ଣ୍ଣ । କବି ପ୍ରକୃତିକୁ ଏପରି ଭାବରେ ରୂପଦାନ କରିଅଛନ୍ତି ଯେ, ମନୁଷ୍ୟପରି ତାର ଅନୁଭୂତି ଶକ୍ତି ଅଛି, ସେ ଲଳିତ ମୂର୍ତ୍ତି ଧାରଣ କରି ଜଗତକୁ ଆହ୍ଲାଦିତ କରେ ପୁଣି ଆବଶ୍ୟକ ସମୟରେ କରାଳ ମୂର୍ତ୍ତି ଧାରଣ କରି ପରପୀଡ଼କୁ ସଂହାର କରିଥାଏ । କବିଙ୍କର ଏହି ମତବାଦ ବିଶେଷ ଭାବରେ ଚିଲିକା କାବ୍ୟରେ ପ୍ରକାଶ ପାଇଅଛି । କବି ରକ୍ତବାହୁର ଧ୍ୱଂସ ପ୍ରସଙ୍ଗରେ ଚିଲିକାର ରୁଦ୍ରମୂର୍ତ୍ତି ବର୍ଣ୍ଣନା କରିଅଛନ୍ତି । ଆଲୋଚକମାନେ ଚିଲିକାର ପ୍ରକୃତିକୁ ନିଗ୍ରହମୂର୍ତ୍ତିକା ପ୍ରକୃତି ରୂପରେ ଗ୍ରହଣ କରିଥାଆନ୍ତି । ପ୍ରକୃତିର ଏହି ଶକ୍ତି ବିଷୟରେ ଆଧୁନିକ ଯୁଗର କବିମାନେ କବିବର ରାଧାନାଥଙ୍କ ରଚନାକୁ ଅନେକାଂଶରେ ଅନୁସରଣ କରିଅଛନ୍ତି । କବି ଗଙ୍ଗାଧର ମେହେର ତାଙ୍କର ତପସ୍ୱିନୀ କାବ୍ୟରେ, "କରିବାକୁ ନିପୂତର ସହିତ ସମର, ଭୃଗୁରାଜ ଖଡ୍‌ଗ କରେ ଗର୍ଜିଲା ପ୍ରଖର" ପ୍ରଭୃତି ଯେଉଁ ବର୍ଣ୍ଣନା ଦେଇଅଛନ୍ତି ତହିଁରେ ସେ କବିବର ରାଧାନାଥଙ୍କର ପଦାଙ୍କ ଅନୁସରଣ କରିଅଛନ୍ତି ବୋଲି କୁହାଯାଇ ପାରେ ।

ପ୍ରକୃତିର ଅନୁଭୂତି ଶକ୍ତି ବିଷୟରେ କବି ବହୁସ୍ଥଳରେ ବର୍ଣ୍ଣନା କରିଅଛନ୍ତି । ଏପରି କି, ଦରବାର କାବ୍ୟରେ ବାରବାଟୀ ଦୁର୍ଗ ଭିତରେ ଯେତେବେଳେ ଆଧୁନିକ ସଭ୍ୟ ଜଗତର ଦରବାର ଆୟୋଜିତ ହେଉଅଛି ସେତେବେଳେ ବାରବାଟୀ ଦୁର୍ଗର ଉପକଣ୍ଠରେ ପ୍ରବାହିତ ହେଉଥିବା ମହାନଦୀ ତାହାକୁ ନିରୀକ୍ଷଣ କରି କରି ବହି ଯାଉଥିବା ବିଷୟ କବି ବର୍ଣ୍ଣନା କରିଅଛନ୍ତି । ତାଙ୍କ ଭାଷାରେ,

"ମନୋରମା କାଞ୍ଚନେନ ସ୍ନାପନ ମୂର୍ତ୍ତା,
କାଞ୍ଚନେମା-ବେଣୀ-ପ୍ରଭ-ବେଣୀଯୁକ୍ତା,

ଦୂଷଦ୍‌ବର୍ଣ୍ଣ ରୂପେ ଜର୍ଜରା ମୂଖରା,
ସୈକତିମା ରୂପେ ମନମାଦମ୍ବରା,
ଠାବେ ଠାବେ ଦ୍ୱୀପ-ଶୈଳ-ଦ୍ୱୀପଦଣ୍ଡୀ-
ପୁଞ୍ଜେ ବକ୍ଷ ଯାର ହୋଇଅଛି ମଣ୍ଡି,
ପ୍ରବାହ-ବହାଶ୍ଚ ଅରଣ୍ୟ-ଦନ୍ତୀର
ମଦେ ଚନ୍ଦ୍ରାକର ଯାର ମାଳମାର,
ଅଗ୍ରେ ସେହି ନଦୀ ବହୁଅଛି ରଙ୍ଗେ
ଏରଙ୍ଗ ନରେଖି ତରଙ୍ଗ-ଭ୍ରୂଭଙ୍ଗେ ।

କବିବର ରାଧାନାଥ ଯେପରି ଭାବରେ ଉତ୍କଳ ପ୍ରକୃତିକୁ ଶବ୍ଦନ୍ୟାସ କରିଅଛନ୍ତି ତାହା ତାଙ୍କର ଏକ ଅମ୍ଳାନ କୀର୍ତ୍ତି ବୋଲି କୁହାଯାଇ ପାରେ । ପ୍ରକୃତି ବର୍ଣ୍ଣନାରେ କବିବର ରାଧାନାଥଙ୍କର ଅନନ୍ୟ ସାଧାରଣ ଦକ୍ଷତା ସମାଲୋଚକମାନଙ୍କ ଦ୍ୱାରା ବହୁ ଭାବରେ ପ୍ରଶଂସିତ ହୋଇଅଛି । ତେଣୁ କବିବର ରାଧାନାଥଙ୍କର କାବ୍ୟରାଜିକୁ 'ପ୍ରକୃତିର ସ୍ବଚ୍ଛ ଆଲେଖ୍ୟ-ଶାଳିକା' କହିବାରେ ଯାଥାର୍ଥ୍ୟ ଅଛି ।

# ଏ ଦେଶ ଗୌରବ ଏ ଦେଶ ବିଭବ

"ଏ ଦେଶ ଗୌରବ ଏ ଦେଶ ବିଭବ
ଏ ଦେଶ ଭାରତି ଏ ରବି ତଳେ,
ଆଜି କାହିଁ ନାହିଁ ସମସ୍ତ ନଷ୍ଟ ଭ
ହୋଇଛି ମନୁଷ୍ୟ କରମ ଫଳେ ।"

ଭାରତର ଦୁର୍ଦ୍ଦିନରେ ଯେତେବେଳେ ମୋଗଲ ସୈନ୍ୟମାନେ ମହାରାଷ୍ଟ୍ରୀୟମାନଙ୍କର ସ୍ୱାଧୀନତା ଉପରେ ଆକ୍ରମଣ କରିଥିଲେ, ସେତିକିବେଳେ ମହାରାଷ୍ଟ୍ରୀୟ ସୈନ୍ୟମାନଙ୍କୁ ଉଦ୍‌ବୋଧନ ବାଣୀ ଶୁଣାଇ ଛତ୍ରପତି ଶିବାଜୀ ଏହି ଉକ୍ତି ପ୍ରକାଶ କରିଥିଲେ । କବିବର ରାଧାନାଥ ଶିବାଜୀଙ୍କ ମୁଖରେ ଯେଉଁ ଉଦ୍‌ବୋଧନ ବାଣୀ ଦେଇ ଅଛନ୍ତି ତାହା ତାଙ୍କରି ଗଭୀର ଦେଶାତ୍ମବୋଧର ଯଥାର୍ଥ ପରିଚୟସୂଚକ ।

ଦେଶ, କାଳ ଓ ପାତ୍ର ବିବେଚନାରେ କବି ଓ ଲେଖକମାନେ ଯଥାର୍ଥରେ ସ୍ୱଦେଶ ପ୍ରେମୀ ଭାବରେ ଦେଖା ଦେଇଥାଆନ୍ତି । ଓଡ଼ିଆ ସାହିତ୍ୟର ଅଭ୍ୟୁଦୟ କାଳରୁ ଅଧୁନାତନ କାଳ ପର୍ଯ୍ୟନ୍ତ ଯେତେ ଯେତେ ଲେଖକ ବା କବି ଆତ୍ମପ୍ରକାଶ କରିଅଛନ୍ତି ସେମାନଙ୍କର ରଚନାରୁ ସେମାନଙ୍କର ସ୍ୱଦେଶପ୍ରୀତିର ପରିଚୟ ମିଳିଥାଏ । ସମୟର ଗତିପଥରେ ସ୍ୱଦେଶପ୍ରୀତିର ସାରମର୍ମ ଯାହା ହେଉନା କାହିଁକି ତାର ପ୍ରକାଶ ଭଙ୍ଗୀର ବୈଚିତ୍ର୍ୟ ବିଶେଷ ଭାବରେ ପରିଲକ୍ଷିତ ହୋଇଥାଏ ।

ଓଡ଼ିଆ ସାହିତ୍ୟର ଆଦିଯୁଗର ସ୍ରଷ୍ଟା ସାରଳା ଦାସଙ୍କର ରଚନାରେ ତାଙ୍କର ସ୍ୱଦେଶପ୍ରୀତିର ବହୁ ଉଦାହରଣ ରହିଅଛି । ସେ ସମୟରେ କବି ତାର ରଚନାରେ ଦେଶ ବା ଜାତିର ମହତ୍ତ୍ୱ ପ୍ରକାଶ କରିବାପାଇଁ ଅତି ମାତ୍ରାରେ ଉଦ୍‌ଗ୍ରୀବ ହୋଇ ଥିବାର ଦେଖାଯାଏ ।

କବି ସାଳେମା ଦାସଙ୍କ ରଚନାରେ ସ୍ୱଦେଶର ମହିମା ବର୍ଣ୍ଣନା ଭିତରେ ପ୍ରକାଶ ପାଇଅଛି । କବି ଯେପରି ଭିତରେ ସ୍ଥାନଗୁଡ଼ିକର ଅବସ୍ଥିତି ସୂଚନା କରିଅଛନ୍ତି ତାହା ଆଧୁନିକ ଶିକ୍ଷିତ ବ୍ୟକ୍ତି ଦୃଷ୍ଟିରେ ଭୌଗୋଳିକ ଜ୍ଞାନର ସ୍ୱଳ୍ପତା ଭାବରେ କଥିତ ହୋଇପାରେ, ମାତ୍ର ସେସମୟରେ କବିମାନଙ୍କର ଦୃଷ୍ଟି ଥିଲା ଭିନ୍ନ ପ୍ରକାରର । ସେଥିପାଇଁ ସାଳେମା ଦାସଙ୍କ ରଚନାରେ ଆମେ ପାଉଥାଉଁ, ଯୁଧିଷ୍ଠିରଙ୍କର ରାଜସୂୟରେ ସ୍ୱାହାଣୀ କନ୍ୟା ସମ୍ବନ୍ଧ ବିବାହ, ଗୁରୁ ଗୃହରେ ଶ୍ରୀକୃଷ୍ଣଙ୍କର ଶିକ୍ଷା ପାଇବା ସମୟରେ ଅନ୍ୟାନ୍ୟ ଭାଷା ସହିତ ଓଡ଼ିଆ ଭାଷା ଶିକ୍ଷା । ବତ୍ସା ଦାସଙ୍କର କଳସା ଚଉତିଶାରେ ସେହି କାରଣରୁ କୈଳାସ ପର୍ବତ ସ୍ଥାନରେ କପିଳାସ ପାହାଡ଼ ବର୍ଣ୍ଣିତ ହୋଇଅଛି । ବୈଷ୍ଣବ କବିମାନଙ୍କ ରଚନାରେ ସ୍ୱଦେଶର ତୀର୍ଥ, ସ୍ୱଦେଶର କ୍ଷେତ୍ର ହୋଇଉଠିଛି ଯଥାର୍ଥରେ ସ୍ୱର୍ଗୀୟ । ଓଡ଼ିଆ ଯେ ବୈଷ୍ଣବ କବିଏ ବୈକୁଣ୍ଠପୁରର କଳ୍ପନାରେ ନିଜକୁ ମଜ୍ଜିତ ନକରି ଶ୍ରୀକ୍ଷେତ୍ରକୁ ମର୍ତ୍ତ୍ୟ ବୈକୁଣ୍ଠ ରୂପେ ଗ୍ରହଣ କରିଥିଲେ । କାବ୍ୟ ଯୁଗର କବିମାନଙ୍କ ରଚନାରେ ପ୍ରାସଙ୍ଗିକ ଭାବରେ ଓଡ଼ିଶାର ସ୍ଥାନ ବିଶେଷର ମାହାତ୍ମ୍ୟ ପ୍ରକାଶ ପାଇଅଛି । କବି ବ୍ରଜନାଥ ବଡ଼ଜେନାଙ୍କର ସମରତରଙ୍ଗ କାବ୍ୟରେ ପୁରୁଷୋତ୍ତମ ଓ ଢେଙ୍କାନାଳର ପ୍ରଶସ୍ତି ଯେପରି ଭାବରେ ପ୍ରକାଶ ପାଇଅଛି, ତାହା ତାଙ୍କର ସ୍ୱଦେଶପ୍ରୀତିର ଯଥାର୍ଥ ଉଦାହରଣ ।

ପ୍ରାଚୀନ ଓଡ଼ିଆ ସାହିତ୍ୟ ଓ ମଧ୍ୟଯୁଗୀୟ ଓଡ଼ିଆ ସାହିତ୍ୟରେ କବିମାନଙ୍କର ସ୍ୱଦେଶପ୍ରୀତି ଯେଉଁ ରୂପରେ ପ୍ରକାଶ ପାଇଥିଲା ଆଧୁନିକ ଯୁଗରେ ତାହା ପରିବର୍ତ୍ତିତ ଆଭିମୁଖ୍ୟ ଗ୍ରହଣ କଲା । ଆଧୁନିକ ଯୁଗରେ ଯେତେବେଳେ କ ଜାତି ପରାଧୀନତାର ଶୃଙ୍ଖଳରେ ଆବଦ୍ଧ ସେତେବେଳେ ଜାତିର କବିମାନଙ୍କ ପ୍ରାଣରେ ସ୍ୱାଧୀନତାର ପିପାସା ରହିବା ନିତାନ୍ତ ସ୍ୱାଭାବିକ । ଦେଶର ସ୍ୱାଧୀନତା ଯେପରି ଭାବରେ ବିପନ୍ନ ହେଲା ସେ ବିଷୟ କବିମାନଙ୍କର ରଚନାରେ ପ୍ରକାଶ ପାଇଲେହେଁ ତହିଁରେ ଏପରି କୌଣସି ବର୍ଣ୍ଣନା ରହିଲା ନାହିଁ ଯାହାକି ବିଦେଶୀ ସରକାରର ବିରୁଦ୍ଧରେ ଯିବ । ତେଣୁ କବିମାନେ ସତର୍କତାର ସହିତ ସେମାନଙ୍କର ବର୍ଣ୍ଣନା

ଶକ୍ତିକୁ ପ୍ରକାଶ କରି ତହିଁରେ କେବଳ ଅତୀତ ଲାଗି ଅନୁଶୋଚନାର ବିଷଣ୍ଣ ସ୍ୱର ପ୍ରକାଶ କରିଥିଲେ ।

କବିବର ରାଧାନାଥ ଯେଉଁ ସମୟରେ ଲେଖନୀ ଚାଳନା କରିଥିଲେ ସେ ସମୟରେ ଇଂରେଜ ସରକାରର ଶାସନ ପଦ୍ଧତି ଏ ଦେଶର ଜନସାଧାରଣଙ୍କର ବହୁ ସୁବିଧା ଦେଖିବାରେ ଅଭିପ୍ରେତ ଥିଲେହେଁ ଏ ଦେଶବାସୀଙ୍କର ସ୍ୱାଧୀନତାର ଅଭାବ ବିଶେଷ ଭାବରେ ଅନୁଭୂତ ହୋଇଥିଲା । ସ୍ୱାଧୀନତାର ମୋହ ସେ ସମୟରେ ଅତି ଅଳ୍ପ ସଂଖ୍ୟକ ବ୍ୟକ୍ତିଙ୍କର ଅନ୍ତରରେ ସ୍ଥାନ ପାଇଥିଲା ବୋଲି କୁହାଯାଇପାରେ । ଇଂରେଜ ସରକାର ସବୁବେଳେ ସତର୍କ ଦୃଷ୍ଟି ରଖିଥିଲା, ଯେପରିକି କୌଣସି ସ୍ଥାନରେ କୌଣସି ପ୍ରକାର ଜାତୀୟ ଭାବର ଉଦ୍ରେକ ନହେଉ । ଏ ଦେଶବାସୀଙ୍କୁ ପରାଧୀନ କରି ରଖିବା ପାଇଁ ଇଂରେଜ ସରକାର ଅତୀତରେ ଯେପରି ଅତ୍ୟାଚାରର ତାଣ୍ଡବଲୀଳା ଏ ଦେଶରେ ସୃଷ୍ଟି କରିଥିଲା ତାହା ବହୁପରିମାଣରେ ଦେଶପ୍ରେମୀଙ୍କୁ କ୍ଷୁବ୍ଧ କରିଥିଲା । ତଥାପି, ଇଂରେଜ ସରକାରର ଶାସନ ଶୃଙ୍ଖଳା ପ୍ରତି ଅବହେଳାର ଉପଧି ସେତେବେଳେ ନଥିଲା । ତଥାପି ଯେଉଁମାନେ ଥିଲେ, ସାଧାରଣ ମାନବୀୟ ସ୍ତରର ଊର୍ଦ୍ଧ୍ୱରେ, ସେମାନଙ୍କ ଲେଖନୀରୁ ଅତ୍ୟନ୍ତ ସତର୍କତାର ସହିତ ସ୍ୱାଧୀନତାର ପିପାସା, ଦେଶପ୍ରୀତିର ଜ୍ୱଳନ୍ତ ଉଦାହରଣ ପ୍ରକାଶ ପାଇଥିଲା । ଏହି ଦୃଷ୍ଟିରୁ କବିବର ରାଧାନାଥ, ଗଙ୍ଗାଧର, ପଦ୍ମଚରଣ ପ୍ରଭୃତି ଏ ଜାତିର ନମସ୍ୟ । ରାଧାନାଥ ଯୁଗପରେ କବିମାନଙ୍କ ରଚନାରେ ଦେଶପ୍ରୀତିର ପ୍ରକାଶ ଅଧିକ ଉଗ୍ର ହୋଇ ଉଠିଥିବାର ପରିଲକ୍ଷିତ ହୋଇଥାଏ । କବିବର ରାଧାନାଥଙ୍କ ପରେ ସତ୍ୟବାଦୀ ଗୋଷ୍ଠୀର ସାହିତ୍ୟ ସାଧକମାନଙ୍କ ଲେଖନୀରୁ ଦେଶପ୍ରେମର ଉଗ୍ର ଭାବଧାରା ପ୍ରକାଶ ପାଇଥିଲା ।

କବିବର ରାଧାନାଥଙ୍କର ସ୍ୱଦେଶପ୍ରୀତି ଭାବଧାରା ତାଙ୍କର ବିଭିନ୍ନ ରଚନାମାନଙ୍କରେ ପରିଦୃଷ୍ଟ ହୋଇଥାଏ । ଶିବାଜୀଙ୍କର ଉତ୍ସାହ ବାକ୍ୟରେ ସେ ଶିବାଜୀଙ୍କ ମୁଖରେ ଯେଉଁ ଉଦ୍‌ବୋଧନ ବାଣୀ ଦେଇଅଛନ୍ତି ତାହା ତାଙ୍କର ସ୍ୱାଧୀନତା ପିପାସା ତଥା ଦେଶପ୍ରୀତିର ଯଥାର୍ଥ ଉଦାହରଣ ।

ମୋଗଲ ସୈନ୍ୟମାନେ ଯେତେବେଳେ ମହାରାଷ୍ଟ୍ର ଆକ୍ରମଣ କରିବାକୁ ଅଗ୍ରସର ହୋଇଥିଲେ ସେତେବେଳେ ହିନ୍ଦୁ ସୈନ୍ୟମାନଙ୍କୁ ଶିବାଜୀ ଭାରତର ଅତୀତ ବିଷୟରେ ସଚେତନ କରାଇଅଛନ୍ତି । ଭାରତୀୟମାନଙ୍କର ଏକତା ଯେଉଁ ସମୟରେ ନଷ୍ଟ ହେଲା ସେହି ସମୟରେ ବିଦେଶାଗତ ଯବନମାନେ ଭାରତକୁ କରଗତ କଲେ । ଆର୍ଯ୍ୟମାନେ ଏପରି ଅନ୍ଧ ହୋଇଗଲେ ଯେ ସେମାନେ ନିଜର ଧର୍ମକୁ ଭୁଲିଗଲେ । ଆର୍ଯ୍ୟଜାତିର ଧର୍ମ ହେଲା ସ୍ୱାଧୀନତା । ମାତ୍ର ଭାରତୀୟ ଆର୍ଯ୍ୟମାନେ ତାହା ହରାଇ ବସିଲେ । ଯଦି ହିନ୍ଦୁ ସୈନ୍ୟମାନେ ମୋଗଲ ସୈନ୍ୟମାନଙ୍କର ସମ୍ମୁଖୀନ ହୋଇ ସେମାନଙ୍କୁ ପରାଜିତ ନକରନ୍ତି ତେବେ ସେମାନଙ୍କର ଲାଞ୍ଛନା ବହୁ ପରିମାଣରେ ବଢ଼ିଯିବ । ତେଣୁ ସେ ସୈନ୍ୟମାନଙ୍କୁ ସେମାନଙ୍କର ଧର୍ମକର୍ତ୍ତବ୍ୟ ବିଷୟରେ ଅବହିତ କରାଇ କହିଅଛନ୍ତି,

"ଯାବତ ଦେହରେ ବହେ ପ୍ରାଣବାୟୁ
ଶୂରେ ! ନବିମୁଖ ହୁଅ ସମରେ,
ମାର ଅବା ମର ଏଥୁଁ ଅନ୍ୟଆଉ
ନ ଘଟୁ ଯେମନ୍ତେ ତୁମ୍ଭ ଭାଗ୍ୟରେ ।
ଏ ରେବା ତଟିନୀ ଯାବତ ବହିବ
ଯାବତ ଏଗିରି ଟେକିବ ଶିର,
ତୁମ୍ଭ ଶୁକ୍ଳଯଶଃ ତାବତ ରହିବ
ମରି ଅମରତ୍ୱ ଲଭ ମହୀର ।"

ଏହି ପ୍ରକାର ଉଦବୋଧନ ବାଣୀ କବି ମହାଯାତ୍ରାରେ ଅମର୍ଷୀଙ୍କ ମୁଖରେ ପ୍ରକାଶ କରିଅଛନ୍ତି । ହିନ୍ଦୁସୈନ୍ୟମାନେ ଯେତେବେଳେ ମୁସଲ୍‌ମାନ ସୈନ୍ୟମାନଙ୍କର ସମ୍ମୁଖୀନ ନହୋଇ ପଛଘୁଞ୍ଚା ଦେବାପାଇଁ ମନ୍ତ୍ରଣା ଆରମ୍ଭ କରିଥିଲେ ସେତେବେଳେ ପୃଥ୍ୱୀରାଜଙ୍କର ସେନାପତି ଅମର୍ଷୀ ସୈନ୍ୟମାନଙ୍କୁ ଉଦ୍‌ବୋଧନ ବାଣୀ ଶୁଣାଇଥିଲେ । ଏହା କବିଙ୍କ ଲେଖନୀରେ ଅତ୍ୟନ୍ତ ଉତ୍ତେଜନାପୂର୍ଣ୍ଣ ହୋଇଅଛି ବୋଲି କୁହାଯାଇପାରେ । ଅମର୍ଷୀ ସୈନ୍ୟମାନଙ୍କୁ ସମ୍ବୋଧନ କରି କହିଛନ୍ତି.

"ଏହିକି ସେ ଆର୍ଯ୍ୟଭୂମି ? ଏ ଭୂମିର ସୁତ
ତୁମ୍ଭେ କି କି ଆର୍ଯ୍ୟନାମ ବହିବ ଜଗତେ ?
ବିନାଯୁଦ୍ଧେ ନ ଦେବାର ସୂଚ୍ୟଗ୍ର ମେଦିନୀ
ପଣ ଯେଉଁ ଆର୍ଯ୍ୟଙ୍କର; ତାଙ୍କ ଶିରେ ଶୋଣିତ
ବହେ କି କି, ଆହେ ଯୋଧେ, ତୁମ୍ଭ ଧମନୀରେ ?"

ଭାରତୀୟ ସଂସ୍କୃତି ବୀରର ସଂସ୍କୃତି । ତହିଁରେ ହୀନ, ପାମର ଭାବରେ ଅନ୍ୟର କୃପା ଭିକ୍ଷା କରିବାର ପ୍ରଶ୍ନ ଉଠି ପାରେ ନା । ମହାଭାରତର ଆଦର୍ଶ ବୀରର ଆଦର୍ଶ । ପାଣ୍ଡବମାନେ ଯେତେବେଳେ ସେମାନଙ୍କର ନ୍ୟାଯ୍ୟ ପ୍ରାପ୍ୟ କୁରୁପତି ଦୁର୍ଯ୍ୟୋଧନଙ୍କ ନିକଟରେ ଦାବି କଲେ, ସେତେବେଳେ କୁରୁପତି ଦୁର୍ଯ୍ୟୋଧନ ସେମାନଙ୍କୁ କହିଥିଲେ ଯେ, ବିନା ଯୁଦ୍ଧରେ ସେ ସୂଚ୍ୟଗ୍ର ପରିମିତ ଭୂମି ଦେଇପାରିବେ ନାହିଁ । ଦୁର୍ଯ୍ୟୋଧନଙ୍କର ଏହି ମତ ମହାଭାରତ ଯୁଦ୍ଧର ସୂତ୍ରପାତ କରିଥିଲା । ସେହି ଆର୍ଯ୍ୟ ବୀରଙ୍କର ସନ୍ତାନ ହୋଇ ଭାରତୀୟ ହିନ୍ଦୁ ସୈନ୍ୟମାନେ ଯେତେବେଳେ ପଛଘୁଞ୍ଚା ଦେବାର ମନ୍ତ୍ରଣା କରୁଛନ୍ତି ସେତେବେଳେ ଅମର୍ଷୀ ସେମାନଙ୍କ ଅତୀତକୁ ଉଦ୍ଧାର କରି ସେମାନଙ୍କ ମନରେ ବୀର ଭାବ ଉଦିତ କରାଇବାର ଉଦ୍ୟମ କରିଅଛନ୍ତି । ଯେ ଯଥାର୍ଥରେ ବୀର ସେ କେବେହେଲେ ଯୁଦ୍ଧଭୂମିରୁ ପଛଘୁଞ୍ଚା ଦେଇ ନପାରେ । ଶତ୍ରୁ ସହିତ ସଂଗ୍ରାମ କରି ଯଦି ଶତ୍ରୁକୁ ପରାଜିତ କରିବା ଅସମ୍ଭବ ହୁଏ ତେବେ ଯୁଦ୍ଧକ୍ଷେତ୍ରରେ ପ୍ରାଣ ହରାଇବା ହେଉଛି ବୀରର ଧର୍ମ । ତାହାଦ୍ୱାରା ବୀର ଅମରତ୍ୱ ଲାଭ କରିଥାଏ ।

ଯବନମାନେ ଭାରତକୁ ଅଧିକାର କଲେ ଭାରତୀୟମାନଙ୍କର ଦୁର୍ଦ୍ଦଶା ଅକଥନୀୟ ହୋଇ ପଡ଼ିବ । ସେହି ଦୁର୍ଦ୍ଦଶାର ଚିତ୍ର କବି ଅମର୍ଷୀଙ୍କ ମୁଖରେ ପ୍ରକାଶ କରିଅଛନ୍ତି ।

"ହା-ଧିକ ! ଏରଙ୍କ ପ୍ରାଣ ଆତ୍ମକେ ବଞ୍ଚାଇ
ଆଶୁ ମୃତ୍ୟୁପ୍ରଦ ରଣୁ ଅରପି ଯବନେ

ହିନ୍ଦୁର ଏ ସ୍ୱର୍ଣ୍ଣପ୍ରସୂ ଭୂମି ସନାତନ,
ଯାପିବ କି ଦିନ ଚିର ଅନଶନ ବ୍ରତେ ?

କଳ୍ପ-ଲତା ମୂଳେ ବସି ଚିର ଉପବାସୀ !
ଭୁଟାଉଁ କରଟେ ନେଇ ସୁର ଟୁମା-ଝାଟେ !

ଦିଗ୍‌ବିଜୟୀ ଆର୍ଯ୍ୟସିନ୍ଧୁ-ଔରସେ ଜନମି
ହେଲକି ଅକ୍ଷମ, ଆହା ନିଜ ରକ୍ଷଣେ ?

ହିମ-ଉର୍ଜସ୍ୱଳ ଘୋର-ହିମାଦ୍ରି-ପ୍ରାଚୀରେ
ଦୁର୍ଗମ ଭାରତଦୁର୍ଗ କାପୁରୁଷ ହାତେ
କେ କରିବ ମୋତେ, କହଁ ଅର୍ପିଲେ ବିଧାତା ?"

ଏହିପରି ଉଦ୍‌ବୋଧନମୂଳକ ରଚନାରେ କବିଙ୍କର ସ୍ୱଦେଶପ୍ରୀତି ପ୍ରକାଶ ପାଇବା ବ୍ୟତୀତ ଅନ୍ୟ କେତେକ ସ୍ଥଳରେ ଅନ୍ୟରୂପରେ ତାହା ମଧ୍ୟ ପ୍ରକାଶ ପାଇଅଛି । କବି ସବୁବେଳେ ସ୍ୱଦେଶର କୀର୍ତ୍ତିରାଜି ଓ ଅତୀତର ଗୌରବ ବିଷୟରେ ଅତ୍ୟନ୍ତ ସଚେତନ ଥିବାର ପରିଲକ୍ଷିତ ହୋଇଥାଏ । ନନ୍ଦକେଶରୀ କାବ୍ୟରେ ନନ୍ଦିକା ଯେତେବେଳେ ପିତାଙ୍କ ମସ୍ତକରୁ କେଶବମଣି ଅପହରଣ କରି ତାହାକୁ ନେଇ ଗୈରଗର୍ଗଙ୍କ ସମ୍ମୁଖରେ ଆବିର୍ଭୂତା ହୋଇ ତାଙ୍କର ମନୋଭାବ ବ୍ୟକ୍ତ କଲେ ସେତେବେଳେ କବି ଗୈରଗର୍ଗଙ୍କ ମୁଖରେ ଯେଉଁ ଭାଷା ଦେଇଛନ୍ତି ତାହା ତାଙ୍କର ନିଜର ଦେଶାତ୍ମବୋଧର ପରିଚୟ ବ୍ୟତୀତ ଅନ୍ୟ କିଛି ନୁହେଁ । ଉତ୍କଳର ଶତ୍ରୁ ହେଲେହେଁ ଗୈରଗର୍ଗ ଉତ୍କଳର ଯଶୋଗାନରେ ଶତମୁଖ ହୋଇଉଠିଛନ୍ତି । କବି ତାଙ୍କ ମୁଖରେ ଭାଷା ଦେଇଛନ୍ତି,

"ଯାର କୀର୍ତ୍ତିରାଜି-ଅମର ସାକ୍ଷିଣୀ
ନାଭିଗୟା-ପଦ ବନ୍ଦେ ତରଙ୍ଗିଣୀ,

ଏକାମ୍ରେ ଯାହାର ଅସଂଖ୍ୟ ଦେଉଳ
ଘୋଷେ ଯଶୋରାଶି ହେମପରି ତୂଳ,

ଯାର କୀର୍ତ୍ତିମାଳା ଏଣୁ ପ୍ରତିଜଳା-
କାଠଯୋଡ଼-ବୋଧ-ନଦୀମୂ, ମେଖଳା

ଯଯାତି ଲଲାଟ ମରକତ ରୂପ
ଅଟନ୍ତି ଯେ କୂଳ କେତନ ସ୍ୱରୂପ,

ସେହି କୁଳେ ଜାତ ହୁଅନ୍ତି କ ଦୁଃଶୀଳା ?
କେ କହିବ ମୋତେ କେମନ୍ତେ ମିଶିଲ

ଦେବବାଣୀ ସଙ୍ଗେ ଆସି ଅପଭାଷା,
ପୂତ ଭାଗୀରଥୀ-ସ୍ରୋତେ କର୍ମନାଶା ?

ମନ୍ତ୍ରୀ କ ସହିଲେ ଏ ଘୋର ପାତକ ?
ସମ୍ବନ୍ଧୀ ନାମ କଲେ କି ସାର୍ଥକ ?

ଯଦ୍ୟପି କେଶରୀବଂଶେ ଜାତ ହୋଇ
ଦେଶଦ୍ରୋହୀ, ରାଜଦ୍ରୋହୀ, ପିତୃଦ୍ରୋହୀ ।"

କବି ଉତ୍କଳର ପ୍ରାଚୀନ କୀର୍ତ୍ତି ଓ ଗୌରବ ବିଷୟରେ ଅତ୍ୟନ୍ତ ସଚେତନ ଥିଲେ । କାବ୍ୟ ରଚନା କରିବା ସମୟରେ କବି ଯେଉଁଠାରେ ସୁଯୋଗ ପାଇଛନ୍ତି ସେଠାରେ ଉତ୍କଳର ଗୌରବକୁ ବର୍ଣ୍ଣନା କରିବାକୁ ଭୁଲି ନାହାନ୍ତି ।

ଚିଲିକା କାବ୍ୟ ରଚନା କରିବା ସମୟରେ କବିଙ୍କର ସ୍ୱଦେଶପ୍ରୀତି ଅନ୍ୟ ଏକ ରୂପରେ ପ୍ରକାଶ ପାଇଅଛି । କବି ଚିଲିକାକୁ କେନ୍ଦ୍ର କରି କାବ୍ୟ ରଚନା କରିଥିଲେହେଁ ପ୍ରକାରାନ୍ତରରେ ଉତ୍କଳର ଯଶୋଗାନ କରିବାରୁ ବିରତ ହୋଇ ନାହାନ୍ତି । ଚିଲିକାର ସୌନ୍ଦର୍ଯ୍ୟ କବିଙ୍କ ଚକ୍ଷୁରେ ସମଗ୍ର ଭାରତରେ ଥିବା ବିଭିନ୍ନ ସ୍ଥାନର ପ୍ରାକୃତିକ ସୌନ୍ଦର୍ଯ୍ୟଠାରୁ ବହୁ ଊର୍ଦ୍ଧ୍ୱରେ । ଚିଲିକାର ସୌନ୍ଦର୍ଯ୍ୟ ବର୍ଣ୍ଣନା କରିବା ସମୟରେ କବି ପ୍ରକାଶ କରିଛନ୍ତି ଯେ ଚିଲିକାର ପଶ୍ଚିମାଞ୍ଚଳର ସନ୍ଧ୍ୟାକାଳୀନ ସୌନ୍ଦର୍ଯ୍ୟ ସ୍ୱର୍ଗୀୟ । ଏପ୍ରକାର ଶୋଭା ମର୍ତ୍ତ୍ୟରେ ଅଗୋଚର । ପୁଣି, ଉତ୍କଳରେ କବିମାନଙ୍କର ପ୍ରଚେଷ୍ଟାର ଅଭାବରୁ

ଭାରତର ବିଭିନ୍ନ ସ୍ଥାନ ଭଳି ଉତ୍କଳର ସ୍ଥାନ ବା ପ୍ରାକୃତିକ ଅବସ୍ଥିତି ଖ୍ୟାତିସଂପନ୍ନ ହୋଇପାରି ନାହିଁ । ଏଥିପାଇଁ କବିଙ୍କ ହୃଦୟର ଖେଦୋକ୍ତି ପ୍ରକାଶ ପାଇଅଛି । କବିଙ୍କ ଭାଷାରେ,

"ଦେବୀ ବୀଣାପାଣି ! କେଉଁ ପାପଫଳେ
କରୁଣା ତୋହର ଊଣା ଏ ଉତ୍କଳେ ?

ସ୍ୱଭାବେ ଉତ୍କଳ ଶୋଭାର ନିଧାନ,
ମାତ୍ର ଏ ଶୋଭାରେ ତୋର ଅଧିଷ୍ଠାନ-

ବିନୁ ସିନା ମାତା ହୋଇଛି ବିବଶା
ଭଜୁଛି ଅରଣ୍ୟ-ପ୍ରସୂନର ଦଶା,

କ୍ଷୁଦ୍ର ଶିପ୍ରାସ୍ରୋତ ବିଖ୍ୟାତ ଜଗତେ
ମହାନଦୀ ନାମ ରହିଲା ଗୁପତେ !

ସୁରୂପା ଅଁଶୁପା ଲୋକେ ଅଗୋଚର
ପୂଜାସ୍ପଦ ହେଲା ଗୋଷ୍ପଦ-ପୁଷ୍କର !

ତୋର କୃପାବଳେ କ୍ଷୁଦ୍ର ମହୀସ୍ଥାନ
ତୋ କୃପା ବିହୁନେ ବଡ଼ ହୁଏ ସାନ,

ଖର୍ବ ଗୋବର୍ଦ୍ଧନ ଗିରୀନ୍ଦ୍ର ବୋଲାଏ,
ମହାତୀର୍ଥ ରୂପେ ଲୋକେ ପୂଜାପାଏ,

ସ୍ୱଭାବେ ଗିରୀନ୍ଦ୍ର ହୋଇ ମେଘାସନ
ଲଭିନାହିଁ ଗିରି-ସମାଜେ ଆସନ ।

ତୋ କୃପା ବିହୁନେ ଉତ୍କଳ ମାତାର
ନାମ ଖ୍ୟାତିଗ୍ରନ୍ଥେ ପଡ଼ି ନାହିଁ ଗାର ।"

ଭାରତର ବହୁ ସ୍ଥାନ କବିମାନଙ୍କ ଲେଖନୀରେ ରୂପଲାଭ କରି ଖ୍ୟାତିସଂପନ୍ନ ହୋଇଅଛି । ଏହିସବୁ ସ୍ଥାନର ପ୍ରକୃତ ଖ୍ୟାତି ନଥିଲେହେଁ କବିମାନଙ୍କର ଲେଖନୀ ଏଗୁଡ଼ିକର ଖ୍ୟାତିର କାରଣ । ମାତ୍ର ଉତ୍କଳର ବିଭିନ୍ନ ସ୍ଥାନ ବା ପ୍ରାକୃତିକ ଅବସ୍ଥିତି ଖ୍ୟାତି

ସମ୍ପନ୍ନ ହେଲେହିଁ କବିମାନଙ୍କର ପ୍ରଚେଷ୍ଟାର ଅଭାବରୁ ସେଗୁଡ଼ିକ ଅଜ୍ଞାତ ଭାବରେ ରହିଅଛି । କବିଙ୍କର ଅନ୍ତରରେ ଏଥିପାଇଁ ଯେଉଁ ଦୁଃଖ ଜାତ ହୋଇଛି ତାହା ତାଙ୍କର ସ୍ୱଦେଶପ୍ରୀତିର ପରିଚାୟକ ।

ମହାଯାତ୍ରାର ଦ୍ୱିତୀୟ ସର୍ଗରେ କବି ଅଗ୍ନିଦେବଙ୍କ ମୁଖରେ ଶ୍ରୀକ୍ଷେତ୍ରର ମହିମା ଯେପରି ଭାବରେ ବର୍ଣ୍ଣନା କରିଅଛନ୍ତି ତାହା ତାଙ୍କର ସ୍ୱଦେଶପ୍ରୀତି ଏବଂ ଭକ୍ତିର ଯଥାର୍ଥ ଉଦାହରଣ । ଅଗ୍ନିଦେବଙ୍କ ସହିତ ପାଣ୍ଡବମାନେ ଭ୍ରମଣ କରି ତୀର୍ଥ, ଗିରି, ନଦନଦୀ ପ୍ରଭୃତି ସନ୍ଦର୍ଶନ କରିବା ସମୟରେ କବିଙ୍କର ବର୍ଣ୍ଣନାଶୈଳୀରୁ ସ୍ୱଦେଶବତ୍ସଳ ଭାବ ପ୍ରକାଶ ପାଇଅଛି । କବିବର ରାଧାନାଥଙ୍କର ସ୍ୱଦେଶପ୍ରୀତି ମହାଯାତ୍ରାରେ କେବଳ ଉତ୍କଳର ସୀମା ମଧ୍ୟରେ ଆବଦ୍ଧ ନହୋଇ ଭାରତୀୟତାରେ ବ୍ୟାପ୍ତ ହୋଇଅଛି ।

କବିବର ରାଧାନାଥ ଇଂରେଜ ସରକାର ଅଧୀନସ୍ଥ ଜଣେ କର୍ମଚାରୀ ଥିବାରୁ ତାଙ୍କୁ ବିଶେଷ ସାବଧାନତା ସହକାରେ ଲେଖନୀ ଚାଳନା କରିବାକୁ ପଡ଼ୁଥିଲା । ସ୍ୱଦେଶପ୍ରେମୀ କବି ଯେଉଁଠାରେ ଦେଶ ଓ ଜାତିର ଦୁର୍ଦ୍ଦଶା ଗାନ କରିବା ପାଇଁ ଇଚ୍ଛା କରିଛନ୍ତି ସେଠାରେ ତାଙ୍କୁ ସତର୍କତା ଅବଲମ୍ବନ କରିବାକୁ ପଡ଼ିଛି । ଏହା ସତ୍ତ୍ୱେ କବିଙ୍କ ଲେଖନୀରେ କବିଙ୍କର ଦେଶାତ୍ମବୋଧ ଭାବଧାରାର ପ୍ରକାଶ ଯଥେଷ୍ଟ ଭାବରେ ହୋଇଅଛି ବୋଲି କୁହାଯାଇପାରେ ।

—0—

# ନିଧନ ବଧନ

କବିବର ରାଧାନାଥ ଓଡ଼ିଆ ସାହିତ୍ୟରେ ନବଯୁଗର ସ୍ରଷ୍ଟା ଭାବରେ ଯେପରି ଭାବରେ ସମ୍ମାନିତ ହୋଇଥିଲେ ତାହା ତାଙ୍କର କବି ପ୍ରତିଭାର ସ୍ପଷ୍ଟ ପରିଚୟ ଦେଉଥିଲା । ଊନବିଂଶ ଶତାବ୍ଦୀରେ ଓଡ଼ିଆ ସାହିତ୍ୟରେ ମଧ୍ୟଯୁଗୀୟ କାବ୍ୟ ଓ ଆଧୁନିକ କାବ୍ୟ ମଧ୍ୟରେ ଯେପରି ଭାବରେ ତୁଳନାତ୍ମକ ବିଚାର ହୋଇଥିଲା ତାହା ସେ ସମୟର ପାଠକମାନଙ୍କର ରୁଚିବୋଧର ପରିଚୟ ଦେଇଥିଲା । ରାଧାନାଥ-ସାହିତ୍ୟ ଓଡ଼ିଆ ସାହିତ୍ୟରେ ଏକ ନୂତନଯୁଗର ଅଭ୍ୟୁଦୟର କାରଣ ହେଲେହେଁ ସେ ସମୟର ବହୁ ପାଠକ ତାହାକୁ ପୂର୍ଣ୍ଣ ଭାବରେ ଗ୍ରହଣ କରିବା ନିମିତ୍ତ ପଶ୍ଚାତ୍ପଦ ହୋଇଥିଲେ । ସେମାନେ ବିଶ୍ୱାସ କରିଥିଲେ ଯେ ପ୍ରାଚୀନ ଓଡ଼ିଆ ସାହିତ୍ୟ ଯଥାର୍ଥରେ ସାହିତ୍ୟ ପଦବାଚ୍ୟ ଏବଂ ଆଧୁନିକ ଓଡ଼ିଆ ସାହିତ୍ୟ ସାହିତ୍ୟ ପଦବାଚ୍ୟ ନୁହେଁ । ସେମାନେ ଏ ପ୍ରକାର ମତ ପୋଷଣ କରିବାର କାରଣ ହେଉଛି, ସେମାନେ ଥିଲେ ଅତି ମାତ୍ରାରେ ପ୍ରାଚୀନପନ୍ଥୀ । ସେମାନେ ରାଧାନାଥ-ସାହିତ୍ୟ ବିରୁଦ୍ଧରେ ଯେତେ ପ୍ରତିକୂଳ ମତ ପୋଷଣ କଲେହେଁ ରାଧାନାଥ-ସାହିତ୍ୟ ସେମାନଙ୍କର ବିରୁଦ୍ଧାଚରଣ ଫଳରେ ଦୂରେଇ ଯାଇନାହିଁ । ସେମାନେ ପ୍ରାଚୀନ ସାହିତ୍ୟର ପ୍ରଶଂସାରେ ଶତମୁଖ ହୋଇପଡ଼ିବାରେ କୌଣସି ନୂତନତ୍ୱ ନାହିଁ ।

ଯେଉଁମାନେ ନୂତନରୀତିରେ ଶିକ୍ଷାଲାଭ କରି ଶିକ୍ଷିତ ହୋଇଥିଲେ ସେମାନେ ରାଧାନାଥ-ସାହିତ୍ୟକୁ ଆଦରର ସହିତ ଗ୍ରହଣ କରିବା ସଙ୍ଗେ ସଙ୍ଗେ ପ୍ରାଚୀନପନ୍ଥୀ ପାଠକମାନଙ୍କର ମତକୁ ଖଣ୍ଡନ କରିବା ନିମନ୍ତେ କେତେକାଂଶରେ ପ୍ରାଚୀନ ସାହିତ୍ୟର ନିନ୍ଦାବାଦ କରିଥିଲେ । ଏହାର ଅର୍ଥ ନୁହେଁ ଯେ, ସେମାନେ

ପ୍ରାଚୀନ ସାହିତ୍ୟର ବହୁଳପ୍ରଚାର ଥିଲା । ରାଧାନାଥ-ସାହିତ୍ୟର ନୂତନ ରୁଚି ଏ ଦେଶର ବହୁ ପାଠକଙ୍କୁ ଯେ ମୁଗ୍ଧ କରିଥିଲା ଏକଥା ନିଃସନ୍ଦେହରେ କୁହାଯାଇ ପାରେ । ଆଧୁନିକ ଶିକ୍ଷିତ ଯୁବଗୋଷ୍ଠୀଙ୍କି ସେ ସମୟରେ ରାଧାନାଥ-ସାହିତ୍ୟକୁ ଗ୍ରହଣ କରି ତାର ପ୍ରଚାର ନିମନ୍ତେ ଉଦ୍ୟତ ହୋଇଥିଲା । କବିବର ରାଧାନାଥଙ୍କ ସାହିତ୍ୟକୁ ବହୁ ପାଠକ ତଥା ଆଲୋଚକ ପ୍ରଶଂସା କରିଛନ୍ତି ଏବଂ ନିନ୍ଦା ମଧ୍ୟ କରିଛନ୍ତି । ଯେଉଁମାନେ ରାଧାନାଥ-ସାହିତ୍ୟର ମର୍ମ ତଥା ପ୍ରାଣକେନ୍ଦ୍ରକୁ ହୃଦୟଙ୍ଗମ ନକରି ଅତି ନିର୍ମମ ଭାବରେ ତାହାକୁ ନିନ୍ଦା କରିଥିଲେ ସେମାନଙ୍କର ନିନ୍ଦାର ସାର୍ଥକତା ନାହିଁ । ପୁଣି, କବିବର ରାଧାନାଥଙ୍କର ଜୀବନ-ଇତିହାସରୁ ଜଣାପଡ଼େ ଯେ, ତାଙ୍କ ସାହିତ୍ୟ ପ୍ରତି ଯେଉଁ ପ୍ରକାର ଆକ୍ଷେପୋକ୍ତି ପ୍ରକାଶ ପାଉଥିଲା ତାହାର କାରଣ ଭିନ୍ନ ଥିଲା । କବିଙ୍କର ଜୀବନରେ ଘଟିଥିବା ଘଟଣାକୁ କେନ୍ଦ୍ରକରି ତାଙ୍କର ସାହିତ୍ୟକୁ ନିନ୍ଦା କରାଯିବା କେବେହେଲେ ସମୀଚୀନ ନୁହେଁ । 'ଇନ୍ଦ୍ରଧନୁ ଓ ବିଜୁଳିର' ଦ୍ୱନ୍ଦ୍ୱ ଯୁଦ୍ଧର ଅନ୍ତରାଳରେ କବିବର ରାଧାନାଥଙ୍କ ଜୀବନରେ ଘଟିଥିବା ଅନ୍ୟ କେତେକ ଘଟଣା ରହିଥିଲା । ପାଠ୍ୟପୁସ୍ତକ ଆନ୍ଦୋଳନ କବିବର ରାଧାନାଥଙ୍କ ବିରୁଦ୍ଧରେ ଯେପରି ଭାବରେ ଉପସ୍ଥାପିତ କରିଥିଲା ତହିଁରେ ରାଧାନାଥଙ୍କର ବ୍ୟକ୍ତିଗତ କାର୍ଯ୍ୟ କଳାପର ଦୋଷ ଥାଇପାରେ, ମାତ୍ର ସେଥିପାଇଁ ତାଙ୍କ ସାହିତ୍ୟର ନିନ୍ଦାଗାନ ଯଥାର୍ଥ ନୁହେଁ । କବିବର ରାଧାନାଥଙ୍କର ସାହିତ୍ୟକୁ କେନ୍ଦ୍ରକରି ଏ ଦେଶରେ କିପରି ଭାବରେ ସପକ୍ଷ ଓ ବିପକ୍ଷ ' ସମାଲୋଚନା କରାଯାଇଥିଲା, ସେହି ବିଷୟ ଏଠାରେ ଦେଖାଇ ଦେବାର କଥା ।

କବିବର ରାଧାନାଥ ତାଙ୍କର କାବ୍ୟ ରଚନା କରିବା ନିମିତ୍ତ ବିଦେଶୀ କଥାବସ୍ତୁକୁ ଗ୍ରହଣ କରିଥିଲେ । ସେ ସମୟରେ ପାଠକମାନେ କବିଙ୍କର ଆହରଣ ବିଷୟରେ ଯେ ଅନୁସନ୍ଧାନ କରିନଥିଲେ, ତାହା ନୁହେଁ । ସେମାନେ ଅନୁସନ୍ଧାନ କରି ମଧ୍ୟ କବିଙ୍କର ଆହରଣ ଦୃଶ୍ୟକୁ ଠିକ୍ ଭାବରେ ଧରିପାରି ନଥିଲେ ।

କବିତାର ରାଧାନାଥ ତାଙ୍କର କାବ୍ୟର ମୁଖବନ୍ଧରେ ଯେଉଁ ସୂଚନା ଦେଇଥିଲେ ତାହା ଯଥାର୍ଥ ନୁହେଁ ବୋଲି ପାଠକମାନେ ଅନୁଭବ କରିଥିଲେ । କେଦାରଗୌରୀ ବିଷୟରେ ଜଣେ ଆଲୋଚକ ଯେଉଁ ମତ ପ୍ରକାଶ କରିଥିଲେ, ତାହା ଏଠାରେ ଉଦ୍ଧାର ଯୋଗ୍ୟ ।

"ବାବୁ ରାଧାନାଥ ରାୟ ପ୍ରାୟ ଦେଢବର୍ଷ ହେବ 'କେଦାର ଗୌରୀ' ନାମକ ଖଣ୍ଡିଏ କବିତା ପୁସ୍ତକ ପ୍ରକାଶ କରିଅଛନ୍ତି । ସେହି ପୁସ୍ତକର ପ୍ରାରମ୍ଭରେ ଲେଖାଅଛି କି. 'ଭୁବନେଶ୍ୱରରେ କେଦାରଗୌରୀ ନାମରେ ଗୋଟିଏ ରମଣୀୟ ନିର୍ଝର ଅଛି । ନିମ୍ନଲିଖିତ ପଦ୍ୟରେ ସେଥିର ପୌରାଣିକ କଥା ଲିପିବଦ୍ଧ ହୋଇଅଛି' । ଆଉ ମଧ୍ୟ ପୁସ୍ତକର ଉପର ଭାଗରେ 'ପ୍ରଣୀତ' ଶବ୍ଦଟି ସ୍ପଷ୍ଟରୂପେ ଲେଖାଅଛି । ପୁସ୍ତକଖଣ୍ଡି ପ୍ରକାଶିତ ହେବା ସମୟରେ ଏ ବିଷୟରେ ଗୋଳମାଳ ଲାଗିଥିଲା । କିନ୍ତୁ କେଉଁ ପୁରାଣରୁ ତାହା ସଂଗୃହୀତ ହୋଇଅଛି ତହିଁର କିଛିମାତ୍ର ଉତ୍ତର ମିଳି ନଥିଲା । ଏହିରୂପେ ଏତେକାଳ ଅତିବାହିତ ହୋଇଗଲା । କିୟଦ୍ଦିବସ ଗତ ହେଲା ପରେ ଜଣେ ଅନୁସନ୍ଧାୟୀ ଦେଖାଇଦେଲେ ଯେ ରାଧାନାଥ ବାବୁ ସେକ୍ସପିଅରଙ୍କ କବିତାରୁ ତାହା ଅନୁବାଦ କରିଅଛନ୍ତି । ତହୁଁ ବାବୁ ମହୋଦୟ ବାଧ୍ୟ ହୋଇ ସ୍ୱୀକାର କଲେ, ବାସ୍ତବରେ କେଦାରଗୌରୀ ସେକସ୍‌ପିଅରଙ୍କ ପିରାମସ୍ ଏବଂ ଥିସ୍‌ବି ନାମକ କବିତାରୁ ଅନୁବାଦିତ ହୋଇଅଛି, କିନ୍ତୁ ପ୍ରକାଶକଙ୍କ ଦୋଷରୁ ତାହା ସ୍ୱୀକାର କରଯାଇ ନାହିଁ । କିନ୍ତୁ ଗ୍ରନ୍ଥର ପ୍ରାରମ୍ଭରେ ଯେଉଁ କତିପୟ ପଂକ୍ତି ଲେଖାଅଛି, ଯାହା ଆମ୍ଭେମାନେ ଉପରେ ଉଦ୍ଧାର କରିଅଛୁଁ, ତାହା କି ପ୍ରକାଶକଙ୍କ କର୍ତ୍ତୃକ ଲିଖିତ ହୋଇଅଛି ? ରାଧାନାଥ ବାବୁ ସେକ୍ସ୍‌ପିଅର୍‌-ପୁରାଣରୁ ଅନୁବାଦ କରି 'କେଦାର ଗୌରୀ' ଲେଖି ଅଛନ୍ତି, କିନ୍ତୁ ଭୁବନେଶ୍ୱର ନିକଟବର୍ତ୍ତୀ କେଦାର ଗୌରୀ ନିର୍ଝର ସଂପର୍କରେ ତାହା ପ୍ରୟୋଗ କରିବା ଭଲ ହୋଇ ନାହିଁ । ଆଉ ମଧ୍ୟ ରାଧାନାଥ ବାବୁ ଉତ୍କଳ ସାରସ୍ୱତ ଉଦ୍ୟାନର ପ୍ରଧାନ କବି, ତାଙ୍କର ଏ ରୂପ ଅସରଳତା କଦାପି ସୁନ୍ଦର ନୁହେଁ ।" (୧)

(୧) ଯୁଗ ପ୍ରବର୍ତ୍ତକ ସ୍ରଷ୍ଟା ରାଧାନାଥ—ପୃ. ୨୮୬.

କେଦାରଗୌରୀ ପ୍ରକାଶ ପାଇବା ସମୟରେ କବିବର ରାଧାନାଥ ତାହାର କଥାବସ୍ତୁ ବିଷୟରେ ଯେଉଁ ସୂଚନା ଦେଇଥିଲେ ତାହା ଏକ ଅସତ୍ୟ ଅଭିବ୍ୟକ୍ତି । କାରଣ ତାଙ୍କ କାବ୍ୟର କଥାବସ୍ତୁ କୌଣସି ପୌରାଣିକ ଭିତ୍ତିରେ ପ୍ରତିଷ୍ଠିତ ନୁହେଁ, କବିବର ରାଧାନାଥ ଯେତେବେଳେ ବିଦେଶୀ କଥାବସ୍ତୁ ଆଣି ଏ ଦେଶର କାବ୍ୟରାଜ୍ୟରେ ତାହାକୁ ପ୍ରତିଷ୍ଠିତ କରିବାର ଉଦ୍ୟମ କଲେ ସେତେବେଳେ ସେ ପାଠକମାନଙ୍କର ଚିତ୍ତବୃତ୍ତିକୁ ଆକୃଷ୍ଟ କରିବା ଇଚ୍ଛାରେ ଅସତ୍ୟ ଉକ୍ତିର ଆଶ୍ରୟ ଗ୍ରହଣ କରିଥିଲେ । କାରଣ ସେ ଉଲ୍‌ଭାବରେ ଜାଣିଥିଲେ ଯେ, ଏ ଦେଶର ପାଠକମାନେ ହଠାତ୍ ଏତେବଡ଼ ଗୋଟାଏ ପରିବର୍ତ୍ତନକୁ ପୂର୍ଣ୍ଣପ୍ରାଣରେ ସମର୍ଥନ କରି ନପାରନ୍ତି । ପାଠକମାନଙ୍କର ଚିତ୍ତବୃତ୍ତି ପୌରାଣିକ ଭିତ୍ତି ସହିତ ଏପରି ଅଭ୍ୟସ୍ତ ହୋଇ ପଡ଼ିଥିଲା ଯେ କାବ୍ୟର କଥାବସ୍ତୁ କହିଲେ ତାହା କେବଳ ପୌରାଣିକ ଭିତ୍ତିକ ବୋଲି ବୁଝାଉଥିଲା । ପାଠକମାନଙ୍କର ଚିତ୍ତବୃତ୍ତିର ଏହି ଲକ୍ଷଣ ସହିତ କବି ପରିଚିତ ଥିବାରୁ କେଦାରଗୌରୀ କାବ୍ୟର କଥାବସ୍ତୁ ପୌରାଣିକ ଭିତ୍ତିକ ବୋଲି ପ୍ରକାଶ କରିଥିଲେ । ଏହାଦ୍ୱାରା କବିବର ରାଧାନାଥଙ୍କର ଓଡ଼ିଆ ସାହିତ୍ୟ ଓ ତାର ପାଠକମାନଙ୍କ ବିଷୟରେ କିପରି ଗଭୀର ଜ୍ଞାନ ଥିଲା ତାହା ଜଣାପଡ଼େ । କାବ୍ୟଯୁଗର ସାହିତ୍ୟର ଜନପ୍ରିୟତାର କାରଣ କବିବର ରାଧାନାଥ ଜାଣି ପାରିଥିଲେ । ଓଡ଼ିଆ ସାହିତ୍ୟର ମଧ୍ୟଯୁଗରେ ଯେଉଁସବୁ କାବ୍ୟ ରଚିତ ହୋଇଥିଲା, ସେ ସବୁର ଅଧିକାଂଶ କଥାବସ୍ତୁ ପୁରାଣରୁ ଗୃହୀତ । ତେଣୁ ପାଠକମାନେ ସେସବୁକୁ ଅତ୍ୟନ୍ତ ଆଗ୍ରହର ସହିତ ଗ୍ରହଣ କରିନେଇଥିଲେ । କେବଳ ଏତିକି ନୁହେଁ, ପାଠକମାନଙ୍କର ଚିତ୍ତବୃତ୍ତିର ଏହି ବିଶିଷ୍ଟ ଲକ୍ଷଣ ସହିତ କାବ୍ୟଯୁଗର ସ୍ରଷ୍ଟା କବି ସମ୍ରାଟ ଉପେନ୍ଦ୍ର ଭଞ୍ଜ ପରିଚିତ ଥିଲେ । ଉପେନ୍ଦ୍ର ଭଞ୍ଜ ଯେତେବେଳେ କାଳ୍ପନିକ କାବ୍ୟ ସୃଷ୍ଟି କରିବାକୁ ଉଦ୍ୟତ ହେଲେ ସେତେବେଳେ ସେ ମଧ୍ୟ କାବ୍ୟର କଥାବସ୍ତୁ ଉପସ୍ଥାପନ ଲାଗି ଏକ କୌଶଳ ପ୍ରୟୋଗ କରିଥିଲେ । ଉଦାହରଣ ସ୍ୱରୂପ ଲାବଣ୍ୟବତୀର କଥାବସ୍ତୁକୁ ପରୀକ୍ଷା କରାଯାଇପାରେ । ଚନ୍ଦ୍ରଭାନୁ ଓ ଲାବଣ୍ୟବତୀ, ଯଥାକ୍ରମେ କବି ସୃଷ୍ଟିରେ କାଳ୍ପନିକ ନାୟକ ଓ ନାୟିକା । ମାତ୍ର କବି ସେ ଦୁହିଙ୍କର ପୂର୍ବଜନ୍ମ

ବୃତ୍ତାନ୍ତ ବର୍ଣ୍ଣନା କରି ପାଠକମାନଙ୍କ ମନରେ ପୌରାଣିକ ପରମ୍ପରାର ଭିତ୍ତି ପ୍ରତିଷ୍ଠିତ କରିଅଛନ୍ତି । ଉପେନ୍ଦ୍ର ଭଞ୍ଜ କାବ୍ୟର ବର୍ଣ୍ଣନା ପରିସରରେ ଯେଉଁ ଉପାୟ ଅବଲମ୍ବନ କରିଥିଲେ ତାହା କବିବର ରାଧାନାଥଙ୍କ ଦୃଷ୍ଟିରୁ ବାଦ୍ ପଡ଼ିନାହିଁ । ସେ ଯେତେବେଳେ ବିଦେଶୀ କଥାବସ୍ତୁର ବୃକ୍ଷ ଆଣି ଏ ଦେଶର ସାରସ୍ୱତ କାନନରେ ରୋପଣ କଲେ ସେତେବେଳେ ତାଙ୍କୁ ବହୁ ପ୍ରକାର ଅସୁବିଧାର ସମ୍ମୁଖୀନ ହେବାକୁ ପଡ଼ିଥିଲା । ଏହି ଅସୁବିଧାରୁ ନିଜକୁ ରକ୍ଷା କରିବା ପାଇଁ କବି ପାଠକମାନଙ୍କର ଚିତ୍ତବୃତ୍ତିର ଲକ୍ଷଣ ଅନୁସାରେ ଅସତ୍ୟ ଉକ୍ତିର ଆଶ୍ରୟ ଗ୍ରହଣ କରିଥିଲେ ସେ ସମୟର ଓଡ଼ିଆ ପାଠକମାନଙ୍କର ଦୃଷ୍ଟିଭଙ୍ଗୀ ଏପରି ସଙ୍କୀର୍ଣ୍ଣ ଥିଲା ଯେ ସେମାନେ କବିଙ୍କର ଆହରଣ ପ୍ରବୃତ୍ତିକୁ ଧରିବାକୁ ଅକ୍ଷମ ହୋଇଥିଲେ । 'ପିରମ୍ସ ଓ ଥିସ୍‌ବି' ଉପାଖ୍ୟାନକୁ ସେକ୍ସପିଅର୍‌ଙ୍କର କବିତା ବୋଲି କହି ସେମାନେ ନିଜ ନିଜର ଅଜ୍ଞତାର ପରିଚୟ ଦେବା ସଙ୍ଗେସଙ୍ଗେ ରାଧାନାଥଙ୍କୁ ସତର୍କ ହେବାଲାଗି ଉପାଦାନ ଯୋଗାଇ ଦେଇଥିଲେ ।

ଚନ୍ଦ୍ରଭାଗା ଓ ନନ୍ଦିକେଶ୍ୱରୀ ପ୍ରକାଶ ପାଇବା ପରେ ଆଲୋଚକମାନେ ଏହି ଦୁଇଟି କାବ୍ୟ ଉପରେ ନିଜ ନିଜର ମନ୍ତବ୍ୟ ପ୍ରକାଶ କରିଥିଲେ । ଜଣେ ଆଲୋଚକଙ୍କର ମତ ଏଠାରେ ଉଦ୍ଧାର କରାଯାଇ ପାରେ । "ଅନୁରାଗର ଚିତ୍ର ଦୁଇଥିରେ ( ଚନ୍ଦ୍ରଭାଗା ଓ କେଦାର ଗୌରୀ ) ପ୍ରାୟ ଏକ ଜାତୀୟ ଅଟେ । ଅନୁରାଗର ଏପରି ଚିତ୍ର ଏକାବେଳକେ ସୌନ୍ଦର୍ଯ୍ୟହୀନ ନୋହିଲେହେଁ, ଉଚ୍ଚଶ୍ରେଣୀର ଚିତ୍ର ନୁହେଁ ଏବଂ ଏପରି ଚିତ୍ରର ବହୁଳତା ପଙ୍କିଳାନୁରାଗ କଳୁଷିତ, କୁରୁଚି ପ୍ଳାବିତ, ଉତ୍କଳ ସାହିତ୍ୟ ସଂସାରରେ ବାଞ୍ଛନୀୟ ନୁହେଁ । ଆମ୍ଭେମାନେ ଆଶାକରୁଁ କବି ଭବିଷ୍ୟତରେ ପବିତ୍ର ପ୍ରଣୟର ସ୍ୱର୍ଗୀୟ ଛବି ଦେଖାଇ ଆମ୍ଭମାନଙ୍କ ପିପାସୁ ହୃଦୟକୁ ନିର୍ମଳ ସୌନ୍ଦର୍ଯ୍ୟ ରସରେ ଅଭିଷିକ୍ତ କରିବେ ।" (୧)

ଚନ୍ଦ୍ରଭାଗା କାବ୍ୟରେ ସୂର୍ଯ୍ୟଦେବ ଚନ୍ଦ୍ରଭାଗାଙ୍କ ପ୍ରତି ଆସକ୍ତ ହୋଇ ତାଙ୍କର ପ୍ରେମପ୍ରାର୍ଥୀ ହେବା ଏ ଦେଶର ପାଠକମାନଙ୍କ ଚକ୍ଷୁରେ ଯେତିକି ଦୋଷାବହ ହୋଇଅଛି, ପିତାଙ୍କ ମସ୍ତକରୁ କୈଳାସମଣି

(୧) ଯୁଗ ପ୍ରବର୍ତ୍ତକ ସ୍ରଷ୍ଟା ରାଧାନାଥ—ପୃ. ୧୮୬.

ଅପହରଣ କରି ଗଜବାଳା ନନ୍ଦନା ଗୈବ୍ରଗଙ୍କ ନିକଟରେ ପ୍ରୀତିଭିକ୍ଷା କରିବା ତଦପେକ୍ଷା ଅଧିକ ଦୋଷାବହ ହୋଇପଡ଼ିଛି । ଗଜବାଳା ନନ୍ଦନାଙ୍କୁ ଏ ଦେଶର ପାଠକମାନେ ଯେତେବେଳେ ଏଇଦେଶର ରାଜବାଳା ଭାବରେ ଗ୍ରହଣ କରିନେଇଛନ୍ତି ସେତେବେଳେ ସେମାନଙ୍କର ଚିତ୍ତ ଏହାଦ୍ୱାରା ବିକ୍ଷିପ୍ତ ହେବା ନିତାନ୍ତ ସ୍ୱାଭାବିକ । କବିବର ରାଧାନାଥଙ୍କ ଲେଖନୀରୁ ଯେତେବେଳେ ପାର୍ବତୀ କାବ୍ୟ ଅମୃତ୍ପ୍ରକାଶ କଲା ସେତେବେଳେ ଏଦେଶର ସାହିତ୍ୟପ୍ରେମୀ ପାଠକମାନେ କବିଙ୍କୁ ଅତ୍ୟନ୍ତ ନିର୍ମମ ଭାବରେ ସମାଲୋଚନା କରିଥିଲେ । କବିଙ୍କ ପ୍ରତି ଆଲୋଚକ-ମାନେ ସେ ସମୟରେ ଏପରି ନିର୍ମମ ହୋଇପଡ଼ିଥିଲେ ଯେ ଅନେକ କ୍ଷେତ୍ରରେ ସେମାନଙ୍କର ଆଲୋଚନା କୁତ୍ସାରଟନାରେ ପରିଣତ ହୋଇଥିଲା । କବିବର ରାଧାନାଥ ଏହି କୁତ୍ସାରଟନାରେ ଅତିମାତ୍ରାରେ ବିଚଳିତ ହୋଇପଡ଼ିଥିଲେ । 'ଛିଦ୍ରାନ୍ୱେଷୀ' ଓ ସ୍ୱଜାତି କଳା ସମୟରେ କବିବର ରାଧାନାଥଙ୍କୁ ଅତ୍ୟନ୍ତ ଅପ୍ରୀତିକର ପରିସ୍ଥିତିର ସମ୍ମୁଖୀନ ହେବାକୁ ପଡ଼ିଥିଲା । ସେସମୟରେ କବିଙ୍କୁ କିପରି ଭାବରେ ଆକ୍ଷେପ କରାଯାଉଥିଲା ତାହାର ଏକ ଉଦାହରଣ ଏଠାରେ ଦିଆଯାଇ ପାରେ ।

" ଶତବାର ଚୁମ୍ବି ତବମୁଖେ ଆନନ୍ଦରେ
ହେ କବିଭୂଷଣ; × × ×
× × × × ×
ବସି ସଙ୍ଗସୁଖ ମେଳେ
ତପୋପୂତା ତଟବାସୀ କଟକ ହର୍ମ୍ୟରେ
ତୋଷି 'ନବ୍ୟ-ସଭ୍ୟ ଯୁବାଦଳଙ୍କୁ ଆକର୍ଣ୍ଣେ
'ଲାବଣ୍ୟବତୀର ମଧୁଶଯ୍ୟା ପର୍ଯ୍ୟଙ୍କରୁ,
ସେ 'ରସେ' ଯେ ରସଜ୍ଞ ହୁଅଇ ଭୁଲନେ
ଆଦ୍ୟପ୍ରାନ୍ତ ରସତଖା ତବ ମୁଖ ଦ୍ୱାରୁ
'କାମଣ୍ଡା' ପୂର୍ବପୁରୁଷ ବଂଶ ଅବତଂଶ-
ଗଙ୍ଗେଶ୍ୱର କୌଶଲ୍ୟାଙ୍କ ଜନକ କନ୍ୟାର

'ହୁଁ କୁତ' 'ଇନ୍ଦ୍ରିୟଭୂଷଣ'–ପର୍ଯ୍ୟଙ୍କ ଉଣ୍ଡନ-
ଶବଦ ବଧାନ ଧୀର ପ୍ରଣମ୍ୟ ନିଃସୃତ
ଗୁପ୍ତକଳା-ରସ-ସୁଧା ଭକ୍ଷଣ ସଙ୍ଗତେ,

× × ×

କଣାମେଘ ପର ଏକା ବରଷିଲ ଭାବେ,
ହେ କଣାଭୂଷଣ ! ଏଥିଁ ଚନ୍ତିଲି ମୁଁ ମନେ,
ଯଦବା 'କବିଭୂଷଣ' ରଚନା କୌଶଳେ ।'
ଧନ୍ୟ ସେ ସମ୍ବଲପୁର ସ୍ୱଚୈତ୍ରିଣୀ ସ୍ତମ୍ଭ,
ଯହିଁରେ ଗାବନ୍ତ ଚଢି ଏ କବିଭୂଷଣ-
ପରଭୃତ ଆନନ୍ଦରେ, ଲୁଲରଙ୍ଗ ସଙ୍ଗେ,
ଯଥା କଟକ ନଗରସ୍ଥ ମ୍ୟୁନସିପାଲିଟି-
ନିଷାଦ ବସି ଗର୍ବେ ଗାଏ କୁହୁରବେ
ଦୂଷିତ-ପୂରିତ ଲୌହ-ଶକଟ ଉପରେ, ।" ( ୧ )

ଏହିପ୍ରକାର ବହୁ କୁତ୍ସିତ ମନ୍ତବ୍ୟ ସେ ସମୟରେ ରାଧାନାଥଙ୍କ ବିରୁଦ୍ଧରେ ପ୍ରକାଶ ପାଇଥିଲା । କବି ଏହିସବୁ କୁତ୍ସାରଟନାରେ ବିଶେଷ ଭାବରେ ମର୍ମାହତ ହୋଇଥିଲେ ।

କବି ଗଙ୍ଗାଧର ମେହେର କବିବର ରାଧାନାଥଙ୍କର କବିପ୍ରତିଭାର ଜଣେ ପୂଜାରୀ ଥିଲେ ବୋଲି କୁହାଯାଇ ପାରେ । କବିବର ରାଧାନାଥ ଓ କବି ଗଙ୍ଗାଧର ମେହେରଙ୍କ ମଧ୍ୟରେ ବିନିମୟ ହୋଇଥିବା ପତ୍ରାବଳୀ ଏହାର ସାକ୍ଷ୍ୟ ଦେଇଥାଏ । ଗଙ୍ଗାଧର ମେହେର କାବ୍ୟରଚନା କ୍ଷେତ୍ରରେ ରାଧାନାଥଙ୍କର ଉପଦେଶାଦ ଗ୍ରହଣ କରିଥିବା କଥା ସୁବିଦିତ । ଗଙ୍ଗାଧର ପ୍ରାଚ୍ୟଜଗତର ଆଦର୍ଶରେ ଅନୁପ୍ରାଣିତ ହୋଇଥିଲେ, ମାତ୍ର କବିବର ରାଧାନାଥ ପାଶ୍ଚାତ୍ୟ ଜଗତର କାବ୍ୟାଦର୍ଶକୁ ଗ୍ରହଣ କରିଥିଲେ । ଗଙ୍ଗାଧରଙ୍କର କାବ୍ୟ କବିତାରେ ସ୍ୱଦେଶର ନାୟକ-

---

୧) ଯୁଗ ପ୍ରବର୍ତ୍ତକ ସ୍ରଷ୍ଟା ରାଧାନାଥ—ପୃ. ୧୯୨—୧୯୩.

ନାୟିକାଙ୍କର ରୂପାୟନ ଏକ ବିଶିଷ୍ଟ ଲକ୍ଷଣ । ତେଣୁ ସେ କବିବର ରାଧାନାଥଙ୍କର କାବ୍ୟରେ ରୂପଲବ୍ଧ କରିଥିବା ବିଦେଶୀ ନାୟକ-ନାୟିକାଙ୍କ ଆଚରଣରେ ସନ୍ତୋଷ ପ୍ରକାଶ କରିନାହାନ୍ତି । ବିଦେଶୀ କାବ୍ୟର କଥାବସ୍ତୁ ବା ନାୟକ ନାୟିକା ଏ ଦେଶର ସାହିତ୍ୟରେ ଯେପରି ଭାବରେ ପ୍ରାଧାନ୍ୟଲାଭ କରିଥିଲେ ତାହାକୁ ସମର୍ଥନ କରି ନପାରି ସେ ଉତ୍କଳ ଲକ୍ଷ୍ମୀ କାବ୍ୟରେ ଲେଖିଛନ୍ତି,

"ନନ୍ଦିକା ଆସିଲା କଣ୍ଟକିତ ପଥେ
ଲଜ୍ଜା-ଉପାନନ୍ଦ ପଦେ
ଉପାୟନ ରୂପେ କୈବର୍ତ୍ତମଣି ଧରି
ନବ ପ୍ରେମ ଗଦଗଦେ ।

ଏକ କରେ ଧନୁ ଅନ୍ୟ କରେ ଧରି
ମାର୍ତ୍ତଣ୍ଡ ପ୍ରଚଣ୍ଡ ଶର,
ନିମେଷ ମାତ୍ରକେ ଦଉଡ଼ି ଆସିଲା
ଉଷା ବୀର ନାରୀବର ।

କୌଶଲ୍ୟା ଆସିଲା ମୁଖ ଢାଙ୍କି ବାସେ
କଠୋର କରେ ପାଷାଣ,
ଥିଲେ ତାଙ୍କସଙ୍ଗେ ଅନ୍ନପୂର୍ଣ୍ଣା ଶୁଦ୍ଧ-
ତାରାସମ ଜ୍ୟୋତିଷ୍ମାନ ।

ନବୀନ ରବିଙ୍କ ଗାଢ ଅନୁରାଗ
ପେଷଣେ ଚରଣତଳ
ରଙ୍ଗ ହୋଇଥିଲା, ଚନ୍ଦ୍ରଭାଗା ସଖୀ
ଆସିଲେ ହୋଇ ଚଞ୍ଚଳ ।"

କବିବର ରାଧାନାଥଙ୍କର କାବ୍ୟରେ ଥିବା ନାୟକ ନାୟିକା-ମାନଙ୍କର ଆଚରଣ ଯେ କବି ଗଙ୍ଗାଧରଙ୍କ ଦୃଷ୍ଟିରେ ଦୋଷାବହ ଥିଲା, ଏକଥା କବିଙ୍କ ବର୍ଣ୍ଣନାରୁ ପ୍ରତିପନ୍ନ ହୋଇଥାଏ ।

ବିଦେଶୀ ନାୟକ ନାୟିକାମାନଙ୍କ କାର୍ଯ୍ୟକଳାପ ଏ ଦେଶବାସୀଙ୍କ ପକ୍ଷରେ ଶିକ୍ଷଣୀୟ ହୋଇ ନଥିବାରୁ ପଲ୍ଲୀକବି ନନ୍ଦକିଶୋର ରାଧାନାଥଙ୍କ କାବ୍ୟରେ ନାୟକ ନାୟିକାଙ୍କ ବିରୁଦ୍ଧରେ ସ୍ୱର ଉତ୍ତୋଳନ କରିଥିଲେ । ନାୟକ ନାୟିକାଙ୍କର ପ୍ରେମଚିତ୍ର ନନ୍ଦକିଶୋରଙ୍କ ଦୃଷ୍ଟିରେ ନିତାନ୍ତ ଆପତ୍ତିଜନକ ହୋଇ ଉଠିଛି । ସେ ଲେଖିଥିଲେ,

"ରାଧାନାଥଙ୍କ ନାୟକ ନାୟିକାଙ୍କ ପ୍ରେମ ତାଙ୍କର ଭାଷାରେ 'ରୂପଜ' । ସେ ଏମନ୍ତ ଚିତ୍ର ଉତ୍କଳକୁ ଦେଇ ପାରିନାହାନ୍ତି ଯାହା ଦେଖି ଓଡ଼ିଆ ଜାତି ନବଯୁଗର ନବ ଆଦର୍ଶ ପ୍ରତି ଆକୃଷ୍ଟ ହେବ, ନବୀନ ଉଦ୍ୟମରେ ମାତି ପୃଥିବୀର ଉନ୍ନତ ଜାତିମାନଙ୍କ ସଙ୍ଗେ ଉନ୍ନତି ପଥରେ ଜ୍ଞାନ, ପ୍ରୀତି ଓ କର୍ମର ଧ୍ୱଜା ହସ୍ତରେ ଧାରଣ କରି ଅଗ୍ରସର ହେବ । ନିଃସ୍ୱାର୍ଥ ପ୍ରୀତି ଭୀରୁକୁ ସାହସୀ କରାଏ, ସ୍ୱଦେଶ ଓ ଜାତି ପାଇଁ ଜୀବନ ଉତ୍ସର୍ଗ କରାଏ । ଲଳିତା ଓ ନନ୍ଦିକା ଯାହା କଲେ, ଆଧୁନିକ ରାଜକନ୍ୟା ତାହା କଲେ ଜଗତ କଣ କହିବ ? ନନ୍ଦିକାର ମୃତ୍ୟୁ ହେଲା । ଏଥିରେ Negative ଶିକ୍ଷା ହେଲେ ହୋଇପାରେ । ନନ୍ଦିକାର ମୃତଶବ ଦେଖି ପାଠକ ଲୋତକ ବିସର୍ଜନ କରିପାରନ୍ତି । ଅପରନ୍ତୁ ତଦ୍ଦ୍ୱାରା ନାୟକର ଚରିତ୍ରୋତ୍କର୍ଷ ସମ୍ପାଦିତ ହୋଇଛି । କିନ୍ତୁ ଲଳିତା ତ ଘରଦ୍ୱାର କଲା । ସେତ - ସମାଜକୁ ଫାଙ୍କି ଦେଇଅଛି । ଦୁଷ୍ମନ୍ତ ଶକୁନ୍ତଳା ସମାଜକୁ କିଞ୍ଚିତ ଅଗ୍ରାହ୍ୟ କରିଥିଲେ । କିନ୍ତୁ କାହିଁକି ନା ଏକାଧିକ ଗାନ୍ଧର୍ବ ବିଧାନ ସମାଜ ଗ୍ରହଣ କରିଥିବାର ପ୍ରମାଣ ମିଳେ । ତଥାପି କବି କୁଳପତି କାଳିଦାସ ହାତେ ହାତେ ତାହାର ଦଣ୍ଡ ନାୟକ ନାୟିକାଙ୍କୁ ଦେଇଅଛନ୍ତି । ଲଳିତା ଓ ଯଯାତି କିନ୍ତୁ ଆଲୌକିକ ଉପାୟରେ, ଦୈବ ସହାୟତାରେ ଉଦ୍ଧାର ପାଇଅଛନ୍ତି । ଯାହା ଲୌକିକ ଭାବରେ ଅପବିତ୍ର, ତାହାର ପ୍ରାୟଶ୍ଚିତ ଅଲୌକିକ ଭାବରେ ହେଲେ ଆଧୁନିକ ସମାଜରେ ତାହା ଗୃହୀତ ହେବ କି ? ଯେବେ ଦେବତା ଥାନ୍ତି ତେବେ ସେ ସତ୍ୟ, ନ୍ୟାୟ, ପୁଣ୍ୟର ସହାୟ; ପାପର ଦଣ୍ଡଦାତା । ପାପ କରି ପ୍ରାୟଶ୍ଚିତ ନକରି ଦେବତା ସାହାଯ୍ୟରେ ଉଦ୍ଧାର ପାଇବା ବିଧି ଖ୍ରୀଷ୍ଟିଆନମାନଙ୍କ atonement ପଦ୍ଧତି ଅନୁସାରେ ସମ୍ଭବ ହେଲେହେଁ ତାହା ବର୍ତ୍ତମାନ ହେୟ ।"

ପଲ୍ଲୀକବି ନନ୍ଦକିଶୋର ଯେପରି ଭାବରେ ରାଧାନାଥ-ସାହିତ୍ୟକୁ ଛିନ୍ନ ଭିନ୍ନ କରି ପରୀକ୍ଷା କରିଅଛନ୍ତି ତାହା ତାଙ୍କର ସମାଲୋଚନାର ସୂକ୍ଷ୍ମ-ଦର୍ଶିତାର ପ୍ରମାଣ ଦେଇଥାଏ । କବିବର ରାଧାନାଥଙ୍କର କାବ୍ୟ ରଚନାର ପୃଷ୍ଠଭୂମି ଯାହା ହେଉନା କାହିଁକି ନନ୍ଦକିଶୋର ଜଣେ ସାଧାରଣ ସମାଲୋଚକ ଭାବରେ ରାଧାନାଥ-ସାହିତ୍ୟର ମୂଲ୍ୟାୟନ କରିଅଛନ୍ତି । କବି ଗଙ୍ଗାଧର ମେହେର କାବ୍ୟରଚନା କରିବା ନିମିତ୍ତ ଯେପରି ଭାରତୀୟ ପୁରାଣ-ପରମ୍ପରାରୁ କଥାବସ୍ତୁ ତଥା ନାୟକ ନାୟିକା ଗ୍ରହଣ କରିଥିଲେ, ପଲ୍ଲୀକବି ନନ୍ଦକିଶୋର ସେହିପରି ଭାବରେ ଭାରତୀୟ ପୁରାଣ-ପରମ୍ପରାରୁ ତାଙ୍କ କାବ୍ୟରଚନା ପାଇଁ ଉପାଦାନ ଗ୍ରହଣ କରିଥିଲେ । ତେଣୁ କବିବର ରାଧାନାଥଙ୍କର କାବ୍ୟାଦର୍ଶ ତାଙ୍କ ଦୃଷ୍ଟିରେ ଯଥାର୍ଥ ବିବେଚିତ ନହେବା ସ୍ୱାଭାବିକ ।

କବିବର ରାଧାନାଥଙ୍କ ଜୀବଦ୍ଦଶାରେ ତାଙ୍କ ସାହିତ୍ୟର ବିପକ୍ଷ ସମାଲୋଚନା ଯେତିକି ତୀବ୍ରରୂପ ଧାରଣ କରିଥିଲା ତାଙ୍କ ପରେ ମଧ୍ୟ ସେତିକି ତୀବ୍ରରୂପ ଧାରଣ କରିଥିବାର ଦେଖାଯାଏ । କବିବର ରାଧାନାଥ ଓଡ଼ିଆ ସାହିତ୍ୟରେ ନବଯୁଗ ସୃଷ୍ଟି କରି ଯଶସ୍ୱୀ ହେବା କଥା ଆଲୋଚକମାନେ ସ୍ୱୀକାର କରିଅଛନ୍ତି । ଓଡ଼ିଆ ସାହିତ୍ୟରେ କବିବର ରାଧାନାଥଙ୍କର ସୃଷ୍ଟି ସମ୍ଭାର ଯେଉଁ ବିସ୍ମୟକର ବାୟୁମଣ୍ଡଳ ସୃଷ୍ଟି କରିଥିଲା ତାହାର ବିରୁଦ୍ଧାଚରଣ କରିବା ନିମନ୍ତେ ସତ୍ୟବାଦୀ ଗୋଷ୍ଠୀର ସାହିତ୍ୟ ସାଧକଗଣ ଚେଷ୍ଟିତ ହୋଇଥିଲେ । ସେମାନେ ବିଶ୍ୱାସ କରିଥିଲେ ଯେ, କବିବର ରାଧାନାଥ ବିଦେଶୀ କାବ୍ୟର କଥାବସ୍ତୁ ତଥା ନାୟକନାୟିକାଙ୍କୁ ଗ୍ରହଣ କରି ଏ ଦେଶରେ ବିଜାତୀୟ ସାହିତ୍ୟ ସୃଷ୍ଟି କରିଅଛନ୍ତି । ତେଣୁ ତାଙ୍କ ସାହିତ୍ୟକୁ ଜାତୀୟ ସାହିତ୍ୟ ପର୍ଯ୍ୟାୟଭୁକ୍ତ କରାଯାଇ ପାରିବ ନାହିଁ । ସତ୍ୟବାଦୀ ଗୋଷ୍ଠୀର ସାହିତ୍ୟସାଧକମାନେ ଥିଲେ ଜାତୀୟତାବାଦୀ । ସେମାନେ ସାହିତ୍ୟ ମାଧ୍ୟମରେ ଜାତୀୟ ଗୌରବ ପ୍ରଚାର କରିବାରେ ଲକ୍ଷ୍ୟ ଗ୍ରହଣ କରିଥିଲେ

ତେଣୁ ସେମାନେ ରଧାନାଥ-ସାହିତ୍ୟକୁ ଉପଯୁକ୍ତ ମର୍ଯ୍ୟାଦା ଦେବାକୁ ପଶ୍ଚାତ୍‌ପଦ ହୋଇଥିଲେ ।

କବିବର ରଧାନାଥ ଚନ୍ଦ୍ରଭାଗା କାବ୍ୟ ରଚନା କରିଥିଲେ । ଚନ୍ଦ୍ରଭାଗା କାବ୍ୟର କଥାବସ୍ତୁ ବିଦେଶୀ ସାହିତ୍ୟରୁ ଗୃହୀତ ହୋଇଥିଲା । ସୁମନ୍ୟୁ ମହର୍ଷିଙ୍କର ଅଭିଶାପ ଫଳରେ କୋଣାର୍କର ସୂର୍ଯ୍ୟ ମନ୍ଦିର ଧ୍ୱଂସପ୍ରାପ୍ତ ହେବା ବିଷୟ ତାଙ୍କର ଅପବାଦ ବ୍ୟତୀତ ଅନ୍ୟ କିଛି ନୁହେଁ ବୋଲି ସେମାନେ ଧରିନେଲେ । କୋଣାର୍କକୁ କେନ୍ଦ୍ର କରି ଉତ୍କଳମଣି ଗୋପବନ୍ଧୁଙ୍କ ଲେଖନୀରୁ ଜନ୍ମନେଲା ଧର୍ମପଦ ଓ ପଣ୍ଡିତ ନୀଳକଣ୍ଠଙ୍କ ଲେଖନୀରୁ ଜନ୍ମନେଲା କୋଣାର୍କେ । ଧର୍ମପଦର କଥାବସ୍ତୁ ଏ ଦେଶରେ ପ୍ରଚଳିତ ଥିବା ଏକ ଜନପ୍ରିୟ କମ୍ବଦନ୍ତୀ ଉପରେ ଆଧାରିତ । କୋଣାର୍କ ମନ୍ଦିର ନିର୍ମାଣ ବିଷୟକ କମ୍ବଦନ୍ତୀକୁ କାବ୍ୟାକାରରେ ଏ ଦେଶର ଅଗଣିତ ପାଠକମାନଙ୍କ ସମକ୍ଷରେ ଉପସ୍ଥାପନ କରି ଉତ୍କଳମଣି ଗୋପବନ୍ଧୁ ତାଙ୍କର ଗୌରବ ବୃଦ୍ଧିର କରିଥିଲେ । ପଣ୍ଡିତ ନୀଳକଣ୍ଠ ସେହିପରି କୋଣାର୍କ ପରିଦର୍ଶନରେ ନଜର ଅଭିଜ୍ଞତାକୁ ରାମଚଣ୍ଡୀ ଠାରେ ରାତି ଓ ସକାଳ ନାମ ଦେଇ ତହିଁରେ ଉତ୍କଳର ଗୌରବପୂର୍ଣ୍ଣ ଅତୀତକୁ ବର୍ଣ୍ଣନା କରିଛନ୍ତି ଓ ଜଣେ ଭାଟମୁଖରୁ ଶୁଣିଥିବା ଗୋଟିଏ କାହାଣୀକୁ ମାୟାଦେବୀ ନାମ ଦେଇ କାବ୍ୟ ରଚନା କରିଛନ୍ତି । ଏହି ଦୁଇଟି କାବ୍ୟର କଥାବସ୍ତୁ ସ୍ୱଦେଶୀ । ଏତଦ୍ୱାରା ସ୍ୱଦେଶର ଗୌରବ ପ୍ରତିଷ୍ଠିତ ହେବାପାଇଁ ସେମାନେ ଆଶା ପୋଷଣ କରିଥିଲେ ।

ଶିକ୍ଷକ ଥିବା ସମୟରେ ପଣ୍ଡିତ ନୀଳକଣ୍ଠ ଥରେ ବିଦ୍ୟାଳୟର ଛାତ୍ରମାନଙ୍କୁ ସଙ୍ଗରେ ନେଇ କୋଣାର୍କ ପରିଦର୍ଶନରେ ଯାଇଥିଲେ । ସେଦିନ ଥିଲା କୁମାର ପୂର୍ଣ୍ଣିମା । ଦୈବଯୋଗକୁ ସେମାନେ ଯେତେବେଳେ କୋଣାର୍କରେ ପହଞ୍ଚିଲେ ସେତେବେଳେ ଭୀଷଣ ବର୍ଷା ହେବା ଫଳରେ କୋଣାର୍କ ଦର୍ଶନ ବିଡ଼ମ୍ବନାରେ ପରିଣତ ହେଲା । ପଣ୍ଡିତ ନୀଳକଣ୍ଠ ଛାତ୍ରମାନଙ୍କୁ ନେଇ ରାମଚଣ୍ଡୀ ମନ୍ଦିରର ମୁଖଶାଳାରେ

ଘଟିଯାପନ ଉଦ୍ଦେଶ୍ୟରେ ଆଶ୍ରୟ ଗ୍ରହଣ କଲେ । ପଥଶ୍ରାନ୍ତ ଯାତ୍ରୀଗଣ ନିଦ୍ରିତ ହେଲେ, ମାତ୍ର ପଣ୍ଡିତ ନୀଳକଣ୍ଠଙ୍କ ଚକ୍ଷୁକୁ ନିଦ୍ରା ଆସିଲା ନାହିଁ । ରାମଚଣ୍ଡୀ ମନ୍ଦିରର ମୁଖଶାଳାରେ ଥାଇ ସେ କଳ୍ପନାର ଦିଗନ୍ତକୁ ଚାଲିଗଲେ । ଅତୀତ ଉତ୍କଳର ଗୌରବାବହ ସ୍ମୃତି ତାଙ୍କର ହୃଦୟକୁ ଉଦ୍‌ବେଳିତ କରିଦେଲା । ସେ ସେଠାରେ ଯେଉଁସବୁ କଥା ଭାବି ଯାଇଥିଲେ ସେସବୁକୁ କବିତା ରୂପ ଦେଇ ପରବର୍ତ୍ତୀ କାଳରେ ପ୍ରକାଶ କରିଥିଲେ । ତାହାହିଁ ରାମଚଣ୍ଡୀରେ ରାତ୍ରି ଓ ସକାଳ ନାମରେ ପ୍ରକାଶ ପାଇଥିଲା । କବି ଯାତ୍ରୀମାନଙ୍କୁ ସମ୍ବୋଧନ କରି ଅତୀତ ଉତ୍କଳର ସୁଦିନ ଓ ଦୁର୍ଦ୍ଦିନକୁ ସ୍ମରଣ କରିଅଛନ୍ତି । କବି ନୀଳକଣ୍ଠ କବିବର ରାଧାନାଥଙ୍କର କାବ୍ୟ ସୃଷ୍ଟି ନିମନ୍ତେ ଅସନ୍ତୋଷ ପ୍ରକାଶ କରି ରାଧାନାଥ-ସାହିତ୍ୟର ନିନ୍ଦାବାଦ କରିଅଛନ୍ତି । କବିବର ରାଧାନାଥଙ୍କର ଚନ୍ଦ୍ରଭାଗା କାବ୍ୟର କଥାବସ୍ତୁ ସ୍ୱଦେଶୀ ନହୋଇ ବିଦେଶୀ ହୋଇଥିବାରୁ ସେ ଲେଖିଛନ୍ତି,

"ଚନ୍ଦ୍ରଭାଗେ ବାଳା ଆସିବେ ଚନ୍ଦ୍ରଭାଗା ସୁନ୍ଦରୀ<br>
ଯବନାନୀ କବି-ନାୟିକା ନାଟିକା ଆଚରି ।<br>
ବିଦେଶୀ ସୁନ୍ଦରୀ ଆସିବେ ତଟେ ନାଚଣୀ ଖେଳେ,<br>
ରୂହୁଁ ରହୁଁ ପୁଣି ମିଶିବେ ନୀଳ ଜଳଧି-ଜଳେ ।"

କେବଳ ଏତିକି ନୁହେଁ, କବିବର ରାଧାନାଥଙ୍କର ଅନ୍ୟାନ୍ୟ କାବ୍ୟଗୁଡ଼ିକର କଥାବସ୍ତୁକୁ କବି ଆକ୍ଷେପ କରିଅଛନ୍ତି ।

"ସ୍ୱାଧୀନ ଯଯାତି ଟେକିବେ ଶିର ସାଗର-ତଟେ,<br>
କବି ରାଧାନାଥ ଆସିବେ କପେ ଯଯାତି ପାଶେ ?<br>
ରାଣୀସନେ ସେ କି ବସିବେ ବିଦ୍ୟାସୁନ୍ଦର ହାସେ ?"

× × ×

"କବିଙ୍କ କେଦାର ଗଉରୀ ଆସି ଯବନ ଦେଶୁ<br>
ନାଚି ଯିବେ ତଳେ ସ୍ୱପ୍ନେ ତବ ଅଭ୍ୟାସ ବଶୁ ।"

× × ×

"ଘରଗୁଡ଼ କମ୍ପା ଯିବେ ସେ ଝାଉ-ବାଳା ନନ୍ଦନା
ସହକାର-ଦ୍ରୁମ-ଗହନେ ଭେଦ୍ଧ କ୍ଷୀଣ ଚନ୍ଦ୍ରିକା ?
କଉସୁଲ୍ଲଙ୍କ ଧଉଳ ଏହ୍ଵ ନୟନେ ନାଚେ;
କବଂକ ଦୁମର ହ୍ଵାଗେ ମୁଖ ଫେରାଅ ପଛେ ।"

କବି ମାଳକଣ୍ଠ କବିବର ରାଧାନାଥଙ୍କର କାବ୍ୟସମୂହର କଥାବସ୍ତୁକୁ ନିନ୍ଦା କରିବା ସଙ୍ଗେ ସଙ୍ଗେ ନିଜ କାବ୍ୟରେ କମ୍ବଦନ୍ତୀ-ଗୁଡ଼ିକୁ ସ୍ଥାନ ଦେଇଅଛନ୍ତି । ସ୍ବଦେଶର ମହିମା ପ୍ରକାଶ କରୁଥିବା ଏହି କମ୍ବଦନ୍ତୀଗୁଡ଼ିକ କବିଙ୍କର ଦେଶାତ୍ମବୋଧ ଭାବଧାରାର ଯଥାର୍ଥ ପରିଚାୟକ ହୋଇପାରେ, ମାତ୍ର ରାଧାନାଥଙ୍କୁ ସେ ଯେପରି ଭାବରେ ଆକ୍ଷେପ କରିଅଛନ୍ତି ତାହା ନିତାନ୍ତ ନିର୍ମମ ହୋଇପଡ଼ିଅଛି । କବିବର ରାଧାନାଥ ଯେତେବେଳେ ଓଡ଼ିଆ ସାହିତ୍ୟରେ ଏକ ନୂତନ ଯୁଗର ତୂର୍ଯ୍ୟନାଦ କଲେ ସେତେବେଳେ ଦେଶ ବା ଜାତିର ସମ୍ମାନକୁ କ୍ଷୁଣ୍ଣ କରିବା ଭଳି କୌଣସି ପ୍ରକାର ମନୋଭାବ ତାଙ୍କର ନଥିଲା । ସେ ସାହିତ୍ୟକୁ ସୃଷ୍ଟି କରିଥିଲେ ସାହିତ୍ୟ ଭାବରେ । ସାହିତ୍ୟକୁ ଇତିହାସ ହିସାବରେ ଯଦି କୌଣସି ପାଠକ ଗ୍ରହଣ କରେ, ତେବେ ସେ ଦୋଷ କବି ବା ଲେଖକର ନୁହେଁ । ପଣ୍ଡିତ ମାଳକଣ୍ଠ ସତ୍ୟବାଦୀର ଜାତୀୟ-ଭିତ୍ତି ଉପରେ ଦଣ୍ଡାୟମାନ ହୋଇ ଯେତେବେଳେ ରାଧାନାଥଙ୍କ ସାହିତ୍ୟକୁ ପରୀକ୍ଷା କରିଛନ୍ତି ସେତେବେଳେ ରାଧାନାଥ-ସାହିତ୍ୟ ତାଙ୍କ ଦୃଷ୍ଟିରେ ଦୋଷଦୁଷ୍ଟ ହୋଇପଡ଼ିଛି ।

ଜାତୀୟ ଭାବଧାରାରେ ଉଦ୍‌ବୁଦ୍ଧ ହୋଇ ସତ୍ୟବାଦୀ ଗୋଷ୍ଠୀର ସାହିତ୍ୟସାଧକଗଣ ଯେଉଁ ପ୍ରକାର ସାହିତ୍ୟ ସୃଷ୍ଟି କରିଅଛନ୍ତି ତାହା ଅନେକ ସ୍ଥଳରେ ଉଦ୍ଦେଶ୍ୟମୂଳକ ହୋଇଥିବାରୁ ଆଲୋଚକ-ମାନେ ତାହାକୁ ଯଥାର୍ଥ ସାହିତ୍ୟର ମର୍ଯ୍ୟାଦା ଦେବାକୁ ପଶ୍ଚାତ୍‌ପଦ ହୋଇଥାଆନ୍ତି । ସାହିତ୍ୟରେ ସ୍ବଦେଶର ମହିମାଗାନ ରହିବା ସ୍ବାଭାବିକ, ମାତ୍ର ତାହା ଯେବେ କେବଳ ପ୍ରେତିକରେ ପର୍ଯ୍ୟବସିତ ହୁଏ, ତେବେ ସାହିତ୍ୟର ମୌଳିକ ଲକ୍ଷ୍ୟ ସାଧିତ ହୋଇପାରିବ

ନାହିଁ । ପଣ୍ଡିତ ନୀଳକଣ୍ଠ ରାଧାନାଥ-ସାହିତ୍ୟର ନିନ୍ଦାବାଦ କରି-
ଥିଲେହେଁ ରାଧାନାଥଙ୍କୁ ଜଣେ ଉଚ୍ଚସ୍ତରର କବିଭାବରେ ସ୍ୱୀକାର
କରିବାକୁ ପଶ୍ଚାତ୍ପଦ ହୋଇ ନାହାନ୍ତି ।

ସେଣ୍ଟ୍ରାଲ୍ ୟୁଙ୍ଗ୍ ଉତ୍କଳ ଆସୋସିଏସନ୍‌ର ଦ୍ୱାଦଶ ଅଧିବେଶନରେ 'ରାଧାନାଥ ଓ ଉତ୍କଳ ସାହିତ୍ୟ' ନାମକ ଏକ ପ୍ରବନ୍ଧ-ପାଠ କରି ନୀଳକଣ୍ଠ ଦାସ ରାଧାନାଥଙ୍କର ବୈଶିଷ୍ଟ୍ୟ ନିର୍ଣ୍ଣୟ କରିଥିଲେ । ସେହି ପ୍ରବନ୍ଧରେ ସେ ଲେଖିଛନ୍ତି, "ସମସ୍ତ ପ୍ରାଚୀନ ପନ୍ଥା ଓ ଅଳଙ୍କାର ନିୟମ ପରିତ୍ୟାଗ କରି ରାଧାନାଥ ସ୍ୱାଧୀନ ଭାବରେ ସାହିତ୍ୟ ସ୍ରୋତ ନିମନ୍ତେ ନବୀନମାର୍ଗ ନିର୍ଦ୍ଦେଶ କରି-ଦେଲେ । ସେ ପ୍ରାଚ୍ୟ ପାଶ୍ଚାତ୍ୟର ସାହିତ୍ୟ ଅନୁଧ୍ୟାନ କରି ଓ ସାହିତ୍ୟ ବିଶେଷର ଉପଯୋଗିତା ଓ ସମାଜରେ ନବଭାବ ପ୍ରକାଶ ପ୍ରତି ଲକ୍ଷ୍ୟ ରଖି ଉଭୟ ସାହିତ୍ୟରୁ ସାର ସଂଗ୍ରହ ପୂର୍ବକ ନିଜର ରୁଚି ଓ ଆଦର୍ଶ ପ୍ରଭୃତି ସ୍ଥିର କରିଥିଲେ ବୋଲି ସ୍ୱୀକାର କରିବାକୁ ହେବ; କିନ୍ତୁ ଅପାର ସଂଗ୍ରହ କରି ନିଜ ଆଦର୍ଶରେ ଅନୁସାର ବର୍ଣ୍ଣନା କରିବା ତାଙ୍କ ହାତରେ ଥିଲା; ସେ ତାହା କରିନାହାନ୍ତି ଏବଂ କୌଣସିଠାରେ ସଂଗ୍ରହ ବା ଅନୁକୃତି ରାଧାନାଥୀସ୍ୱାତନ୍ତ୍ର୍ୟରୁ ବିଚ୍ଛିନ୍ନ ନୁହେଁ, ଏହାହିଁ ରାଧାନାଥଙ୍କର ବିଶେଷତ୍ୱ । ତାଙ୍କ ଗ୍ରନ୍ଥ-ସବୁରେ ବଙ୍ଗ ସାହିତ୍ୟ ପର୍ଯ୍ୟନ୍ତ ଅନୁକୃତ ହୋଇଥିବା ବିଲକ୍ଷଣ ଲକ୍ଷିତ ହୁଏ; ବର୍ଣ୍ଣନାରେ ଭିନ୍ନ ଭିନ୍ନ ସାହିତ୍ୟରୁ ସଂଗୃହୀତ ଭାବର ଆକ୍ଷରିକ ଅନୁବାଦ ପର୍ଯ୍ୟନ୍ତ ଦେଖାଯାଏ । × × × କିନ୍ତୁ ଏସବୁ ଅନୁବାଦ ଓ ଅନୁକୃତି ହେଲେହେଁ ସର୍ବଦା ରାଧାନାଥୀ ମନୀଷାରେ ରଞ୍ଜିତ ହୋଇଅଛି ଏବଂ ସମସ୍ତଙ୍କ ମଧ୍ୟରେ ଗୋଟିଏ ରାଧାନାଥୀ ସ୍ୱାତନ୍ତ୍ର୍ୟ ସୁସ୍ପଷ୍ଟ ପରିଲକ୍ଷିତ ହେଉଅଛି । ତୁଳସୀସ୍ତବକରେ ଆମ୍ଭେମାନେ ତୁଳସୀ ଦାସଙ୍କୁ ନଦେଖି ପରିସ୍ଫୁଟ ଭାବରେ ରାଧାନାଥଙ୍କୁ ଦେଖୁ । ଉଲ୍ଲିଖିତ ଅନୁବାଦ ଦୁଇଟିରେ ଭବଭୂତି ଓ କାଳିଦାସ ଆଉ ନାହାନ୍ତି । ପଦ୍ୟାଂଶ ଦୁଇଟି ରାଧାନାଥଙ୍କ ଗର୍ଭରୁ ପୁନର୍ଜନ୍ମ ଲାଭ କରିଅଛି । କେଦାରଗୌରୀ ଓଭିଡ୍‌ରୁ ଗୃହୀତ; ସତ୍ୟ, କିନ୍ତୁ

ତାହା କବି ଲେଖନୀ ପ୍ରଭାବରେ ଘରେଇ ତଥା କେବଳ ଉତ୍କଳର ଜଳବାୟୁରେ ଜାତ ଓ ବର୍ଦ୍ଧିତ ହୋଇଥିବା ପରି ବୋଧ ହୁଏ ।"

ପଣ୍ଡିତ ନୀଳକଣ୍ଠ ରାଧାନାଥଙ୍କର କବିତ୍ୱର ଆଲୋଚନା କରି ଜଣେ ସୁଦକ୍ଷ ସମାଲୋଚକ ଭାବରେ ଯେଉଁ ମତ ଘୋଷଣା କରିଅଛନ୍ତି ତାହା ଯଥାର୍ଥ ହୋଇଅଛି । 'କୋଣାର୍କେ' କାବ୍ୟ ରଚନାର ଅନ୍ତରାଳରେ କବିଙ୍କ ଉପରେ ସତ୍ୟବାଦୀ ଚିନ୍ତାଧାରାର ପ୍ରଭାବ ନଥିଲେ କବି ରାଧାନାଥଙ୍କୁ ଏପରି ଭାବରେ ଆକ୍ଷେପ କରି ନଥାନ୍ତେ । ଉତ୍କଳମଣି ଗୋପବନ୍ଧୁ କବିବର ରାଧାନାଥଙ୍କର ସାହିତ୍ୟସୃଷ୍ଟିକୁ ପୂର୍ଣ୍ଣ ପ୍ରାଣରେ ସମର୍ଥନ କରି ନଥିଲେହେଁ ତାଙ୍କ ସାହିତ୍ୟ ସୃଷ୍ଟିର ପରିସର ମଧ୍ୟରେ ସେ ରାଧାନାଥଙ୍କ ସାହିତ୍ୟକୁ ପ୍ରତ୍ୟକ୍ଷ ଭାବରେ ଆକ୍ଷେପ କରି ନାହାନ୍ତି । 'ଚନ୍ଦ୍ରଭାଗା' କାବ୍ୟ ଏଦେଶର ପରଂପରା ବିରୋଧୀ ବୋଲି ଗୋପବନ୍ଧୁ ଉପଲବ୍ଧି କରିଥିବାରୁ ଧର୍ମପଦ ରଚନା କରିଥିଲେ । ମାତ୍ର ଧର୍ମପଦ ମଧ୍ୟରେ କୌଣସି ସ୍ଥାନରେ ରାଧାନାଥଙ୍କୁ ଆକ୍ଷେପ କରିବାକୁ ଉଚିତ ମନେ କରି ନାହାନ୍ତି । ଗୋପବନ୍ଧୁ ଯେତେବେଳେ ପୁରୀରେ ଅଧ୍ୟୟନ କରୁଥିଲେ ସେତେବେଳେ ସେ ରାଧାନାଥଙ୍କ ବିରୁଦ୍ଧରେ ଇନ୍ଦ୍ରଧନୁରେ ଲେଖାଲେଖି କରି ତାଙ୍କର ବିରାଗଭାଜନ ହେବା ବିଷୟ ସୁବିଦିତ । ତେଣୁ ଛାତ୍ରାବସ୍ଥାରୁ ଗୋପବନ୍ଧୁଙ୍କ ମନରେ ରାଧାନାଥଙ୍କ ପ୍ରତି ବିରାଗ ଭାବ ଜାତ ହୋଇଥିଲା ବୋଲି କୁହାଯାଇ ପାରେ । ତାହା ସତ୍ତ୍ୱେ ଗୋପବନ୍ଧୁ ରାଧାନାଥଙ୍କ ବିରୁଦ୍ଧରେ ପ୍ରତ୍ୟକ୍ଷ ଭାବରେ ପ୍ରତିବାଦର ସ୍ୱର ଉଠାଇ ନାହାନ୍ତି । ଏହାର କାରଣ ସ୍ୱରୂପ କୁହାଯାଇପାରେ ଯେ, ଉତ୍କଳମଣି ଗୋପବନ୍ଧୁଙ୍କ ହୃଦୟରେ ଏପ୍ରକାର ତୁଚ୍ଛ ଘଟଣା କୌଣସି ପ୍ରତିକ୍ରିୟା ସୃଷ୍ଟି କରିପାରି ନଥିଲା । ଗୋପବନ୍ଧୁଙ୍କର ସହୃଦୟତା ବରଂ କବିବର ରାଧାନାଥଙ୍କର କବିତ୍ୱକୁ କେତେକ ସ୍ଥଳରେ ପ୍ରଶଂସା କରିବାରେ ସହାୟକ ହୋଇଅଛି । 'ରେଳ ଉପରେ ଚିଲିକା ଦର୍ଶନ' କବିତାରେ ଗୋପବନ୍ଧୁ ପ୍ରସଙ୍ଗ କ୍ରମେ କବିବର ରାଧାନାଥଙ୍କର ପ୍ରଶଂସାହିଁ କରି-ଅଛନ୍ତି । ଗୋପବନ୍ଧୁ ଲେଖିଛନ୍ତି,

"ଦେବୀ ବୀଣାପାଣି ଶାଶ୍ୱତ ସେବକ
କବି ରାଧାନାଥ ସୁଷମା-ଗ୍ରାହକ,

ଭ୍ରମି ବହୁସ୍ଥାନ ବିଶାଳ ଭାରତେ,
ନଦ-ନଦୀ-ମରୁ-କାନନ-ପର୍ବତେ,

ଦେଖିଲେ ପ୍ରକୃତି ବିବିଧ ପ୍ରକାଶ,
କିନ୍ତୁ ଶୋଭାଳୁର ଶୁଦ୍ଧ ଅଭିଳାଷ

ସୁଖ-ଶାନ୍ତି-ପ୍ରୀତି କାହିଁ ଏକାଧାରେ,
ନପାଇଲେ, ଯଥା ମିଳେ ତୋହଠାରେ,

ଉତ୍କଳର ଭୂମି ସୌନ୍ଦର୍ଯ୍ୟର ଖଣି,
ସାରସ୍ୱତ ନେବେ ବାଛି ଚହ୍ନି ମଣି

ସୁଦକ୍ଷ ବିଜ୍ଞାଣି ରଚି ସେଉଁ ହାର
ଅର୍ପିଲେ ଉତ୍କଳ-ଭାରତୀ ଗଳାର,

ଚନ୍ଦନ ତାହା ରାଜିବ ରୁଚିର,
ତା ଦେଖି ଭାବୁକେ ନୋଇବେ ଶିର ।"

ପାର୍ବତୀ କାବ୍ୟ ସକାଶେ କବିବର ରାଧାନାଥ ଏଦେଶବାସୀଙ୍କ ଦ୍ୱାରା କମ୍ ନିନ୍ଦିତ ହୋଇନାହାନ୍ତି । ଯେଉଁମାନେ ପାର୍ବତୀ କାବ୍ୟର ଆବରଣ ସ୍ୱରୂପଟିକୁ ଧରି ପାରି ନଥିଲେ ସେମାନେ କବିଙ୍କୁ ନିତାନ୍ତ ବ୍ୟକ୍ତିଗତ ଭାବରେ କୁତ୍ସା ରଟନା ସହକାରେ ନିନ୍ଦା କରୁଥିଲେ । ତଥାପି ଏଦେଶରେ ଯେ ଗୁଣ ବିଚାର ଗ୍ରାହକଙ୍କର ଅଭାବ ନାହିଁ, ଏକଥା କେତେକ ଆଲୋଚକଙ୍କର ଆଲୋଚନାରୁ ପ୍ରମାଣିତ ହୋଇ-ଅଛି । ପାର୍ବତୀ କାବ୍ୟ ବିଷୟରେ ମତ ପ୍ରକାଶ କରିବାକୁ ଯାଇ ଚନ୍ଦ୍ରଶେଖର ଦାସ ଲେଖିଛନ୍ତି, "ରାଧାନାଥ ପିତା ଓ କନ୍ୟା ମଧ୍ୟରେ ଅବୈଧ ପ୍ରଣୟକୁ ଚିତ୍ରିତ କରିବା ଦ୍ୱାରା ତାଙ୍କ କବି ଲେଖନୀକୁ କଳଙ୍କିତ କରିଅଛନ୍ତି ବୋଲି କେତେକ ବ୍ୟକ୍ତି ରାଧାନାଥଙ୍କୁ ଅପରାଧୀ କରନ୍ତି । ପ୍ରସିଦ୍ଧ ଗ୍ରୀକ୍ କବି ସୋଫୋକ୍ଲିସ୍‌ଙ୍କ ଇଡ଼ିପସ୍ କାବ୍ୟ କାବ୍ୟ-ଜଗତରେ ଉଚ୍ଚସ୍ଥାନ ଅଧିକାର କରି ଆସିଅଛି ।

ସେ କାବ୍ୟରେ ମାତା ଓ ପୁତ୍ରଙ୍କ ମଧ୍ୟରେ ଅବୈଧ ପାଶବ ପ୍ରବୃତ୍ତିର ଚିତ୍ର ଦିଆଯାଇ ଅଛି । ତଥାପି ଗ୍ରୀକ୍ ସାହିତ୍ୟରେ ତଥା ଜଗତର ସାହିତ୍ୟରେ ଉକ୍ତ କାବ୍ୟ ଗୋଟିଏ ଅମୂଲ୍ୟ ରତ୍ନ । ଇଡ଼ିପସ୍‌ଙ୍କ ପାଶବ ପ୍ରଣୟ ଯୋଗୁଁ ସମଗ୍ର ଗ୍ରୀକ୍ ଜାତି କଳଙ୍କିତ ହୋଇ ନାହାନ୍ତି କିମ୍ବା କାବ୍ୟ ଜଗତରେ ଉକ୍ତ କାବ୍ୟ ଉପରେ କଳଙ୍କାରୋପ କରାଯାଇନାହିଁ । ଯାହା କିମ୍ବଦନ୍ତୀ ବା ଇତିହାସ ଉପରେ ପ୍ରତିଷ୍ଠିତ, ତାକୁ ରାଧାନାଥ ଗୌରବମୟ ନକରି ତହିଁର ଗୌରବମୟ ଚିତ୍ରକୁ ଲୋକଙ୍କ ଆଗରେ ଉପସ୍ଥାପିତ କରି 'ପୁଣ୍ୟର ଜୟ ଓ ପାପର ବିଷମ କୁଫଳ' ଲୋକଙ୍କୁ ଏହି କାବ୍ୟକୋଶଳ ଆଦର୍ଶ ଓ ଶିକ୍ଷା ଦେଇଅଛି ଓ ତଦ୍ୱାରା ସେ ଜନସମାଜର ଶିକ୍ଷକ ରୂପେ ପ୍ରତିଭାତ ହେଉଅଛନ୍ତି ଓ ଯେତେକାଳ ଓଡ଼ିଆ ସାହିତ୍ୟ ବଞ୍ଚି ରହିଥିବ, ସେତେକାଳ ସେ ପ୍ରତିଭାତ ହେଉଥିବେ । ସୋଫୋକ୍ଲିସ୍‌ଙ୍କ ଉପରେ ବର୍ଣ୍ଣିତ 'ଇଡ଼ିପସ୍' କାବ୍ୟ ପରି ରାଧାନାଥଙ୍କ 'ପାର୍ବତୀ' କଳାର ଗୋଟିଏ ଉତ୍କୃଷ୍ଟ ଅବଦାନ ।"(୧)

ପାର୍ବତୀ କାବ୍ୟକୁ କେନ୍ଦ୍ର କରି ଏଦେଶର ବହୁ ଆଲୋଚକ ରାଧାନାଥଙ୍କୁ ଆକ୍ଷେପ କରିଥିଲେହେଁ ଅନ୍ୟ କେତେକ ଆଲୋଚକ ରାଧାନାଥଙ୍କ ପ୍ରତି ଏପ୍ରକାର ଆକ୍ଷେପୋକ୍ତି ଅଯଥା ବୋଲି ମତ ପ୍ରକାଶ କରିଥିଲେ । ଏହି ପ୍ରକାର ଏକ ମତ ପ୍ରଦାନ କରିଥିଲେ ରାମକୃଷ୍ଣ ମିଶ୍ର । ସେ ଲେଖିଥିଲେ, "Some critics have unduly condemned Radhanath as immoral. They say that the conception of love between father and daughter in Parbati is a stigma and as such it is a blot in our literature. But from the viewpoint of Art it is a piece of valuable gem the like of which is seldom found. He has some defects, and who has not ? For

(୧) ରାଧାନାଥ ଜୀବନୀ—ପୃ. ୨୦୨—୨୦୩

doing what he has done deserves our unflinching respect. In a sense he is the father of the new age (୧)

କବିବର ରାଧାନାଥଙ୍କ କାବ୍ୟକବିତାକୁ ପ୍ରଶଂସା କରି ଏହିପରି ବହୁ ଆଲୋଚକ ସେମାନଙ୍କର ମତାମତ ପ୍ରକାଶ କରିଥିବାର ଦେଖାଯାଏ । କବିବର ରାଧାନାଥଙ୍କର ସାହିତ୍ୟକୁ ଯେଉଁମାନେ ତାଙ୍କ ଜୀବଦ୍ଦଶାରେ ଆଲୋଚନା କରିଥିଲେ ସେମାନେ ଆଲୋଚନା କରିବା ସମୟରେ ରାଧାନାଥଙ୍କର କବି ପ୍ରତିଭା ପ୍ରତି ସମୁଚିତ ଦୃଷ୍ଟି ଦେଇଥିବା ପରି ମନେହୁଏ ନାହିଁ । କାରଣ ସେ ସମୟରେ ଯେଉଁମାନେ ରାଧାନାଥଙ୍କର କାବ୍ୟ କବିତା ବିରୁଦ୍ଧରେ ମତାମତ ପ୍ରକାଶ କରିଥିଲେ ସେମାନେ କେତେକ ଅନ୍ୟ କାରଣ ବଶତଃ କବିଙ୍କ ପ୍ରତି ବ୍ୟକ୍ତିଗତ ଭାବରେ ବୀତଶ୍ରଦ୍ଧ ହୋଇ ତାଙ୍କର କାବ୍ୟ କବିତାକୁ ନିନ୍ଦା କରିଥିଲେ । କବିବର ରାଧାନାଥଙ୍କ ଜୀବନରେ ବହୁ ବ୍ୟକ୍ତିଙ୍କର ଶତ୍ରୁତା ଦେଖାଦେଇଥିଲା । ଶତ୍ରୁତା ମଧ୍ୟରେ ସାହିତ୍ୟର ଆଲୋଚନା କେବେହେଲେ ଯଥାର୍ଥ ରୂପ ଗ୍ରହଣ କରିବା ସମ୍ଭବ ନୁହେଁ । ତେଣୁ ସେ ସମୟର କବିଙ୍କର ବିରୁଦ୍ଧବାଦୀ ସମାଲୋଚକମାନଙ୍କର ସମାଲୋଚନାରୁ ରାଧାନାଥ-ସାହିତ୍ୟର ଯଥାର୍ଥ ମୂଲ୍ୟ ନିରୂପଣ କରିବା ଉଚିତ ନୁହେଁ । କବିବର ରାଧାନାଥଙ୍କର ଦେହାନ୍ତ ପରେ ଯେଉଁମାନେ ତାଙ୍କ ସାହିତ୍ୟକୁ ଆଲୋଚନା କରି ବସିଲେ ସେମାନେ ମଧ୍ୟ ଏକାଧିକ କାରଣ ବଶତଃ କବିଙ୍କ ଜୀବିତାବସ୍ଥାର ବିରୁଦ୍ଧବାଦୀ ସମାଲୋଚକମାନଙ୍କ ମତାମତକୁ ଯଥେଷ୍ଟ ଭାବରେ ମୂଲ୍ୟ ଦେଇଥିଲେ । କବିବର ରାଧାନାଥଙ୍କ ଜୀବନର ଇତିହାସ ଓ ସାହିତ୍ୟର ଉଭୟ ବିଷୟରେ ଅବହିତ ନଥାଇ ଯେଉଁମାନେ ତାଙ୍କ ସାହିତ୍ୟକୁ ସମାଲୋଚନାର ମାନଦଣ୍ଡରେ ମାପି ବସିଛନ୍ତି ସେମାନେ ମଧ୍ୟ ରାଧାନାଥ-ସାହିତ୍ୟରେ ଯଥାର୍ଥ ରୂପ ବିଷୟରେ ସମ୍ୟକ୍ ଧାରଣା କରିପାରିନାହାନ୍ତି ।

(୧) ରାଧାନାଥ ଜୀବନୀ — ପୃ. ୬୮୧

ରାଧାନାଥ-ସାହିତ୍ୟ ଆଲୋଚନା ପ୍ରସଙ୍ଗରେ ଉପଧା ନିୟମ ବିଷୟକୁ ଭୁଲିଗଲେ ଚଳିବ ନାହିଁ । ଏ ବିଷୟରେ ଡକ୍ଟର୍ ମାୟାଧର ମାନସିଂହ ଲେଖିଛନ୍ତି, "ରାଧାନାଥ ଓ ମଧୁସୂଦନ ଓଡ଼ିଆ ସାହିତ୍ୟରେ ବଙ୍ଗଳା ଅନୁକରଣରେ ଉପଧା-ମିଳନ ପ୍ରଚଳନ୍ତି । ଆମେସବୁ ରାଧାନାଥ ଓ ମଧୁସୂଦନଙ୍କ ବହି ପଢ଼ି ମଣିଷ ହେଲୁଁ । ଉପଧା ମିଳନ ଯେ ଖାଣ୍ଟି ଓଡ଼ିଆ ଜିନିଷ ନୁହେଁ, ଏହା ଆମ୍ଭେମାନେ ବହୁତ ଡେରିରେ ଜାଣିଲୁଁ । ସେତେବେଳକୁ ଉପଧା-ମିଳନ ଚେତରେ ପଡ଼ିଗଲାଣି-ଭୁଲ ଜାଣି ମଧ୍ୟ ଏବେବି ଉପଧା-ମିଳେଇ ଲେଖୁଛୁ । କିନ୍ତୁ କ୍ରମେ ଏଇ ଧାରଣା ବଦ୍ଧମୂଳ ହେଉଛି ଯେ, ଏହି ଉପଧା ମିଳନ ପରି କୃତ୍ରିମ ସୌଷ୍ଠବକୁ ପ୍ରଶ୍ରୟ ଦେବା ଦ୍ୱାରା ଓଡ଼ିଆ ସାହିତ୍ୟର ଅନିଷ୍ଟ ହୋଇଛି । ଭାଷା ତାର ସ୍ୱଚ୍ଛନ୍ଦତା ହରେଇଛି, କବି ତା ଆଙ୍ଗୁଠିରେ ସୁନାର ଶୃଙ୍ଖଳ ଦେଇଛି ।" (୧)

ଉପଧା ମିଳନ ଓଡ଼ିଆ ସାହିତ୍ୟକୁ ବଙ୍ଗଳା ବାଟଦେଇ ଆସିବା କଥା ପ୍ରାୟ ସମସ୍ତ ଆଲୋଚକ ମୁକ୍ତକଣ୍ଠରେ ସ୍ୱୀକାର କରିଅଛନ୍ତି । ୧୮୭୦-୧୮୮୦ ସାଲ୍ ଭିତରେ ରଚିତ ହୋଇଥିବା କବିତାଗୁଡ଼ିକୁ ପରୀକ୍ଷା କଲେ ସେଗୁଡ଼ିକରେ ଉପଧା ମିଳନ ରକ୍ଷିତ ହୋଇଥିବାର ଦେଖାଯାଇଥାଏ । ସେସମୟରେ କବିମାନେ କବିତା ରଚନା କରିବା ସମୟରେ ଉପଧା ମିଳନକୁ କବିତାର ଏକ ଅପରିହାର୍ଯ୍ୟ ଅଙ୍ଗ ଭାବରେ ଗ୍ରହଣ କରିନେଥିଲେ । ଆଧୁନିକ ଓଡ଼ିଆ ସାହିତ୍ୟରେ ୧୮୭୦-୮୫ ସାଲ ଭିତରେ ଉପଧା ମିଳନର ଆରମ୍ଭ ହୋଇଥିଲେହେଁ ୧୮୮୨-୯୦ ସାଲ ଭିତରେ ଏହା କବି-ମାନଙ୍କ ଦ୍ୱାରା ସୁପ୍ରତିଷ୍ଠିତ ହୋଇଥିଲା । ଏହି ସମୟଠାରୁ ଓଡ଼ିଆ କବିତା କ୍ଷେତ୍ରରେ ଉପଧାମିଳନର ବ୍ୟାପକତା ଦୃଷ୍ଟିଗୋଚର ହୋଇଥାଏ । ୧୯୧୦ ସାଲ ପର୍ଯ୍ୟନ୍ତ ଉପଧା ମିଳନର ବ୍ୟାପକତା ରହିଥିଲା ଏବଂ ୧୯୧୧ ସାଲରୁ ଆଲୋଚକମାନେ ଉପଧା ମିଳନ ବିରୁଦ୍ଧରେ ଆପତ୍ତିର ସ୍ୱର ଉଠାଇଥିଲେ ।

(୧) କୋଣାର୍କ–ଭୂମିକା, ପୃ.-ଝ ।

କବିବର ରାଧାନାଥ ବଙ୍ଗଳାରୁ ଉପାଦାନ ଆଣିଥିବାରୁ ତାଙ୍କୁ ଯେଉଁମାନେ ଅତ୍ୟନ୍ତ ନିର୍ମମ ଭାବରେ ସମାଲୋଚନା କରିଥିଲେ ସେମାନେ ସମାଲୋଚନାର ମହତ୍ତ୍ୱକୁ ପ୍ରତିଷ୍ଠିତ କରିପାରି ନଥିଲେ ବୋଲି କୁହାଯାଇପାରେ ।

ଓଡ଼ିଆ ସାହିତ୍ୟରେ ଅମିତ୍ରାକ୍ଷର ଛନ୍ଦର ପ୍ରବର୍ତ୍ତନ ପାଇଁ ମଧ୍ୟ କେତେକ ଆଲୋଚକ କବିବର ରାଧାନାଥଙ୍କୁ ନିନ୍ଦା କରିଥିଲେ । ଏହାର କାରଣ ହେଉଛି, ରାଧାନାଥ ଏହାକୁ ବଙ୍ଗଳାରୁ ଅନୁକରଣ କରିଥିଲେ । ଏପ୍ରକାର ଅନୁକରଣକୁ ଯଦି କୌଣସି ସମାଲୋଚକ ଦୋଷାବହ ବୋଲି ମତପ୍ରଦାନ କରନ୍ତି ତେବେ ତାଙ୍କର ସମାଲୋଚନାକୁ ଯଥାର୍ଥ ସମାଲୋଚନା ବୋଲି କୁହାଯାଇ ପାରିବ ନାହିଁ । ଅମିତ୍ରାକ୍ଷର ଛନ୍ଦ ଇଂରେଜୀ Blank verse ରୁ ବଙ୍ଗଳାକୁ ଆସିଥିଲା । ବଙ୍ଗଳାରୁ ତାହା ଯଦି ଓଡ଼ିଆକୁ ଆସିଲା ତେବେ ତହିଁରେ ଦୋଷ ରହିବାର କୌଣସି କାରଣ ନାହିଁ । ବଙ୍ଗଳା ସାହିତ୍ୟରେ ମାଇକେଲ ମଧୁସୂଦନ ଅମିତ୍ରାକ୍ଷର ଛନ୍ଦର ପ୍ରବର୍ତ୍ତନ କରି ଯଶସ୍ୱୀ ହୋଇଅଛନ୍ତି । ଓଡ଼ିଆ ସାହିତ୍ୟରେ ସେହିପରି କବିବର ରାଧାନାଥ ଯଶସ୍ୱୀ ହୋଇଅଛନ୍ତି । ଏ ବିଷୟରେ ଉତ୍କଳକବି ମଧୁସୂଦନଙ୍କର ମତ ଏକାନ୍ତ ଉଲ୍ଲେଖଯୋଗ୍ୟ । ତାଙ୍କରି ଭାଷାରେ, "ମହାଯାତ୍ରା ଅମିତ୍ରାକ୍ଷର ଛନ୍ଦରେ ଲିଖିତ ହୋଇଅଛି । ଉତ୍କଳ କାବ୍ୟରେ ଅମିତ୍ରଛନ୍ଦ ପ୍ରବର୍ତ୍ତନର ଏହି ପ୍ରଥମ ଶୁଭ ପ୍ରୟାସ । ଏଥିପୂର୍ବେ ବଙ୍ଗୀୟ କବିବର ଶ୍ରୀମାଇକେଲ ମଧୁସୂଦନ ଦତ୍ତ ବଙ୍ଗଳା ପଦ୍ୟର ପ୍ରକୃତି ଓ ନିୟମ ଆଲୋଚନା କରି ଏହି ଛନ୍ଦକୁ ପ୍ରବର୍ତ୍ତିତ କରିଥିଲେ । ସୁତରାଂ ବଙ୍ଗୀୟ ପଦ୍ୟର ଏକାନ୍ତ ଅନୁରକ୍ତ ଉତ୍କଳ ପଦ୍ୟ-ସାହିତ୍ୟ ମଧ୍ୟରେ ଏହି ନୂତନ ଛନ୍ଦର ଅବତାରଣା ଦ୍ୱାରା କବି ଶ୍ରୀରାଧାନାଥ କିଛି ମୌଳିକତା ଦେଖାଇ ନାହାନ୍ତି; କିନ୍ତୁ ଏହା ମୁଁ ମୁକ୍ତକଣ୍ଠରେ କହିପାରେ ଯେ ତାଙ୍କଛଡ଼ା ଅନ୍ୟ କୌଣସି ଉତ୍କଳୀୟ ଲେଖକ ଏହି ଛନ୍ଦର ଯଥାଯଥ-ପ୍ରୟୋଗ ବିଷୟରେ ଦକ୍ଷତା ଦେଖାଇ ପାରନ୍ତେ ନାହିଁ । ବଙ୍ଗଭାଷାରେ ଅମିତ୍ରାକ୍ଷର ଛନ୍ଦ ପ୍ରବର୍ତ୍ତିତ

ହେଲଦବୁ ଅନେକ ଲୋକପ୍ରସିଦ୍ଧ ବଙ୍ଗୀୟ କବି ଉକ୍ତ ଛନ୍ଦରେ କାବ୍ୟ ଲେଖିଅଛନ୍ତି; କିନ୍ତୁ ମୋ କ୍ଷୁଦ୍ରମତରେ ଜଣେ ହୁଁ ଜଣଙ୍କୁ ଗ୍ରାହ୍ୟଦେଲେ ତାହାଙ୍କ ରଚନା ମାଇକେଲଙ୍କ ରଚନା ପରି ମନୋଜ୍ଞ ହୋଇନାହିଁ । ଯେଉଁ ଅତ୍ୟଳ୍ପ ସଂଖ୍ୟକ ଲେଖକ ଏ ବିଷୟରେ କୃତକାର୍ଯ୍ୟ ହୋଇଅଛନ୍ତି, ସେଥିମଧ୍ୟରେ ଆମ୍ଭମାନଙ୍କ କବି ରାଧାନାଥ ଜଣେ ଅଟନ୍ତି ।" (୧)

ଅମିତ୍ରାକ୍ଷର ଛନ୍ଦ ପ୍ରୟୋଗ ଓଡ଼ିଆ ସାହିତ୍ୟରେ କବିବର ରାଧାନାଥଙ୍କର ଏକ ପରୀକ୍ଷା ବୋଲି କୁହାଯାଇପାରେ । ତାଙ୍କର ସମସାମୟିକ ଏବଂ ପରବର୍ତ୍ତୀ ବହୁକବି ତାଙ୍କୁ ଏହିଗରେ ଅନୁସରଣ କରିଥିବାର ଦେଖାଯାଇଥାଏ ।

କବିବର ରାଧାନାଥଙ୍କର ସାହିତ୍ୟକୁ କେନ୍ଦ୍ର କରି ଆଲୋଚକମାନେ ବହୁ ସପକ୍ଷ ଓ ବିପକ୍ଷ ସମାଲୋଚନା କରିଅଛନ୍ତି କବିଙ୍କର ଜୀବଦ୍ଦଶାରେ ଯେତେବେଳେ ବିଭିନ୍ନ କ୍ଷେତ୍ରରେ ଥିବା ବ୍ୟକ୍ତିମାନେ ତାଙ୍କର ସୃଷ୍ଟି ସଂପଦର ଯଥାର୍ଥ ମୂଲ୍ୟ ହୃଦୟଙ୍ଗମ ନକରି ତାଙ୍କୁ ଆକ୍ଷେପ-ବାଣରେ ଆହତ କରିଥିଲେ ସେତେବେଳେ କବି ତାଙ୍କର ସମାଲୋଚକମାନଙ୍କର ଏପ୍ରକାର ଆଚରଣରେ କ୍ଷୁବ୍ଧ ହୋଇ ପଡିଥିଲେ । ସେହି ସମାଲୋଚକମାନଙ୍କୁ ଉଦ୍ଦେଶ୍ୟ କରି କବି ସେମାନଙ୍କର ଆଚରଣକୁ ଆକ୍ଷେପ କରିବାପାଇଁ ତତ୍ପର ହୋଇ ପଡ଼ିଥିଲେ । କବିଙ୍କର ଏହି ମନୋବୃତ୍ତି ତାଙ୍କର ଦରବାର କାବ୍ୟରେ ପ୍ରକାଶ ପାଇଅଛି । କବି ଦରବାର କାବ୍ୟରେ ଯେଉଁମାନଙ୍କର କାର୍ଯ୍ୟକଳାପ ବା ଆଚରଣକୁ ଆକ୍ଷେପ କରିଅଛନ୍ତି, ସେମାନଙ୍କ ମଧ୍ୟରେ ତାଙ୍କ ସାହିତ୍ୟର ବିରୁଦ୍ଧାଚରଣ କରିଥିବା ବ୍ୟକ୍ତି ବା ଶ୍ରେଣୀର ସ୍ଥାନ ନିଶ୍ଚିତ ଭାବରେ ଥିଲା । କବିବର ରାଧାନାଥ ଦରବାର କାବ୍ୟରେ ତତ୍କାଳୀନ ବ୍ୟକ୍ତି ଓ ସମାଜର ଜଣେ ପ୍ରକୃଷ୍ଟ ସମାଲୋଚକ ଭାବରେ ଆତ୍ମପ୍ରକାଶ କରିଅଛନ୍ତି ।

---

(୧) ମହାଯାତ୍ରା - ମୁଖବନ୍ଧ

କବିବର ରାଧାନାଥଙ୍କର କବି ପ୍ରତିଭା କପରି ଭାବରେ ଅନ୍ୟ କବିମାନଙ୍କୁ ଆକୃଷ୍ଟ କରିଥିଲା ତାହା କବି ଗଙ୍ଗାଧର ମେହେରଙ୍କର ଉତ୍କଳଲକ୍ଷ୍ମୀ କାବ୍ୟରେ ଥିବା ବର୍ଣ୍ଣନାରୁ ଜଣାପଡ଼ିଥାଏ । ଗଙ୍ଗାଧର ଲେଖିଛନ୍ତି,

"କାବ୍ୟହିଁ ଗଲେଣି କାବ୍ୟ ରଚିବାକୁ
ରାଧାନାଥ ନାମ କବି
ତାହାଙ୍କ ଭାରତୀ- ବଳେ ହେବ ଖ୍ୟାତି
ଭାରତେ ଉତ୍କଳ ମହୀ ।"

ବ୍ୟାସକବି ଫକୀର ମୋହନ ତାଙ୍କର ଉତ୍କଳଭ୍ରମଣଂ କବିତାରେ କବିବର ରାଧାନାଥଙ୍କର ଗୁଣଗାନ କରିଅଛନ୍ତି । କବିବର ରାଧାନାଥଙ୍କୁ ସେ କେବଳ ଜଣେ ସରକାରୀ କର୍ମଚାରୀ ଭାବରେ ସମ୍ମାନ ଜଣାଇ ନାହାନ୍ତି; ତାଙ୍କର କବିତ୍ୱକୁ ମଧ୍ୟ ସମ୍ମାନ ଜଣାଇଅଛନ୍ତି । ସେ ଲେଖିଛନ୍ତି,

"ଧନ୍ୟ ରାଧାନାଥ ତୁମ୍ଭ ଜନମ ସଫଳ,
ବ୍ୟାପି ରହିଅଛି କୀର୍ତ୍ତି ଓଡ଼ିଶା ମଣ୍ଡଳ ।
କେତେ ତ ଅଛନ୍ତି ରାଜା କେତେ ଧନବନ୍ତ,
କେଉଁଲୋକ ଅଛି ତୁମ୍ଭପରି-କୀର୍ତ୍ତିମନ୍ତ ?
ବୁଲିଆସ ଓଡ଼ିଶାର ସବୁଗ୍ରାମ ଯାକ,
କାହିଁ ପଢ଼ନାହିଁ ରାଧାନାଥ ନାମ ଡାକ ?
ମାଡ଼ି ବସିଅଛ ତୁମ୍ଭେ ଶିକ୍ଷା ଶୀର୍ଷସ୍ଥାନ,
ଏହା କି ଓଡ଼ିଆ ପକ୍ଷେ ଅଳପ ସମ୍ମାନ ?
ଯେ ଯା କହୁ ମାତ୍ର ମୁହିଁ କହେ ବରାବର
ଓଡ଼ିଶାର ଭାଗ୍ୟ ଗୁଣେ ହେବ ଇନ୍‌ସ୍ପେକ୍ଟର ।
ଜନନୀର ଯୋଗ୍ୟ ପୁତ୍ର ଅଟ ତୁମ୍ଭେ ଭାଇ,
ଦେଇଅଛ ଭଲ ମାଳେ ଟ୍ରଙ୍କାରେ ପିନ୍ଧାଇ ।
ଧନ ମାନ ପଦ ସବୁ କାଳର ଅଧୀନ,
'ପାର୍ବତୀ' 'କେଦାରଗୌରୀ' ଥିବ ଚିରଦିନ ।"

କବିବର ରାଧାନାଥଙ୍କର ସମସାମୟିକ ସମସ୍ତ କବି ତାଙ୍କର ଗୁଣଗାନ କରି ତାଙ୍କ କବିତ୍ୱର ଉଚ୍ଛ୍ୱସିତ ପ୍ରଶଂସା କରିଅଛନ୍ତି । କବି ପଦ୍ମଚରଣ ପଟ୍ଟନାୟକ କବିବର ରାଧାନାଥଙ୍କର ସ୍ମୃତି ଉଦ୍ଦେଶ୍ୟରେ ଯେଉଁ କବିତାଟି ରଚନା କରିଥିଲେ, ତହିଁରେ ସେ ଲେଖିଥିଲେ,

"କବି! ତପବଳେ ସେବିଲ କବି ! ବାଣୀଚରଣ,
ଲଭିଲ ସେ ପଦକମଳୁଁ ଅକ୍ଷୟ ଦିବ୍ୟଧନ ।
ଧନ୍ୟ ତବ ତପ ପ୍ରଭାବ ଧନ୍ୟ ତବ ସାଧନା,
ଲଭିବ ସତତ ହେ କବି ! ଉତ୍କଳର ବନ୍ଦନା ।
ଯାବତ ଜାତିର ଶିରେ ବହୁଥିବ ଶୋଣିତ,
ତବ ପୁଣ୍ୟନାମ ହୋଇବ ଯୁଗେ ଯୁଗେ କୀର୍ତ୍ତିତ
ମାସପରେ ମାସ ବରଷ ପରେ ଆଉ ବରଷ,
'ଚିଲିକା'ର ରସ ରହିବ ଚିରକାଳ ସରସ ।
'ନନ୍ଦିକା' 'ଗଜସ୍ତି' 'ପାର୍ବତୀ' ରସ ଭବେ ଅକ୍ଷୟ
ଯେତେକାଳ ନରଶରୀରେ ଶୋଭୁଥିବ ହୃଦୟ ।
ଭଲ ମନ୍ଦ ମଧ୍ୟ ଯାବତ ଭବେ ଥିବ ବିଗ୍ରହ,
'ଦରବାର' ଦେଶେ ତାବତ ଲଭିବ ହେ ଆଦର ।
ସ୍ୱଦେଶ ବିଦେଶ ସାହିତ୍ୟ ଘାଣ୍ଟି ଯେ ଖାଣ୍ଟିଧନ
ଦେଇଛ ସ୍ୱଦେଶ ହେ କବି ! ଭବେ ତା ଅତୁଳନ ।"

କବିବର ରାଧାନାଥଙ୍କର ଜୀବନରେ ନଗେନ୍ଦ୍ରବାଳା ରାୟଙ୍କୁ କେନ୍ଦ୍ରକରି ଯେଉଁ ଘଟଣା ଘଟିଥିଲା ତାହାକୁ ସେ ଶେଷଜୀବନରେ ସ୍ୱୀକାର କରି ବିଶେଷ ଭାବରେ ପ୍ରଚାର କରିଥିଲେ । କବିଙ୍କର ସ୍ୱୀକାରୋକ୍ତି ସେ ସମୟରେ ଏ ଦେଶର ବହୁ ବ୍ୟକ୍ତିଙ୍କ ଭିତରେ ଆଲୋଡ଼ନ ସୃଷ୍ଟି କରିଥିଲା । ବହୁ ପତ୍ରପତ୍ରିକାରେ ରାଧାନାଥଙ୍କ ପ୍ରତି ଆଶ୍ୱାସନା ବାଣୀ ପ୍ରକାଶ ପାଇବା ସଙ୍ଗେ ସଙ୍ଗେ ବହୁ ବ୍ୟକ୍ତି ତାଙ୍କ ନିକଟକୁ ଓ ଶଶିଭୂଷଣଙ୍କ ନିକଟକୁ ପତ୍ର ସାହାଯ୍ୟରେ ଆଶ୍ୱାସନା ବାଣୀ ପ୍ରେରଣ କରିଥିଲେ ।

୧୯୦୭ ସାଲ ସେପ୍‌ଟେମ୍ବର ମାସ ୧୭ ତାରିଖରେ "ଉତ୍କଳ ବାର୍ତ୍ତା"ରେ ଶ୍ରୀମତୀ ସାବିତ୍ରୀ ଦେବୀ ଏବିଷୟରେ ଯାହା ଲେଖିଥିଲେ ତାହାର କିୟଦଂଶ ଏଠାରେ ଉଦ୍ଧାରଯୋଗ୍ୟ ।

"ଭାରତରେ ତଥା ପବିତ୍ର ଉତ୍କଳ ଭୂମିରେ ସାଧୁ, ସନ୍ନ୍ୟାସୀ ଓ ସମ୍ଭ୍ରାନ୍ତ, ଶିକ୍ଷିତ ଅସଂଖ୍ୟ ବ୍ୟକ୍ତି ଜନ୍ମ ହୋଇ କେହି କେହି ସତ୍କାର୍ଯ୍ୟ ଦ୍ୱାରା ଏହି ମର୍ତ୍ତ୍ୟରେ ଅମରତ୍ୱ ଲାଭ କରିଅଛନ୍ତି, ମାତ୍ର ସେମାନଙ୍କ ମଧ୍ୟରେ ଅନେକ ନିଷ୍ପାପ ପୁରୁଷ ଥାଇ ପାରନ୍ତି । କେହିଜଣେ ସ୍ୱକୃତ କୁକାର୍ଯ୍ୟ ସକାଶେ ଅନୁତପ୍ତ ହୋଇ 'ପାପକୃତ୍ୟ ପ୍ରକାଶପୂର୍ବ' ଏହି ମହାମନ୍ତ୍ରର ଅବଲମ୍ବନ ଗ୍ରହଣ କରିଥିଲେ କି ? ମୁଁ ସେପରି ସନ୍ତ ପୁରୁଷର ନାମ ଅବଧି ଶୁଣିନାହିଁ । ବର୍ତ୍ତମାନ କବିଙ୍କର ଆତ୍ମଚରିତର ଧୃତ ଉତ୍କଳ କାହିଁକି ସମଗ୍ର ଭାରତବର୍ଷର ଗୌରବାନ୍ୱିତ ଆର୍ଯ୍ୟଜାତିର ମହତ୍ତ୍ୱ ବୃଦ୍ଧି କରୁଅଛି । ଆମ୍ଭର ପୁତ୍ର ପୌତ୍ରଗଣ ସତ୍ପୁରୁଷମାନଙ୍କର ନାମ ସ୍ମରଣ କରିବା କାଳକୁ ନିଷ୍ପାପ ପୁରୁଷ-ରାଧାନାଥ ବୋଲି ସଗର୍ବରେ କହି ପାରିବେ । ସେମାନେ ଶିଖିବେ, ମହାଜନମାନେ ଏକମାତ୍ର ପାପ କର୍ମରେ ଅନାୟତ୍ତରେ ଥରେ ଲିପ୍ତ ହୋଇ ଏପରି ଅନୁତାପରେ ମର୍ମାନ୍ତିକ ଦଂଶନଜ୍ୱାଳା ସହ୍ୟ କରନ୍ତି । ଆମ୍ଭେମାନେ ଅବଲୀଳା କ୍ରମେ ଯେ ହସ୍ତ ସହସ୍ର ଉତ୍କଟ ପାପକର୍ମ କରୁଅଛୁଁ, ସେମାନଙ୍କର ଜ୍ୱାଳା କିଛି ମାତ୍ର ବୋଧକରି ପାରୁ ନାହୁଁ । ଅତ୍ୟଧିକ ପାପରେ ଶରୀର ଚର୍ମ କାଷ୍ଠପାଷାଣବତ୍ ନହେଲେ ସେ ଦଂଶନକ୍ଳେଶ ଜଣା ନପଡ଼ନ୍ତା କାହିଁକି ? ରାଧାନାଥଙ୍କ ଜୀବନର ମୂଲ୍ୟବତ୍ତା ସେମାନେ ସେତେବେଳେ ବୁଝିପାରି ଆତ୍ମଚରିତକୁ ଜୀବନର ଉପଦେଷ୍ଟା ବୋଲି ମାନ୍ୟ କରିବେ । ଏହି ଈଶ୍ୱରିକ ପ୍ରତ୍ୟାଦିଷ୍ଟ ଧର୍ମନୀତି ପାପର କଣ୍ଟକାକୀର୍ଣ୍ଣ ତରୁଗୁଳ୍ମର ମୂଳୋତ୍ପାଟନ କରି ସୁନ୍ଦର ସୁନୀତିତରୁ ରୋପଣ କରିବ । ଏହା ଭାବନା କଲେ ଲୋକର ହୃଦୟରେ ଅପାର୍ଥିବ ମାଧୁର୍ଯ୍ୟ ଓ ସ୍ୱର୍ଗୀୟ ସୌନ୍ଦର୍ଯ୍ୟ ପ୍ରକାଶିତ କରାଇବ । ମାନବ ସମାଜରେ ପବିତ୍ରତା ପ୍ରତିଷ୍ଠିତ ହେବ । ଜ୍ୟୋତିର୍ମୟଙ୍କର ପାପହା ସ୍ୱର୍ଗୀୟ

ଜ୍ୟୋତି ପ୍ରତ୍ୟେକଙ୍କ ଜୀବନରେ ପ୍ରତିଭାତ ହେବ । ଆତ୍ମଚରିତ ଅଥବା ମହାପାପୀର ନିବେଦନ ଉତ୍କଳୀୟ ଯୁବକମାନଙ୍କର ରମଣୀୟ ସୁମାର୍ଜିତ-ଦର୍ପଣ ଅଟେ ।”

କବିବର ରାଧାନାଥଙ୍କର କବି ପ୍ରତିଭା ଓ ଜୀବନାଦର୍ଶ ବହୁ ଭାବରେ ପ୍ରଶଂସିତ ହୋଇଅଛି । ତାଙ୍କର ସାହିତ୍ୟ ସାଧନା ଦ୍ୱାରା ଓଡ଼ିଆ ସାହିତ୍ୟରେ ନବଯୁଗର ଉନ୍ମେଷ ଘଟିଅଛି । କବିବର ରାଧାନାଥଙ୍କର ଜୀବନରେ ବହୁ ଅଶୋଭନୀୟ ଘଟଣା ଘଟିଯାଇଅଛି । ବହୁବ୍ୟକ୍ତିଙ୍କ ନିନ୍ଦାର ପାତ୍ର ମଧ୍ୟ ସେ ହୋଇଛନ୍ତି । ତଥାପି ଓଡ଼ିଆ ସାହିତ୍ୟର ସେବାରୁ ସେ ନିଜକୁ ବିରତ କରିନାହାନ୍ତି । ସମୟେ ସମୟେ ସେ ତାଙ୍କର ନିନ୍ଦା ସମାଲୋଚକମାନଙ୍କ ନିନ୍ଦାରେ ବିଚଳିତ ହୋଇପଡ଼ିଛନ୍ତି । ତଥାପି ତାଙ୍କର ଜୀବନଦର୍ଶ କମ୍ ଶିକ୍ଷଣୀୟ ନୁହେଁ । ଆଧୁନିକ ଓଡ଼ିଆ ସାହିତ୍ୟକୁ ବ୍ୟାପକ ଦୃଷ୍ଟିକୋଣରୁ ବିଚାର କଲେ ଏହା କବିବର ରାଧାନାଥଙ୍କର ଅମ୍ଳାନ କୀର୍ତ୍ତି ବୋଲି କୁହାଯିବ । ତେଣୁ ତାଙ୍କୁ ‘ଯୁଗ-ଜ୍ୟୋତି’ ଭାବରେ ଗ୍ରହଣ କରିବା ହିଁ ତାଙ୍କର ପ୍ରତି ଶ୍ରେଷ୍ଠ ସମ୍ମାନ ।

---